# ଶ୍ରୀମଦ୍ଭାଗବତ

ପଞ୍ଚମସ୍କନ୍ଧ ।



ଚନ୍ଦ୍ରମଣି




ଅରୁଣୋଦୟ ପ୍ରେସ ବାଲୁବଜାର

କଟକ

[ ଜଗନ୍ନାଥଦାଶଙ୍କ ତିରୋଧାନ ଦିବସ ମାଘ
ଶୁକ୍ଳସପ୍ତମୀ ଦିନ ପ୍ରକାଶିତ ହେଲା ]

# ସଚିତ୍ର

# ଶ୍ରୀମଦ୍ଭାଗବତ

## ପଞ୍ଚମସ୍କନ୍ଧ

ସଂସ୍କୃତଶ୍ଲୋକ, ଗଦ୍ୟାନୁବାଦ

ଭକ୍ତକବି ଜଗନ୍ନାଥ ଦାସଙ୍କ ପଦ୍ୟାନୁବାଦ

ଓ

**ଟୀକା ସମ୍ବଳିତ**

ସମ୍ପାଦକ—

ରାୟବାହାଦୂର ଶ୍ରୀ ଚନ୍ଦ୍ରମଣି ଆଚାର୍ଯ୍ୟ ଏମ୍, ଏ; ବି, ଏଲ୍,

**ପ୍ରଥମ ସଂସ୍କରଣ**

ପ୍ରକାଶକ—

**ଅରୁଣୋଦୟ ପ୍ରେସ, କଟକ**

୧୯୪୫

ମୂଲ୍ୟ ଟ ୨ୟ

## ନିବେଦନ—

ଇତ ମଧ୍ୟରେ ପୁରୀଜିଲ୍ଲା ଖୋର୍ଦ୍ଧା ସବ୍‌ଡିଭିଜନ ଅନ୍ତର୍ଗତ ବଢାପଥର ଗ୍ରାମ ନିବାସୀ ପଣ୍ଡିତ ଶ୍ରୀ ଗୋବର୍ଦ୍ଧନଚନ୍ଦ୍ର ରଥ ଶର୍ମା ତୃତୀୟ ସ୍କନ୍ଧର ଷୋଡ଼ଶ ଅଧ୍ୟାୟର ୨୦ ଶ୍ଳୋକଠାରୁ ୨୫ ଶ୍ଳୋକ ପର୍ଯ୍ୟନ୍ତ ଲୁପ୍ତ ଦବ ଜଗନ୍ନାଥ ଦାସଙ୍କ ଅନୁବାଦିତ ପଦ୍ୟାଂଶ ପାଠ କରି ମୋ ନିକଟକୁ ଗୋଟିଏ ପତ୍ର ଲେଖିଥିଲେ । ତାହାଙ୍କ ନିକଟରେ ଥିବା ଗୋଟିଏ ତାଳପତ୍ର ପୋଥିରେ ଏହି ଅଂଶର ଅନୁବାଦ ଯେପରି ଲିଖିତହୋଇଅଛି ତାହା ମଧ୍ୟ ସେ ଅନୁଗ୍ରହ କରି ମୋ ନିକଟକୁ ପଠାଇ ଅଛନ୍ତି । ପାଠକମାନଙ୍କର ସୁବିଧାର୍ଥେ ମୁଁ ତାହା ଛପାଇ ଏହି ପଞ୍ଚମସ୍କନ୍ଧର ପରିଶିଷ୍ଟରେ ଦେଇଅଛି । ସେମାନଙ୍କୁ ଅନୁରୋଧ ଏହି ଅଂଶଟି କାଟିନେଇ ତୃତୀୟସ୍କନ୍ଧର ୧୭୯ ପୃଷ୍ଠାରେ ଯୋଗ କରି ପାଠ କରିବେ । ଶ୍ରୀଯୁକ୍ତ ରଥ ମହାଶୟଙ୍କର ଏପରି ଅନୁଗ୍ରହ ଲାଗି ମୁଁ ତାହାଙ୍କ ନିକଟରେ ବିଶେଷ ଋଣୀ ।



# ମୁଖବନ୍ଧ ।

ପଞ୍ଚମସ୍କନ୍ଧ ଛବିଶ ଅଧ୍ୟାୟରେ ବିଭକ୍ତ, ପ୍ରଥମେ ପ୍ରିୟବ୍ରତଙ୍କ ବୃତ୍ତାନ୍ତ କଥିତ ହୋଇଅଛି । ରାଜା ପରୀକ୍ଷିତ ପ୍ରିୟବ୍ରତଙ୍କ ଗୃହାଶ୍ରମର କାରଣ ପ୍ରଶ୍ନ କରନ୍ତେ ଶ୍ରୀ ଶୁକଦେବ ତାହାଙ୍କୁ ଉତ୍ତରରେ ସତ୍ୟଲୋକରୁ ଦେବଗଣ ମସ୍ତଗଣଙ୍କର ଆବର୍ତ୍ତିବ ପ୍ରସଙ୍ଗ ଓ ପଥ ମଧ୍ୟରେ ଇନ୍ଦ୍ରାଦିଙ୍କ କର୍ତ୍ତୃକ ବ୍ରହ୍ମାଙ୍କର ପୂଜା ଇତ୍ୟାଦି ପ୍ରସଙ୍ଗ ବର୍ଣ୍ଣନା କରିଥିଲେ, ଏହି ପ୍ରସଙ୍ଗରେ ଗୃହସ୍ଥାଶ୍ରମରେ ରହି ମନୁଷ୍ୟ କିପରି ଭଗବାନଙ୍କୁ ପାଇ ପାରେ ତହିଁର ଉଦାହରଣ ଦେବା ନିମିତ୍ତ ପ୍ରିୟବ୍ରତ ପ୍ରସଙ୍ଗ ଓ ତାହାଙ୍କର ଗୃହସ୍ଥାଧର୍ମ ଇତ୍ୟାଦି ଉଲ୍ଲେଖ କରିବାକୁ ହୋଇଥିଲା । ସନ୍ନ୍ୟାସଧର୍ମ ଗ୍ରହଣ ନ କରି ମନୁଷ୍ୟର ଯେ ଭଗବତ୍ ପ୍ରାପ୍ତି ହୋଇ ନ ପାରେ ଏହି ଭ୍ରମ ଦୂର କରିବା ଉଦ୍ଦେଶ୍ୟରେ ଶ୍ରୀ ଶୁକଦେବ ପ୍ରିୟବ୍ରତଙ୍କୁ ଆଦର୍ଶ ଗୃହସ୍ଥରୂପେ ପରିଚୟ ଦେଇ-ଥିଲେ ଏବଂ ତାହାଙ୍କର ଗୁଣାବଳି ଓ ବଂଶାବଳି ବର୍ଣ୍ଣନା କରିଥିଲେ, ଏହି ବଂଶ ପରମ୍ପରା ମଧ୍ୟରେ ଯେଉଁ-ମାନେ ଖ୍ୟାତନାମା ପୁରୁଷ ହୋଇ ଓ ବିବାହ କରି ପୁତ୍ର ପୌତ୍ରାଦି ଜନ୍ମାଇ ସୁଦ୍ଧା ଅବଶେଷରେ ଭଗବତ୍ ଗତି ପ୍ରାପ୍ତ ହୋଇଥିଲେ; ସେମାନଙ୍କର ପ୍ରସଙ୍ଗ ଉଲ୍ଲେଖ କରିଥିଲେ । ଦ୍ୱିତୀୟ ଅଧ୍ୟାୟଠାରୁ ପଞ୍ଚମ ଅଧ୍ୟାୟ ମଧ୍ୟରେ ଏ ବିଷୟମାନ ବର୍ଣ୍ଣିତ ହୋଇଅଛି ।

ତଦନନ୍ତର ରାଜା ପରୀକ୍ଷିତ ମହାମୁନି ଶୁକଦେବଙ୍କୁ ଯୋଗୀର ବିଷୟବିଦ୍ୱେଷର କାରଣ ପ୍ରଶ୍ନ କରନ୍ତେ ସେ ଉତ୍ତରରେ ଅବଧୂତ-ବେଶୀ ଓ ସ୍ୱାବଲମ୍ବୀ, ଦେହତ୍ୟାଗାଭିଳାଷୀ ଋଷଭ ଦେବଙ୍କ ପ୍ରସଙ୍ଗ ବର୍ଣ୍ଣନା କରିଥିଲେ । ତଦନନ୍ତର ଜଡ଼ ଭରତ ଉପାଖ୍ୟାନ କଥିତ ହୋଇଅଛି, ଭରତ ପ୍ରଥମେ ବିଶ୍ୱରୂପଙ୍କର ଦୁହିତା ପଞ୍ଚଜନୀଙ୍କୁ ବିବାହ କରି ତାହାଙ୍କ ଗର୍ଭରେ ପାଞ୍ଚୋଟି ପୁତ୍ର ଉତ୍ପାଦନ କରିଥିଲେ । ପରେ ସେହି ପୁତ୍ରମାନଙ୍କ ରାଜ୍ୟଭାର ପ୍ରଦାନ କରି ଶ୍ରୀହରିକ୍ଷେତ୍ର ପୁଲହାଶ୍ରମକୁ ଗମନ କରି ସେଠାରେ ନାରାୟଣ ସେବାବ୍ରତରେ ବ୍ରତୀ ହୋଇଥିଲେ, ଏହି ଉପାଖ୍ୟାନ ମାନଙ୍କରୁ ଆଦର୍ଶ ଗୃହସ୍ଥର ଚିତ୍ର ଦେଖାଯାଏ, ସେମାନେ ସଂସାରରେ ଥିଲେ ମଧ୍ୟ ଉଦାସୀ ବା ଅନାସକ୍ତ ଭାବରେ କାଳାତିପାତ କରିଥାନ୍ତି । ସୁତରାଂ ସେମାନଙ୍କ ପକ୍ଷରେ ପୁତ୍ର କଳତ୍ର ରାଜ୍ୟ ସମ୍ପଦ ଓ ବିଷୟ ପରିତ୍ୟାଗ ଭଗବାନଙ୍କ ଚରଣାରବିନ୍ଦ ଭଜିବାକୁ ମୁହୂର୍ତ୍ତେ ଚିନ୍ତା କରିବାକୁ ପଡ଼ ନ ଥିଲା ।

ଏହି ଭରତ ଜଡ଼ଭରତରୂପେ ଖ୍ୟାତ, ଜଡ଼ଭରତ ଗୋଟିଏ ହରିଣ ଶିଶୁପାଳନ କରି ତାହା ପ୍ରତି ଏତେଦୂର ଆକୃଷ୍ଟ ହୋଇଥିଲେ ଯେ ସର୍ବଦା ସେହି ମୃଗଚିନ୍ତା ଭିନ୍ନ ତାଙ୍କର ଅନ୍ୟ କୌଣସି ଚିନ୍ତା ନ ଥିଲା । ଦେହତ୍ୟାଗ କାଳରେ ସୁଦ୍ଧା ଭଗବାନଙ୍କୁ ସ୍ମରଣ ନ କରି ସେହି ମୃଗକୁ ଚିନ୍ତା କରୁଥିବାରୁ ତାଙ୍କର ମୃଗ ଦେହରେ ଜନ୍ମ ହୋଇଥିଲା, ପରେ ସେ ମୃଗଦେହରୁ ମୁକ୍ତିଲାଭ କରି ଗୋଟିଏ ବ୍ରାହ୍ମଣ ପୁତ୍ର ରୂପେ ଜାତ ହୋଇଥିଲେ । ଏକାଦଶ ସ୍କନ୍ଧରେ ଯେଉଁ ଅବଧୂତର ଚିତ୍ର ଦେଖାଯାଏ ତାହାର ସୂଚନା ଏହି ପଞ୍ଚମସ୍କନ୍ଧରେ ଜଡ଼ଭରତଙ୍କ କାର୍ଯ୍ୟ ଦ୍ୱାରା ସୂଚିତ ହୋଇଅଛି, ଏହି ଭରତ ଥରେ ରହୂଗଣଙ୍କ ନିକଟରେ

ନରବର ପ୍ରଧାନ ଜନ୍ମରୁ ନୀଚ ହୋଇ ପଡ଼ିବ ତହିଁରୁ ମଧ୍ୟ ମୁକ୍ତିପଦ ଲଭିଥିଲେ, ସିନ୍ଧୁ ସୌବୀରାଧିପତି ରହୂଗଣ ଯେବେ ଶିବିକାରୋହଣ କରି ଅଗସ୍ତି ମୁନିଙ୍କ ଆଶ୍ରମକୁ ଯାଉଥିବାବେଳେ ଜଣେ ଶିବିକା ବାହକ ଅଭାବ ହେବାରୁ ଜଡ଼ଭରତଙ୍କୁ ଶିବିକା ବାହକରୂପେ ନିଯୁକ୍ତ କରି ଯାଇଥିଲା । ଅନଭ୍ୟସ୍ତ ଜଡ଼ଭରତ ଶିବିକା ବହନ କଲାବେଳେ ଶିବିକା ହଲାଇ ଦେବାରୁ ଏପରି ଅବସ୍ଥା ଘଟିଥିଲା । ସେଥିରେ ରାଜା ଭର୍ତ୍ସନା କରିବାରୁ ରାଜାଙ୍କର ଉକ୍ତିର ଆଧ୍ୟାତ୍ମିକ ଅର୍ଥ ଜଡ଼ ଭରତ ପ୍ରକାଶ କରିଥିଲେ, ଏଥିରେ ରାଜା ବିସ୍ମିତ ହୋଇ ନିଜ କୃତ ଅପରାଧ ନିମିତ୍ତ ଜଡ଼ଭରତଙ୍କୁ କ୍ଷମା ମାଗିଥିଲେ ଏବଂ ତାହାଙ୍କଠାରୁ ତତ୍ତ୍ୱ ଉପଦେଶ ଗ୍ରହଣ କରିଥିଲେ; ଏହି ଜଡ଼ ଭରତ ପ୍ରସଙ୍ଗ ଓ ତତ୍ତ୍ୱ ଉପଦେଶ ଅଷ୍ଟ ପଞ୍ଚଦଶ ଅଧ୍ୟାୟ ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇଅଛି, ଷୋଡ଼ଶ ଅଧ୍ୟାୟରେ ରାଜା ପରୀକ୍ଷିତଙ୍କ କର୍ତ୍ତୃକ ଜିଜ୍ଞାସିତ ହୋଇ ଶ୍ରୀଶୁକଦେବ ସମୁଦ୍ର, ଦ୍ୱୀପ, ଦେଶ ପ୍ରଭୃତି ଭୂମଣ୍ଡଳ ପ୍ରସଙ୍ଗ ତଦନନ୍ତର ସ୍ୱର୍ଗ, ପାତାଳ, ନରକ ଆଦି ବର୍ଣ୍ଣନା ରାଜା ପରୀକ୍ଷିତଙ୍କୁ ଶୁଣାଇଥିଲେ । ଏହି ବର୍ଣ୍ଣନାମାନ ଷୋଡ଼ଶ ଅଧ୍ୟାୟଠାରୁ ଛବିଶ ଅଧ୍ୟାୟ ମଧ୍ୟରେ କରି ଯାଇଅଛି ।



# ସୂଚୀ ପତ୍ର ।

ବିଷୟ ପୃଷ୍ଠା

ଅଧ୍ୟାୟ :—



ଚିତ୍ର ସୂଚୀ ପୃଷ୍ଠା

# ଶ୍ରୀମଦ୍ଭାଗବତ

## ପଞ୍ଚମସ୍କନ୍ଧ



### ପ୍ର ଥ ମ ଅ ଧ୍ୟା ୟ ।

ଅଥାତଃ ପଞ୍ଚମସ୍କନ୍ଧେବ୍ୟାଖ୍ୟାଽନେକବିଶେଷବାନ୍ ।
ପ୍ରିୟବ୍ରତାନ୍ୱୟୋ ଯତ୍ର ସପ୍ରପଞ୍ଚଃ ପ୍ରପଞ୍ଚ୍ୟତେ ॥
ତତ୍ର ତୁ ପ୍ରଥମେଽଧ୍ୟାୟେ ଜ୍ଞାନତୋ ରାଜ୍ୟନିର୍ବୃତିଃ ।
ପୁନଶ୍ଚ ଜ୍ଞାନନିଷ୍ଠେତି ପ୍ରିୟବ୍ରତକଥାଦ୍ଭୁତା । ୦ । ( ଶ୍ରୀଧରସ୍ୱାମୀ )

---

### ପ୍ରିୟବ୍ରତଙ୍କ ରାଜ୍ୟଶାସନ ଓ ଜ୍ଞାନାର୍ଜ୍ଜନ ।

ପଞ୍ଚମସ୍କନ୍ଧରେ ମହାରାଜ ପ୍ରିୟବ୍ରତଙ୍କର ବଂଶ ବିସ୍ତାର ପ୍ରସଙ୍ଗରେ ସପ୍ତଦ୍ୱୀପ ଓ ସପ୍ତବର୍ଷ ପ୍ରସଙ୍ଗ ଅବତାରିତ ହୋଇଅଛି । ତନ୍ମଧ୍ୟରୁ ପ୍ରଥମ ଅଧ୍ୟାୟରେ ମହାରାଜ ପ୍ରିୟବ୍ରତ କପରି ବିଶାଳ ସାମ୍ରାଜ୍ୟ ଭୋଗକରି ଶେଷରେ ଭଗବତ୍‌ଗତି ପ୍ରାପ୍ତ ହେଲେ ତାହା ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀରାଜୋବାଚ ।

ପ୍ରିୟବ୍ରତୋ ଭାଗବତ ଆତ୍ମାରାମଃ କଥଂ ମୁନେ ।
ଗୃହେଽରମତ ଯନ୍ମୂଳଃ କର୍ମବନ୍ଧଃ ପରାଭବଃ । ୧ ।
ନ ନୂନଂ ମୁକ୍ତସଙ୍ଗାନାଂ ତାଦୃଶାନାଂ ଦ୍ୱିଜର୍ଷଭ ।
ଗୃହେଷ୍ୱଭିନିବେଶୋଽୟଂ ପୁଂସାଂ ଭବିତୁମର୍ହତି । ୨ ।
ମହତାଂ ଖଲୁ ବିପ୍ରର୍ଷେ ଉତ୍ତମଃଶ୍ଲୋକପାଦୟୋଃ ।
ଛାୟାନିର୍ବୃତଚିତ୍ତାନାଂ ନ କୁଟୁମ୍ବେ ସ୍ପୃହାମତିଃ । ୩ ।
ସଂଶୟୋଽୟଂ ମହାନ୍ ବ୍ରହ୍ମନ୍ ଦାରାଗାରସୁତାଦିଷୁ ।
ସକ୍ତସ୍ୟ ଯା ସିଦ୍ଧିରଭୂତ୍ କୃଷ୍ଣେ ଚ ମତିରଚ୍ୟୁତା । ୪ ।

---

ଶ୍ରୀରାଜାପରୀକ୍ଷିତ କହିଲେ :—

ହେ ମୁନେ ! ଯେଉଁ ଗୃହାସକ୍ତି ହେତୁରୁ ଜୀବର କର୍ମବନ୍ଧନ ଘଟେ ଏବଂ ନିଜର ସ୍ୱରୂପ ଜ୍ଞାନ ତିରୋହିତ ହୁଏ ପ୍ରିୟବ୍ରତ ପରମଭାଗବତ ଏବଂ ଆତ୍ମାରାମ ହୋଇ ସୁଦ୍ଧା କି ହେତୁରୁ ପୁଣି ସେହି ଗୃହାଶ୍ରମରେ ଆସକ୍ତ ହେଲେ ? । ୧ ।

ହେ ଦ୍ୱିଜଶ୍ରେଷ୍ଠ ! ପ୍ରିୟବ୍ରତଙ୍କ ତୁଲ୍ୟ ବିଷୟାସକ୍ତିରହିତ ଭଗବଦ୍ ଭକ୍ତଗଣଙ୍କର ଏପରି ଅଜ୍ଞୋଚିତ ଗୃହାଭିନିବେଶ ଉପଯୁକ୍ତ ନୁହେଁ । ୨ ।

ହେ ବିପ୍ରର୍ଷେ ! ଉତ୍ତମଶ୍ଲୋକ ଭଗବାନଙ୍କର ଚରଣଚ୍ଛାୟାରେ ସଂସାର ସନ୍ତାପ ଦୂର ହେବାରୁ ଯେଉଁମାନଙ୍କ ଚିତ୍ତରେ ପରମାନନ୍ଦ ବିରାଜମାନ କରେ, ସେପରି ମହାପୁରୁଷମାନଙ୍କର କଦାପି ପୁତ୍ରକଳତ୍ରାଦି କୁଟୁମ୍ବବର୍ଗଙ୍କ ପ୍ରତି ସ୍ପୃହା ନ ଥାଏ । ୩ ।

ହେ ବ୍ରହ୍ମନ୍ ! ସ୍ତ୍ରୀ ପୁତ୍ର ଗୃହପ୍ରତି ଆସକ୍ତ ପ୍ରିୟବ୍ରତଙ୍କର ସିଦ୍ଧିଲାଭ ହୋଇଥିଲା ଏବଂ ଭଗବାନ୍ ଶ୍ରୀକୃଷ୍ଣଙ୍କ ପ୍ରତି ଅବିଚଳିତ ଭକ୍ତି ହୋଇଥିଲା କିପରି ଏ ବିଷୟରେ ମୋର ସନ୍ଦେହ ହେଉଅଛି । ୪ ।

---

ପ୍ରଥମସ୍କନ୍ଧେ ପ୍ରିୟବ୍ରତ । ରାଜାର ବଂଶାନୁଚରିତ ॥ ପ୍ରସଙ୍ଗେ ଦ୍ୱୀପବର୍ଷକଥା । ଆକାଶ ପାତାଳ ବ୍ୟବସ୍ଥା ॥
ପ୍ରଥମ ଅଧ୍ୟାୟ ଚରିତ, ଯେମନ୍ତେ ରାଜା ପ୍ରିୟବ୍ରତ । ରାଜ୍ୟ ଭୋଗର ଅନ୍ତେ ପୁଣ, ଉଦୟ ହେଲା ତାର ଜ୍ଞାନ ॥

ପରମ ପୁରୁଷ ଗୋବିନ୍ଦ
ତାହାଙ୍କ ଚରଣାରବିନ୍ଦ
ତହିଁ ଗଳଇ ମକରନ୍ଦେ
ତାହା ଯେ ପିବନ୍ତି ଆନନ୍ଦେ
ତାହାଙ୍କ ଚରଣେ ବନ୍ଦଇଁ
ପଞ୍ଚମସ୍କନ୍ଧେ ଗୀତ ଗାଇ ।
ଶ୍ରୀପରୀକ୍ଷିଦୁବାଚ—
ହେ ମୁନି ରାଜା ପ୍ରିୟବ୍ରତ
ସେ ଆତ୍ମାରାମ ଭାଗବତ
ଗୃହେ ରମିଲା ତାର ମନ
ପ୍ରାରବ୍ଧ କର୍ମରେ ବନ୍ଧନ । ୧ ।
ନିଶ୍ଚୟେ ମୁକ୍ତ ସଙ୍ଗ ଯାର
ଏମନ୍ତ ପ୍ରାଣିମାନଙ୍କର
କିପାଁ ଏ ଗୃହେ ମନ ରହେ
ହେମୁନି ଫେଡ଼ିବା ସନ୍ଦେହେ ।୨।
ନିଶ୍ଚେ ମହତ ଲୋକଙ୍କର
ଉତ୍ତମ ଶ୍ଲୋକ-କଥା ସାର
ନିବୃତ୍ତି ଚିତ୍ତ ସେ ହୁଅନ୍ତି
ସେ କିମ୍ପା ବ୍ୟର୍ଥ ଆଚରନ୍ତି ? ।୩।
ଏ ମୋତେ ସଂଶୟ ବହୁତ
ଯେ ପ୍ରାଣୀ ଗୃହେ ମୋହଚିତ୍ତ
ପୁଣି ତା ମତି କୃଷ୍ଣଠାରେ
ହୋଇଲା କେମନ୍ତ ପ୍ରକାରେ ? ।୪।

ଶ୍ରୀଶୁକ ଉବାଚ ।

ବାଢ଼ମୁକ୍ତଂ ଭଗବତ ଉତ୍ତମଃଶ୍ଳୋକସ୍ୟ ଶ୍ରୀମଚ୍ଚରଣାରବିନ୍ଦମକରନ୍ଦରସ ଆବେଶିତ-ଚେତସୋ ଭାଗବତପରମହଂସଦୟିତକଥାଂ କଞ୍ଚିଦନ୍ତରାୟବିହତାଂ ସ୍ୱାଂ ଶିବତମାଂ ପଦବୀଂ ନ ପ୍ରାୟେଣ ହିନ୍ୱନ୍ତି । ୫ ।

ଯର୍ହି ବାବ ହ ରାଜନ୍ ସ ରାଜପୁତ୍ରଃ ପ୍ରିୟବ୍ରତଃ ପରମଭାଗବତୋ ନାରଦସ୍ୟ ଚରଣୋପସେବୟାଞ୍ଜସାବଗତପରମାର୍ଥସତତ୍ତ୍ୱୋ ବ୍ରହ୍ମସତ୍ରେଣ ଦୀକ୍ଷିଷ୍ୟମାଣୋଽବନୀ-ତଳପରିପାଳନାୟାମ୍ନାତପ୍ରବରଗୁଣଗଣୈକାନ୍ତଭାଜନତୟା ସ୍ୱପିତ୍ରୋପାମନ୍ତ୍ରିତୋଭଗବତି ବାସୁଦେବ ଏବାବ୍ୟବଧାନସମାଧିଯୋଗେନ ସମାବେଶିତସକଳକାରକକ୍ରିୟାକଳାପୋ ନୈବାଭ୍ୟନନ୍ଦଦ୍ ଯଦ୍ୟପି ତଦପ୍ରତ୍ୟାମ୍ନାତବ୍ୟଂ ତଦଧିକରଣ ଆତ୍ମନୋଽନ୍ୟସ୍ମାଦସ-ତୋଽପି ପରାଭବମନ୍ୱୀକ୍ଷମାଣଃ । ୬ ।

---

ଶ୍ରୀଶୁକଦେବ କହିଲେ :—

ହେ ରାଜନ୍ ! ତୁମ୍ଭେ ଯାହାକହିଲ ତାହା ସତ୍ୟ, ଭାଗବତ ପରମହଂସମାନଙ୍କର ପ୍ରିୟ ପୁଣ୍ୟ ଶ୍ଳୋକ ଭଗବାନଙ୍କର ଶ୍ରୀମଦ୍ ଚରଣାରବିନ୍ଦର ମକରନ୍ଦ ରସରେ ଯାହାଙ୍କର ଚିତ୍ତ ଆବଷ୍ଟ, ସେମାନେ ଭଗବତ୍ ପ୍ରସଙ୍ଗକୁହିଁ ଆପଣାର ପରମମଙ୍ଗଳମୟ ପଦବୀ ବୋଲି ଜ୍ଞାନ କରନ୍ତି, କୌଣସି କାରଣରୁ ଏହି ପଦବୀ ପ୍ରତିହତ ହେଲେ ମଧ୍ଯ ଏହି ପରମମଙ୍ଗଳମୟ ପଥ ସେମାନେ କଦାପି ଏକାବେଳକେ ପରିତ୍ୟାଗ କରନ୍ତି ନାହିଁ । ଏହା ଧ୍ରୁବସତ୍ୟ । ୫ ।

ହେ ରାଜନ୍ ! ଯେତେବେଳେ ପ୍ରିୟବ୍ରତ ନାରଦଙ୍କ ଶ୍ରୀଚରଣସେବା କରି ଯଥାର୍ଥରୂପେ ପରମାର୍ଥତତ୍ତ୍ୱ ଅବଗତ ହୋଇ ଧ୍ଯାନଯୋଗେ ତଦ୍‌ବସ୍ତୁ ଅନୁଭବ କରିବାଲାଗି ସଂକଳ୍ପ କରିଥିଲେ, ସେହି ସମୟରେ ମନୁ ପରମଭାଗବତ ପୁତ୍ରଙ୍କୁ ଅଶେଷ ରାଜଗୁଣର ଉତ୍କୃଷ୍ଟ ପାତ୍ର ମନେକରି ତାହାଙ୍କୁ ପୃଥିବୀ ପରିପାଳନ ନିମନ୍ତେ ଆଦେଶ ଦେଇଥିଲେ । ପିତୃ ଆଜ୍ଞା ଅଲଙ୍ଘନୀୟ ହେଲେ ମଧ୍ଯ ରାଜ୍ୟାଧିକାରରେ ମିଥ୍ୟାଭୂତ ରାଜ୍ୟ ପ୍ରପଞ୍ଚ ଏବଂ ସ୍ତ୍ରୀ ପୁତ୍ରାଦିରୁ ଆତ୍ମାର ଅଧୋଗତି ହୁଏ, ଏହା ମନେ ମନେ ଆଲୋଚନାକରି ପ୍ରିୟବ୍ରତ ପିତୃବାକ୍ୟ ପାଳନକରିବାକୁ ସମର୍ଥ ହେଲେ ନାହିଁ । କାରଣ ଭଗବାନ୍ ବାସୁଦେବଙ୍କପ୍ରତି ସର୍ବଦା ସମାଧିଦ୍ୱାରା ତାଙ୍କର ଚିତ୍ତର ଏପରିଏକାଗ୍ରତା ଜନ୍ମିଥିଲା ଯେ ତାହାଙ୍କର ସର୍ବେନ୍ଦ୍ରିୟ ଭଗବତ୍‌ସେବାରେ ନିଯୁକ୍ତ ହୋଇଥିଲା ।୬

---

ଶ୍ରୀଶୁକଉବାଚ—
ଯାହା ତୁ କରିଲୁଟି ପ୍ରଶ୍ନ
ଧନ୍ୟ ରାଜନ ତୋ ବଚନ
ଉତ୍ତମଶ୍ଳୋକ ଯେ ଗୋବିନ୍ଦ
ତାହାଙ୍କ ଚରଣାରବିନ୍ଦ
ତହିଁ ଅମିୟ ରସ ବହେ
ସେ ରସ ଯେବା ପ୍ରାଣୀ ପିଏ
ଭକତ ସାଧୁ ସେହୁ ଜନ
ପରମହଂସ ଦିବ୍ୟଜ୍ଞାନ

ତାହାର କୃଷ୍ଣକଥା ବିନେ
କେବେହେଁ ମନ ନୋହେ ଆନେ
ଅନ୍ୟ ଯେ ଗୁଣ କଥାମାନ
ଇଚ୍ଛା ନ କରଇ ସେ ଜନ ୫ ।
ତେଣୁ ସେ ନୃପ ପ୍ରିୟବ୍ରତ
ଗୁଣରେ ହୋଇଲା ପୂଜିତ
ମୁନି ପରମ ଭାଗବତ
ନାରଦ ଲୋକରେ ବିଖ୍ୟାତ

ତାହାଙ୍କ ଚରଣ ସେବାରେ
ସର୍ବ କଲ୍ମଷ ଗଲା ଦୂରେ
ତକ୍ଷଣେ ସତ୍ତ୍ୱଗୁଣ ହୋଇ
ବ୍ରହ୍ମଯଜ୍ଞରେ ଦୀକ୍ଷା ପାଇ
ପିତାର ଆଜ୍ଞା ଘେନି ଶିରେ
ଅବନୀ ପାଳନ-ବିଧିରେ
ତେଣେ ନ ଇଚ୍ଛେ ନୃପବର
ଉତ୍ତମ ସତ୍ତ୍ୱଗୁଣ ତାର

ଅଥ ହ ଭଗବାନାଦିଦେବ ଏତସ୍ୟ ଗୁଣବିସର୍ଗସ୍ୟ ପରିବୃଂହଣାନୁଧ୍ୟାନବ୍ୟବସିତ-ସକଳଜଗଦଭିପ୍ରାୟ ଆତ୍ମଯୋନିରଖିଳନିଗମନିଜଗଣପରିବେଷ୍ଟିତଃ ସ୍ୱଭବନାଦ-ବତତାର । ୭ ।

ସ ତତ୍ର ତତ୍ର ଗଗନତଳ ଉଡୁପତିରିବ ବିମାନାବଳିଭିରନୁପଥମମରପରିବୃଢ଼ୈ-ରଭିପୂଜ୍ୟମାନଃ ପଥି ପଥି ଚ ବରୁଥଶଃ ସିଦ୍ଧଗନ୍ଧର୍ବସାଧ୍ୟଚାରଣମୁନିଗଣୈରୁପଗୀୟ-ମାନୋ ଗନ୍ଧମାଦନଦ୍ରୋଣୀମବଭାସୟନ୍ନୁପସସର୍ପ । ୮ ।

ତତ୍ର ହ ବା ଏନଂ ଦେବର୍ଷିର୍ହଂସଯାନେନ ପିତରଂ ଭଗବନ୍ତଂ ହିରଣ୍ୟଗର୍ଭମୁପ-ଲଭମାନଃ ସହସୈବୋତ୍ଥାୟାର୍ହଣେନ ସହ ପିତାପୁତ୍ରାଭ୍ୟାମବହିତାଞ୍ଜଳିରୁପତସ୍ଥେ ।୯

ଅନନ୍ତର ଭଗବାନ୍ ଆଦିଦେବ ବ୍ରହ୍ମା ଏହି ଗୁଣସୃଷ୍ଟିର ବୃଦ୍ଧିବିଷୟ ନିରନ୍ତର ଚିନ୍ତାକରି ସମସ୍ତଙ୍କର ଅଭିପ୍ରାୟ ଅବଗତ ହୋଇ ମୂର୍ତ୍ତିମାନ୍ ବେଦ ଓ ମରୀଚି ପ୍ରଭୃତି ସମସ୍ତ ନିଜଲୋକଙ୍କ ସହିତ ନିଜଭୁବନ ସତ୍ୟଲୋକରୁ ଅବତୀର୍ଣ୍ଣ ହୋଇଥିଲେ । ୭ ।

ସେହି ସମୟରେ ସେହିସ୍ଥାନରେ ବ୍ରହ୍ମା ଆକାଶମଣ୍ଡଳରେ ଚନ୍ଦ୍ରଙ୍କତୁଲ୍ୟ ଦୀପ୍ୟମାନ ହୋଇଥିଲେ ଏବଂ ବିମାନ ବିହାରୀ ଦେବତାମାନେ ତାହାଙ୍କୁ ପୂଜା କରିଥିଲେ ଏବଂ ସିଦ୍ଧ ଗନ୍ଧର୍ବଚାରଣ ମୁନିଗଣ ମଧ୍ୟ ଦଳ ଦଳ ହୋଇ ପଥମଧ୍ୟରେ ତାହାଙ୍କୁ ସ୍ତବକରି ଗନ୍ଧମାଦନ ପର୍ବତଗୁହାକୁ ପ୍ରକାଶ କରି ସେଠାରେ ଉପସ୍ଥିତ ହୋଇଥିଲେ । ୮ ।

ଏହି ସମୟରେ ନାରଦ ପ୍ରିୟବ୍ରତଙ୍କୁ ଉପଦେଶ ଦେଇଥିଲେ ଏବଂ ମନୁ ମଧ୍ୟ ପ୍ରିୟବ୍ରତଙ୍କୁ ଘେନିଯିବା ଲାଗି ସେଠାରେ ଉପସ୍ଥିତ ହୋଇଥିଲେ । ସେଠାରେ ଦେବର୍ଷି ନାରଦ ହଂସବାହନରେ ଆଗତ ତାହାଙ୍କର ପିତା ହିରଣ୍ୟଗର୍ଭ ବ୍ରହ୍ମାଙ୍କୁ ଦେଖି ହଠାତ୍ ପୂଜାଦ୍ରବ୍ୟ ସହିତ ଉଠି ଦଣ୍ଡାୟମାନ ହେଲେ ଏବଂ ମନୁ ଓ ପ୍ରିୟବ୍ରତ କୃତାଞ୍ଜଳି ହୋଇ ଦଣ୍ଡାୟମାନ ହେଲେ ଏବଂ ସମସ୍ତେ ସ୍ତବ କରିବାକୁ ଲାଗିଲେ । ୯ ।

ଅଖିଳ ଲୋକଙ୍କ ଜୀବନ
ଅନାଦି ନାଥ ନିରଞ୍ଜନ
ତାହାଙ୍କ ଚରଣାରବିନ୍ଦେ
ଚିତ୍ତ ନିବେଶି ଅପ୍ରମାଦେ
ପ୍ରବୃତ୍ତି ସଂସାର ବେଭାର
ତହିଁ ମନକୁ କରି ଦୂର
ନିଶ୍ଚୟ ଜାଣି ସବୁଭବ
ଇଚ୍ଛଇ ନାହିଁ ସ୍ୱତ୍ୟଲବ । ୬ ।
ଏଥୁ ଉତ୍ତରେ ଭଗବାନ
ଦେବଙ୍କ ଯେ ଆଦି କାରଣ
ସ୍ୱଜାର ଗୁଣମାନ ଘେନି
ତନୟଙ୍କ ଆତ୍ମଯୋନି
ନିଗମ, ନିଜଗଣ ଲଇ
ଭୁବନୁ ଅଇଲେ ଗୋସାଇଁ । ୭ ।
ଗଗନ ମଧ୍ୟେ ଚନ୍ଦ୍ର ଯେହ୍ନେ
ବିରାଜି ଶୋହେ ତାରାଗଣେ
ନିର୍ମଳ ପୂଜା ଉପହାରେ
ପୂଜିଲେ ତାଙ୍କୁ ଦେବହରେ
ପଥରେ ଯୂଥ ଯୂଥ ହୋଇ
ସିଦ୍ଧ ଗନ୍ଧର୍ବେ ଗୀତ ଗାଇ
ଚାରଣ ମୁନିଙ୍କ ସହିତେ
ଗାୟନ କଲେ ଯେତ୍ଥାମତେ
ଗନ୍ଧମାଦନ ଗିରି ତଳେ
ଶୋଭା କରାଇ ବିଜେ କଲେ ।୮।
ହଂସଯାନରେ ଭଗବାନ
ହିରଣ୍ୟଗର୍ଭ ଯାର ନାମ
ସେଠାରେ ଥିଲେ ଯେ ନାରଦ
ବନ୍ଦିଲେ ପିତାଙ୍କର ପାଦ
ମନୁ ସହିତେ ନୃପବର
ଆନନ୍ଦେ ଯୋଡ଼ି ବେନିକର

ଭଗବାନପି ଭାରତ ତଦୁପନୀତାର୍ହଣଃ ସୂକ୍ତବାକ୍ୟେନାତିତରାମୁଦିତଗୁଣଗଣା-
ବତାରସୁଜୟଃ ପ୍ରିୟବ୍ରତମାଦିପୁରୁଷସ୍ତଂ ସଦୟହାସାବଲୋକ ଇତି ହୋବାଚ । ୧୦ ।

ଶ୍ରୀଭଗବାନୁବାଚ ।

ନିବୋଧ ତାତେଦମୃତଂ ବ୍ରବୀମି ମାସୂୟିତୁଂ ଦେବମର୍ହସ୍ୟପ୍ରମେୟମ୍ ।
ବୟଂ ଭବସ୍ତେ ତତ ଏଷ ମହର୍ଷିର୍ବହାମ ସର୍ବେ ବିବଶା ଯସ୍ୟ ଦିଷ୍ଟମ୍ । ୧୧ ।
ନ ତସ୍ୟ କଶ୍ଚିତ୍ ତପସା ବିଦ୍ୟୟା ବା ନ ଯୋଗବୀର୍ଯ୍ୟେଣ ମନୀଷୟା ବା ।
ନୈବାର୍ଥଧର୍ମୈଃ ପରତଃ ସ୍ୱତୋ ବା କୃତଂ ବିହନ୍ତୁଂ ତନୁଭୃଦ୍‌ବିଭୂୟାତ୍ ।୧୨।
ଭବାୟ ନାଶାୟ ଚ କର୍ମ କର୍ତ୍ତୁଂ ଶୋକାୟ ମୋହାୟ ସଦା ଭୟାୟ ।
ସୁଖାୟ ଦୁଃଖାୟ ଚ ଦେହଯୋଗମବ୍ୟକ୍ତଦିଷ୍ଟଂ ଜନତାଙ୍ଗ ଧତ୍ତେ । ୧୩ ।

---

ହେ ଭାରତ ! ତଦନନ୍ତର ଭଗବାନ୍ ବ୍ରହ୍ମାମଧ୍ୟ ନାରଦଙ୍କଠାରୁ ପୂଜୋପକରଣମାନ ଗ୍ରହଣ କରିଥିଲେ ଏବଂ ସୁମିଷ୍ଟବାକ୍ୟ ଦ୍ୱାରା ଗୁଣ ଯଶ ଓ ସର୍ବୋତ୍କୃଷ୍ଟତା ବର୍ଣ୍ଣିତ ହେବାରୁ ଶୁଣି ଆଦିପୁରୁଷ ବ୍ରହ୍ମା ସଦୟଭାବରେ ହାସ୍ୟାବଲୋକନ ପୂର୍ବକ ପ୍ରିୟବ୍ରତଙ୍କୁ ବକ୍ଷ୍ୟମାଣ ବାକ୍ୟ କହିଥିଲେ । ୧୦ ।

ବ୍ରହ୍ମା ଆଶଙ୍କା କରିଥିଲେ ଯେ ମୁଁ ଯଦି ପ୍ରବୃତ୍ତିନିଷ୍ଠବାକ୍ୟ କହେ, ତେବେ ପ୍ରିୟବ୍ରତ ମୋ ପ୍ରତି ଅସୂୟା ପ୍ରକାଶ କରିବେ, ସୁତରାଂ ମୁଁ ଏପରିବାକ୍ୟ ପ୍ରକାଶ କରିବି ନାହିଁ, ଶ୍ରୀହରି ମୋ ଦ୍ୱାରା ଏହା କହୁଅଛନ୍ତି—ଏହି ଭାବରେ ବ୍ରହ୍ମା କହିଲେ, "ମୁଁ ଯାହା କହୁ ଅଛି ତାହା ଅବଧାରଣ କର, ମୁଁ ଏହି ସତ୍ୟ ପ୍ରକାଶ କରୁଅଛି । ଅର୍ଥାତ୍ ମୁଁ ଶତ୍ରୁ ନୁହେଁ ଯେ ଦୁଃଖ ଦେବି ବା ପ୍ରତାରଣା କରିବି, ନିଜର ପିତାଙ୍କ ତୁଲ୍ୟ ମୋତେ ମଧ୍ୟ ଅପ୍ରମାଣ କରି ପାରନା, ସତ୍ୟରୂପ ଅପ୍ରମେୟ ଦେବଙ୍କଠାରେ ଦୋଷାରୋପ କରନାହିଁ, ହେ ବତ୍ସ ! ତୁମ୍ଭେ ତୁମ୍ଭର ପିତା ଏବଂ ତୁମ୍ଭର ଗୁରୁ ମହର୍ଷି ନାରଦ ଓ ମୁଁ, ଆମ୍ଭେମାନେ ସମସ୍ତେ ବିବଶ ହୋଇ ଯାହାଙ୍କର ଆଜ୍ଞାପାଳନ କରିଥାଉଁ । ୧୧ ।

କୌଣସି ଶରୀରଧାରୀ ବ୍ୟକ୍ତି ତପସ୍ୟା ଅଥବା ବିଦ୍ୟା ବା ସମାଧି, ବୁଦ୍ଧି, ବଳଦ୍ୱାରା ସ୍ୱତଃ ବା ପରତଃ ତାହାଙ୍କ ନିର୍ମିତ ବିଷୟ ଅନ୍ୟଥା କରି ନ ପାରେ ଏବଂ ଅର୍ଥ ଓ ଧର୍ମ ଦ୍ୱାରା ମଧ୍ୟ ତାହାଙ୍କର କୃତକାର୍ଯ୍ୟ ବିନାଶ କରିବାକୁ ସମର୍ଥ ହୁଏ ନାହିଁ । ୧୨ ।

ହେ ପ୍ରିୟବ୍ରତ ! ଜୀବମାନେ ଜନ୍ମ, ମୃତ୍ୟୁ, ଶୋକ, ମୋହ, ଭୟ, ସୁଖ, ଦୁଃଖ, ଏହି ସମସ୍ତ ନିମିତ୍ତ ପରମେଶ୍ୱରଦତ୍ତ ଦେହଯୋଗ ସର୍ବଦା ଧାରଣ କରିଥାନ୍ତି, ତାହା ଅନ୍ୟଥା କରିବାକୁ କାହାର କ୍ଷମତା ନାହିଁ [ଏହି ପରାଧୀନତା ନିମିତ୍ତ କୌଣସି ଅନୁଶୋଚନା କରିବା ଉଚିତ ନୁହେଁ । କାରଣ ଦେହ-ଧାରୀ ମାତ୍ରକେ ଈଶ୍ୱରାଧୀନ ହୋଇ ଭଲମନ୍ଦ କାର୍ଯ୍ୟ କରିଥାନ୍ତି ଏବଂ ସୁଖ ଦୁଃଖ ବହନ କରିଥାନ୍ତି] ।୧୩।

---

ପିତାମହଙ୍କୁ ସେ ନମିଲ
ଚରଣେ ଶିର ନିବେଶିଲ
ପ୍ରିୟବ୍ରତର ପୂଜା ଘେନି
କୋମଳ ବାକ୍ୟେ ସମ୍ଭୋଧି
ସଦୟେ ବିହି ବେଦବର
ସୁତାଙ୍କୁ ବୋଲନ୍ତି ଉତ୍ତର ।୯,୧୦

ଶ୍ରୀବ୍ରହ୍ମୋବାଚ—
ହେ ପ୍ରିୟବ୍ରତ କହୁଁ ତୋତେ
କ୍ରୋଧ ନକର ତୋର ଚିତ୍ତେ
ଆମ୍ଭେ ନାରଦ ଆଦି ଯେତେ
ଯା ଆଜ୍ଞା ବହୁଁ ଅନାୟତ୍ତେ
ତପସ୍ୟା ବିଦ୍ୟା ଯୋଗ କରି
ପଣ୍ଡିତପଣକୁ ଆଚରି

ଧର୍ମେ ବା ଅର୍ଥେ କେହୁ ଏହି
ଈଶ୍ୱର ଇଚ୍ଛାକୁ ନ ପାରି ।୧୧,୧୨
ଜନ୍ମ ମରଣ କର୍ମେ ପାଇ
ଜୀବ ଶରୀରକୁ ବହଇ
ଶୋକ ମୋହକୁ ନିତ୍ୟେ ପାଇ
ସୁଖ ଦୁଃଖକୁ ସେ ଭୁଞ୍ଜଇ ।୧୩।

ଯଦ୍‌ବାଚି ତନ୍ତ୍ୟାଂ ଗୁଣକର୍ମଦାମଭିଃ ସୁଦୁସ୍ତରୈର୍ବତ୍ସ ବୟଂ ସୁଯୋଜିତାଃ ।
ସର୍ବେ ବହାମୋ ବଳମୀଶ୍ୱରାୟ ପ୍ରୋତା ନସୀବ ଦ୍ୱିପଦେ ଚତୁଷ୍ପଦଃ । ୧୪ ।
ଈଶାଭିସୃଷ୍ଟଂ ହ୍ୟବରୁନ୍ଧ୍ମହେଽଙ୍ଗ ଦୁଃଖଂ ସୁଖଂ ବା ଗୁଣକର୍ମସଙ୍ଗାତ୍ ।
ଆସ୍ଥାୟ ତତ୍ ତଦ୍ ଯଦଯୁଂକ୍ତ ନାଥଶ୍ଚକ୍ଷୁଷ୍ମତାନ୍ଧା ଇବ ନୀୟମାନାଃ । ୧୫ ।
ମୁକ୍ତୋଽପି ତାବଦ୍‌ବିଭୃୟାତ୍ ସ୍ୱଦେହମାରବ୍‌ଧମଶ୍ନନ୍ନଭିମାନଶୂନ୍ୟଃ ।
ଯଥାନୁଭୂତଂ ପ୍ରତିଯାତନିଦ୍ରଃ କିନ୍ତ୍ୱନ୍ୟଦେହାୟ ଗୁଣାନ୍ ନ ବୃଂକ୍ତେ । ୧୬ ।

---

ହେ ବତ୍ସ ! ଆମ୍ଭେମାନେ ପରମେଶ୍ୱରଙ୍କବାକ୍ୟରୂପ ରଜ୍ଜୁରେ ସୁଦୁସ୍ତର ଗୁଣକର୍ମମାନଙ୍କ ଦ୍ୱାରା ଦୃଢରୂପେ ବଦ୍ଧ ହୋଇ ଅଛୁ । ସମସ୍ତେ ତାହାଙ୍କୁ ପୂଜୋପହାର ସମର୍ପଣ କରୁଅଛୁଁ । ଫଳତଃ ବଳିବର୍ଦ୍ଦ ପ୍ରଭୃତି ଚତୁଷ୍ପଦ ଜନ୍ତୁଙ୍କ ନାସିକାରେ ଯେପରି ଦ୍ୱିପଦ ମନୁଷ୍ୟ ତାହାଙ୍କର ଇଚ୍ଛାଅନୁସାରେ ରଜ୍ଜୁ ବନ୍ଧନକରି କାର୍ଯ୍ୟ କରନ୍ତି, ସେହିପରି ଆମ୍ଭେମାନେ ପରମେଶ୍ୱରଙ୍କ ଇଚ୍ଛା ଅନୁସାରେ ନିମିତ୍ତମାତ୍ର ହୋଇ କାର୍ଯ୍ୟ କରୁଅଛୁଁ । ( ଏହି ଶ୍ଳୋକରେ କର୍ମ କରଣରେ ଈଶ୍ୱରାଧୀନତା ପ୍ରକାଶ କରାଯାଇଅଛି ) । ୧୪ ।

ହେ ବତ୍ସ ! ପ୍ରିୟବ୍ରତ ! ଈଶ୍ୱରପ୍ରଦତ୍ତ ବସ୍ତୁହିଁ ଆମ୍ଭେମାନେ ପ୍ରାପ୍ତହୋଇ ଏବଂ ଗୁଣ ଓ କର୍ମସଙ୍ଗେ ସୁଖ ବା ଦୁଃଖ ଭୋଗକରୁଁ । ଯେପରି ପ୍ରଭୁପ୍ରଦତ୍ତ କଣୀଶ ( ତଷ୍ଟୁ ବା କୁଣ୍ଡା ) ପ୍ରଭୃତି ବଳିବର୍ଦ୍ଦମାନେ ଭୋଗକରିଥାନ୍ତି, ସେହିପରି ସୁଖଦୁଃଖ ଗୁଣକର୍ମର ସଙ୍ଗହେତୁ ସେହି ଭଗବାନପ୍ରଦାନ କରିଥାନ୍ତି । ଯେପରି ବଳିବର୍ଦ୍ଦପ୍ରଭୃତିଙ୍କର କଣୀଶାଦିଭକ୍ଷଣ ବିଷୟରେ ନିଜର ସ୍ୱାଧୀନତା ନଥାଏ ସେହିପରି ଈଶ୍ୱର ପ୍ରଦତ୍ତ ସୁଖ ଦୁଃଖାଦି ଭୋଗ କରିବାରେ ଆମ୍ଭମାନଙ୍କର ସ୍ୱାଧୀନତା କିଛିମାତ୍ର ନାହିଁ । ଯେପରି ଚକ୍ଷୁଷ୍ମାନ୍ ବ୍ୟକ୍ତିଗଣଙ୍କ କର୍ତ୍ତୃକ ନୀୟମାନ ଅନ୍ଧମାନେ ସୁପଥ ବା ଅପଥରେ ଗମନକରି ସୁଖ ଦୁଃଖ ଭୋଗ କରିଥାନ୍ତି, ସେହିପରି ।୧୫

ହେ ପ୍ରିୟବ୍ରତ ! ନିଦ୍ରୋତ୍ଥିତ ବ୍ୟକ୍ତି ଯେପରି ଅଭିମାନଶୂନ୍ୟ ହୋଇ ସ୍ୱପ୍ନାନୁଭୂତ ବିଷୟ ସ୍ମରଣ କରେ ମୁକ୍ତଜୀବ ମଧ୍ୟ ପାରବ୍ଧକର୍ମର ଭୋଗାର୍ଥ ସ୍ୱଦେହ ଧାରଣ କରିଥାଏ । କିନ୍ତୁ ଅଭିମାନ ଅଭାବବଶତଃ ତାହାର ଦେହାନ୍ତର ପ୍ରବର୍ତ୍ତକ କର୍ମ ବା ବାସନା ନ ଥାଏ । ( ଯେଉଁ ବ୍ୟକ୍ତି ଗୃହରେ ରହି ଭୋଗାଦି କଷ୍ଟଭୋଗ କରନ୍ତି ସେମାନେ କଦାପି ଅଭିମାନଶୂନ୍ୟ ବା ମୋକ୍ଷ ହୁଅନ୍ତି ନାହିଁ, ଅତଏବ ଗୃହତ୍ୟାଗକରି ବନବାସ କରିବା ଉଚିତ ଏହି ପ୍ରସ୍ତାବନାର ପ୍ରତ୍ୟୁତ୍ତରରେ କୁହାଯାଉଛି ) ।୧୬।

---

ଦଉଡି ନାସାରନ୍ଧ୍ରେ ଦେଇ
ଯେସନେ ପଶୁଙ୍କୁ ବୁହାଇ
ଈଶ୍ୱରବାକ୍ୟ-ଗୁଣବନ୍ଧେ
ଜୀବ ଭ୍ରମଇ ଏ ଶମ୍ବନ୍ଧେ
ଦ୍ୱିପଦ ଚତୁଷ୍ପଦ ଯେତେ
ସର୍ବେ ବନ୍ଧନ ସେହି ମତେ ।୧୪।

ଈଶ୍ୱର ସୃଷ୍ଟିର କରତା
ସକଳେ ତାହାଙ୍କୁ ସେବନ୍ତି
ଦୁଃଖ ସୁଖ କର୍ମ ଗୁଣରେ
ଏମାନ ଘେନି ସଙ୍ଗତରେ
ସେହି ଈଶ୍ୱରବଶେ ଦେହୀ
ଅନ୍ଧର ପ୍ରାୟେ ଭ୍ରମୁ ଥାଇ

ଦେଖୁ ଦେଖୁଣ ଭ୍ରମ ପାଇ
ଏ କଥା ମୂଢ ନ ଜାଣଇ । ୧୫ ।
ବିମୁକ୍ତ ହେଲେହେଁ ପୁରୁଷେ
ପ୍ରାରବ୍ଧ ଭୁଞ୍ଜଇ ଅବଶେ
ନିଦ୍ରାକୁ ପାଇ ଯେହ୍ନେ ନରେ
ସ୍ୱପ୍ନଦେହରେ ଭୋଗ କରେ ।୧୬।

ଭୟଂ ପ୍ରମତ୍ତସ୍ୟ ବନେଷ୍ୱପି ସ୍ୟାଦ୍ ଯତଃ ସ ଆସ୍ତେ ସହଷଟ୍ସପତ୍ନଃ ।
ଜିତେନ୍ଦ୍ରିୟସ୍ୟାତ୍ମରତେର୍ବୁଧସ୍ୟ ଗୃହାଶ୍ରମଃ କିଂ ନୁ କରୋତ୍ୟବଦ୍ୟମ୍ । ୧୭ ।
ଯଃ ଷଟ୍ ସପତ୍ନାନ୍ ବିଜିଗୀଷମାଣୋ ଗୃହେଷୁ ନିର୍ବିଶ୍ୟ ଯତେତ ପୂର୍ବମ୍ ।
ଅତ୍ୟେତି ଦୁର୍ଗାଶ୍ରିତ ଊର୍ଜ୍ଜିତାରୀନ୍ କ୍ଷୀଣେଷୁ କାମଂ ବିଚରେଦ୍ବିପଶ୍ଚିତ୍ । ୧୮ ।
ତ୍ୱନ୍ତ୍ୱବ୍ଜନାଭାଙ୍ଘ୍ରି ସରୋଜକୋଶଦୁର୍ଗାଶ୍ରିତୋ ନିର୍ଜିତଷଟ୍ସପତ୍ନଃ ।
ଭୁଙ୍କ୍ଷ୍ୱେହ ଭୋଗାନ୍ ପୁରୁଷାତିଦିଷ୍ଟାନ୍ ବିମୁକ୍ତସଙ୍ଗଃ ପ୍ରକୃତିଂ ଭଜସ୍ୱ । ୧୯ ।
ଶ୍ରୀଶୁକ ଉବାଚ । ଇତି ସମଭିହିତୋ ମହାଭାଗବତୋ ଭଗବତସ୍ତ୍ରିଭୁବନଗୁରୋ
ରନୁଶାସନମାତ୍ମନୋଲଘୁତୟାବନତଶିରୋଧରୋ ବାଢ଼ମିତି ସବହୁମାନମୁବାହ । ୨୦ ।

ହେ ବତ୍ସ ! ଯେଉଁ ବ୍ୟକ୍ତି ଇନ୍ଦ୍ରିୟ ଜୟକରିବାକୁ ଅସମର୍ଥ, ସେ ବ୍ୟକ୍ତି ସଙ୍ଗ ଭୟରେ ଏକବନରୁ ବନାନ୍ତରକୁ ଗମନକଲେ ମଧ୍ୟ ତାହାର ସଂସାର ଭୟ ବା ନରକ ଭୟ ଦୂରୀଭୂତ ହୁଏ ନାହିଁ । କାରଣ ବନବାସ ସମୟରେ ମଧ୍ୟ ପଞ୍ଚଜ୍ଞାନେନ୍ଦ୍ରିୟ ଓ ମନ ଏହି ଷଡ଼ରିପୁ ଦେହସଙ୍ଗେ ବିଦ୍ୟମାନ ଥାଏ । ଯେଉଁମାନେ ବିବେକୀ, ଆତ୍ମାରାମ ଏବଂ ଜିତେନ୍ଦ୍ରିୟ ସେମାନଙ୍କ ପକ୍ଷରେ ବନ ଓ ଗୃହ ଉଭୟ ସମାନ । ତେଣୁ ଗୃହାଶ୍ରମ ସେମାନଙ୍କର କି ଅନିଷ୍ଟ କରିପାରେ ? । ୧୭ ।

ଯେପରି ରାଜା ଦୁର୍ଗ ମଧ୍ୟରେ ରହି ବଳିଷ୍ଠ ରିପୁମାନଙ୍କୁ ଜୟକରିବାକୁ ଚେଷ୍ଟା କରନ୍ତି, ଶତ୍ରୁ ଦୁର୍ବଳ ହେଲେ ଗୃହରେ ବା ବନରେ ଯଥେଚ୍ଛା ବିଚରଣ କରି ପାରନ୍ତି, ସେହିପରି ଯେ ଷଡ଼ଇନ୍ଦ୍ରିୟସ୍ୱରୂପ ଶତ୍ରୁଙ୍କୁ ଜୟକରିବାକୁ ଇଚ୍ଛାକରନ୍ତି, ସେହିଗୃହରେ ରହି ଏହି ଇନ୍ଦ୍ରିୟର ଆତ୍ୟନ୍ତିକ ନିରୋଧ ପୂର୍ବକ ସେମାନଙ୍କୁ ଜିଣିବା ନିମନ୍ତେ ଯତ୍ନ କରିଥାନ୍ତି । ଶତ୍ରୁମାନେ ଦୁର୍ବଳ ହେଲେ, ବିବେକୀ ବ୍ୟକ୍ତି ଆତ୍ମାରାମ ହୋଇ ଯଥେଚ୍ଛା ଭାବରେ ଗୃହରେ ବା ବନରେ ବିଚରଣ କରିପାରନ୍ତି । ୧୮ ।

ହେ ବତ୍ସ ! ତୁମ୍ଭେ ଭଗବାନ୍ ପଦ୍ମନାଭଙ୍କ ପାଦପଦ୍ମ ସ୍ୱରୂପ ଦୁର୍ଗଆଶ୍ରୟ କରିଅଛ, ଅତଏବ ତୁମ୍ଭେ ଷଡ଼ରିପୁ ଜୟ କରିଅଛ । ତଥାପି ଦେହଥିବାଯାଏ, ଈଶ୍ୱରଦତ୍ତ ଭୋଗମାନ ଉପଭୋଗ କର । ପରେ ବିମୁକ୍ତ ସଙ୍ଗ ହୋଇ ନିଜର ସ୍ୱରୂପକୁ ଭଜନା କର ଅର୍ଥାତ୍ ଆତ୍ମନିଷ୍ଠ ହୁଅ । ୧୯ ।

ଶ୍ରୀଶୁକ କହିଲେ :—ମହାଭାଗବତ ପ୍ରିୟବ୍ରତ ତ୍ରିଭୁବନଗୁରୁ ପିତାମହଙ୍କ କର୍ତ୍ତୃକ ଏହିପରି ଭାବରେ ଅଭିହିତ ହୋଇ ଏବଂ ନିଜକୁ ତଦପେକ୍ଷା ଅନେକହୀନ ବୋଲି ମନେକରି ଅବନତ ମସ୍ତକରେ ତ୍ରିଭୁବନ ଗୁରୁ ବ୍ରହ୍ମାଙ୍କ ଶାସନ ବାକ୍ୟ ଗ୍ରହଣ କରିଥିଲେ । ୨୦ ।

ପ୍ରମତ୍ତ ପ୍ରାଣୀମାନଙ୍କର
କେବେହେଁ ଭ୍ରମ ନୋହେ ଦୂର
ଭେଦବୁଦ୍ଧିମାନଙ୍କରେ ଯୁକ୍ତ
ଯେଣୁ ସେ ହୋନ୍ତି ଅବିରତ
ଯେ ବୁଧ ଜିଣେ ଇନ୍ଦ୍ରିମାନ
ତାହାର ଗୃହ କର୍ମମାନ
ବନ୍ଧନ ନ କରେ ତାହାରେ
ନିର୍ଭୟେ ଭ୍ରମେ ସେ ଗୃହରେ ।୧୭

ଦୁର୍ଗ ମଧ୍ୟରେ ଥାଇ ଯେହ୍ନେ
ଜିଣି ପ୍ରବଳ ଶତ୍ରୁଗଣେ
ଗୃହ ମଧ୍ୟରେ ଦେଇ ମନ
ଭେଦବୁଦ୍ଧି ନାଶିବ ତେସନ
ଇନ୍ଦ୍ରିୟ ଜିଣନ୍ତେ ସେ ନର
ଆନନ୍ଦେ ଭ୍ରମିବ ସଂସାର ।୧୮।
ତୁ ପଦ୍ମନାଭପଦାଶ୍ରିତ
ସର୍ବ ସଙ୍ଗରୁ ହୋଇ ମୁକ୍ତ

କରି ସଂସାରସୁଖ ଭୋଗ
ଅନ୍ତେ ପରମ ଗତି ଲଭ ।୧୯।

ଶ୍ରୀଶୁକଉବାଚ—

ଏମନ୍ତେ ତ୍ରିଭୁବନ ପୁଷ୍ଟ—
ଭଗବାନଙ୍କ ଆଜ୍ଞାକାଷ୍ଟ
ବିନୟେ ବ୍ରହ୍ମାଉପଦେଶେ
ସ୍ୱୀକାର କଲେ ସେ ବିଶ୍ୱାସେ ।୨୦।

ଭଗବାନପି ମନୁନା ଯଥାବଦୁପକଳ୍ପିତାପଚିତିଃ ପ୍ରିୟବ୍ରତନାରଦୟୋରବିଷମ-
ମଭିସମୀକ୍ଷ୍ୟମାଣୟୋରାତ୍ମସମବସ୍ଥାନମବାଙ୍ମନସଂ କ୍ଷୟମବ୍ୟବହୃତଂ ପ୍ରବର୍ତ୍ତୟନ୍ନଗାତ୍ ।୨୧।

ମନୁରପି ପରେଣୈବଂ ପ୍ରତିସନ୍ଧିତମନୋରଥଃ ସୁରର୍ଷିବରାନୁମତେନାତ୍ମଜ-
ମଖିଳଧରାମଣ୍ଡଳସ୍ଥିତିଗୁପ୍ତୟ ଆସ୍ଥାପ୍ୟ ସ୍ୱୟମତିବିଷମବିଷୟବିଷଜଳାଶୟାଶାୟା
ଉପରରାମ । ୨୨ ।

ଇତି ହ ବାବ ସ ଜଗତୀପତିରୀଶ୍ୱରେଚ୍ଛୟାଧିନିବେଶିତକର୍ମାଧିକାରୋଽଖିଳ-
ଜଗଦ୍‌ବନ୍ଧଧ୍ୱଂସନପରାନୁଭାବସ୍ୟ ଭଗବତ ଆଦିପୁରୁଷସ୍ୟାଙ୍ଘ୍ରିଯୁଗଳାନବରତଧ୍ୟାନାନୁ-
ଭାବେନ ପରିରନ୍ଧିତକଷାୟାଶୟୋଽବଦାତୋଽପି ମାନବର୍ଦ୍ଧନୋ ମହତାଂ ମହୀତଳ-
ମନୁଶଶାସ । ୨୩ ।

---

ପ୍ରିୟବ୍ରତଙ୍କୁ ବ୍ରହ୍ମାଙ୍କର ଆଦେଶ ପାଳନ କରିବାର ଦେଖି ସ୍ୱାୟମ୍ଭୁବ ମନୁ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଥିଲେ ଏବଂ ଯଥାବିଧି ବ୍ରହ୍ମାଙ୍କର ପୂଜା କରିଥିଲେ । ଭଗବାନ୍ ବ୍ରହ୍ମା ପ୍ରିୟବ୍ରତ ଓ ନାରଦଙ୍କର ପ୍ରସନ୍ନ ଦୃଷ୍ଟି ଦର୍ଶନ କରି ବାକ୍ୟ ଓ ମନର ଅଗୋଚର ସର୍ବପ୍ରକାର ବ୍ୟବହାରାତୀତ ପରମେଶ୍ୱରଙ୍କର ସ୍ୱରୂପ ହୃଦୟରେ ଧ୍ୟାନ କରୁ କରୁ ସ୍ୱଧାମ ସତ୍ୟଲୋକକୁ ଗମନ କରିଥିଲେ । ୨୧ ।

ଏହାପରେ ବ୍ରହ୍ମାଙ୍କର ଅନୁଗ୍ରହରେ ମନୁଙ୍କର ମନୋରଥ ସମ୍ପାଦିତ ହୋଇଥିଲା । ଦେବର୍ଷି ନାରଦଙ୍କର ଅନୁମତି ଅନୁସାରେ ମନୁ ଅଖିଳ ଧରାମଣ୍ଡଳର ସ୍ଥିତି ଓ ରକ୍ଷଣ ନିମିତ୍ତ ନିଜର ପୁତ୍ର ପ୍ରିୟବ୍ରତଙ୍କୁ ରାଜ୍ୟଭାରଦେଇ ସ୍ୱୟଂ ବିଷମବିଷୟରୂପ ବିଷ ଜଳାଶୟର ଆଶା ପରିତ୍ୟାଗ କରିଥିଲେ ।୨୨।



ପ୍ରିୟବ୍ରତ ଚରିତ

ଅଖିଳ ଜଗତର ବନ୍ଧନ ଛେଦନ ବିଷୟରେ ପ୍ରଭାବ ସମ୍ପନ୍ନ ଆଦିପୁରୁଷ ଭଗବାନ୍ ଶ୍ରୀହରିଙ୍କ ଚରଣ ଯୁଗଳ ଅନବରତ ଧ୍ୟାନ ପ୍ରଭାବରେ ପ୍ରିୟବ୍ରତଙ୍କର ଅନ୍ତରିକରାଗାଦି ମଳ ଦୂରୀଭୂତ ହେବାରୁ, ସେ ବିଶୁଦ୍ଧ ହୋଇଥିଲେ ସତ୍ୟ କିନ୍ତୁ ଈଶ୍ୱର ଇଚ୍ଛାରେ ରାଜ୍ୟାଧିକାର ପ୍ରାପ୍ତ ହୋଇ ରାଜା ପ୍ରିୟବ୍ରତ ବ୍ରହ୍ମାଦିଙ୍କର ସମ୍ମାନ ରକ୍ଷାଲାଗି ପୃଥିବୀ ପାଳନ କରିଥିଲେ । ତଦନନ୍ତର ବିଶ୍ୱକର୍ମାଙ୍କର ଦୁହିତା ବର୍ହିଷ୍ମତୀଙ୍କର ପାଣିଗ୍ରହଣ କରିଥିଲେ । ୨୩ ।

---

ନାରଦ ରାଜା ପ୍ରିୟବ୍ରତେ
ପୂଜିତ ହୋଇ ଯଥୋଚିତେ,
ନିଶ୍ଚିନ୍ତ ଆତ୍ମା ନିଜସ୍ଥାନେ
ଗମିଲେ ଚତୁରାନନେ । ୨୧ ।

ନାରଦ ବାକ୍ୟେ ମନ ଦେଇ
ମନୁ ଆତ୍ମଜେ ମହୀ ଦେଇ
ବିଷମ ବିଷୟକୁ ତେଜି
ରହିଲେ ସତ୍ତ୍ୱଗୁଣ ଭଜି । ୨୨ ।

ଏଥୁ ଅନ୍ତରେ ପୃଥିବୀରେ
ନିଯୁକ୍ତ ହୋଇଲା କ୍ରମରେ
ଅଖିଳ ଜଗତ ବନ୍ଦନ
ନିବେଶି ଭଗବାନେ ମନ

ଅଥ ଚ ଦୁହିତରଂ ପ୍ରଜାପତେର୍ବିଶ୍ୱକର୍ମଣ ଉପୟେମେ ବର୍ହିଷ୍ମତୀଂ ନାମ, ତସ୍ୟାମୁ ହ ବାବ ଆତ୍ମଜାନାତ୍ମସମାନଶୀଲଗୁଣକର୍ମରୂପବୀର୍ଯ୍ୟୋଦାରାନ୍ ଦଶ ଭାବୟାମ୍ବଭୂବ କନ୍ୟାଞ୍ଚ ଯବୀୟସୀମୂର୍ଜ୍ଜସ୍ୱତୀଂ ନାମ । ୨୪ ।

ଆଗ୍ନୀଧ୍ରେଧ୍ମଜିହ୍ୱଯଜ୍ଞବାହୁମହାବୀରହିରଣ୍ୟରେତୋଘୃତପୃଷ୍ଠସବନମେଧାତିଥିବୀତିହୋତ୍ରକବୟ ଇତି ସର୍ବ ଏବାଗ୍ନି ନାମାନଃ । ୨୫ ।

ଏତେଷାଂ କବିର୍ମହାବୀରଃ ସବନ ଇତି ତ୍ରୟ ଆସନ୍ନୂର୍ଦ୍ଧ୍ୱରେତସଃ. ତଥାତ୍ମବିଦ୍ୟାୟାମର୍ଭଭାବାଦାରଭ୍ୟ କୃତପରିଚୟାଃ ପାରମହଂସ୍ୟମେବାଶ୍ରମମଭଜନ୍ । ୨୬ ।

---

ବର୍ହିଷ୍ମତୀଙ୍କ ଗର୍ଭରୁ ପ୍ରିୟବ୍ରତଙ୍କର ରୂପ, ସ୍ୱଭାବ, ଗୁଣ, କର୍ମ, କାର୍ଯ୍ୟ ପ୍ରଭୃତି ସମନ୍ୱିତ ଦଶଟିପୁତ୍ର ଓ ସର୍ବକନିଷ୍ଠା ଊର୍ଜ୍ଜସ୍ୱତୀ ନାମ୍ନୀ କନ୍ୟା ଜାତ ହୋଇଥିଲେ । ୨୪ ।

ଆଗ୍ନୀଧ୍ର, ଇଧ୍ମଜିହ୍ୱ,ଯଜ୍ଞବାହୁ,ମହାବୀର, ହିରଣ୍ୟରେତା, ଘୃତପୃଷ୍ଠ, ସବନ, ମେଧାତିଥି, ବୀତିହୋତ୍ର ଓ କବି—ପ୍ରିୟବ୍ରତଙ୍କର ଏହି ଦଶପୁତ୍ର । ଏମାନେ ସମସ୍ତେ ଅଗ୍ନିନାମରେ ଅଭିହିତ ହୋଇଥିଲେ । ୨୫ ।

ଏହି ଦଶଜଣଙ୍କ ମଧ୍ୟରୁ କବି, ମହାବୀର, ଓ ସବନ ଏମାନେ ଊର୍ଦ୍ଧ୍ୱରେତା, ସେମାନେ ବାଲ୍ୟକାଳାବଧି ଆତ୍ମଜ୍ଞାନ ଲାଭକରି ପାରମହଂସ୍ୟ ଆଶ୍ରମ ସ୍ୱୀକାର କରିଥିଲେ । ୨୬ ।

---

ଆଦି ପୁରୁଷ ପାଦ ଭାଇ
ମନ ନବେଶି ନିତ୍ୟେ ତହିଁ
ପୃଥିବୀ ପ୍ରତି ପାଳନରେ
ଥିଲେହିଁ ଦେଇ ନିରନ୍ତରେ ।୨୩।
ଯେ ବିଶ୍ୱକର୍ମା ପ୍ରଜାପତି
ତାର ଦୁହିତା ବର୍ହିଷ୍ମତୀ
ସେ କନ୍ୟା ବରି ନରନାଥ
ବିଭା ହୋଇଲା ଯଥାଉଚିତ
ଦଶ ଆତ୍ମଜ ତାର ତହିଁ
ଜନ୍ମିଲେ ଗୁଣ ତେଜ ବହି
ଏକ ଦୁହିତା ଉତପତି
ଯାହାର ନାମ ଊର୍ଜ୍ଜସ୍ୱତୀ । ୨୪।

ଅଗ୍ନୀଧ୍ର ଇଧ୍ମଜିହ୍ୱ ଭାଇ!
ଯଜ୍ଞବାହୁକୁ ସଙ୍ଗେ ଲଇ
ସବନ ଘୃତପୃଷ୍ଠ ଆଉ
ହିରଣ୍ୟରେତା ମହାବୀର
ବୀତିହୋତ୍ର ଯେ ମେଧାତିଥି
କବି ଏ ଦଶ ନାମ ଖ୍ୟାତି
ଏ ଦଶ ନାମ ପୁତ୍ରଙ୍କର
ଏ ଦଶ ମଧ୍ୟେ ତିନି ସାର
ସବନ କବି ମହାବୀର
ଊର୍ଦ୍ଧ୍ୱରେତା ଏ ଜଗତର ।୨୫।
ପରମହଂସ ଧର୍ମ କରି
ସକଳ ଚେଷ୍ଟା ପରିହରି

ସର୍ବଜୀବରେ କୃପାମୟ
ଶ୍ରୀବାସୁଦେବେ କରି ଲୟ
ଭୟେ ଆରତ ପ୍ରାଣୀଙ୍କର
ଶରଣ ରକ୍ଷଣ ଶ୍ରୀଧର
ସେ ପଦ୍ମପାଦ ଆଶ୍ରୟରୁ,
ନିରତେ ନାମ କୀର୍ତ୍ତିନରୁ
ପରମ ଭକ୍ତି ପ୍ରଭାବରେ
ଦୟା ବହିଲେ ପ୍ରାଣୀମାରେ
ଭାବେ ଆରଦ୍ର ଚିତ୍ତ ହୋଇ
ହରି ସର୍ବତ୍ରେ ଦେଖଇ
ସେ ମହାପ୍ରଭୁ ନାଗସ୍ମରଣେ
ନିତ୍ୟେ ଭଜିଲେ ଦାସପଣେ

ତସ୍ମିନ୍ନୁ ହ ବା ଉପଶମଶୀଳାଃ ପରମର୍ଷୟଃ ସକଳଜୀବନିକାୟାବାସସ୍ୟ ଭଗବତୋ ବାସୁଦେବସ୍ୟ ଭୀତାନାଂ ଶରଣଭୂତସ୍ୟ ଶ୍ରୀମଚ୍ଚରଣାରବିନ୍ଦାବିରତସ୍ମରଣାବିଗଳିତପରମଭକ୍ତିଯୋଗାନୁଭାବେନ ପରିଭାବିତାନ୍ତର୍ହୃଦୟାଧିଗତେ ଭଗବତି ସର୍ବେଷାଂ ଭୂତାନାମାତ୍ମଭୂତେ ପ୍ରତ୍ୟଗାତ୍ମନ୍ୟେବାତ୍ମନସ୍ତାଦାତ୍ମ୍ୟମବିଶେଷେଣ ସମୀୟୁଃ । ୨୭ ।

ଅନ୍ୟସ୍ୟାମପି ଜାୟାୟାଂ ତ୍ରୟଃ ପୁତ୍ରା ଆସନ୍ ଉତ୍ତମସ୍ତାମସୋ ରୈବତ ଇତି ମନ୍ୱନ୍ତରାଧିପତୟଃ । ୨୮ ।

ଏବମୁପଶମାୟନେଷୁ ସ୍ୱତନୟେଷ୍ୱଥ ଜଗତୀପତିର୍ଜଗତୀମର୍ବୁଦାନ୍ୟେକାଦଶପରିବତ୍ସରାଣାମବ୍ୟାହତାଖିଳପୁରୁଷକାରସାରସଂଭୃତଦୋର୍ଦଣ୍ଡଯୁଗଳାପୀଡ଼ିତମୌର୍ବୀଗୁଣସ୍ତନିତବିରମିତଧର୍ମପ୍ରତିପକ୍ଷୋ ବର୍ହିଷ୍ମତ୍ୟାଶ୍ଚାନୁଦିନମେଧମାନପ୍ରମୋଦପ୍ରସରଣ—ଯୌଷିଣ୍ୟବ୍ରୀଡାପ୍ରମୁଷିତହାସାବଲୋକରୁଚିରକ୍ଷ୍ୱେଲ୍ୟାଦିଭିଃ ପରାଭୂୟମାନବିବେକ ଇବାନବବୁଧ୍ୟମାନ ଇବ ମହାମନା ବୁଭୁଜେ । ୨୯ ।

---

ଏହି ଆଶ୍ରମରେ ସେମାନେ ଉପଶମଶୀଳ ପରମର୍ଷି ସ୍ୱରୂପ ହୋଇ ସର୍ବଜୀବର ଆଶ୍ରୟଭୂତ ଭୟଗ୍ରସ୍ତବ୍ୟକ୍ତିର ରକ୍ଷକ ଭଗବାନ୍ ବାସୁଦେବଙ୍କର ଶ୍ରୀଚରଣାରବିନ୍ଦ ଯୁଗଳ ଅବିରତ ସ୍ମରଣ କରି ଅବିଚଳିତ ଭକ୍ତିଲାଭ କରିଥିଲେ । ସେହି ଭକ୍ତି ପ୍ରଭାବରେ ତାଙ୍କର ଅନ୍ତଃକରଣ ବିଶୁଦ୍ଧ ହେବାରୁ ସେମାନେ ଭଗବାନଙ୍କୁ ଉପଲବ୍ଧି କରିଥିଲେ । ସେମାନେ ଦେହାଦି ଉପାଧି ବିସର୍ଜନ ପୂର୍ବକ ସର୍ବଭୂତର ଆତ୍ମଭୂତ ପ୍ରତ୍ୟଗାତ୍ମାର ତାଦାତ୍ମ୍ୟ ପ୍ରାପ୍ତ ହୋଇଥିଲେ । ୨୭ ।

ପ୍ରିୟବ୍ରତଙ୍କର ଅନ୍ୟଭାର୍ଯ୍ୟାଠାରୁ ଉତ୍ତମ, ତାମସ ଓ ରୈବତ ଏହି ତିନିମନୁ ଜନ୍ମଗ୍ରହଣ କରି କ୍ରମଶଃ ମନ୍ୱନ୍ତରାଧିପତି ହୋଇଥିଲେ । ୨୮ ।

କବି ପ୍ରଭୃତି ତିନିପୁତ୍ର ଏହିପରି ସନ୍ୟାସାଶ୍ରମ ଅଶ୍ରୟ କରନ୍ତେ ପୃଥିବୀପତି ପ୍ରିୟବ୍ରତ ଏକାଦଶ ଅର୍ବୁଦବର୍ଷ ପର୍ଯ୍ୟନ୍ତ ରାଜ୍ୟପାଳନ କରିଥିଲେ । ତାହାଙ୍କର ଅବ୍ୟାହତ ପୌରୁଷ ଓ ବଳଯୁକ୍ତ ବାହୁଦଣ୍ଡଦ୍ୱୟ ଦ୍ୱାରା ଆକୃଷ୍ଟ ଧନୁର୍ଗୁଣ ଆକର୍ଷଣ କରି ଟଙ୍କାର ଧ୍ୱନି କରନ୍ତେ ଶତ୍ରୁମାନେ ଓ ଧର୍ମପ୍ରତିପକ୍ଷ ବ୍ୟକ୍ତିମାନେ ନିରସ୍ତ ହୋଇ ଯାଉଥିଲେ । ଏଣେ ବର୍ହିଷ୍ମତୀ ନାମ୍ନୀ ଭାର୍ଯ୍ୟାଙ୍କ ସହିତ ସର୍ବଦା ବୃଦ୍ଧିଶୀଳ ଆମୋଦ ପ୍ରମୋଦ ଅର୍ଥାତ୍ ପତିଙ୍କର ଆଗମନରେ ଆନନ୍ଦ ପ୍ରକାଶ ଅଭ୍ୟୁତ୍ଥାନ ଓ ଗମନାଦି ଭଙ୍ଗି ଯୋଷିତ୍ ସ୍ୱରୂପ ସ୍ୱଭାବ ଓ ଶୃଙ୍ଗାରାନୁଭବ ପ୍ରକାଶକ ଲଜ୍ଜାସଙ୍କୁଚିତ ହାସ୍ୟଯୁକ୍ତ ଦୃଷ୍ଟିପାତ ଓ ସୁରୁଚୀଙ୍କର ପରିହାସାଦି ବାକ୍ୟଦ୍ୱାରା ମହାମନା ପ୍ରିୟବ୍ରତ ବିବେକହୀନ ବ୍ୟକ୍ତିପରି ଆତ୍ମ ବିସ୍ମୃତ ହେଉଥିଲେ । [ ଅର୍ଥାତ୍ ପ୍ରିୟବ୍ରତ ଯେପରି

---

ଦ୍ୱିତୀୟ ପତ୍ନୀଗର୍ଭେ ତାର
ହୋଇଲେ ତିନି ଯେ କୁମର
ଉତ୍ତମ ତାମସ ରୈବତ
ମନୁରେହୋଇଲେ ବିଖ୍ୟାତ ।୨୭।୨୮।
ଏମନ୍ତ ପୁତ୍ରମାନ ଘେନି
ସେ ରାଜା ଚିରକାଳ ପୁଣି
ସ୍ୱବାହୁ ବଳବୀର୍ଯ୍ୟେ କରି
ପୃଥିବୀ ଭିଷ୍କଣ୍ଟକ କରି

ସେ ରାଜା ପୁରୁଷାର୍ଥ କରି
ଧର୍ମପଥକୁ ସେ ଆଚରି
ସେ ରାଜା ପତ୍ନୀର ବିଷୟେ
ପ୍ରତିଦିବସ ସ୍ନେହ ବହେ
ସେ ପତ୍ନୀ ନବ ଯଉବନେ
ମନ୍ଦହାସ ଅବଲୋକନେ
ବିହାର ତାର ସଙ୍ଗେ କରି
ତା ବଶ ନୋହି ଦଣ୍ଡଧାରୀ

ବିବିଧ କ୍ରୀଡ଼ା ନାନାରଙ୍ଗେ
ଦିନ ହରଇ ତାର ସଙ୍ଗେ ।୨୯।
ମେରୁକୁ ସୂର୍ଯ୍ୟ ଯେବେ ଯାଏ
ତେଜରେ ପ୍ରକାଶ ସେ ହୁଏ
ତେତେ ସୂର୍ଯ୍ୟ ତେଜ ଗଞ୍ଜିଲ
ତପସ୍ୟା ବଳେ ବିରାଜଇ
ଆରୋହି ଜ୍ୟୋତିର୍ମୟ ରଥେ
ପ୍ରକାଶ କରାଇବା ଅର୍ଥେ-

ଯାବଦବଭାସୟତି ସୁରଗିରିମନୁପରିକ୍ରାମନ୍ ଭଗବାନାଦିତ୍ୟୋ ବସୁଧାତଳମର୍ଦ୍ଧେ-ନୈବ ପ୍ରତପତ୍ୟର୍ଦ୍ଧେନାଚ୍ଛାଦୟତି ତଦା ହି ଭଗବଦୁପାସନୋପଚିତାତିପୁରୁଷପ୍ରଭାବସ୍ତଦନଭିନନ୍ଦନ୍ ସମଜବେନ ରଥେନ ଜ୍ୟୋତିର୍ମୟେନ ରଜନୀମପି ଦିନଂ କରିଷ୍ୟାମୀତି ସପ୍ତକୃତ୍ୱସ୍ତରଣୀମନୁପର୍ଯ୍ୟକ୍ରାମଦ୍ଦ୍ୱିତୀୟ ଇବ ପତଙ୍ଗଃ । ୩୦ ।

ଯେ ବା ଉ ହ ତଦ୍ରଥଚରଣନେମିକୃତାଃ ପରିଖାତାସ୍ତେ ସପ୍ତ ସିନ୍ଧବ ଆସନ୍ ଯତ ଏବ କୃତାଃ ସପ୍ତ ଭୁବୋ ଦ୍ୱୀପାଃ । ୩୧ ।

ଜମ୍ବୂପ୍ଲକ୍ଷଶାଲ୍ମଲୀକୁଶକ୍ରୌଞ୍ଚଶାକପୁଷ୍କରସଞ୍ଜ୍ଞାସ୍ତେଷାଂ ପରିମାଣଂ ପୂର୍ବସ୍ମାତ୍ ପୂର୍ବସ୍ମାଦୁତ୍ତରୋ ଯଥାସଂଖ୍ୟଂ ଦ୍ୱିଗୁଣମାନେନ ବହିଃ ସମନ୍ତତ ଉପକ୍ଲୃପ୍ତାଃ । ୩୨ ।

---

ଅସୀମ ପ୍ରଭାବଦ୍ୱାରା ରାଜ୍ୟଶାସନ କରୁଥିଲେ, ସେହିପରି ବିଳାସଲୀଳାମୟୀ ପତ୍ନୀଙ୍କ ସହିତ କୌତୁକରେ ମଧ୍ୟ କାଳକଟାଉଥିଲେ । ଅର୍ଥାତ୍ ସେ ପଦ୍ମପତ୍ରରେ ଜଳବିନ୍ଦୁ ପରିଥିଲେ ] । ୨୯ ।

ସୁମେରୁ ପର୍ବତକୁ ସୂର୍ଯ୍ୟ ଯେପରି ପ୍ରଦକ୍ଷିଣକରି ଲୋକାଲୋକ ପର୍ବତ ପର୍ଯ୍ୟନ୍ତ ପୃଥିବୀ ତଳକୁ ଆଲୋକିତ କରନ୍ତି, ସେହିପରି ପୃଥିବୀର ଅର୍ଦ୍ଧେକ ପ୍ରକାଶିତ ଓ ଅପରାର୍ଦ୍ଧ ଅନ୍ଧକାରାବୃତ୍ତ ଥିବାର ଦେଖି ଭଗବାନଙ୍କର ଉପାସନା ହେତୁ ଅଲୌକିକ ପ୍ରଭାବଶାଳୀ ପ୍ରିୟବ୍ରତ ପରିତୃପ୍ତ ହୋଇ ନ ପାରି ଦିନକୁ ରାତି କରିବେ ଏହା ମନରେ ଭାବି ସୂର୍ଯ୍ୟଙ୍କ ରଥତୁଲ୍ୟ ବେଗଶାଳୀ ଜ୍ୟୋତିର୍ମୟ ରଥରେ ଆରୋହଣ କରି ଦ୍ୱିତୀୟ ସୂର୍ଯ୍ୟ ତୁଲ୍ୟ ସୂର୍ଯ୍ୟଙ୍କ ପଶ୍ଚାତ୍ ପଶ୍ଚାତ୍ ଅର୍ଥାତ୍ ସୂର୍ଯ୍ୟ ଅସ୍ତାଚଳକୁ ଗଲେ ସ୍ୱୟଂ ଉଦୟାଚଳରେ ଆରୋହଣ କରି ଏବଂ ସୂର୍ଯ୍ୟ ଉଦୟାଚଳରେ ଆରୋହଣକଲେ ଅସ୍ତାଚଳ ଆରୋହଣକରି ସେ ସାତଥର ମେରୁ ପ୍ରଦକ୍ଷିଣ କରିଥିଲେ । ଏହା ଦେଖି ବ୍ରହ୍ମା ଆସି ତାଙ୍କୁ କହିଲେ "ତୁମ୍ଭେ ଏଥିରୁ ନିବୃତ୍ତ ହୁଅ, ତୁମ୍ଭର ଏପରି କରିବାର ଅଧିକାର ନାହିଁ" । ୩୦ ।

ପ୍ରିୟବ୍ରତଙ୍କର ରଥଚକ୍ରର ଅଗ୍ରଭାଗ ଦ୍ୱାରା ଯେଉଁ ସାତଟି ଗର୍ତ୍ତ ହୋଇଥିଲା; ତାହା ସାତଟି ସମୁଦ୍ରରେ ପରିଣତ ହେଲା । ୩୧ ।

ଜମ୍ବୁ, ପ୍ଲକ୍ଷ, ଶାଲ୍ମଳ, କୁଶ, କ୍ରୌଞ୍ଚ, ଶାକ, ପୁଷ୍କରନାମରେ ସାତଟି ଦ୍ୱୀପ ରଚିତ ହୋଇଥିଲା । ଏମାନଙ୍କର ପରିମାଣ ପୂର୍ବଦ୍ୱୀପମାନଙ୍କ ଅପେକ୍ଷା ଦ୍ୱିଗୁଣ ଏବଂ ଏମାନେ ସମୁଦ୍ରର ବହିର୍ଭାଗରେ ଚାରିଆଡ଼େ ଅବସ୍ଥିତ । ୩୨ ।

---

ରଜନୀ ଦିବସେ ଭ୍ରମଇ
ଦ୍ୱିତୀୟ ସୂର୍ଯ୍ୟ ପ୍ରାୟ ହୋଇ
ଏମନ୍ତ ଜାଣି ବେଦପତି
ଆସି ମିଳିଲେ ତାର କତି
ତୁମ୍ଭର ଅଧିକାର ନାହିଁ
ନିଷେଧ କଲେ ଏହା କହି ।୨୯।

ସେ ରାଜା ରଥ ଚକ୍ରେକରି
ହୋଇଲା ଯେତେକ ବିସ୍ତାରି
ତେଣୁ ସପତ ସିନ୍ଧୁ ହେଲା
ପୃଥିବୀ ସାତଭାଗ କଲା
ଶାକ ଶାଲ୍ମଳୀ ଜମ୍ବୁ ପ୍ଲକ୍ଷ
କୁଶ ପୁଷ୍କର ଆଉ କ୍ରୌଞ୍ଚ

ଏପରି ସପ୍ତଦ୍ୱୀପ ହେଲା
ସେରାଜା ଆନନ୍ଦେରହିଲା ।୩୦-୩୨

କ୍ଷୀରୋଦେକ୍ଷୁରସୋଦସୁରୋଦଘୃତୋଦକ୍ଷୀରୋଦଦଧିମଣ୍ଡୋଦଶୁଦ୍ଧୋଦାଃ ସପ୍ତ ଜଲଧୟଃ ସପ୍ତଦ୍ୱୀପପରିଖା ଇବାଭ୍ୟନ୍ତରଦ୍ୱୀପସମାନା ଏକୈକଶ୍ୟେନ ଯଥାନୁପୂର୍ବଂ ସପ୍ତସ୍ୱପି ବହିର୍ଦ୍ୱୀପେଷୁ ପୃଥକ୍ ପୃଥକ୍ ପରିତ ଉପକଲ୍ପିତାଃ । ତେଷୁ ଜଂବ୍ୱାଦଷୁ ବର୍ହିଷ୍ମତୀପତିରନୁବ୍ରତାନାତ୍ମଜାନାଗ୍ନୀଧ୍ରେଧ୍ମଜିହ୍ୱଯଜ୍ଞବାହୁହିରଣ୍ୟରେତୋଘୃତପୃଷ୍ଠମେଧାତିଥିବୀତିହୋତ୍ରସଂଜ୍ଞାନ୍ ଯଥାସଂଖ୍ୟେନୈକୈକସ୍ମିନ୍ନେକମେବାଧିପତିଂ ବିଦଧେ ।୩୩।

ଦୁହିତରଂ ଚୋର୍ଜ୍ଜସ୍ୱତୀଂ ନାମୋଶନସେ ପ୍ରାୟଚ୍ଛଦ୍ ଯସ୍ୟାମାସୀଦ୍ଦେବଯାନୀ ନାମ କାବ୍ୟସୁତା । ୩୪ ।

ନୈବଂବିଧଃ ପୁରୁଷକାର ଉରୁକ୍ରମସ୍ୟ ପୁଂସାଂ ତଦଂଘ୍ରିରଜସା ଜିତଷଡ୍‌ଗୁଣାନାମ୍ ।
ଚିତ୍ରଂ ବିଦୂରବିଗତଃ ସକୃଦାଦଦୀତ ଯନ୍ନାମଧେୟମଧୁନା ସ ଜହାତି ବନ୍ଧମ୍ ।୩୫।

---

ଗୋଟିଏ ଗୋଟିଏ ସମୁଦ୍ରର ବହିଦେଶରେ ଯେପରି ଗୋଟିଏ ଗୋଟିଏ ଦ୍ୱୀପ, ସେହିପରି ଗୋଟିଏ ଗୋଟିଏ ଦ୍ୱୀପର ବାହାରେ ଗୋଟିଏ ଗୋଟିଏ ସମୁଦ୍ର । ଏହିପରି ସାତଟି ଦ୍ୱୀପର ପରିଖାରୂପେ ସାତଟି ସମୁଦ୍ର ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ହୋଇ ରହିଅଛି । ଏହି ସମୁଦ୍ରମାନଙ୍କମଧ୍ୟରୁ କୌଣସିଟି ଲବଣଜଳରେ ପୂର୍ଣ୍ଣ, କୌଣସି ଇକ୍ଷୁରସରେ ପୂର୍ଣ୍ଣ କୌଣସିଟି ଘୃତଜଳରେ, କୌଣସିଟି ଦୁଗ୍ଧରେ ପୂର୍ଣ୍ଣ, କୌଣସିଟି ଦଧିଜଳ ଓ କୌଣସିଟି ବିଶୁଦ୍ଧଜଳରେ ପୂର୍ଣ୍ଣ । ବର୍ହିଷ୍ମତୀଙ୍କର ସ୍ୱାମୀ ପ୍ରିୟବ୍ରତ ଏହି ସପ୍ତଦ୍ୱୀପରେ ଗୋଟିଏ ଗୋଟିଏ ପୁତ୍ରଙ୍କୁ ଅଭିଷିକ୍ତ କରାଇଥିଲେ । ୩୩ ।

ଊର୍ଜସ୍ୱତୀ ନାମ୍ନୀ କନ୍ୟାଙ୍କୁ ସେ ଶୁକ୍ରାଚାର୍ଯ୍ୟଙ୍କୁ ସମ୍ପ୍ରଦାନ କରିଥିଲେ । ତାହାଙ୍କ ଗର୍ଭରେ ଦେବଯାନୀଙ୍କର ଜନ୍ମ । ୩୪ ।

ସେହି ଭଗବାନଙ୍କର ପାଦପଦ୍ମରଜ ଧାରଣକରି ଯେଉଁମାନେ ଷଡ଼ିନ୍ଦ୍ରିୟମାନଙ୍କୁ ଜୟ କରିଅଛନ୍ତି, ଭଗବାନଙ୍କର ବିଚିତ୍ରଲୀଳାରେ ସେହି ପୁରୁଷ ଏପରି ଦ୍ୱୀପ ଓ ସମୁଦ୍ର ରଚନା କରିବା ଆଶ୍ଚର୍ଯ୍ୟ ନୁହେଁ । ନିକୃଷ୍ଟଯୋନିଜାତ ବ୍ୟକ୍ତି ଭଗବାନଙ୍କର ନାମ ଗ୍ରହଣକଲେ ସେ ମଧ୍ୟ ସଂସାରବନ୍ଧନ ଛେଦନକରିପାରେ ।୩୫

---

ପୁତ୍ରଙ୍କୁ ଅଧିପତି କଲେ
ଯଥା ବିଭାଗ କରି ଦେଲେ
ଦୁହିତା ଊର୍ଜ୍ଜସ୍ୱତୀ ନାମ
ତାହାକୁ ଶୁକ୍ରେ ଦେଲେ ଦାନ
ତାହାର କନ୍ୟା ଅନୁପମ
ହୋଇଲେ ଦେବଯାନୀ ନାମ ।୩୩।
ଏଥୁ ଅନ୍ତରେ ରାଜାଚିତ୍ତେ
ବୈରାଗ୍ୟ ଉପୁଜେ ନିରତେ

ମନେ ବିଚାରି ନୃପନାଥ
ସ୍ତ୍ରୀନନ୍ଦା କରନ୍ତି ବହୁତ
ସ୍ତ୍ରୀସଙ୍ଗେ ଆସକ୍ତ ହୋଇଲି
ବଡ଼ ଅସାଧ୍ୟ ପଣ କଲି
ଏଣୁ ଇନ୍ଦ୍ରିୟ ବଶ ହୋଇ
ଅବିଦ୍ୟା ବିଷୟରେ ଥାଇ
ଏଣୁ ଏ ଧିକ ମୋ ଜୀବନ
ବିସ୍ମୟେ ଭାଳନ୍ତେ ରାଜନ

ଇଷ୍ଟଦେବତା ପ୍ରସାଦରେ
ବୈରାଗ୍ୟ ଜାତ ତା ମନରେ
ବିଷୟ ଚେଷ୍ଟା ପାସୋରିଲା
ଇନ୍ଦ୍ରିୟମାନ ନିରୋଧିଲା
ରାଜସମ୍ପଦ ନ ଇଚ୍ଛିଲା
ପୁତ୍ରଙ୍କୁ ଭାଗ କରି ଦେଲା
ସ୍ୱପତ୍ନୀ ତେଜି ମୃତ ପ୍ରାୟେ
ମୁକ୍ତ ଇଚ୍ଛିଲା ନୃପରାୟେ

ସ ଏବମପରିମିତବଳପରାକ୍ରମ ଏକଦା ତୁ ଦେବର୍ଷିଚରଣାନୁଶୟନାନୁପତିତଗୁଣ-ବିସର୍ଗସଂସର୍ଗେଣାନିର୍ବୃତମିବାତ୍ମାନଂ ମନ୍ୟମାନ ଆତ୍ମନିର୍ବେଦ ଇଦମାହ । ୩୬ ।

ଅହୋ ଅସାଧ୍ୱନୁଷ୍ଠିତଂ ଯଦଭିନିବେଶିତୋଽହମିନ୍ଦ୍ରିୟୈରବିଦ୍ୟାରଚିତବିଷମ-ବିଷୟାନ୍ଧକୂପେ ତଦଲମଲମମୁଷ୍ୟା ବନିତାୟା ବିନୋଦମୃଗଂ ମାଂ ଧିଗ୍ଧିଗିତି ଗର୍ହୟାଞ୍ଚକାର । ୩୭ ।

ପରଦେବତାପ୍ରସାଦାଧିଗତାତ୍ମପ୍ରତ୍ୟବମର୍ଶେନାନୁପ୍ରବୃତ୍ତେଭ୍ୟଃ ସ୍ୱପୁତ୍ରେଭ୍ୟ ଇମାଂ ଯଥାଦାୟଂ ବିଭଜ୍ୟ ଭୁକ୍ତଭୋଗାଞ୍ଚ ମହିଷୀଂ ମୃତକମିବ ସହମହାବିଭୂତିମପହାୟ ସ୍ୱୟଂ ନିହିତନିର୍ବେଦୋ ହୃଦି ଗୃହୀତହରିବିହାରାନୁଭାବୋ ଭଗବତୋ ନାରଦସ୍ୟ ପଦବୀଂ ପୁନରେବାନୁସସାର । ୩୮ ।

ତସ୍ୟ ହ ବା ଏତେ ଶ୍ଳୋକାଃ—

ପ୍ରିୟବ୍ରତକୃତଂ କର୍ମ କୋ ନୁ କୁର୍ଯ୍ୟାଦ୍ୱିନେଶ୍ୱରମ୍ ।
ଯୋ ନେମିନିମ୍ନୈରକରୋଚ୍ଛାୟାଂ ଘ୍ନନ୍ ସପ୍ତବାରିଧୀନ୍ । ୩୯ ।

---

ପ୍ରିୟବ୍ରତ ଏହାପରେ ଅପରିମିତ ପରାକ୍ରମଶାଳୀ ହୋଇମଧ୍ୟ ଦେବର୍ଷିନାରଦଙ୍କର ଚରଣାନୁଗ୍ରହରେ ଅଧ୍ୟାତ୍ମ ବିଦ୍ୟାଲବ୍ଧକରି ଲବ୍ଧ ରାଜ୍ୟାଦିର ସଂସର୍ଗରେ ନିଜକୁ ଅସୁଖୀ ମନେକରି ଦୁଃଖରେ ଏହାପରି କହିଲେ ।୩୬।

"ଓ ହୋ । ମୁଁ ବିବେକୀ ହେଲେ ମଧ୍ୟ କି ଅସାଧୁ ଅନୁଷ୍ଠାନ କରିଅଛି । କାରଣ ଇନ୍ଦ୍ରିୟମାନେ ବିଷୟାନ୍ଧକୂପରେ ମୋତେ ଅଭିନିବିଷ୍ଟ କରି ରଖିଅଛନ୍ତି । ସୁତରାଂ ବିଷୟଭୋଗରେ ଆଉ ମୋର ପ୍ରୟୋଜନ ନାହିଁ । ମୁଁ ମୋର ସ୍ତ୍ରୀର କ୍ରୀଡ଼ା ମୃଗ ତୁଲ୍ୟ ହୋଇଅଛି, ମୋତେ ଧିକ୍" । ଏହାପରି ସେ ନିଜକୁ ଧିକ୍କାର କରିବାକୁ ଲାଗିଲେ । ୩୭ ।

ଶ୍ରେଷ୍ଠ ଦେବତା ଶ୍ରୀହରିଙ୍କ ଅନୁଗ୍ରହରେ ପ୍ରିୟବ୍ରତଙ୍କର ବିବେକ ଜାଗ୍ରତ ହୋଇଥିଲା । ତେଣୁ ସେ ଅନୁଗତ ପୁତ୍ରମାନଙ୍କ ମଧ୍ୟରେ ଯଥାଯୋଗ୍ୟଭାବରେ ପୃଥିବୀ ବିଭାଗ କରିଦେଇ ଭୁକ୍ତଭୋଗା ସାମାଜ୍ୟଲକ୍ଷ୍ମୀଙ୍କ ସହିତ ନିଜର ମହିଷୀଙ୍କୁ ଶବ ଦେହ ତୁଲ୍ୟ ତ୍ୟାଗକରି ନିର୍ବେଦଯୁକ୍ତ ହୃଦୟରେ ଶ୍ରୀହରିଙ୍କର ଲୀଳା—ବିଳାସାନୁଭବ ପ୍ରାପ୍ତହୋଇ ପୁନର୍ବାର ନାରଦଙ୍କର ଉପଦିଷ୍ଟମାର୍ଗ ଅନୁସରଣ କରିଥିଲେ । ୩୮ ।

ପ୍ରିୟବ୍ରତଙ୍କର ମାନସିକ ଅବସ୍ଥା ବ୍ୟଞ୍ଜକ କେତୋଟି ଶ୍ଳୋକ ଅଛି, ତାହା ଏଠାରେ କଥିତ ହେଲା ପ୍ରିୟବ୍ରତଙ୍କର ଆଚରିତ କର୍ମ କେବଳ ଈଶ୍ୱରଙ୍କ ଭିନ୍ନ ଆଉ କିଏ ଅନୁଷ୍ଠାନ କରିପାରେ ? ଯେ ରାତ୍ରିର ଅନ୍ଧକାର ଦୂରୀକରଣାର୍ଥ ରଥ ଚକ୍ରର ନେମୀ ବା ପ୍ରାନ୍ତଭାଗର ଆଘାତଦ୍ୱାରା ସପ୍ତସମୁଦ୍ର ସୃଷ୍ଟିକରିଥିଲେ ।୩୯

---

| | | |
|---|---|---|
| ମହାନୁଭବ ଭଗବାନ | ଯେଉଁ ରାଜାର ଏତେ କୃତ୍ୟ | ତାହାର ରଥଚକ୍ର ମାର୍ଗେ |
| ନାରଦ ବ୍ରହ୍ମାର ନନ୍ଦନ | ଗାଆନ୍ତି କରନ୍ତି ମହତ | ସପ୍ତ ସମୁଦ୍ର ପୃଥ୍ୱୀ ଭାଗେ |
| ତାହାଙ୍କ ପଥ ଆଶ୍ରେ କଲା | "ପ୍ରିୟବ୍ରତର କଲା କର୍ମ | ଭାଗ ବିଭାଗ ପୃଥ୍ୱୀ କରି |
| ନିଷ୍ଠାସେ ନିବୃତ୍ତହୋଇଲା ।୩୬-୩୭ | ଏହା କେ କରିବାକୁ କ୍ଷମ | ଦ୍ୱୀପ ଉପଦ୍ୱୀପ ବିସ୍ତାରି |

ଭୂସଂସ୍ଥାନଂ କୃତଂ ଯେନ ସରିଦ୍‌ଗିରିବନାଦିଭିଃ ।
ସୀମା ଚ ଭୂତନିର୍ବୃତ୍ୟୈ ଦ୍ୱୀପେ ଦ୍ୱୀପେ ବିଭାଗଶଃ । ୪୦ ।
ଭୌମଂ ଦିବ୍ୟଂ ମାନୁଷଞ୍ଚ ମହିତ୍ୱଂ କର୍ମଯୋଗଜମ୍ ।
ଯଶ୍ଚକ୍ରେ ନିରୟୌପମ୍ୟଂ ପୁରୁଷାନୁଜନପ୍ରିୟଃ । ୪୧ ।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ପ୍ରିୟବ୍ରତବିଜୟେ ପ୍ରଥମୋଽଧ୍ୟାୟଃ । ୧ ।

---

ଯେ ଭୂତ ସମୂହଙ୍କୁ ସୁଖ ପ୍ରଦାନ ନିମିତ୍ତ ଦ୍ୱୀପଦ୍ୱାରା ଭୂମି ରଚନା କରିଥିଲେ ଏବଂ ନଦୀ, ପର୍ବତ ବନାଦିଦ୍ୱାରା ବିଭାଗକ୍ରମେ ଭୂମିର ସୀମା ନିର୍ଦ୍ଦେଶ କରିଥିଲେ । ୪୦ ।

ବିଷ୍ଣୁଭକ୍ତ ନାରଦାଦିଙ୍କର ପ୍ରିୟପାତ୍ର ପ୍ରିୟବ୍ରତ ପାତାଳଜ, ସ୍ୱର୍ଗୀୟ, ଓ ମର୍ତ୍ତ୍ୟଲୋକ ଜାତ, ଯୋଗୈଶ୍ୱର୍ଯ୍ୟ ଜାତ ବା କର୍ମଜ ସମସ୍ତ ବିଭବକୁ ନରକ ତୁଲ୍ୟ ଜ୍ଞାନ କରିଥିଲେ । ୪୧ ।

---

| | |
|---|---|
| ଯେବା କଲ ମନୁଭୂମିର | ପ୍ରିୟ ଅଖିଳ ଜନଙ୍କର |
| ପୃଥିବୀ ସ୍ୱର୍ଗେ ଅଗୋଚର | ମହାଅଦ୍ଭୁତ ଅଗୋଚର ।୩୮-୪୧। |
| ସେ ପ୍ରିୟବ୍ରତର ମହିମା | ପ୍ରିୟବ୍ରତ ରାଜା ଚରିତ |
| ତ୍ରୈଲୋକ୍ୟେ ନାହିଁ ନା ଉପମା | କହିଲେ ବିପ୍ର ଜଗନ୍ନାଥ । |



## ପ୍ରଥମ ଅଧ୍ୟାୟର ବିଶଦାର୍ଥ :—

ପ୍ରଥମତଃ ବ୍ରହ୍ମା ରୁଦ୍ରାଦିଙ୍କୁ ସୃଷ୍ଟିକରି ତଦନନ୍ତର ସନକ, ସନନ୍ଦ, ସନାତନ ଓ ସନତ୍‌କୁମାର ଏହି ଚତୁଃ ସନଙ୍କୁ ସୃଷ୍ଟି କରିଥିଲେ । କିନ୍ତୁ ଏମାନେ ପ୍ରଜାସୃଷ୍ଟି ବିଷୟରେ ଅନାସକ୍ତ ଓ ନିବୃତ୍ତିମାର୍ଗାବଲମ୍ବୀ ହେବା ଦେଖି ବ୍ରହ୍ମା ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ଭୃଗୁ, ବଶିଷ୍ଠ, ଦକ୍ଷ ଓ ନାରଦ ଏହି ଦଶଜଣଙ୍କୁ ସୃଷ୍ଟି କରିଥିଲେ । କିନ୍ତୁ ସେମାନଙ୍କଦ୍ୱାରା ପ୍ରଜା ବୃଦ୍ଧିହେଲା ନାହିଁ । ବ୍ରହ୍ମା ସେହି ବିଷୟ ଚିନ୍ତା କରୁ କରୁ ତାହାଙ୍କର ରୂପ ଦୁଇଭାଗରେ ବିଭକ୍ତ ହେଲା । ଏକଭାଗ ସ୍ତ୍ରୀ ଓ ଏକଭାଗପୁରୁଷ, ସ୍ତ୍ରୀ ଭାଗର ନାମ ଶତରୂପା ଓ ପୁରୁଷଭାଗର ନାମ ସ୍ୱାୟମ୍ଭୁବ ମନୁ । ଶତରୂପା ଦିବ୍ୟଶତବର୍ଷ ପର୍ଯ୍ୟନ୍ତ କଠୋର ତପସ୍ୟାଚରଣ କରି ସ୍ୱାୟମ୍ଭୁବମନୁଙ୍କୁ ପତିରୂପେ ପାଇଥିଲେ । ଆଦିକଳ୍ପରେ ଏହାହିଁ ସୃଷ୍ଟିର ପ୍ରାରମ୍ଭ ଓ ସ୍ତ୍ରୀ-ପୁରୁଷ ସଂଯୋଗ । ସ୍ୱାୟମ୍ଭୁବମନୁଙ୍କ ଔରସରୁ ଶତରୂପାଙ୍କ ଗର୍ଭରେ ପ୍ରିୟବ୍ରତ ଓ ଉତ୍ତାନପାଦ ଏହି ପୁତ୍ରଦ୍ୱୟ ଜନ୍ମଗ୍ରହଣ କରିଥିଲେ । ଉତ୍ତାନପାଦଙ୍କ ପ୍ରସଙ୍ଗ ଓ ତାହାଙ୍କର ବଂଶ ଚତୁର୍ଥସ୍କନ୍ଧରେ ବର୍ଣ୍ଣିତ ହୋଇଅଛି । ପ୍ରିୟବ୍ରତ ଈଶ୍ୱରାନୁରାଗୀ, ସେ ନାରଦଙ୍କ ଉପଦେଶରେ ଆତ୍ମବିଦ୍ୟା ଲାଭ କରିଥିଲେ, ହେଲେହେଁ ସେ ଗୃହାଶ୍ରମ ସ୍ୱୀକାର କରି ଏକାଦଶଅର୍ବୁଦବର୍ଷ ରାଜ୍ୟ ଭୋଗ କରିଥିଲେ । ସପ୍ତଦ୍ୱୀପ ଓ ସପ୍ତସମୁଦ୍ର ବିସ୍ତାର କରି ସେ ଆପଣାର ସପ୍ତପୁତ୍ରଙ୍କୁ ତହିଁରେ ଅଭିଷିକ୍ତ କରାଇଥିଲେ । ପ୍ରିୟବ୍ରତ ସଂସାରୀ ହେଲେ ମଧ୍ୟ ସେ ବାଲ୍ୟକାଳରୁ ଈଶ୍ୱରାନୁରାଗୀ । ପ୍ରିୟବ୍ରତଙ୍କ ଜୀବନ ଚରିତ ସଂସାରୀ ଈଶ୍ୱରଭକ୍ତ ପକ୍ଷରେ ଆଦର୍ଶ ।

# ଦ୍ୱି ତୀ ୟ ଅ ଧ୍ୟା ୟ ।

ଦ୍ୱିତୀୟେ ପ୍ରୋକ୍ତମଗ୍ନୀଧ୍ରଚରିତଂ ସ୍ତ୍ରୈଣସମ୍ମତମ୍ ।
ପତ୍ନ୍ୟାଂ ହି ପୂର୍ବଚିତ୍ତ୍ୟାଂ ଯୋ ନାଭୀମୁଖ୍ୟାନଜୀଜନତ୍ ।୦। (ଶ୍ରୀଧରସ୍ୱାମୀ)

## ଶ୍ରୀଶୁକ ଉବାଚ ।

ଏବଂ ପିତରି ସମ୍ପ୍ରବୃତ୍ତେ ତଦନୁଶାସନେ ବର୍ତ୍ତମାନ ଆଗ୍ନୀଧ୍ରୋ ଜମ୍ବୂଦ୍ୱୀପୌକସଃ ପ୍ରଜା ଔରସବଦ୍ଧର୍ମାବେକ୍ଷ୍ୟମାଣଃ ପର୍ଯ୍ୟଗୋପାୟତ୍ ।୧।

ସ ଚ କଦାଚିତ୍ ପିତୃଲୋକକାମଃ ସୁରବରବନିତାକ୍ରୀଡ଼ାଚଲଦ୍ରୋଣ୍ୟାଂ ଭଗବନ୍ତଂ ବିଶ୍ୱସୃଜାଂ ପତିମାଭୃତପରିଚର୍ଯ୍ୟୋପକରଣ ଆତ୍ମୈକାଗ୍ର୍ୟେଣ ତପସ୍ୟାରାଧୟାମ୍ବଭୂବ ।୨।

---

## ଅଗ୍ନୀଧ୍ର ଚରିତ ।

ଦ୍ୱିତୀୟଅଧ୍ୟାୟରେ ରାଜା ଅଗ୍ନୀଧ୍ରଙ୍କ ଚରିତ ଏବଂ ତାଙ୍କରପତ୍ନୀ ପୂର୍ବଚିତ୍ତିଙ୍କ ଗର୍ଭରେ
ନାଭି ପ୍ରଭୃତିଙ୍କର ଜନ୍ମବୃତ୍ତାନ୍ତ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀ ଶୁକଦେବ କହିଲେ—

ହେ ରାଜନ୍ ! ଏହିପରି ପିତା ପ୍ରିୟବ୍ରତ, ନାରଦ ଉପଦିଷ୍ଟ ମାର୍ଗରେ ପରମାର୍ଥ ସାଧନରେ ପ୍ରବୃତ୍ତ ହୁଅନ୍ତେ ତାହାଙ୍କର ଆଜ୍ଞାନୁବର୍ତ୍ତୀ ପୁତ୍ର ଅଗ୍ନୀଧ୍ର ଧର୍ମ ପ୍ରତି ଲକ୍ଷ ରଖି ଜମ୍ବୁଦ୍ୱୀପବାସୀ ପ୍ରଜାଗଣଙ୍କୁ ପୁତ୍ର ନିର୍ବିଶେଷରେ ପାଳନ କରିଥିଲେ । ୧ ।

ସେହି ଅଗ୍ନୀଧ୍ର ଦିନେ ପୁତ୍ରକାମୀ ହୋଇ ଦେବ ବନିତାମାନଙ୍କର କ୍ରୀଡ଼ାଭୂମି ମନ୍ଦରପର୍ବତ ଗହ୍ୱରକୁ ପୁଷ୍ପାଦି ବିବିଧ ପୂଜୋପକରଣସହ ଗମନ କରି ତପସ୍ୟା ସହକାରେ ଭଗବାନ୍ ସ୍ୱୟମ୍ଭୁବଙ୍କୁ ଏକାଗ୍ର ଚିତ୍ତରେ ଆରାଧନା କରିଥିଲେ । ୨ ।

---

ଦ୍ୱିତୀୟେ ଅଗ୍ନୀଧ୍ର ଚରିତ, ନାଭିପ୍ରଭୃତି ଚରିଁ ଜାତ । ୦ ।

ଶ୍ରୀ ଶୁକ ଉବାଚ—

ଏମନ୍ତେ ପିତାର ଅନ୍ତରେ
ପିତାର ଆଜ୍ଞା ଘେନି ଶିରେ
ଜମ୍ବୁଦ୍ୱୀପର ପ୍ରଜାଜନ
ଅଗ୍ନୀଧ୍ର କରଇ ପାଳନ । ୧ ।

ଏମନ୍ତେ କେତେଦିନ ଗଲା
ଅଗ୍ନୀଧ୍ର ମନେ ବିଚାରିଲା
"ସନ୍ତୋଷ ପିତୃଲୋକଙ୍କର
କେମନ୍ତେ ହୋଇବ ମୋହର"
ଏମନ୍ତ ମନେ ବିଚାରିଲା
ମନ୍ଦରଗିରିରେ ମିଳିଲା

ସୁରବନିତା-କ୍ରୀଡ଼ାସ୍ଥାନେ
ପଶିଲା ଗହନ କାନନେ
ସଂସାର-କରତାଙ୍କୁ ଧ୍ୟାଇ
ବସିଲା ସ୍ଥିର ମନ ହୋଇ । ୨ ।

ତଦୁପଲଭ୍ୟ ଭଗବାନାଦିପୁରୁଷଃ ସଦସି ଗାୟନ୍ତୀଂ ପୂର୍ବଚିତ୍ତିଂ ନାମାପ୍‌ସରସମଭିଯାପୟାମାସ । ୩ ।

ସା ଚ ତଦାଶ୍ରମୋପବନମତିରମଣୀୟଂ ବିବିଧନିବିଡ଼ବିଟପିବିଟପନିକରସଂଶ୍ଳିଷ୍ଟପୁରଟଲତାରୂଢ଼ସ୍ଥଲବିହଙ୍ଗମମିଥୁନୈଃ ପ୍ରୋଚ୍ୟମାନଶ୍ରୁତିଭିଃ ପ୍ରତିବୋଧ୍ୟମାନସଲିଲକୁକ୍କୁଟକାରଣ୍ଡବକଲହଂସାଦିଭିର୍ବିଚିତ୍ରମୁପକୂଜିତାମଲଜଲାଶୟକମଲାକରମୁପବଭ୍ରାମ ।୪

ତସ୍ୟାଃ ସୁଲଲିତଗମନପଦବିନ୍ୟାସଗତିବିଲାସାୟାଶ୍ଚାନୁପଦଂ ଖଣଖଣାୟମାନରୁଚିରଚରଣାଭରଣସ୍ୱନମୁପାକର୍ଣ୍ଣ୍ୟ ନରଦେବକୁମାରଃ ସମାଧିଯୋଗେନାମୀଲିତନୟନନଳିନମୁକୁଳଯୁଗଲମୀଷଦ୍ୱିକଚୟ୍ୟ ବ୍ୟାଚଷ୍ଟ । ୫ ।

---

ଭଗବାନ୍ ଆଦି ପୁରୁଷ ବ୍ରହ୍ମା ଅଗ୍ନୀଧ୍ରଙ୍କର ଅଭିପ୍ରାୟ ଅବଗତ ହୋଇ ପୁତ୍ରୋତ୍ପାଦନ ନିମିତ୍ତ ଅମର ସଭାର ଜନୈକ ଗାୟିକା—ଯାହାର ନାମ ପୂର୍ବଚିତ୍ତି, ତାହାଙ୍କୁ ଅଗ୍ନୀଧ୍ରଙ୍କ ସମ୍ଭୋଗାର୍ଥ ପ୍ରେରଣ କରିଥିଲେ । ୩ ।

ସେହି ପୂର୍ବଚିତ୍ତି ଅଗ୍ନୀଧ୍ରଙ୍କ ଆଶ୍ରମ ସମୀପରେ ବ୍ରହ୍ମାଙ୍କ ନିୟୋଗାନୁସାରେ ଗୋଟିଏ ରମଣୀୟ ଉପବନରେ ବିଚରଣ କରୁଥିଲେ । ଏହି ଉପବନରେ ନିବିଡ଼ ବିବିଧ ବୃକ୍ଷମାନଙ୍କ ସ୍କନ୍ଧରେ ସ୍ୱର୍ଣ୍ଣଲତିକାମାନ ସଂଶ୍ଳିଷ୍ଟ ଥିଲା । ତଦୁପରି ବହୁବିଧ ସ୍ଥଳଚର ମୟୂରାଦି ପକ୍ଷୀଗଣ ସ୍ତ୍ରୀ ପୁରୁଷ ହୋଇ ବସି ଷଡ଼୍‌ଜାଦି ମଧୁର ସ୍ୱରରେ ଗାନ କରୁଥିଲେ । ସେମାନଙ୍କର କଣ୍ଠଧ୍ୱନି ଶ୍ରବଣ କରି କୁକ୍କୁଟ, କାରଣ୍ଡବ, କଳହଂସ ପ୍ରଭୃତି ଜଳଚର ପକ୍ଷୀଗଣ ପ୍ରତିବୋଧିତ ହୋଇ ବିଚିତ୍ର ଶବ୍ଦ କରୁଥିଲେ । ତଦ୍ୱାରା କମଳାକର ଶୋଭିତ ପ୍ରସନ୍ନ ସଲିଳ ପୂର୍ଣ୍ଣ ଜଳାଶୟମାନ ଅତ୍ୟନ୍ତ ରମଣୀୟ ଶୋଭା ଧାରଣ କରିଥିଲା । ୪ ।

ସୁଲଳିତଗମନା ସେହି ଅପ୍‌ସରା ସର୍ବାଙ୍ଗ ବିଳାସ ଭଙ୍ଗିରେ ପ୍ରତିମୁହୂର୍ତ୍ତରେ ତାହାର ସୁରୁଚିର ଚରଣାଳଙ୍କାର ଗୁଡ଼ିକ ରୁଣୁଝୁଣୁ ଶବ୍ଦରେ ଶବ୍ଦାୟମାନ ହେଉଥିଲା । ରାଜକୁମାର ଅଗ୍ନୀଧ୍ର ଏହା ଶ୍ରବଣ କରି ସମାଧି ଯୋଗରେ ନିମୀଳିତ ନୟନାରବିନ୍ଦ ମୁକୁଳ ଯୁଗଳ ଈଷତ୍ ଉନ୍ମୀଳିତ କରି ତାହାଙ୍କୁ ଅବଲୋକନ କରିଥିଲେ । ୫ ।

---

ତାହା ଜାଣିଲେ ଭଗବାନ
ଯେ ବ୍ରହ୍ମା ସୃଷ୍ଟିର କାରଣ
ସଭାରେ କରଇ ଗାୟନ
ଯାହାର ପୂର୍ବଚିତ୍ତି ନାମ
ଅତିସୁନ୍ଦରୀ ଅପସରୀ
ତାକୁ ପେଷିଲେ ବେଗକରି
ଅଗ୍ନୀଧ୍ର ତପୋବନ ନିକଟେ
ମିଳିଲା ଅପସରୀ ବେଗେ । ୩ ।
ଅତିମଞ୍ଜୁଳ ମନୋହର
ବିବିଧ ବିଟପୀ ଅପାର

ଘନ ନିବିଡ଼ ଲତାମାନ
ଅଛନ୍ତି ନାନା ପକ୍ଷୀମାନ
କର୍ଣ୍ଣାଭିରାମ ଧ୍ୱନିମାନ
କରନ୍ତି ହରଷିତମନ
ସ୍ୱଚ୍ଛ ନିର୍ମଳ ଜଳେ ଭରି
ବିବିଧ ଜଳାଶୟେ ପୂରି
କୁକ୍କୁଟ କାରଣ୍ଡବ ହଂସ
କରନ୍ତି ରୁଚିର ବିଳାସ
କହ୍ଲାର ନାନା ପୁଷ୍ପସାର
ପଦ୍ମପୂରିତ ସରୋବର । ୪ ।

ମନ୍ଦ ପବନ ବହେ ନିତ୍ୟେ
ତା ଦେଖି କନ୍ୟା ତୋଷଚିତ୍ତେ
କରଇ ଲଳିତ ଗମନ
ବିଳାସ ପାଦଗତିମାନ
ଚରଣ ନୂପୁର ତାହାର
ଧ୍ୱନି କରଇ ମନୋହର
ଅତିମଞ୍ଜୁଳ ତାହା ଶୁଣି
ନୃପକୁମର-ଶିରୋମଣି
ସମାଧି ଯୋଗରୁ ତାହାର
ନୟନ କମଳ ଯୁଗଳ
ଈଷିତେ ବିକଶିତ କଲା
ମନ୍ଦ ମଧୁରେ ସେ ବୋଇଲା । ୫ ।

ତାମେବାବିଦୂରେ ମଧୁକରୀମିବ ସୁମନସ ଉପଜିଘ୍ରନ୍ତୀଂ ଦିବିଜମନୁଜମନୋନ-ୟନାହ୍ଲାଦଦୁଘୈର୍ଗତିବିହାରବ୍ରୀଡ଼ାବିନୟାବଲୋକସୁସ୍ୱରାକ୍ଷରାବୟବୈର୍ମନସି ନୃଣାଂ କୁସୁ-ମାୟୁଧସ୍ୟ ବିଦଧତୀଂ ବିବରଂ ନିଜମୁଖବିଗଳିତାମୃତାସବ-ସହାସ-ଭାଷଣାମୋଦମଦା-ନ୍ଧମଧୁକରନିକରୋପରୋଧେନ ଦ୍ରୁତପଦବିନ୍ୟାସେନ ବଲ୍‌ଗୁସ୍ପନ୍ଦନସ୍ତନକଳସକବରଭାର-ରଶନାଂ ଦେବୀଂ ତଦବଲୋକନେନ ବିବୃତାବସରସ୍ୟ ଭଗବତୋ ମକରଧ୍ୱଜସ୍ୟ ବଶ-ମୁପନୀତୋ ଜଡ଼ବଦିତି ହୋବାଚ ।୬।

କାଂ ତ୍ୱଂ ଚିକୀର୍ଷସି ଚ କିଂ ମୁନିବର୍ଯ୍ୟ ଶୈଳେ ମାୟାସି କାପି ଭଗବତ୍ ପରଦେବତାୟାଃ ।
ବିଜ୍ୟେ ବିଭର୍ଷି ଧନୁଷୀ ସୁହୃଦାତ୍ମନୋଽର୍ଥେ କିମ୍ବା ମୃଗାନ୍ ମୃଗୟସେ ବିପିନେ ପ୍ରମତ୍ତାନ୍ ।୭।

---

ଅନତିଦୂରରେ ସେହି ଅପ୍‌ସରା ଭ୍ରମରୀତୁଲ୍ୟ କୁସୁମସମୂହ ଆଘ୍ରାଣ କରୁଥିଲା । ଦେବ ଓ ମନୁଷ୍ୟଗଣଙ୍କର ମନୋହାରିଣୀ ଗତି, ବିହାର, ଲଜ୍ଜା ଓ ବିନୟ ଦୃଷ୍ଟି, ସୁମଧୁରବାକ୍ୟ ଓ ମନୋହର ନେତ୍ରାଦି ଅବୟବଦ୍ୱାରା ମନୁଷ୍ୟମାନଙ୍କର ମନରେ କାମଦେବଙ୍କର ପ୍ରବେଶଦ୍ୱାର ସୃଷ୍ଟି କରିଥିଲା । ଏବଂ ନିଜମୁଖରୁ ଅମୃତାସବ ତୁଲ୍ୟ ସହାସ୍ୟବାକ୍ୟ ଏବଂ ସୁରଭିଗନ୍ଧମୟ ନିଶ୍ୱାସଦ୍ୱାରା ଆକୃଷ୍ଟ ଅନ୍ଧ ମଧୁକର ଉପଦ୍ରୁତାଦ୍ରୁତ ପଦବିକ୍ଷେପ ହେତୁ ତାହାର ସ୍ତନଯୁଗଳ, କବରୀଭାର ଓ ଚନ୍ଦ୍ରହାର କମ୍ପିତ ହେଉଥିଲା । ସେହି ପୂର୍ବଚିତ୍ତିକୁ ଦର୍ଶନ କରନ୍ତେ ଆଗ୍ନୀଧ୍ରଙ୍କ ହୃଦୟରେ କନ୍ଦର୍ପ ପ୍ରବେଶ କରିଥିଲା । ଆଗ୍ନୀଧ୍ର ଅତ୍ୟନ୍ତ କାମମୁଗ୍ଧ ହୋଇ ମୂର୍ଖପରି କେତେବେଳେ ପୁରୁଷ, କେତେବେଳେ ସ୍ତ୍ରୀପରି ସେହି ପୂର୍ବଚିତ୍ତିଙ୍କୁ ସମ୍ବୋଧନ କରି କହିଲେ ।୬।

ଶ୍ରୀଆଗ୍ନୀଧ୍ର କହିଲେ :—ହେ ମୁନିବର ! ଆପଣ କିଏ ? ଆପଣ କି ହେତୁ ଏହି ପର୍ବତକୁ ଆଗମନ କରି ଅଛନ୍ତି ? ଆପଣ ପରମେଶ୍ୱରଙ୍କର ମାୟା ରୂପୀ ମୁନିରୂପେ ଏସ୍ଥାନକୁ ଆଗମନ କରିଅଛନ୍ତି କି ? ହେ ସଖେ ! ଆପଣ ଯେ ଗୁଣଶୂନ୍ୟ ଦୁଇଟି ଧନୁ ଧାରଣ କରିଅଛନ୍ତି, ତାହା ନିଜ ପ୍ରୟୋଜନ ନିମିତ୍ତ, ନା ଅରଣ୍ୟମଧ୍ୟରେ ମୋପରି ଅଜିତେନ୍ଦ୍ରିୟ ମୃଗତୁଲ୍ୟ ବ୍ୟକ୍ତିକୁ ବଶୀଭୂତ କରିବା ନିମିତ୍ତ ? ।୭। *

---

ନିକଟେ ତାର ମୁଖ ଦେଖି
ପିଛାଡ଼ି ନ ପାରଇ ଆଖି
ଭୃଙ୍ଗର ପତ୍ନୀ ସେ ଯେସନ
ପୁଷ୍ପ ଲୋଡ଼ଇ ବନେ ବନ
ଦେବ ମାନବ ଆଦି ଯେତେ
ଉଲ୍ଲାସ ହୁଅନ୍ତି ଦେଖନ୍ତେ
ବିହାର ଅବଲୋକନରେ
ଶରୀର ବଚନ ମଧୁରେ
ପ୍ରାଣିର ମନକୁ ସେ ନେଇ
ଅନଙ୍ଗେ ବଶ ସେ କରଇ

ସେ ଯେତେବେଳେ ବାକ୍ୟ କହି
ବଦନୁଁ ସୁଗନ୍ଧ ଉଠଇ
ତେଣେ ଲୁବଧ ଭୃଙ୍ଗଗଣେ
ଭ୍ରମନ୍ତି ତାର ସନ୍ନିଧାନେ
ତେଣୁ ନ ପାରେ ବେଗେ ଯାଇ
ପବନେ ବସନ ଚଳଇ
ତା ଦେଖି ନୃପତିନନ୍ଦନ
ହୋଇଲା ଅନଙ୍ଗେ ଅଧୀନ

ଉତ୍ତର ପ୍ରାୟେ ସେ ହୋଇଲା
କାହୁଁ ତୁ ଆଇଲୁ ବୋଇଲା
ପରଦେବତା ମାୟା ହୋଇ
କି ଅବା ବନେ ଲୋଡ଼ୁ ତୁହି
କାମର ଅସ୍ତ୍ରମାନ ଘେନି
କି ଅର୍ଥେ ଭ୍ରମୁ ତୁ ମେଦିନୀ
ମୃଗାକ୍ଷି ! କହ ତୁ ବଚନେ
ମୃଗକୁ ଲୋଡ଼ୁ କିବା ବନେ ।୬,୭

---

* ଅଗ୍ନୀଧ୍ର ଅପ୍ସରା ରୂପରେ କାମାନ୍ଧ ହୋଇ ତାଙ୍କୁ ମୁନି, ସଖେ, ଋଷି ଇତ୍ୟାଦି ସମ୍ବୋଧନ କରିଥିଲେ ।

ବାଣାବିମୌ ଭଗବତଃ ଶତପତ୍ରପତ୍ରୌ
ଶାନ୍ତାବପୁଙ୍ଖରୁଚିରାବତିତିଗ୍ମଦନ୍ତୌ ।
କସ୍ମୈ ଯୁୟୁଙ୍‌କ୍ଷସି ବନେ ବିଚରନ୍ ନ ବିଦ୍ମଃ
କ୍ଷେମାୟ ନୋ ଜଡ଼ଧିୟାଂ ତବ ବିକ୍ରମୋଽସ୍ତୁ ।୮।

ଶିଷ୍ୟା ଇମେ ଭଗବତଃ ପରିତଃ ପଠନ୍ତି ଗାୟନ୍ତି ସାମ ସରହସ୍ୟମଜସ୍ରମୀଶମ୍ ।
ଯୁଷ୍ମଚ୍ଛିଖାବିଲୁଳିତାଃ ସୁମନୋଽଭିବୃଷ୍ଟୀଃ ସର୍ବେ ଭଜନ୍ତ୍ୟୃଷିଗଣା ଇବ ବେଦଶାଖାଃ ।୯।
ବାଚଂ ପରଂ ଚରଣପଞ୍ଜରତିତ୍ତିରୀଣାଂ ବ୍ରହ୍ମନ୍ନରୂପମୁଖରାଂ ଶୃଣବାମ ତୁଭ୍ୟମ୍ ।
ଲବ୍‌ଧ୍ୱା କଦମ୍ବରୁଚିରଙ୍କବିଟଙ୍କବିମ୍ବେ ଯସ୍ୟାମଲାତପରିଧିଃ କ୍ୱ ଚ ବଲ୍କଲଂ ତେ ।୧୦।

---

ହେ ସୁହୃଦ୍ ! ତୁମ୍ଭେ ଅନୁପମ ସୌନ୍ଦର୍ଯ୍ୟ ଶାଳିନୀ, ତୁମ୍ଭର କଟାକ୍ଷବାଣ ଯୁଗଳ ଅତ୍ୟନ୍ତ ତୀକ୍ଷ୍ଣ, ତୁମ୍ଭର ନେତ୍ର ପଦ୍ମଦ୍ୱୟ ଏହାର ପତ୍ର । ଶୃଙ୍ଗାର ଭାବ ପୂର୍ଣ୍ଣତା ହେତୁ ଏହାର ଗତି ମନ୍ଥର, ପଶ୍ଚାଦ୍‌ଭାଗ ନ ଥିଲେ ମଧ୍ୟ ଏହା ଅତି ସୁନ୍ଦର । କିନ୍ତୁ ଏହାର ଅଗ୍ରଭାଗ ଅତ୍ୟନ୍ତ ତୀକ୍ଷ୍ଣ । କାନନ ମଧ୍ୟରେ ଭ୍ରମଣ କରୁ କରୁ ତୁମ୍ଭେ ଏ ବାଣ କାହା ଉପରେ ନିକ୍ଷେପ କରିବ, ତାହା ମୁଁ ବୁଝି ପାରୁନାହିଁ, ତୁମ୍ଭର ଏ ପରାକ୍ରମରେ ଯେପରି ମୋପରି ଜଡ଼ବୁଦ୍ଧିବ୍ୟକ୍ତିର କୌଣସି ଅନିଷ୍ଟ ନ ଘଟେ । ୮ ।

ହେ ଈଶ ! ତୁମ୍ଭେ ଅସୀମ ଐଶ୍ୱର୍ଯ୍ୟଶାଳୀ, ତୁମ୍ଭର ଏହି ଶିଷ୍ୟବୃନ୍ଦ [ ଅନୁଗତ ଭ୍ରମରବୃନ୍ଦ ] ଚାରିଆଡ଼େ ବେଷ୍ଟନ କରି ସରହସ୍ୟ ସାମବେଦ ଅଜସ୍ର ଉଚ୍ଚାରଣ ଓ ଗାନ କରୁଅଛନ୍ତି । ଋଷିମାନେ ଯେପରି ବେଦଶାଖାର ଅନୁବର୍ତ୍ତନ କରନ୍ତି, ସେହିପରି ତୁମ୍ଭର ଶିଷ୍ୟବୃନ୍ଦ କବରୀ ବିଗଳିତ ପୁଷ୍ପସମୂହର ଅନୁବର୍ତ୍ତନ କରୁ ଅଛନ୍ତି । ୯ ।

ହେ ବ୍ରହ୍ମନ୍ ! ତୁମ୍ଭର ଚରଣସଂଲଗ୍ନ ନୂପୁରରୁ ଗୋଟିଏ ମାତ୍ର ମଧୁରସ୍ୱର ଶ୍ରୁତିଗୋଚର ହେଉଅଛି, କିନ୍ତୁ କିଏ ଶବ୍ଦକରୁଅଛି ତାହା ବୁଝି ପାରୁ ନାହିଁ । ତୁମ୍ଭର ସୁଦୃଢ଼ ନିତମ୍ବମଣ୍ଡଳଦ୍ୱାରା କଦମ୍ବକୁସୁମ ଆଭା ପ୍ରକାଶ ପାଉଅଛି । ଏହି ପୀତକାନ୍ତି ଉପରେ ପୁଣି ଜଳନ୍ତା ଅଙ୍ଗାରମାନ ମଣ୍ଡଳାକାରରେ ପରିବେଷ୍ଟିତ ତୁମ୍ଭର ବଲ୍କଳବସନ କାହିଁଗଲା ? ତୁମ୍ଭେ କିଅଣ ନଗ୍ନ ଅବସ୍ଥାରେ ଏଠାକୁ ଆସିଅଛ ? । ୧୦ ।

---

ତୋ ବେନି କମଳ ଲୋଚନ
ନିଶ୍ଚୟେ ଅନଙ୍ଗର ବାଣ
କାହାକୁ ବିନ୍ଧିବୁ ସୁନ୍ଦରି !
କହ ତୁ ମାୟା ଦୂର କରି
ଯେଉଁ ଲୋକକୁ ଦୟା କରୁ
ଅନଙ୍ଗ ଅନଳେ ନ ମାରୁ ।୮।

ତୋହର ଶିରୁଁ ଶ୍ଳଥ ହୋଇ
କୁସୁମମାନ ପଡ଼ୁଛଇ
ଚରଣପଙ୍କଜେ ତୋହର
ମଧୁର ବାଜଇ ନୂପୁର
ଶବ୍ଦରେ ପୁଲକ ତୋହର
ଉରରେ ଘନ କୁଚଭର

କି ଅବା ଚକ୍ରବାକ ବେନି
ଶବ୍ଦରେ ବହୁଛୁ ଭାମିନି !
ମଧ୍ୟ ଭାଗ ଯେ କୃଶ ତୋର
ଦିଶଇ ଅତି ମନୋହର
ଯହିଁ ମୋ ନୟନ ଯୁଗଳ
ଆଶ୍ରୟ କଲା ସେ ନିଶ୍ଚଳ

ତ୍ୱଂ ସଂଭୃତଂ ରୁଚିରୟୋର୍ଦ୍ୱିଜ ଶୃଙ୍ଗୟୋସ୍ତେ
ମଧ୍ୟେ କୃଶୋ ବହସି ଯତ୍ର ଦୃଶିଃ ଶ୍ରିତା ମେ ।
ପଙ୍କୋଽରୁଣଃ ସୁରଭିରାତ୍ମବିଷାଣ ଈଦୃଗ୍-
ଯେନାଶ୍ରମଂ ସୁଭଗ ମେ ସୁରଭୀକରୋଷି । ୧୧ ।

ଲୋକଂ ପ୍ରଦର୍ଶୟ ସୁହୃତ୍ତମ ତାବକଂ ମେ ଯତ୍ରତ୍ୟ ଇତ୍ଥମୁରସାବୟବାବପୂର୍ବୌ ।
ଅସ୍ମଦ୍ୱିଧସ୍ୟ ମନ ଉନ୍ନୟନୌ ବିଭର୍ତ୍ତି ବହ୍ୱଦ୍ଭୁତଂ ସରସରାସସୁଧାଦି ବକ୍ତ୍ରେ । ୧୨ ।
କା ବାତ୍ମବୃତ୍ତିରଦନାଦ୍ଧବିରଙ୍ଗ ବାତି ବିଷ୍ଣୋଃ କଳାସ୍ୟନିମିଷୋନ୍ମକରୌ ଚ କର୍ଣ୍ଣୌ ।
ଉଦ୍ୱିଗ୍ନମୀନଯୁଗଳଂ ଦ୍ୱିଜପଂକ୍ତିଶୋଚିରାସନ୍ନଭୃଙ୍ଗନିକରଂ ସର ଇନ୍ମୁଖଂ ତେ । ୧୩ ।

---

ହେ ଦ୍ୱିଜ ! ତୁମ୍ଭର ବକ୍ଷସ୍ଥଳରେ ଦୁଇଟି ମନୋହର ଶୃଙ୍ଗ ଦେଖୁଅଛୁ । ଏହା କେଉଁ ଅମୂଲ୍ୟ ରତ୍ନରେ ପରିପୂର୍ଣ୍ଣ ? କାରଣ ତୁମ୍ଭର ମଧ୍ୟଭାଗ କ୍ଷୀଣ ହୋଇ ତୁମ୍ଭେ ତାହା ଅତିକଷ୍ଟରେ ବହନ କରୁଅଛ । ଏଥିରେ କୌଣସି ମନୋହର ବସ୍ତୁ ନ ଥିଲେ ମୋହର ଦୃଷ୍ଟି ଆକର୍ଷଣ କରନ୍ତା କାହିଁକି ? ହେ ସୁଭଗ ! ତୁମ୍ଭର ଏହି ପୟୋଧର ଦ୍ୱୟ ଉପରେ ଏହି ଅପୂର୍ବ ଅରୁଣବର୍ଣ୍ଣ ପଙ୍କ କାହୁଁ ଆଇଲା, ଯଦ୍ଦ୍ୱାରା ତୁମ୍ଭେ ମୋର ଆଶ୍ରମ ଆମୋଦିତ କରୁଅଛ । ୧୧ ।

ହେ ସୁହୃତ୍ତମ ! ଯେଉଁ ସ୍ଥାନର ଅଧିବାସିମାନଙ୍କର ବକ୍ଷସ୍ଥଳ ଏପରି ଅପୂର୍ବ ଅବୟବ ଧାରଣ କରେ, ତୁମ୍ଭର ସେହି ମନୋହର ବାସସ୍ଥାନ ମୋତେ ଦେଖାଇ ଦିଅ । ତୁମ୍ଭର ଏହି ଅବୟବଦ୍ୱୟ ମୋର ଚିତ୍ତକୁ ଚଞ୍ଚଳ କରୁଅଛି । ଏହି ଅଧିବାସିଗଣଙ୍କ ମୁଖରେ ମଧୁରାଳାପ, ବିଳାସ, ଅଧରାମୃତ ଓ ସ୍ମିତ, ନର୍ମ ପ୍ରଭୃତି ବସ୍ତୁ ଆଶ୍ଚର୍ଯ୍ୟ ଜନକ । ୧୨ ।

ହେ ସଖେ ! କେଉଁ ପଦାର୍ଥ ଭକ୍ଷଣକରି ତୁମ୍ଭେ ଏ ଦେହ ଧାରଣ କରିଅଛ ? ତୁମ୍ଭର ଚର୍ଚ୍ଚିତବସ୍ତୁରୁ ଯଜ୍ଞୀୟ ହବିତୁଲ୍ୟ ପବିତ୍ର ଗନ୍ଧ ବାହାରୁ ଅଛି । [ ପାଠାନ୍ତର 'ବିହରଙ୍ଗହ୍ରାତି'- ] ଏହିପରି ପାଠକଲେ ଅର୍ଥ ହେବ ଭୋଜନ ଭିନ୍ନ ତୁମ୍ଭର ଜୀବନ ଯାତ୍ରା ନିର୍ବାହ ହୁଏ । କାରଣ ତୁମ୍ଭେ ବିଷ୍ଣୁ ଅଂଶରେ ଜନ୍ମ । ବିଷ୍ଣୁଙ୍କ କର୍ଣ୍ଣ ତୁଲ୍ୟ ତୁମ୍ଭର କର୍ଣ୍ଣରେ ମଧ ଅନିମେଷ ନେତ୍ର ମକରାକାର କୁଣ୍ଡଳଦ୍ୱୟ ଶୋଭି ପାଉଅଛି । ତୁମ୍ଭର ମୁଖ ସରୋବର ତୁଲ୍ୟ ଦେଖା ଯାଉଅଛି । ତହିଁରେ ତୁମ୍ଭର ଚକ୍ଷୁ ଦ୍ୱୟ ଚଞ୍ଚଳମୀନ ତୁଲ୍ୟ ଏବଂ ଦନ୍ତପଂକ୍ତି ହଂସାବଳୀ ତୁଲ୍ୟ, ସେମାନଙ୍କ ନିକଟରେ କେଶଗୁଚ୍ଛ ଭ୍ରମରରାଜି ତୁଲ୍ୟ ବିରାଜିତ । ୧୩ ।

---

ମୋହର ତପୋବନ ଭୂଇଁ
ଅତିସୁଗନ୍ଧ କଲୁ ତୁହି । ୯-୧୧ ।
ଯାହାର ନୟନ ଗୋଚର
ହୋଇବ ରୂପ ଗୁଣ ତୋର
ସେ କି ଅନଙ୍ଗବଶ ନୋହି
ରହିବ ଏମନ୍ତ କେ ଦେହୀ

ଅଦ୍ଭୁତ ସୁଧାରସ ସାର
ଆନନ୍ଦ କରଇ ଅଧର
ସୁରଙ୍ଗ ଦଶଇ ବାହାରେ
କି ଅବା ଦେବା ପଦ୍ମାନ୍ତରେ
ବିଷ୍ଣୁ କଳାକୁ କି ତୁ ଧରି
ମର୍ତ୍ତ୍ୟକୁ ଅଇଲୁ ସୁନ୍ଦରି

ମକରକୁଣ୍ଡଳ ତୋ କର୍ଣ୍ଣେ
ଚଞ୍ଚଳ ମୀନ କି ନୟନେ,
ତୋହର ଦନ୍ତପନ୍ତି ଦୁଇ
ଦାଡିମମଞ୍ଜିକି ଗଞ୍ଜଇ ।୧୨,୧୩।

ଯୋଽସୌ ତ୍ୱୟା କରସରୋଜହତଃ ପତଙ୍ଗୋ
ଦିକ୍ଷୁ ଭ୍ରମନ୍ ଭ୍ରମତ ଏଜୟତେଽକ୍ଷିଣୀ ମେ ।
ମୁକ୍ତଂ ନ ତେ ସ୍ମରସି ବକ୍ରଜଟାବରୂଥଂ
କଷ୍ଟୋଽନିଲୋ ହରତି ଲମ୍ପଟ ଏଷ ନୀବୀମ୍ । ୧୪ ।
ରୂପଂ ତପୋଧନ ତପଶ୍ଚରତାଂ ତପୋଘ୍ନଂ
ହ୍ୟେତନ୍ନୁ କେନ ତପସା ଭବତୋପଲବ୍ଧମ୍ ।
ଚର୍ତ୍ତୁଂ ତପୋଽର୍ହସି ମୟା ସହ ମିତ୍ର ମହ୍ୟଂ
କିମ୍ବା ପ୍ରସୀଦତି ସ ବୈ ଭବ ଭାବନୋ ମେ । ୧୫ ।
ନ ତ୍ୱାଂ ତ୍ୟଜାମି ଦୟିତଂ ଦ୍ୱିଜଦେବଦତ୍ତଂ ଯସ୍ମିନ୍ ମନୋ ଦୃଗପି ନୋ ନ ବିଯାତି ଲଗ୍ନମ୍
ମାଂ ଚାରୁଶୃଙ୍ଗ୍ୟର୍ହସି ନେତୁମନୁବ୍ରତଂ ତେ ଚିତ୍ତଂ ଯତଃ ପ୍ରତିସରନ୍ତୁ ଶିବାଃ ସଚିବ୍ୟଃ ୧୬।

---

ତୁମ୍ଭର ହସ୍ତପଦ୍ମ ଦ୍ୱାରା ଆଘାତପ୍ରାପ୍ତ ହୋଇ ଏହି କନ୍ଦୁକଟି ଚାରିଆଡ଼େ ବିକ୍ଷିପ୍ତ ହେଉଅଛି ଏବଂ ଚକ୍ଷୁଦ୍ୱୟ ତାହା ଦେଖି ଚଞ୍ଚଳ ହେଉଅଛି, ତୁମ୍ଭର କୁଞ୍ଚିତ କେଶଗୁଚ୍ଛ ଉନ୍ମୁକ୍ତ ହୋଇଅଛି । ତାହା କଅଣ ତୁମ୍ଭେ ଜାଣି ପାରୁନାହଁ । ଏହି ଧୂର୍ତ୍ତ ଲମ୍ପଟ ପବନ ତୁମ୍ଭର କଟିବସ୍ତ୍ର ଉନ୍ମୁକ୍ତ କରୁଅଛି, ତାହା କି ତୁମ୍ଭେ ଲକ୍ଷ୍ୟ କରୁନାହଁ । ୧୪ ।

ହେ ତପୋଧନ ! ତୁମ୍ଭର ଏହି ମନୋହର ରୂପ ତପସ୍ୱୀଗଣଙ୍କର ତପନାଶକ କନ୍ତୁ ତପସ୍ୟା କରି ତୁମ୍ଭେ କି ରୂପ ଲାଭକରିଅଛ ? ହେ ମୋର ମିତ୍ର ! ତୁମ୍ଭେ ଆସି ମୋସହିତ ତପ ଅନୁଷ୍ଠାନ, କର ପ୍ରପଞ୍ଚ ବିସ୍ତାରକାରୀ ଭୂତ ଭାବନ ଭଗବାନ୍ ବ୍ରହ୍ମା ତୁମ୍ଭଙ୍କୁ ମୋର ଭାର୍ଯ୍ୟାକରି ଏଠାକୁ ପଠାଇ ଅଛନ୍ତି କି ? ।୧୫।

ହେ ଦ୍ୱିଜ ! ଦେବଦତ୍ତ ତୁମ୍ଭେ, ତୁମ୍ଭଙ୍କୁ ମୁଁ ପରିତ୍ୟାଗ କରି ନ ପାରେ । ମୋର ମନ ଓ ନୟନ ତୁମ୍ଭଠାରେ ସଂଲଗ୍ନ ହୋଇଅଛି । ତାହା ଆଉ ନିବୃତ୍ତ ହେବ ନାହିଁ, ହେ ପୀନୋନ୍ନତପୟୋଧରେ ! ମୁଁ ତୁମ୍ଭର ଅନୁଗତ, ମୋତେ ତୁମ୍ଭର ଯେଉଁଠାକୁ ଇଚ୍ଛା ସେଠାକୁ ଘେନିଯାଅ ଏବଂ ତୁମ୍ଭର ସଖୀଗଣ ମୋର ଅନୁକୂଳ ଚାରିଣୀ ହେଉନ୍ତୁ । ୧୬ ।

---

ଯେ ତୋର କରପଦ୍ମେ ଧରି
ପତଙ୍ଗ ଖେଳାଉ ସୁନ୍ଦରି !
ତାର ଭ୍ରମଣ କରିବାରେ
ମୋ ଚିତ୍ତ ଭ୍ରମ ସେହୁ କରେ ।୧୪
ଏ ବନ ସରୋବରରେ ମୁହିଁ
କଷ୍ଟେ ତପକୁ ଆଚରଇ
ତପ କି ପୂର୍ଣ୍ଣ ହେଲା ମୋର
ଯେଣୁ ତୁ ନୟନ ଗୋଚର
କି ଅବା ବ୍ରହ୍ମା-ପ୍ରସନ୍ନରେ
ସୁନ୍ଦରି ! ମିଳିଲୁ ମୋଠାରେ ।୧୫।
ପ୍ରସନ୍ନ ହୁଅ ମୋତେ ତୁହି
ମିତ୍ର ଭାବରେ ମୁଁ ଭଜଇ
ତୋତେତ ନ ଛାଡ଼ିବି ମୁହିଁ
ବ୍ରହ୍ମା ଯେ ଦେଲେ ପଠାଇ
ତୋହର ଦେହେ ମୋର ମନ
ରହିଲା ଜାଣୁଛି ନୟନ
ହେ ପୀନସ୍ତନ ଶୁଭ୍ରକେଶୀ
ତୁ ମୋତେ ଘେନ ଗୋ ଆଶ୍ୱାସି
ଚିତ୍ତ ମୋହର ତୋର ଠାଇଁ
ଜାଣୁଛି ରହିଲା ଗୋ ସହି
ସଫଳ କର ତୁହି ଏହା
ସ୍ୱଭାବେ ତୁତ ପୁଣ୍ୟଦେହା ।୧୬।

ଶ୍ରୀଶୁକ ଉବାଚ ।

ଇତି ଲଲନାନୁନୟାତିବିଶାରଦୋ ଗ୍ରାମ୍ୟବୈଦଗ୍‌ଧ୍ୟୟା ପରିଭାଷୟା ତାଂ ବିବୁଧବଧୂଂ ବିବୁଧମତିରଧି ସଭାଜୟାମାସ । ୧୭ ।

ସା ଚ ତତସ୍ତସ୍ୟ ବୀରଯୂଥପତେର୍ବୁଦ୍ଧିଶୀଲରୂପବୟଃଶ୍ରିୟୌଦାର୍ଯ୍ୟେଣ ପରାକ୍ଷିପ୍ତମନାସ୍ତେନ ସହାୟୁତାୟୁତପରିବତ୍ସରୋପଲକ୍ଷଣଂ କାଲଂ ଜମ୍ବୁଦ୍ୱୀପପତିନା ଭୌମସ୍ୱର୍ଗଭୋଗାନ୍ ବୁଭୁଜେ । ୧୮ ।

ତସ୍ୟାମୁ ହ ବା ଆତ୍ମଜାନ୍ ସ ରାଜବର୍ଯ୍ୟ ଆଗ୍ନୀଧ୍ରୋ ନାଭିକିଂପୁରୁଷ ହରିବର୍ଷେଳାବୃତ ରମ୍ୟକ ହିରଣ୍ମୟ କୁରୁଭଦ୍ରାଶ୍ୱକେତୁମାଲସଂଜ୍ଞାନ୍ ନବ ପୁତ୍ରାନଜନୟତ୍ । ୧୯

ସା ତୁ ସୂତ୍ୱାଥ ସୁତାନ୍ ନବାନୁବତ୍ସରଂ ଗୃହ ଏବାପହାୟ ପୂର୍ବଚିତ୍ତିର୍ଭୂୟ ଏବାଜଂ ଦେବମୁପତସ୍ଥେ । ୨୦ ।

---

ଶ୍ରୀଶୁକଦେବ କହିଲେ :—

ହେ ରାଜନ୍ ! ଦେବୋପବୁଦ୍ଧି ରାଜା ଆଗ୍ନୀଧ୍ର ନାରୀ ବଶୀକରଣ ବିଷୟରେ ଅତିଶୟ ପଟୁ ଥିଲେ, ସେ ରତି ଚାତୁର୍ଯ୍ୟମୟ ବିବିଧ ସୁଲଳିତ ବାକ୍ୟଦ୍ୱାରା ସ୍ୱର୍ଗ ଅପ୍‌ସରା ପୂର୍ବଚିତ୍ତିଙ୍କର ସମ୍ୟକ୍ ପ୍ରୀତି ଉତ୍ପାଦନ କରିଥିଲେ । ୧୭ ।

ସେହି ପୂର୍ବଚିତ୍ତି ମଧ୍ୟ ବୀର ଯୂଥପତି ରାଜା ଆଗ୍ନୀଧ୍ରଙ୍କର ବୁଦ୍ଧି, ସ୍ୱଭାବ, ରୂପ, ବିଦ୍ୟା, ବୟସ, ଶୋଭା ଓ ଉଦାରତା ଦ୍ୱାରା ଆକୃଷ୍ଟଚିତ୍ତ ହୋଇ ଅୟୁତାୟୁତବର୍ଷ ନିମିତ୍ତ ତାହାଙ୍କ ସହିତ ଭୌମ ସ୍ୱର୍ଗ ସୁଖ ଉପଭୋଗ କରିଥିଲେ । ୧୮ ।

ସେହି ପୂର୍ବଚିତ୍ତିଙ୍କ ଠାରୁ ରାଜା ଆଗ୍ନୀଧ୍ରଙ୍କର ନାଭି, କିଂପୁରୁଷ, ହରିବର୍ଷ, ଇଳାବୃତ, ରମ୍ୟକ ହିରଣ୍ମୟ, କୁରୁ, ଭଦ୍ରାଶ୍ୱ, କେତୁମାଳ ଏହିପରି ନଅଟି ପୁତ୍ର ଜନ୍ମିଥିଲେ । ୧୯ ।

ପୂର୍ବଚିତ୍ତି ଏହିପରି ଗୋଟିଏ ଗୋଟିଏ ପୁତ୍ର ଉତ୍ପାଦନ କରି ସେମାନଙ୍କୁ ଗୃହରେ ରଖି ପୁନର୍ବାର ଭଗବାନ୍ ବ୍ରହ୍ମାଙ୍କର ଉପାସନା କରିଥିଲେ । ୨୦ ।

---

ଏମନ୍ତେ ବ୍ୟାସନୟ ଯେ ବାଣୀ
ଶୁଣିଲେ କହେ ନୃପମଣି
ନାନା ବିଚିତ୍ର କଥାମାନ
କହି ହରିଲା କନ୍ୟା ମନ । ୧୭ ।
ନୃପକୁମର ରୂପ ଗୁଣ
ଦିବ୍ୟ ଯୌବନ ଶୃଙ୍ଗାରଣ
ଏମନ୍ତ ଗୁଣେ କନ୍ୟାମନ
ତକ୍ଷଣେ ହୋଇଲା ବନ୍ଧନ
ଆଗ୍ନୀଧ୍ର ସଙ୍ଗତେ ସୁନ୍ଦରୀ
ଲକ୍ଷେ ବରଷ ଭୋଗକରି
ଜମ୍ବୁଦ୍ୱୀପର ପତି ଭୁଲେ
ବିବିଧ ଭୋଗକୁ ଭୁଞ୍ଜିଲେ
ସେ ପୂର୍ବଚିତ୍ତିଗର୍ଭେ ଜାତ
ହୋଇଲେ ଅଗ୍ନୀଧ୍ରର ସୁତ
ନାଭି ରମ୍ୟକ କିଂପୁରୁଷ
କୁରୁ ଭଦ୍ରାଶ୍ୱ ହରିବର୍ଷ
ହିରଣ୍ମୟ ଯେ ଇଳାବୃତ
କେତୁମାଳ ଏ ନବ ସୁତ । ୧୮ ।
ବରଷ ବରଷେ ଏହାର
ଜନ୍ମନ୍ତେ ଏ ନବ କୁମର
ଗୃହକୁ ପୂର୍ବଚିତ୍ତି ତେଜି
ବ୍ରହ୍ମାଚରଣେ ପୁଣ ଭଜି । ୧୯ ।
ମାତାର ପୁଣ୍ୟବନ୍ତ କରି
କ୍ରମରେ ଧର୍ମକୁ ଆଚରି
ପିତା ବିଭାଗ ଅନୁମତେ
ଜମ୍ବୁଦ୍ୱୀପକୁ ଯଥୋଚିତେ
ଭୋଗ କରିଲେ ଏ କୁମରେ
ପିତାର ଆଜ୍ଞା ଘେନି ଶିରେ ।୨୦।

ଅଗ୍ନୀଧ୍ରସୁତାସ୍ତେ ମାତୁରନୁଗ୍ରହାଦୌତ୍ପତ୍ତିକେନୈବ ସଂହନନବଲୋପେତାଃ ପିତ୍ରା ବିଭକ୍ତା ଆତ୍ମତୁଲ୍ୟନାମାନି ଯଥାଭାଗଂ ଜମ୍ବୂଦ୍ୱୀପବର୍ଷାଣି ବୁଭୁଜୁଃ । ୨୧ ।

ଆଗ୍ନୀଧ୍ରୋ ରାଜାଽତୃପ୍ତଃ କାମାନାମପ୍ସରସମେବାନୁଦିନମଧିମନ୍ୟମାନସ୍ତସ୍ୟାଃ ସଲୋକତାଂ ଶ୍ରୁତିଭିରବାରୁନ୍ଧ ଯତ୍ର ପିତରୋ ମାଦୟନ୍ତେ । ୨୨ ।

ସମ୍ପରେତେ ପିତରି ନବ ଭ୍ରାତରୋ ମେରୁଦୁହିତୃର୍ମେରୁଦେବୀଂ ପ୍ରତିରୂପାମୁଗ୍ରଦଂଷ୍ଟ୍ରୀଂ ଲତାଂ ରମ୍ୟାଂ ଶ୍ୟାମାଂ ନାରୀଂ ଭଦ୍ରାଂ ଦେବବୀତିମିତି ସଂଜ୍ଞା ନବୋଦ୍ବହନ୍ । ୨୩ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ
ଆଗ୍ନୀଧ୍ରବର୍ଣ୍ଣନଂ ନାମ ଦ୍ୱିତୀୟୋଽଧ୍ୟାୟଃ । ୨ ।

---

ଆଗ୍ନୀଧ୍ରଙ୍କର ପୁତ୍ରମାନେ ଜନନୀଙ୍କର ଅନୁଗ୍ରହରୁ ସ୍ୱଭାବତଃ ଦୃଢାଙ୍ଗ ଓ ବଳିଷ୍ଠ ହୋଇଥିଲେ । ଆଗ୍ନୀଧ୍ର ସେମାନଙ୍କ ମଧ୍ୟରେ ପୃଥିବୀ ବିଭାଗ କରିଦେବାରୁ ସେମାନେ ଆତ୍ମତୁଲ୍ୟ ଅଂଶାନୁସାରେ ଜମ୍ବୁଦ୍ୱୀପର ଏକ ଏକ ଅଂଶର ଅଧିପତି ହୋଇଥିଲେ । ୨୧ ।

ଆଗ୍ନୀଧ୍ର ରାଜା ବିଷୟଭୋଗରେ ତୃପ୍ତହୋଇ ପାରିଲେ ନାହିଁ । ସେ ସର୍ବଦା ଏହି ଅପ୍ସରାକୁ ସର୍ବାପେକ୍ଷା ଅଧିକ ପ୍ରିୟବସ୍ତୁ ବୋଲି ମନେ କରୁଥିଲେ । ସେ ବେଦୋକ୍ତ କର୍ମାନୁଷ୍ଠାନ ଦ୍ୱାରା ଅପ୍ସରାସମାନ ଲୋକ ପ୍ରାପ୍ତ ହୋଇଥିଲେ । ସେହିଲୋକରେ ପିତୃଗଣ ଆମୋଦ ଉପଭୋଗ କରିଥାନ୍ତି । ଆଗ୍ନୀଧ୍ର ପରଲୋକ ଗମନ କରନ୍ତେ ନାଭି ପ୍ରଭୃତି ନଅଭାଇ ଯଥାକ୍ରମେ ମେରୁଦେବୀ, ପ୍ରତିରୂପା, ଉଗ୍ରଦଂଷ୍ଟ୍ରୀ, ଲତା, ରମ୍ୟା, ଶ୍ୟାମା, ନାରୀ, ଭଦ୍ରା ଓ ଦେବବୀତି ନାମ୍ନୀ ନଅକନ୍ୟାଙ୍କର ପାଣିଗ୍ରହଣ କରିଥିଲେ । ୨୩ ।

---

ଏ ଅନ୍ତେ ଅଗ୍ନୀଧ୍ର ରାଜନ
ସକାମେ କରି କର୍ମମାନ
ସେ କଛଦନ ଅନନ୍ତରେ
ଗମିଲେ ସେ ପିତୃଲୋକରେ । ୨୧ ।
ପିତା ପିତୃଲୋକ ଅନ୍ତରେ
ସେ ନବ ଭ୍ରାତେ ସହୋଦରେ
ମେରୁର କନ୍ୟାମାନ ଯେତେ
ବିଭା ହୋଇଲେ ବେଦମତେ
ପ୍ରତିରୂପା ଯେ ନାରୀ ରମ୍ୟା
ମେରୁଦେବୀ ଯେ ଲତା ଶ୍ୟାମା
ଉଗ୍ରଦଂଷ୍ଟ୍ରୀ ଦେବବୀତି
ଭଦ୍ରା ଯେ ଏ ନବ ଦୁହିତା । ୨୨ ।
କହଇ ବିପ୍ର ଜଗନ୍ନାଥ
ଅଗ୍ନୀଧ୍ର ପୁତ୍ରଙ୍କ ଚରିତ ।



## ଦ୍ୱିତୀୟ ଅଧ୍ୟାୟର ବିଶଦାର୍ଥ :—

ଏହି ଅଧ୍ୟାୟରେ ଆଗ୍ନୀଧ୍ରଙ୍କର ତପସ୍ୟା ଓ ପୂର୍ବଚିତ୍ତିନାମ୍ନୀ ସ୍ୱର୍ଗ ଅପ୍ସରାର ପାଣିଗ୍ରହଣ ଓ ନଅଗୋଟି ପୁତ୍ରୋତ୍ପାଦନ ଓ ଅବଶେଷରେ ପିତୃଲୋକ ଲାଭ ଓ ସେହି ପୁତ୍ରମାନଙ୍କର ବିବାହ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ଜମ୍ବୁଦ୍ୱୀପର ପ୍ରତ୍ୟେକ ଭାଗକୁ ବର୍ଷ ବୋଲି ଯାଏ । ଜମ୍ବୁଦ୍ୱୀପର ମଧ୍ୟସ୍ଥଳରେ ସୁବର୍ଣ୍ଣମୟ ମେରୁ ପର୍ବତ ବିଦ୍ୟମାନ । ଏହି ମେରୁର ଉଚ୍ଚତା ଏକଲକ୍ଷ ଯୋଜନ । କିନ୍ତୁ ତାହାରେ କେବଳ ଚଉରାଅଶୀ ହଜାର ଯୋଜନ ଦୃଷ୍ଟିଗୋଚର ହୁଏ, ଅବଶିଷ୍ଟ ଷୋଳହଜାର ଯୋଜନ ପୃଥିବୀ ଗର୍ଭ ମଧ୍ୟରେ ପ୍ରବିଷ୍ଟ । ମେରୁ ଜମ୍ବୁଦ୍ୱୀପର ନଅଟି ବର୍ଷ ମଧ୍ୟରେ ଇଳାବୃତବର୍ଷର ମଧ୍ୟସ୍ଥଳରେ ଅବସ୍ଥିତ । ଇଳାବୃତ ଓ ଅନ୍ୟାନ୍ୟ ବର୍ଷସବୁ ନଅହଜାର ଯୋଜନ ବିସ୍ତୃତ । ମେରୁର ଚାରିଆଡ଼େ ଆହୁରି ଚାରୋଟି ପର୍ବତ ଅଛି । ଏ ଗୁଡ଼ିକ ମେରୁର ଦୃଢ଼ତା ସମ୍ପାଦନ ନିମିତ୍ତ ଖୁଣ୍ଟବନ୍ଧ ରୂପେ ବିଦ୍ୟମାନ । ପୂର୍ବଦିଗରେ ମନ୍ଦର, ଦକ୍ଷିଣରେ ଗନ୍ଧମାଦନ, ପଶ୍ଚିମରେ ବିପୁଳ ଓ ଉତ୍ତରରେ ସୁପାର୍ଶ୍ୱ ପର୍ବତ ଅବସ୍ଥିତ । ଏଠାରେ ଏଗାରହଜାର ଯୋଜନ ଉଚ୍ଚରେ କଦମ୍ବ, ଜମ୍ବୁ, ଶିମ୍ବଳ, ବଟ ବୃକ୍ଷମାନ ଶୋଭିତ । ଜମ୍ବୁବୃକ୍ଷ ଗନ୍ଧମାଦନର ଶିଖର ଦେଶରେ ଅବସ୍ଥିତ । ଏହି ସୁବିଶାଳ ବୃକ୍ଷରୁ ମହାଗଜତୁଲ୍ୟ ଫଳମାନ ପର୍ବତ ପୃଷ୍ଠରେ ପତିତ ହୋଇ ସେଥିରୁ ଯେଉଁ ରସ ନିର୍ଗତ ହେଉଅଛି, ତାହା ନଦରୂପେ ପ୍ରବାହିତ । ତାହା ଗନ୍ଧମାଦନ ପର୍ବତ ନିକଟରେ ପ୍ରବାହିତ, ଏହି ନଦର ନାମ ଜମ୍ବୁନଦ । ଆଗ୍ନୀଧ୍ରଙ୍କର ପୁତ୍ରମାନେ ଏହି ବର୍ଷରୁ ଗୋଟିଏ ଗୋଟିଏ ବର୍ଷରେ ରାଜତ୍ୱ କରିଥିଲେ । ନାଭି ଯେଉଁ ବର୍ଷରେ ରାଜତ୍ୱ କଲେ ତାହା ହିମବର୍ଷ ଏବଂ ହିମାଳୟର ଦକ୍ଷିଣରେ ଅବସ୍ଥିତ, ଏହାର ଅପର ନାମ ଭାରତବର୍ଷ । ନାଭିଙ୍କ ପୁତ୍ରଙ୍କର ନାମ ଋଷଭ ବା ଅଜ । ପୂର୍ବେ ଏହି ଅଂଶ ଅଜନାଭ ନାମରେ ପ୍ରସିଦ୍ଧ ଥିଲା । ଋଷଭଙ୍କ ପୁତ୍ର ଭରତଙ୍କ ସମୟରୁ ଏହା ଭାରତବର୍ଷ ନାମରେ ବିଖ୍ୟାତ । ହିମାଳୟର ଉତ୍ତର ଦିଗରେ ହେମକୂଟ ବର୍ଷ, ତାହା କିମ୍ପୁରୁଷଙ୍କ ଅଂଶଭୁକ୍ତ ହୋଇ କିମ୍ପୁରୁଷ ବର୍ଷ ନାମରେ ବିଖ୍ୟାତ । ହେମକୂଟର ଉତ୍ତରଦିଗରେ ନିଷଧଗିରିର ଦକ୍ଷିଣରେ ଅବସ୍ଥିତଅଂଶକୁ ନୈଷଧବର୍ଷ ବୋଲିଯାଏ । ପୁତ୍ରର ନାମ ଅନୁସାରେ ଏହିବର୍ଷର ନାମ ହରିବର୍ଷ, ନୈଷଧବର୍ଷର ଉତ୍ତରରେ ଇଳାବୃତବର୍ଷ, ଏହି ବର୍ଷମଧ୍ୟରେ ମେରୁପର୍ବତ ଅବସ୍ଥିତ, ମେରୁର ଉତ୍ତରରେ ନୀଳାଚଳବର୍ଷ, ଏହା ରମ୍ୟକଙ୍କର ଅଧିକୃତ ସ୍ଥାନ । ତହିଁର ଉତ୍ତରରେ ଶ୍ୱେତବର୍ଷ । ଏହା ହିରଣ୍ମୟଙ୍କୁ ଆଗ୍ନୀଧ୍ର ଦାନ କରିଲେ । ଶ୍ୱେତବର୍ଷର ଉତ୍ତରରେ ଶୃଙ୍ଗବତ୍ ବର୍ଷ । ଏହା କୁରୁଙ୍କୁ ଦାନ କରିଥିଲେ । ମେରୁର ପୂର୍ବଦିଗସ୍ଥବର୍ଷକୁ ଭଦ୍ରବର୍ଷ ଏବଂ ତତ୍ପୂର୍ବବର୍ତ୍ତୀ ବର୍ଷକୁ ଗନ୍ଧମାଦନବର୍ଷ ବୋଲିଯାଏ । ଏହି ଗନ୍ଧମାଦନବର୍ଷ କେତୁମାଳଙ୍କ ନାମାନୁସାରେ କେତୁମାଳବର୍ଷ ନାମରେ ଆଖ୍ୟାତ ହୋଇଥିଲା ।

ଆଗ୍ନୀଧ୍ର ପିତୃଲୋକକୁ ଗମନ କରିଥିବାର ଏହି ଅଧ୍ୟାୟରୁ ଜଣାଯାଏ । ଉପାସନା ଅନୁସାରେ ଦେବବ୍ରତଗଣ ଦେବଗଣଙ୍କୁ ଏବଂ ପିତୃବ୍ରତଗଣ ପିତୃଗଣଙ୍କୁ, ବିନାୟକାଦି ଭୂତଯାଜିଗଣ ଭୂତଗଣଙ୍କୁ ଏବଂ ଭଗବାନଙ୍କ ଅର୍ଚ୍ଚନାକାରୀଗଣ ଭଗବାନଙ୍କୁ ପ୍ରାପ୍ତ ହୋଇଥାନ୍ତି । ଉପାସକମାନଙ୍କର ସ୍ୱର୍ଗଲୋକକୁ ଗମନ କରିବାର ଦୁଇଟି ମାର୍ଗ ଅଛି, ଗୋଟିଏ ଦେବଯାନ ମାର୍ଗ ଓ ଅନ୍ୟଟି ପିତୃଯାନମାର୍ଗ, ସଗୁଣ ବ୍ରହ୍ମଉପାସକମାନେ କ୍ରମଶଃ କାଳାଭିମାନିନୀ, ଅର୍ଚ୍ଚିରଭିମାନିନୀ, ଶୁକ୍ଳପକ୍ଷାଭିମାନିନୀ, ଉତ୍ତରାୟଣାଭିମାନିନୀ ଦେବତାଙ୍କୁ ପ୍ରାପ୍ତ ହୁଅନ୍ତି । ସେଠାରୁ ଅମାନବ ପୁରୁଷକର୍ତ୍ତୃକ ବ୍ରହ୍ମଲୋକକୁ ନୀତ ହୋଇଥାନ୍ତି । ପରେ ସେହି ସ୍ଥାନରୁ ମୁକ୍ତିଲାଭ କରନ୍ତି । ଯେଉଁମାନେ ପିତୃଯାନମାର୍ଗରେ ଗମନ କରନ୍ତି, ସେମାନେ ଚନ୍ଦ୍ରଲୋକରେହିଁ ଅବସ୍ଥିତ । ଚନ୍ଦ୍ରଲୋକସ୍ଥିତବ୍ୟକ୍ତିମାନେ ପୁନଶ୍ଚ ଏ ସଂସାରକୁ ଫେରି ଆସନ୍ତି, ଆଗ୍ନୀଧ୍ର ଏହି ପିତୃଲୋକରେ ଅବସ୍ଥାନ କରିଥିଲେ ॥

# ତୃ ତୀ ୟ ଅ ଧ୍ୟା ୟ ।

ତୃତୀୟେ ଚରିତଂ ନାଭେଃ ପରଂ ମଙ୍ଗଲମୀର୍ଯ୍ୟତେ ।
ଯସ୍ୟ ଯଜ୍ଞେ ପ୍ରତୀତଃ ସନ୍ ପୁତ୍ରୋଽଭୂଦୃଷଭୋ ହରିଃ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀଶୁକ ଉବାଚ ।

ନାଭିରପତ୍ୟକାମୋଽପ୍ରଜୟା ମେରୁଦେବ୍ୟା ଭଗବନ୍ତଂ ଯଜ୍ଞପୁରୁଷମବହିତାତ୍ମାଽଯଜତ । ୧ ।

ତସ୍ୟ ହ ବାବ ଶ୍ରଦ୍ଧୟା ବିଶୁଦ୍ଧଭାବେନ ଯଜତଃ ପ୍ରବର୍ଗ୍ୟେଷୁ ପ୍ରଚରତ୍ସୁ ଦ୍ରବ୍ୟଦେଶକାଲମନ୍ତ୍ରର୍ତ୍ୱିଗ୍ଦକ୍ଷିଣାବିଧାନଯୋଗୋପପତ୍ତ୍ୟା ଦୁରଧିଗମୋଽପି ଭଗବାନ୍ ଭାଗବତବତ୍ସଲତୟା ସୁପ୍ରତୀକ ଆତ୍ମାନମପରାଜିତଂ ନିଜଜନାଭିପ୍ରେତାର୍ଥବିଧିତ୍ସୟା ଗୃହୀତହୃଦୟୋ ହୃଦୟଙ୍ଗମଂ ମନୋନୟନାନନ୍ଦନାବୟବାଭିରାମମାବିଶ୍ଚକାର । ୨ ।

---

## ନାଭିଚରିତ ଓ ବିଷ୍ଣୁଙ୍କଠାରୁ ବରଲାଭ ।

ତୃତୀୟ ଅଧ୍ୟାୟରେ ନାଭିଙ୍କର ଯଜ୍ଞରେ ବିଷ୍ଣୁ ଆବିର୍ଭୂତ ହୋଇ ବରଦାନ ପୂର୍ବକ ନାଭିଙ୍କର ପୁତ୍ରରୂପେ ଜନ୍ମଗ୍ରହଣ କରିଥିଲେ । ୦ ।

ଶ୍ରୀଶୁକଦେବ କହିଲେ :—

ଆଗ୍ନୀଧ୍ରଙ୍କ ଜ୍ୟେଷ୍ଠପୁତ୍ର ନାଭି ସନ୍ତାନକାମନାରେ ଅପତ୍ୟହୀନା ମହିଷୀ ମେରୁଦେବୀଙ୍କ ସହିତ ଯଜ୍ଞାନୁଷ୍ଠାନକରି ଯଜ୍ଞପୁରୁଷ ଭଗବାନଙ୍କୁ ଅର୍ଚ୍ଚନା କରିଥିଲେ । ୧ ।

ରାଜର୍ଷିନାଭି ଶ୍ରଦ୍ଧା ପୂର୍ବକ ବିଶୁଦ୍ଧଚିତ୍ତରେ ଯାଗ କରିଥିଲେ । କ୍ରମେ ଅପବର୍ଗ୍ୟସଞ୍ଜ୍ଞକ କର୍ମମାନ ସମ୍ପନ୍ନ ହୋଇଥିଲା । ଭଗବାନ୍ ଦ୍ରବ୍ୟ, ଦେଶ, କାଳ, ମନ୍ତ୍ର; ଋତ୍ୱିକ, ଦକ୍ଷିଣା ଓ ବିଧାନ ଏହି ସପ୍ତବିଧ ଯଜ୍ଞାଙ୍ଗ ସମ୍ପାଦନ ଦ୍ୱାରା ଦୁର୍ଲଭ ହେଲେ ମଧ୍ୟ ଭକ୍ତ-ବତ୍ସଳତା ହେତୁ ସେ ନିଜର ଅଭିଳଷିତ ବସ୍ତୁ ପ୍ରଦାନ ନିମିତ୍ତ ଆକୃଷ୍ଟଚିତ୍ତହୋଇ ମନୋନୟନାନନ୍ଦଜନକ ସୁଷ୍ଠୁରୂ ଅବୟବ ଧାରଣକରି ଭକ୍ତଜନ ଦୁର୍ଲଭ, ସୁଖପ୍ରଦ ମୂର୍ତ୍ତିରେ ଯଜ୍ଞସ୍ଥଳରେ ଆବିର୍ଭୂତ ହୋଇଥିଲେ । ୨ ।

---

ତୃତୀୟେ ନାଭିର ଚରିତ । ଋଷଭଦେବ ଯାର ସୁତ ॥

ଶ୍ରୀ ଶୁକ ଉବାଚ—

ଅଗ୍ନୀଧ୍ର ନବପୁତ୍ରଙ୍କରେ
ନାଭିର ପୁତ୍ର ନୋହିବାରେ
ବିପ୍ରର ପୁତ୍ର କାମନାରେ
ତା ପତ୍ନୀ ମେରୁଦେବୀଠାରେ
ଭଗବାନ ଯଜ୍ଞପୁରୁଷେ
ସେ ରାଜା ଭଜିଲା ବିଶ୍ୱାସେ । ୧ ।
ନାଭି ଯେ ଶୁଦ୍ଧଭାବେକରି
ମନ୍ତ୍ରେ ଆହୂତି ଦେଲା ଭରି
ତାହାର ଶ୍ରଦ୍ଧାଭକ୍ତି କରି
ଯଜ୍ଞେ ପ୍ରସନ୍ନ ନରହରି
ଭଗବାନ ଭକ୍ତବତ୍ସଳ
ସେ ସର୍ବ ଆତ୍ମାର କୁଶଳ
ରାଜାର ସନ୍ତୋଷ ନିମନ୍ତେ
ସ୍ୱଚ୍ଛନ୍ଦେ ଅତନ୍ତ୍ରୁଷ୍ଟଚିତ୍ତେ
ମନ-ନୟନାନନ୍ଦ ବେଶ
ଅଗ୍ରେ ହୋଇଲେ ପ୍ରକାଶ ।୨।

ଅଥ ହ ତମାବିଷ୍କୃତଭୁଜଯୁଗଲଦ୍ୱୟଂ ହିରଣ୍ମୟଂ ପୁରୁଷବିଶେଷଂ କପିଶକୌଶେୟାମ୍ବରଧରମୁରସି ବିଲସତ୍ ଶ୍ରୀବତ୍ସଲଲାମମଂଦରବରବନରୁହବନମାଲାଚ୍ଛୂର୍ୟ୍ୟମୃତମଣିଗଦାଦିଭିରୁପଲକ୍ଷିତଂ ସ୍ଫୁଟକିରଣପ୍ରବରମଣିମୟମୁକୁଟକୁଣ୍ଡଳକଟକକଟିସୂତ୍ର ହାରକେୟୂରନୂପୁରାଦ୍ୟଙ୍ଗଭୂଷଣବିଭୂଷିତମୃତ୍ୱିକ୍‌ସଦସ୍ୟ ଗୃହପତୟୋଽଧନା ଇବୋତ୍ତମଧନମୁପଲଭ୍ୟ ସବହୁମାନମର୍ହଣେନାବନତଶୀର୍ଷାଣ ଉପତସ୍ଥୁଃ । ୩ ।

ଶ୍ରୀ ଋତ୍ୱିଜଉଚୁଃ ।ଅର୍ହସି ମୁହୁରର୍ହତ୍ତମାର୍ହଣମସ୍ମାକମନୁପଥାନାମ୍‌-
ନମୋନମ ଇତ୍ୟେତାବତ୍ ସଦୁପଶିକ୍ଷିତମ୍ ।

କୋଽହେତ ପୁମାନ୍ ପ୍ରକୃତଗୁଣବ୍ୟତିକରମତିରନୀଶ ଈଶ୍ୱରସ୍ୟ ପରସ୍ୟ ପ୍ରକୃତିପୁରୁଷୟୋରର୍ବାକ୍ତନାଭିର୍ନାମରୂପାକୃତିଭୀ ରୂପନିରୂପଣମ୍ । ୪ ।



ରାଜା ନାଭିଙ୍କର ବିଷ୍ଣୁ ଆରାଧନା

ଚତୁର୍ଭୁଜ ସମନ୍ୱିତ, କୌଶେୟ ବସନଧାରୀ, ଶ୍ରୀବତ୍ସଲାଞ୍ଛନଶୋଭିତ, ଶଙ୍ଖ, ଚକ୍ର, ଗଦାପଦ୍ମଧାରୀ ବନମାଳୀ କୌସ୍ତୁଭମଣିବିଭୂଷିତ ସମୁଜ୍ଜ୍ୱଳମଣିମୟ ମୁକୁଟ ଏବଂ କାସ୍ତ, କୁଣ୍ଡଳ, କଟୀସୂତ୍ର, ହାର କେୟୁର ଓ ନୂପୁରାଦି ଅଙ୍ଗଭୂଷଣଦ୍ୱାରା ସମଳଙ୍କୃତ ତେଜୋମୟ ପୁରୁଷଙ୍କୁ ଦର୍ଶନକରି, ଦରିଦ୍ର ବହୁମୂଲ୍ୟ ରତ୍ନ ପାଇଲାପରି ଋତ୍ୱିକ ଓ ସଦସ୍ୟ ମାନଙ୍କ ସହିତ ଯଜମାନ ନାଭି ମଧ୍ୟ ବହୁସମ୍ମାନ ସହକାରେ ବିବିଧ ପୂଜୋପହାର ଦ୍ୱାରା ଏହି ଯଜ୍ଞପୁରୁଷଙ୍କୁ ଆରାଧନା କରିଥିଲେ । ୩

ଶ୍ରୀଋତ୍ୱିକଗଣ କହିଲେ :—

ହେ ପୂଜ୍ୟତମ ! ଆମ୍ଭେମାନେ ଆପଣଙ୍କର ଅନୁଗତଭୃତ୍ୟ, ଆପଣ ସର୍ବବିଷୟରେ ପୂର୍ଣ୍ଣକାମ ବା ଆକାଙ୍କ୍ଷା ଶନ୍ୟ ହେଲେହେଁ—ଆମ୍ଭମାନଙ୍କର ପୂଜା ଆପଣ ସ୍ୱୀକାର କରନ୍ତୁ । ଆପଣଙ୍କର ତୁଷ୍ଟି ବିଧାନ

ଭୁଜ ଯୁଗଳ ବେନି ଧରି
ପୀତ ବସନ ଛନ୍ଦି ଧରି
ଶଙ୍ଖ କମଳ ବାମେ ଧରି
ଦକ୍ଷିଣ କରେ ଗଦା ଅରି
ତେଜେ ବିରାଜମାନ ହୋଇ
କୌସ୍ତୁଭ ମଣି କଣ୍ଠେ ଶୋହି
ଅମୂଲ୍ୟ ରତ୍ନ ମୁକ୍ତା ହାର
ବିରାଜମାନ ହୃଦୟର

ବିବିଧ ମଣିମାନଙ୍କରେ
ନିର୍ମିତ ମୁକୁଟ ଶିରରେ
କୁଣ୍ଡଳ କଙ୍କଣ ସୁନ୍ଦର
କଟୀ ମେଖଳା ରତ୍ନସାର
ହାର କେୟୁର ସେ ନୂପୁର
ଏ ଆଦି ଭୂଷଣ ଶରୀର
ସେ ଯଜ୍ଞକର୍ତ୍ତାମାନଙ୍କର
ଉତ୍ସବ ହେଉଛି ମନର

ନିର୍ଦ୍ଧନ ଗୃହପତି ଧନ
କୋଷ ନିଧି ପାଇ ଯେସନ
ତେମନ୍ତ ହୋଇ ଦ୍ୱିଜଗଣ
ଯଜ୍ଞରେ ଥିଲେ ଯେତେ ଜନ
ପରମ ହରଷକୁ ପାଇ
ନମିଲେ ଶିରେ କର ଦେଇ ।୩।
ହେନାଥ ପରମ କାରଣ
ତୁମ୍ଭର ଅମ୍ଭେ ଭୃତ୍ୟଗଣ

ସକଲଜନନିକାୟବୃଜିନନିରସନଶିବତମପ୍ରବରଗୁଣଗଣୈକଦେଶ କଥନାଦୃତେ ।୫।

ପରିଜନାନୁରାଗବିରଚିତଶବଲସଂଶବ୍ଦସଲିଲସିତକିଶଲୟତୁଲସୀଦୂର୍ବାଙ୍କୁରୈରପି ସଂଭୃତୟା ସପର୍ଯ୍ୟୟା କିଲ ପରମ ପରିତୁଷ୍ୟସି । ୬ ।

ଅଥାନୟାପି ନ ଭବତ ଇଜ୍ୟୟୋରୁଭାରଭରୟା ସମୁଚିତମର୍ଥମିହୋପଲଭାମହେ । ୭ ।

ଆତ୍ମନ ଏବାନୁସବନମଞ୍ଜସାବ୍ୟତିରେକେଣ ବୋଭୂୟମାନାଶେଷପୁରୁଷାର୍ଥ ସ୍ୱରୂପସ୍ୟ କିନ୍ତୁ ନାଥାଶିଷ ଆଶାସାନାନାମେତଦଭିସଂରାଧନମାତ୍ରଂ ଭବିତୁମର୍ହସି । ୮ ।

---

ନିମିତ୍ତ ଆମ୍ଭେମାନେ କିଛି କରିବାକୁ ଅସମର୍ଥ । 'ନମୋ ନମଃ' ଏହି ସ୍ତବମାତ୍ର ଆମ୍ଭେମାନେ କରୁଅଛୁ । ସାଧୁଗଣଙ୍କ ନିକଟରୁ ଏହାହିଁ ଆମ୍ଭେମାନେ ଶିକ୍ଷା କରିଅଛୁ । ହେ ଭଗବନ୍ ! ଆପଣ ପ୍ରକୃତିପୁରୁଷର ପରିତତ୍ତ୍ୱ ପରମେଶ୍ୱର, ଆପଣଙ୍କର ତତ୍ତ୍ୱ ଅବଗତ ହେବାକୁ କେହି ସମର୍ଥ ନୁହନ୍ତି । ଜୀବର ଅଶେଷକଳୁଷ ବିନାଶକାରୀ ଓ ମଙ୍ଗଳମୟ ଆପଣଙ୍କର ଗୁଣରାଜି ଓ ଭଗବଦ୍‌ଗୁଣକୀର୍ତ୍ତନବ୍ୟତୀତ ନାମାବୃତ ନିର୍ଦ୍ଦେଶ କରିବାକୁ କେହି ସମର୍ଥ ନୁହନ୍ତି । ୪,୫ ।

ହେ ଶ୍ରେଷ୍ଠ ! ଭୃତ୍ୟମାନେ ଅନୁରାଗ ହେତୁ ଗଦ୍‌ଗଦସ୍ୱରରେ ସ୍ତୁତିବାଦ ଏବଂ ସାମାନ୍ୟବାରି, ପବିତ୍ରପଲ୍ଲବ (ତୁଳସୀ) ଦୁବ ଓ ଯବ ଅଙ୍କୁରାଦିଦ୍ୱାରା ପୂଜା କରିଥା'ନ୍ତି, ତହିଁରେ ଆପଣ ପରିତୁଷ୍ଟହୁଅନ୍ତି ।୬

ହେ ବରେଣ୍ୟ ! ଅନୁରାଗଭିନ୍ନ ଦ୍ରବ୍ୟ, ଦେଶ, କାଳ, ମନ୍ତ୍ର, ଦକ୍ଷିଣାପ୍ରଭୃତି ଅନେକାଙ୍ଗସମୃଦ୍ଧ ଯଜ୍ଞଦ୍ୱାରା ଆପଣ ପରିତୁଷ୍ଟ ହୁଅନ୍ତିନାହିଁ । ୭ ।

ଆପଣଙ୍କଠାରେ ସତତ ଅବିଚ୍ଛିନ୍ନଭାବରେ ଉତ୍ପଦ୍ୟମାନ ଅଶେଷ ପୁରୁଷାର୍ଥଫଳ ପ୍ରସୂତ ପ୍ରଚୁର ଆନନ୍ଦ ଜନ୍ମେ, ଆପଣହିଁ ତାର ନିଜର ସ୍ୱରୂପ, ଯଜ୍ଞାଦି ଅନୁଷ୍ଠାନଦ୍ୱାରା ଆପଣଙ୍କର କୌଣସି ପ୍ରୟୋଜନ ସମ୍ପାଦିତ ହୁଏ ନାହିଁ । ତଥାପି ହେ ନାଥ ! ଏହି ଯଜ୍ଞସାଧନ ମୋପରି ସକାମବ୍ୟକ୍ତିମାନଙ୍କର ମନୋରଥ ସିଦ୍ଧି ନିମିତ୍ତ ଅନୁଷ୍ଠିତ ହୁଏ, କିନ୍ତୁ ଆପଣଙ୍କର ତହିଁରେ କୌଣସି ପ୍ରୟୋଜନ ନ ଥାଏ । ୮ ।

---

ତୁ ସର୍ବପୂଜିତ ଠାକୁର
ସେବାକୁ ଯୋଗ ତୁ ଆମ୍ଭର
ତୋହର ଚରଣାରବିନ୍ଦେ
ନମିଲୁଁ ପରମ ଆନନ୍ଦେ
ତୋର ଭିଆଣ ଏ ଜଗତ
ପ୍ରକୃତି ପୁରୁଷ ସଂଜାତ
ତ୍ରିଗୁଣେ ଜୀବ ବନ୍ଦୀ ହୋଇ
ପ୍ରାଣୀ ଏ ସଂସାରେ ଭ୍ରମଇ
ଯେତେ ସୃଷ୍ଟିର କର୍ତ୍ତାମାନ
ସେ ସର୍ବେ ତୋହର ଅଧୀନ

ହେନାଥ ତୋହର ମହିମା
ସଂଖ୍ୟାରେ କେ କରିବ ସୀମା
ତୋର ଆକୃତି ରୂପ ନାମ
ଧ୍ୟାନେ କରନ୍ତି ନିରୂପଣ
ସାକ୍ଷାତେ ନୁହଇ ଗୋଚର
ହେ ପ୍ରଭୁ ରୂପ ଗୁଣ ତୋର
ତୋହର ନାମ ଉଚ୍ଚାରଣ
ସକଳ ପାପ ବିଧ୍ୱଂସନ
ଅଖିଳ ବ୍ରହ୍ମାଣ୍ଡ ଠାକୁର
ତୁ ନାଥ କରୁଣାସାଗର ।୪-୬ ।

ତୋହରେ ଯେତେ ଜନମାନେ
ଆନନ୍ଦେ ମନର ପ୍ରସନ୍ନେ
ସଲିଳ ଦୁବ ତୁଳସୀରେ
ପୂଜନ୍ତି ତୋହର ପଦ୍ମରେ
ତେଣେ ତୁ ପରମ ସନ୍ତୋଷ
ପ୍ରସନ୍ନ ହେଉ ହୃଷୀକେଶ ।୭।
ଏ ଯଜ୍ଞ ହୋଇଲା ସୁଫଳ
ଯେଣୁ ପ୍ରସନ୍ନ ଆଦିମୂଳ
ସୁଫଳ କି ଅବା ଅପରେ
ହୋଇବ ଏଥୁଁ ଅଧିକରେ

**ତଦ୍‌ଯଥା ବାଲିଶାନାଂ ସ୍ୱୟମାତ୍ମନଃ ଶ୍ରେୟଃ ପରମବିଦୁଷାଂ ପରମପରମପୁରୁଷ ପ୍ରକର୍ଷକରୁଣୟା ସ୍ୱମହିମାନଞ୍ଚାପବର୍ଗାଖ୍ୟମୁପକଳ୍ପୟିଷ୍ୟନ୍ ସ୍ୱୟଂ ନାପଚିତ ଏବେତରବଦିହୋପଲକ୍ଷିତଃ । ୯ ।**

**ଅଥାୟମେବ ବରୋ ହ୍ୟର୍ହତ୍ତମ ଯର୍ହି ବର୍ହିଷି ରାଜର୍ଷେର୍ବରଦର୍ଷଭୋ ଭବାନ୍ ନିଜପୁରୁଷେକ୍ଷଣବିଷୟ ଆସୀତ୍ । ୧୦ ।**

**ଅସଙ୍ଗନିଶିତଜ୍ଞାନାନଳବିଧୂତାଶେଷମଳାନାଂ ଭବତ୍ସ୍ୱଭାବାନାମାତ୍ମାରାମାଣାଂ ମୁନୀନାମନବରତପରିଗୁଣିତଗୁଣଗଣପରମମଙ୍ଗଳାୟନଗୁଣଗଣକଥନୋଽସି । ୧୧ ।**

**ଅଥ କଥଞ୍ଚିତ୍ ସ୍ଖଳନକ୍ଷୁତ୍‌ପତନଜୃମ୍ଭଣଦୁରବସ୍ଥାନାଦିଷୁ ବିବଶାନାଂ ନଃ ସ୍ମରଣାୟ ଜ୍ୱରମରଣଦଶାୟାମପି ସକଳକଶ୍ମଳନିରସନାନି ତବ ଗୁଣକୃତନାମଧେୟାନି ବଚନଗୋଚରାଣି ଭବନ୍ତୁ । ୧୨ ।**

---

ହେ ପ୍ରଭୋ ! ଅଜ୍ଞବ୍ୟକ୍ତିମାନେ ସ୍ୱୟଂ ନିଜର ଶ୍ରେୟ ବୁଝି ପାରନ୍ତି ନାହିଁ । ସେମାନଙ୍କ ନିକଟରେ ପ୍ରକୃଷ୍ଟ କରୁଣାପ୍ରକାଶ ଦ୍ୱାରା ଅପବର୍ଗ ନାମକ ନିଜର ମହିମା ଓ ସେମାନଙ୍କର ଅଭିଳାଷ ପରିପୂର୍ଣ୍ଣ କରିବା ନିମନ୍ତେ ଆପଣ ପୂଜିତ ହୋଇ ମଧ୍ୟ ଅନ୍ୟାନ୍ୟ ସାପେକ୍ଷ୍ୟ ବ୍ୟକ୍ତିଙ୍କ ତୁଲ୍ୟ ପ୍ରତୀୟମାନ ହୋଇଥାନ୍ତି । ସୁତରାଂ ହେ ପରମପୁରୁଷ ! ଏହି ପୂଜାଦ୍ୱାରା ଆପଣଙ୍କର କୌଣସି ଉପକାର ହେଉ ନାହିଁ । ଏହା ଆମ୍ଭମାନଙ୍କର ଉପଯୋଗୀ ଅଟେ । ୯ ।

ହେ ପୂଜ୍ୟତମ ! ଆପଣ ବରଦାତା ବ୍ରହ୍ମାଦି ଦେବତାମାନଙ୍କ ଅପେକ୍ଷା ଶ୍ରେଷ୍ଠ ହେଲେ ମଧ୍ୟ ରାଜର୍ଷି ନାଭିଙ୍କର ଏହି ଯଜ୍ଞରେ ନିଜର ସେବକବୃନ୍ଦଙ୍କୁ ଦର୍ଶନ ଦେଇଅଛନ୍ତି, ଏହି ଦର୍ଶନହିଁ ଆମ୍ଭମାନଙ୍କ ପକ୍ଷରେ ବର ସ୍ୱରୂପ । ୧୦ ।

ବୈରାଗ୍ୟ ସମ୍ପୃକ୍ତ ସୁତୀକ୍ଷ୍ଣ ଜ୍ଞାନାଗ୍ନିରେ ଯେଉଁମାନଙ୍କର ଅଶେଷ କ୍ରୋଧାଦିଦୋଷ ଦଗ୍‌ଧୀଭୂତ ହୋଇଅଛି, ସେହି ଶାନ୍ତସ୍ୱଭାବ ଆତ୍ମାରାମ ମୁନିଗଣ ମଧ୍ୟ ନିରନ୍ତର ପରମମଙ୍ଗଳପ୍ରଦ ଭବଦୀୟ ଗୁଣକୀର୍ତ୍ତନ ମାତ୍ର କରିଥାନ୍ତି । ଦର୍ଶନଲାଭ କରିପାରନ୍ତି ନାହିଁ । ୧୧ ।

ଆପଣଙ୍କର ଦର୍ଶନ ଲାଭ କରି ଆମ୍ଭେମାନେ କୃତାର୍ଥ ହୋଇଥିଲେ ମଧ୍ୟ ଆମ୍ଭେମାନେ କେବଳ ଗୋଟିଏ ବର ପ୍ରାର୍ଥନା କରୁଅଛୁ । ଯଥା କ୍ଷୁଧା, ସ୍ଖଳନ, ପତନ, ଜୃମ୍ଭଣ ଇତ୍ୟାଦି ଦୁରବସ୍ଥା ଗ୍ରସ୍ତ ହେଲେ ମଧ୍ୟ ଓ ଜ୍ୱର ଓ ମରଣଦଶାପନ୍ନ ହେଲେ ମଧ୍ୟ ଯେପରି ଆପଣଙ୍କୁ ସ୍ମରଣକରିପାରୁ ଏବଂ ଯେପରି ଆପଣଙ୍କର ସର୍ବପାପନାଶକ ନାମ ଓ ଗୁଣାଦି ଆମ୍ଭମାନଙ୍କର ରସନା ଉଚ୍ଚାରଣ କରିପାରେ । ୧୨ ।

---

ବାଳକବୁଦ୍ଧି ସେ ଯେସନେ
ତେମନ୍ତ ପ୍ରାୟ ଆମ୍ଭେମାନେ
ପୂର୍ଣ୍ଣ ଯେ ପରମ ପୁରୁଷେ
ଯଜ୍ଞ ଯେ କରୁ ତୋ ବିଶ୍ୱାସେ
ପରମ ଦୟାର ସାଗର
ରାଜାଙ୍କୁ ପ୍ରଭୁ ଦୟାକର ।୮-୧୦।

ଏମନ୍ତ ସ୍ତୁତିର ଶେଷରେ
ଉଗତ ପ୍ରଭୁ ସେ ଅଗ୍ନିରେ
ରାଜାର ଚକ୍ଷୁର ଗୋଚର
ହୋଇଲେ ଅତିମନୋହର ।୧୧
ପୁଣି ବୋଲନ୍ତି ଦ୍ୱିଜଗଣ
ହେ ନାଥ ସାବଧାନେ ଶୁଣ

ଜ୍ଞାନ ଅନଳେ ପାପ ଦହି
ତୋ ପାଦପଦ୍ମଯୁଗ ଧ୍ୟାୟି
ଯେ ଆତ୍ମାରାମ ମୁନିଗଣ
ସେବନ୍ତି ତୋହର ଚରଣ
ତୋହରଗୁଣ ଗୁଣି ମନେ
ସେବନ୍ତି ଅବିରତ ଧ୍ୟାନେ

କଞ୍ଚାୟଂ ରାଜର୍ଷିରପତ୍ୟକାମଃ ପ୍ରଜାଂ ଭବାଦୃଶୀମାଶାସାନ ଈଶ୍ୱରମାଶିଷାଂ ସ୍ୱର୍ଗାପବର୍ଗୟୋରପି ଭଗବନ୍ତମୁପଧାବତି ପ୍ରଜାୟାମର୍ଥପ୍ରତ୍ୟୟୋ ଧନଦମିବାଧନଃ ଫଳୀକରଣମ୍ । ୧୩ ।

କୋ ବା ଇହ ତେଽପରାଜିତୋଽପରାଜିତୟା ମାୟୟାନବସିତପଦବ୍ୟାନାବୃତମତିର୍ବିଷୟବିଷରୟାନାବୃତପ୍ରକୃତିରନୁପାସିତମହଚ୍ଚରଣଃ । ୧୪ ।

ଯଦୁହ ବାବ ତବ ପୁନରଦଭ୍ରକର୍ତ୍ତରିହ ସମାହୂତସ୍ତତ୍ରାର୍ଥଧିୟାଂ ମନ୍ଦାନାଂ ନସ୍ତଦ୍‌ଯଦ୍ଦେବହେଳନଂ ଦେବଦେବାର୍ହସି ସାମ୍ୟେନ ସର୍ବାନ୍ ପ୍ରତିବୋଢୁମବିଦୁଷାମ୍ ।୧୫।

---

ହେ ପ୍ରଭୋ ! ଆମ୍ଭମାନଙ୍କର ଆଉରି ଗୋଟିଏ ବର ପ୍ରାର୍ଥନା କରିବାକୁ ଅଛି । ସ୍ୱର୍ଗ ଓ ଅପବର୍ଗର କର୍ତ୍ତା ତୁମ୍ଭେ । ଆମ୍ଭମାନଙ୍କର ପ୍ରାର୍ଥନା ଅତି ସାମାନ୍ୟ ହେଲେ ମଧ୍ୟ ଏହି ରାଜର୍ଷି ତୁମ୍ଭ ନିକଟରେ, (ଧନଦ ନିକଟରେ ନିର୍ଦ୍ଧନତୁଷକଣା ପ୍ରାର୍ଥନା କଳ୍ପପରି) ଅପତ୍ୟ କାମନା କରୁଅଛନ୍ତି । କାରଣ ପୁତ୍ରଲାଭକୁ ସେ ପୁରୁଷାର୍ଥ ବୋଲି ଜ୍ଞାନ କରୁଅଛନ୍ତି, ଅତଏବ ଏହି ପ୍ରାର୍ଥନା ଆପଣ ପୂରଣ କରନ୍ତୁ । ୧୩ ।

ହେ ପ୍ରଭୋ ! ଏହି ରାଜର୍ଷିଙ୍କର ଏବଂବିଧ ପ୍ରାର୍ଥନା ଅସଙ୍ଗତ ନୁହେଁ, କାରଣ ତୁମ୍ଭର ମାୟା ଅପରାଜିତ, ତାହାର ମାର୍ଗ କେହି ଲକ୍ଷ୍ୟ କରି ପାରନ୍ତି ନାହିଁ । ବିଷୟବିଷର ବେଗଦ୍ୱାରା କାହାର ମତି ଆଚ୍ଛନ୍ନ ନ ହୁଏ ? ଯେ ମହତର ଚରଣସେବାର ସୌଭାଗ୍ୟ ଲାଭ କରିଅଛନ୍ତି, ସେ ଦୁରତ୍ୟୟା ମାୟାରୁ ନିସ୍ତାର ପାଇଅଛନ୍ତି, ମାତ୍ର ଆମ୍ଭମାନଙ୍କର ରାଜର୍ଷିଙ୍କର ସେ ସୌଭାଗ୍ୟ ଘଟିନାହିଁ । ୧୪ ।

ହେ ବହୁକାର୍ଯ୍ୟକାରି ! ଆମ୍ଭେମାନେ ନିତାନ୍ତ ମନ୍ଦବୁଦ୍ଧି, ଆମ୍ଭେମାନେ ତୁମ୍ଭଙ୍କୁ ଅତି କ୍ଷୁଦ୍ରକାର୍ଯ୍ୟ ନିମିତ୍ତ ଏଠାକୁ ଆହ୍ୱାନ କରିଅଛୁଁ । ତେଣୁ ତୁମ୍ଭେ ଆମ୍ଭମାନଙ୍କ ଉପର କ୍ଷମାଗୁଣରେ କ୍ଷମା ଦିଅ । ଆମ୍ଭମାନଙ୍କର ଅଜ୍ଞତା ନିବନ୍ଧନ ଆପଣଙ୍କ ପ୍ରତି ଅବହେଳା ପ୍ରକାଶ କରିଅଛି, କାରଣ ସାମାନ୍ୟ ପୁତ୍ରପ୍ରାପ୍ତି କାମନାରେ ଆପଣଙ୍କୁ ଆହ୍ୱାନ କରିଅଛୁ । ୧୫ ।

---

ତୁ ନାଥ ଅଖିଳ ଠାକୁର
ପରମମଙ୍ଗଳର ଘର । ୧୨ ।
ଆମ୍ଭେ ସକଳ ପ୍ରାଣିଜନ
କରିବୁଁ ତୋହର ସ୍ମରଣ
ସକଳ କଲ୍ମଷ ନାଶନ
ନିର୍ମଳ ତୋ ଗୁଣ ଗାୟନ
ଆମ୍ଭର ମରଣ ଦଶାରେ
ତୋ ନାମ ଥିବ କ ମନରେ
ଏମନ୍ତ ଆଜ୍ଞା ପ୍ରଭୁ କର
ଅଖିଳବ୍ରହ୍ମାଣ୍ଡ ଠାକୁର । ୧୩।
ଏବେ ତୁ ଶୁଣ ଭବତାପ୍ତୀ
ଏ ରାଜା ପୁତ୍ରକାମୀ ହୋଇ

ତୋର ପ୍ରସାଦୁ ଏ ଭୂମର
ମାଗଇ ସଦୃଶତରେ ତୋର
ସ୍ୱର୍ଗଭୋଗ ଯେ ମୋକ୍ଷପଦ
ସକଳ ଦେଇ ତୁ ଗୋବିନ୍ଦ
ଏ ପୁତ୍ର ମାଗଇ ଯେମନ୍ତେ
ତୁଷ ମାଗିବା ଧନବନ୍ତେ ।୧୪।
ଏଥୁ ଅନ୍ତରେ ସେ ରାଜନ
ନିଶ୍ଚଳ ହୋଇ ଏକମନ
ବିଷ୍ଣୁର ମୁଖକୁ ସେ ଚାହିଁ
ହରଷେ ବଚନ ବୋଲଇ
ହେନାଥ ପରମ ମଙ୍ଗଳ
ପ୍ରସନ୍ନ ହୁଅ ଆଦିମୂଳ

ଏ ତୋର ଚରଣାରବିନ୍ଦ
ଆଶ୍ରୟ ନ କରି ଗୋବିନ୍ଦ
ଏ ଭବସାଗରେ ଯେ ଜନ
ମାୟାର ହୁଅନ୍ତି ଅଧୀନ
ସେ ମୂଢ ପ୍ରାଣିମାନଙ୍କର
ହେ ନାଥ ! ଏମନ୍ତ ବେଭାର
ତୋର ଚରଣେ ନ ଭଜନ୍ତି
ଅଜ୍ଞାନେ ସଂସାରେ ପଡନ୍ତି

ଶ୍ରୀଶୁକ ଉବାଚ ।

ଇତି ନିଗଦେନାଭିଷ୍ଟୂୟମାନୋ ଭଗବାନନିମିଷର୍ଷଭୋ ବର୍ଷଧରାଭିବାଦନାଭିବନ୍ଦିତଚରଣଃ ସଦୟମିଦମାହ । ୧୬ ।

ଶ୍ରୀ ଭଗବାନୁବାଚ ।

ଅହୋ ବତାହମୃଷୟୋ ଭବଦ୍‌ଭିରବିତଥଗୀର୍ଭିର୍ବରମସୁଲଭମଭିଯାଚିତୋ ଯଦମୁଷ୍ୟାତ୍ମଜୋ ମୟା ସଦୃଶୋ ଭୂୟାଦିତି । ମମାହମେବାଭିରୂପଃ କୈବଲ୍ୟାତ୍ । ଅଥାପି ବ୍ରହ୍ମବାଦୋ ନ ମୃଷା ଭବିତୁମର୍ହତି । ମମୈବ ହି ମୁଖଂ ଯଦ୍ଦ୍ୱିଜଦେବକୁଲମ୍ । ୧୭ ।

ଅତ ଆଗ୍ନୀଧ୍ରୀୟେଽଂଶକଲୟାଽବତରିଷ୍ୟାମ୍ୟାତ୍ମତୁଲ୍ୟମନୁପଲଭମାନଃ । ୧୮ ।

ଶ୍ରୀଶୁକ ଉବାଚ ।

ଇତି ନିଶାମୟନ୍ତ୍ୟା ମେରୁଦେବ୍ୟାଃ ପତିମଭିଧାୟାନ୍ତର୍ଦଧେ ଭଗବାନ୍ । ୧୯ ।

---

ଶ୍ରୀଶୁକଦେବ କହିଲେ :—

ଏହିପରି ନିଗଦନ କଲାପରେ ସର୍ବଦେବଶ୍ରେଷ୍ଠ ଭଗବାନଙ୍କୁ ସ୍ତୁତିକରନ୍ତେ ଭାରତବର୍ଷାଧିପତି ନାଭି ଋତ୍ୱିକମାନଙ୍କର ଚରଣରେ ପ୍ରଣାମ କରିଥିଲେ । ଋତ୍ୱିକମାନେ ମଧ୍ୟ ଭଗବାନଙ୍କର ଚରଣବନ୍ଦନା କରିଥିଲେ । ତହୁଁ ଭଗବାନ୍ ଦୟାପରବଶ ହୋଇ କହିଲେ । ୧୬ ।

ଶ୍ରୀଭଗବାନ୍ କହିଲେ :—

ହେ ଋଷିଗଣ ! ଆପଣମାନେ ସତ୍ୟବକ୍ତା, ଆପଣମାନେ ପ୍ରାର୍ଥନା କରିଅଛନ୍ତି—ରାଜର୍ଷି ନାଭି ମୋ ତୁଲ୍ୟ ପୁତ୍ର ପ୍ରାପ୍ତ ହେଉନ୍ତୁ, କିନ୍ତୁ ତାହା ଅତ୍ୟନ୍ତ ଦୁର୍ଲଭ, କାରଣ ମୁଁ ଅଦ୍ୱିତୀୟ, ତେଣୁ ମୋ ତୁଲ୍ୟ ଅନ୍ୟ କେହି ନାହିଁ, ବ୍ରହ୍ମାଙ୍କର ବାକ୍ୟ କଦାପି ମିଥ୍ୟା ହୋଇ ନ ପାରେ, ଯେହେତୁ ଦ୍ୱିଜାତିମାନଙ୍କ ମଧ୍ୟରେ ଦେବତୁଲ୍ୟ ବ୍ରାହ୍ମଣ ମୋର ମୁଖ ସଦୃଶ । ୧୭ ।

ମୋ ତୁଲ୍ୟ ଅନ୍ୟକେହି ନଥିବାରୁ ମୁଁ ନାଭିଙ୍କର ପୁତ୍ରରୂପେ ଅବତୀର୍ଣ୍ଣ ହେବାକୁ ସ୍ୱୀକାର କରୁଅଛି ।୧୮

ଶ୍ରୀଶୁକଦେବ କହିଲେ :—ଭଗବାନ୍ ନାଭିଙ୍କ ସମ୍ମୁଖରେ ଏହି କଥା କହନ୍ତେ ତାହା ନାଭିପତ୍ନୀ ମେରୁଦେବୀଙ୍କ ଶ୍ରୁତି ଗୋଚର ହେଲା । ୧୯ ।

---

ସକଳ କର୍ତ୍ତା ତୁ ଈଶ୍ୱର
ତୋର ଭିଆଣ ଏ ସଂସାର
ଏମନ୍ତେ ନାନା ସ୍ତୁତି ଶୁଣି
ଦେବାଧି ଦେବ-ଶିରୋମଣି
ଅଖିଳ ବୃନ୍ଦାରକ ଗଣ
ସେବନ୍ତି ଯାହାର ଚରଣ
ସଦୟ ଚିତ୍ତରୁ ଭଗବାନ
କହନ୍ତି କୋମଳ ବଚନ ।୧୫,୧୬

ଶ୍ରୀ ଭଗବାନୁବାଚ ।
ହେ ସର୍ବ ମୁନିଜନ ଯେତେ
ସ୍ତୁତିରେ ବଶ କଲ ମୋତେ
ମୋର ସଦୃଶ ଏହା ସୁତ
ମାଗିଲ ଏ ବଡ଼ ଅଦ୍ଭୁତ
ମୋହର ରୂପତ ଅପାର
କିରୂପେ ହୋଇବ କୁମର
ତଥାପି ବ୍ରହ୍ମାବାକ୍ୟମାନ
ବ୍ୟର୍ଥ ହୋଇବ କେମନ

ବ୍ରହ୍ମାର କୁଳ ଏ ହୁଅଇ
ମୋହର ପାଳିବା ଯୋଗାଇ
ଏବେ ମୁଁ ପୁତ୍ର ରୂପ ହୋଇ
ଅଂଶରେ ଅବତରିବଇଁ
ରାଜା ସହିତେ ମୁନିଗଣ
ଶୁଣିଲେ ଏମନ୍ତ ବଚନ ।୧୭-୧୮
ଏତେକ କହି ନାରାୟଣ
ଅଗ୍ନିରେ ହେଲେ ଅନ୍ତର୍ଦ୍ଧାନ

ବର୍ହିଷି ତସ୍ମିନ୍ନେବ ବିଷ୍ଣୁଦତ୍ତ ଭଗବାନ୍ ପରମର୍ଷିଭିଃ ପ୍ରସାଦିତୋ ନାଭେଃ ପ୍ରିୟଚିକୀର୍ଷୟା ତଦବରୋଧାୟନେ ମେରୁଦେବ୍ୟାଂ ଧର୍ମାନ୍ ଦର୍ଶୟିତୁକାମୋ ବାତରଶନାନାଂ ଶ୍ରମଣାନାମୃଷୀଣାମୂର୍ଦ୍ଧ୍ୱମନ୍ଥିନାଂ ଶୁକ୍ଳୟା ତନୁବାବତତାର । ୨୦ ।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଋଷଭଦେବାବର୍ତ୍ତୋ ନାମ ତୃତୀୟୋଽଧ୍ୟାୟଃ । ୩ ।

---

ହେ ବିଷ୍ଣୁଦତ୍ତ (ପରୀକ୍ଷିତ) ! ନାଭିଙ୍କ ଯଜ୍ଞରେ ଋଷିମାନେ ସ୍ତୁତିବାକ୍ୟଦ୍ୱାରା ଭଗବାନଙ୍କୁ ପ୍ରସାଦିତ କରନ୍ତେ ଭଗବାନ୍ ନାଭିଙ୍କର ପ୍ରିୟଚିକୀର୍ଷାରେ ଏବଂ ଦିଗମ୍ବର ତପସ୍ୱୀ, ଊର୍ଦ୍ଧ୍ୱରେତା ତପସ୍ୱୀମାନଙ୍କୁ ଧର୍ମମାର୍ଗ ପ୍ରଦର୍ଶନ କରିବା ନିମିତ୍ତ ବିଶୁଦ୍ଧସତ୍ତ୍ୱମୂର୍ତ୍ତିରେ ମେରୁଦେବୀଙ୍କ ଗର୍ଭରେ ଆବିର୍ଭୂତ ହୋଇଥିଲେ ।୨୦।*

---

| | |
|---|---|
| ଏ ଯଜ୍ଞ ମୁନିମାନେ କରି | ସଂସାରେ ଧର୍ମ ବିସ୍ତାରଣ |
| ପ୍ରସନ୍ନ କରାଇଲେ ହରି | ଅବତରିଲେ ନାରାୟଣ । ୧୯,୨୦ |
| ରାଜାର ପ୍ରିୟସ୍ତବ ହୋଇ | ବୋଲଇ ଦାସ ଜଗନ୍ନାଥ |
| ସେ ପ୍ରଭୁ ମେରୁଦେବୀ ଠାରୁ | ରାଜାଯଜ୍ଞସ୍ତୁତି ଚରିତ |



---

* । ବିଷ୍ଣୁଦତ୍ତ ପରୀକ୍ଷିତଙ୍କୁ ସମ୍ବୋଧନ କରି ଶ୍ରୀଶୁକଦେବ କହିବା ଦ୍ୱାରା ତାହାଙ୍କୁ ନିଜେ ମାତୃଗର୍ଭାବସ୍ଥାନ କାଳରେ ଭଗବାନ୍ ଶ୍ରୀକୃଷ୍ଣ ସେହି ଗର୍ଭମଧ୍ୟରେ ପ୍ରବେଶକରି ତାହାଙ୍କୁ ରକ୍ଷା କରିଥିବାର ସ୍ମରଣ କରାଇ ଦେଉଅଛନ୍ତି ।

---

**ବିଶଦାର୍ଥ**—ଏହି ତୃତୀୟ ଅଧ୍ୟାୟରେ ନାଭିପୁତ୍ର କାମୀହୋଇ ଯଜ୍ଞାନୁଷ୍ଠାନକରିଥିବା ଓ ତାହାଙ୍କ ପତ୍ନୀ ମେରୁଦେବୀଙ୍କଗର୍ଭରେ ଭଗବାନ୍ ବିଷ୍ଣୁ ଋଷଭଦେବ ନାମରେ ଅବତୀର୍ଣ୍ଣହୋଇଥିବା ପ୍ରସଙ୍ଗ ବର୍ଣ୍ଣିତହୋଇଅଛି ।

ଆଗ୍ନୀଧ୍ରଙ୍କ ପୁତ୍ରମାନେ ପ୍ରଜାପତି ତୁଲ୍ୟ ପ୍ରଭାବଶାଳୀ ଥିଲେ । ଦିଲୀପ, ଭଗୀରଥ, ଜନକପ୍ରଭୃତିଙ୍କ ତୁଲ୍ୟ ନାଭି ଜଣେ ରାଜର୍ଷିଥିଲେ । ପ୍ରଜାବର୍ଗ ତାହାଙ୍କର ପଦାଙ୍କ ଅନୁସରଣ କରିବେ ଏହି ଉଦ୍ଦେଶ୍ୟରେ ସେ ଯଜ୍ଞାନୁଷ୍ଠାନ କରିଥିଲେ । ଯଜ୍ଞପୁରୁଷ ବିଷ୍ଣୁ ଅର୍ଚ୍ଚିତହୋଇ ଯଜ୍ଞସ୍ଥଳରେ ଉପସ୍ଥିତ ହୋଇଥିଲେ । ଋତ୍ୱିକମାନେ ତାହାଙ୍କୁ ପ୍ରାର୍ଥନା କରନ୍ତେ ସେ ପ୍ରସନ୍ନ ହୋଇ ନାଭିଙ୍କର ପୁତ୍ରରୂପେ ଜନ୍ମିବା ନିମିତ୍ତ ବର ପ୍ରଦାନ କରିଥିଲେ । ଯାଗ, ଯଜ୍ଞ, ତପସ୍ୟା ପ୍ରଭୃତିଦ୍ୱାରା ଭଗବାନ୍ ଲବ୍ଧ ହୁଅନ୍ତି ନାହିଁ । ଭଗବାନ୍ ଶ୍ରୀକୃଷ୍ଣ ଶ୍ରୀମଦ୍ ଭଗବଦ୍‌ଗୀତାରେକହିଅଛନ୍ତି—

'ନାହଂ ବେଦୈର୍ନତପସା ନ ଦାନେନ ନଚେଜ୍ୟୟା ।
ଶକ୍ୟଏବଂବିଧୋ ଦ୍ରଷ୍ଟୁଂ ଦୃଷ୍ଟବାନସି ମାଂ ଯଥା ॥"

ଅର୍ଥାତ୍ ହେ ଅର୍ଜୁନ ! ତୁମ୍ଭେ ମୋର ଏହି ଯେଉଁରୂପ ଦର୍ଶନକଲ ତାହା ବେଦାଧ୍ୟୟନ, ଯଜ୍ଞ, ତପସ୍ୟା ବା ଦାନ ପ୍ରଭୃତିଦ୍ୱାରା ଦର୍ଶନ କରିବା ସମ୍ଭବ ନୁହେଁ । କେବଳ ଐକାନ୍ତିକ ଭକ୍ତିଦ୍ୱାରା ତାହା ମିଳିପାରେ ।

"ଭକ୍ତ୍ୟା ତ୍ୱନନ୍ୟୟା ଶକ୍ୟୋ ହ୍ୟହମେବଂବିଧୋଽର୍ଜୁନ ।
ଜ୍ଞାତୁଂ ଦ୍ରଷ୍ଟୁଂ ଚ ତତ୍ତ୍ୱେନ ପ୍ରବେଷ୍ଟୁଂ ଚ ପରନ୍ତପ ॥"

ଭକ୍ତିଦ୍ୱାରା ଭଗବତ୍‌କୃପା ଲବ୍ଧହୁଏ । ଭଗବତ୍‌କୃପାବଶତଃ ଭଗବତ୍ ଦର୍ଶନ ମିଳେ । ସେହି ଭକ୍ତି ପ୍ରଭାବରୁ ଯଜ୍ଞେଶ୍ୱର ବିଷ୍ଣୁ ନାଭିଙ୍କର ଯଜ୍ଞସ୍ଥଳରେ ଉପସ୍ଥିତ ହୋଇ ପ୍ରାର୍ଥିତବର ପ୍ରଦାନ କରିଥିଲେ ।

## ଚ ତୁ ର୍ଥ ଅ ଧ୍ୟା ୟ ।

ଚତୁର୍ଥେ ଶତପୁତ୍ରସ୍ୟ ରାଜ୍ୟଂ ଋଷେୟପବର୍ଣ୍ଣ୍ୟତେ ।
ଯସ୍ୟ ରାଜ୍ୟେ ଜନଃ ସର୍ବଃ ସନ୍ତୋଷାମୃତନିର୍ବୃତଃ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀ ଶୁକ ଉବାଚ ।

ଅଥ ହ ତମୁତ୍ପତ୍ତ୍ୟୈବାଭିବ୍ୟଜ୍ୟମାନଭଗବଲ୍ଲକ୍ଷଣଂ ସାମ୍ୟୋପଶମବୈରାଗ୍ୟୈଶ୍ୱର୍ଯ୍ୟମହାବିଭୂତିଭିରନୁଦିନମେଧମାନାନୁଭାବଂ ପ୍ରକୃତୟଃ ପ୍ରଜା ବ୍ରାହ୍ମଣା ଦେବତାଶ୍ଚାବନୀତଲସମବନାୟାତିତରାଂ ଜଗୃଧୁଃ । ୧ ।

ତସ୍ୟ ହ ବା ଇତ୍ଥଂ ବର୍ଷ୍ମଣା ବରୀୟସା ବୃହତ୍‌ଶ୍ଳୋକେନ ଚୌଜସା ବଲେନ ଶ୍ରିୟା ଯଶସା ବୀର୍ଯ୍ୟଶୌର୍ଯ୍ୟାଭ୍ୟାଞ୍ଚ ପିତା ଋଷଭ ଇତୀଦଂ ନାମ ଚକାର । ୨ ।

---

### ଋଷଭ ଚରିତ

ଚତୁର୍ଥ ଅଧ୍ୟାୟରେ ରାଜା ଋଷଭଙ୍କର ଶତପୁତ୍ର ଜାତ ହେବା ପ୍ରସଙ୍ଗ ଏବଂ ଋଷଭଙ୍କର ରାଜ୍ୟରେ ପ୍ରଜାମାନେ ଆନନ୍ଦରେ କାଳାତିପାତ କରିବା ବିଷୟ ବର୍ଣ୍ଣିତ ହୋଇ ଅଛି ।

ଶ୍ରୀଶୁକଦେବ କହିଲେ :—

ଚଦନନ୍ତର ମନ୍ତ୍ରିଗଣ, ପ୍ରଜା, ବ୍ରାହ୍ମଣ ଓ ଦେବତାମାନେ ଏହି ବାଳକର ଉତ୍ପତ୍ତିମାତ୍ରକେ ତାହାର ଶରୀରରେ ଧ୍ୱଜ, ବଜ୍ର, ଅଙ୍କୁଶାଦି ବିଷ୍ଣୁ ଚିହ୍ନମାନ ପ୍ରକାଶିତ ହୋଇଥିବା ଏବଂ ଦିନକୁଦିନ ସାମ୍ୟ, ଉପଶମ, ବୈରାଗ୍ୟ, ଐଶ୍ୱର୍ଯ୍ୟ ଓ ମହାବିଭୂତି ଦ୍ୱାରା ତାହାଙ୍କର ପ୍ରଭାବ ବ୍ୟକ୍ତ ହେଉଥିବାର ଜାଣି ସମସ୍ତେ ଇଚ୍ଛା ପ୍ରକାଶ କଲେ ଯେ ଏହି ରାଜପୁତ୍ର ପୃଥିବୀ ପରିପାଳନ କରନ୍ତୁ । ୧ ।

କବିଗଣ ପ୍ରଶଂସିତ ତାହାଙ୍କର ଗୌରବର୍ଣ୍ଣ ଦେହ, ତେଜ, ବଳ, ସୌନ୍ଦର୍ଯ୍ୟ, ଯଶ, ପ୍ରଭାବ ଓ ଉତ୍ସାହ ଦର୍ଶନ କରି ପିତା ନାଭି ଶ୍ରେଷ୍ଠତା ବ୍ୟଞ୍ଜକ ନାମ ଋଷଭ ବୋଲି ନାମକରଣ କରିଥିଲେ । ୨ ।

---

ଚତୁର୍ଥ ଅଧ୍ୟାର ଚରିତ, ଋଷଭେ ଜାତ ଶତେପୁତ୍ର । ତାହାଙ୍କ ରାଜ୍ୟେ ପ୍ରଜାଜନ, ଅତିଆନନ୍ଦେନେଲେଦିନ ॥

ଶ୍ରୀ ଶୁକ ଉବାଚ—

ଏଥୁ ଅନ୍ତରେ ଶୁଣ ରାଜେ
ନାଭିର ହୋଇଲା ତନୟେ
ଯେତେକ ଲକ୍ଷଣ କୃଷ୍ଣଠାରେ
ସକଳ ଅଛି ସେ କୁମରେ
ଶାନ୍ତ ବୈରାଗ୍ୟ ଗୁଣ ଯେତେ
ଐଶ୍ୱର୍ଯ୍ୟ ଆଦି ଏ ସମସ୍ତେ
ଅତି ସୋହାଗେ ବଢୁଥିନେ
ପାଳିତ ହୋଇ ପ୍ରତି ଦିନେ
ଶୁକଳପକ୍ଷେ ଚନ୍ଦ୍ର ଯେହ୍ନେ
ବଢଇ ପୁତ୍ର ଦିନୁ ଦିନେ
ଅମାତ୍ୟ ପ୍ରଜା ଆଦି ଯେତେ
ଦେବତା ବ୍ରାହ୍ମଣ ସହିତେ
ଅବନୀ ଭୁଲେ ଯେତେ ଜନ
ସାନନ୍ଦ ହେଲେ ତାଙ୍କ ମନ ।୧।
ତାହାର ବଳ ରୂପ ଗୁଣ
ଅତି ଅଦ୍ଭୁତ ତା ଲକ୍ଷଣ
ଦେଖି ତାହାର ଚିହ୍ନ ବର୍ଣ୍ଣ
ପିତା ଋଷଭ ଦେଲେ ନାମ । ୨।

ଯସ୍ୟ ହି ଇନ୍ଦ୍ରଃ ସ୍ପର୍ଦ୍ଧମାନୋ ଭଗବାନ୍ ବର୍ଷେ ନ ବବର୍ଷ, ତଦବଧାର୍ଯ୍ୟ ଭଗବାନୃଷଭଦେବୋ ଯୋଗେଶ୍ୱରଃ ପ୍ରହସ୍ୟାତ୍ମଯୋଗମାୟୟା ସ୍ୱଂ ବର୍ଷମଜନାଭଂ ନାମାଭ୍ୟବର୍ଷତ୍ । ୩ ।

ନାଭିସ୍ତୁ ଯଥାଭିଲଷିତଂ ସୁପ୍ରଜାସ୍ତ୍ୱମବରୁଧ୍ୟାତିପ୍ରମୋଦଭରବିହ୍ୱଲୋ ଗଦ୍ଗଦାକ୍ଷରୟା ଗିରା ସ୍ୱୈରଂ ଗୃହୀତନରଲୋକସଧର୍ମ୍ମଂ ଭଗବନ୍ତଂ ପୁରାଣପୁରୁଷଂ ମାୟାବିଲସିତମତିର୍ବତ୍ସ ତାତେତି ସାନୁରାଗମୁପଲାଲୟନ୍ ପରାଂ ନିର୍ବୃତିମୁପଗତଃ । ୪ ।

ବିଦିତାନୁରାଗମାପୌରପ୍ରକୃତିଜନପଦୋ ରାଜା ନାଭିରାତ୍ମଜଂ ସମୟସେତୁରକ୍ଷାୟାମଭିଷିଚ୍ୟ ବ୍ରାହ୍ମଣେଷୂପନିଧାୟ ସହ ମେରୁଦେବ୍ୟା ବିଶାଲାୟାଂ ପ୍ରସନ୍ନନିପୁଣେନ

---

ଭଗବାନ୍ ଇନ୍ଦ୍ରଦେବ ଋଷଭ ଦେବଙ୍କର ପ୍ରଭାବ ଦର୍ଶନ କରି ତାହା ସହ୍ୟ କରି ପାରିଲେ ନାହିଁ ଏବଂ ଈର୍ଷାବଶତଃ ତାହାଙ୍କ ରାଜ୍ୟରେ ବହୁକାଳ ବୃଷ୍ଟି କଲେ ନାହିଁ । ତାହା ଦେଖି ଭଗବାନ୍ ଯୋଗେଶ୍ୱର ଋଷଭଦେବ ଅବହେଳା ଭାବରେ ହାସ୍ୟ କରି ନିଜର ଯୋଗମାୟା ସାହାଯ୍ୟରେ ଅଜନାଭ ନାମକ ମଣ୍ଡଳରେ ବୃଷ୍ଟି କରାଇଥିଲେ । ୩ ।

ପୃଥ୍ୱୀପତି ନାଭି ନିଜର ଅଭିଳାଷ ଅନୁସାରେ ସୁପୁତ୍ର ଲାଭ କରି ଅତିଶୟ ଆନନ୍ଦରେ ବିହ୍ୱଳ ହୋଇଥିଲେ ଏବଂ ଈଶ୍ୱର ମାୟା ହେତୁରୁ ଭଗବାନଙ୍କର ପ୍ରକୃତ ସ୍ୱରୂପ ଅବଗତ ନ ହୋଇ ସ୍ୱେଚ୍ଛାରେ ନରମୂର୍ତ୍ତି ଧାରଣକାରୀ ପୁରାଣପୁରୁଷ ଭଗବାନଙ୍କୁ ହେ ପୁତ୍ର, ହେ ତାତ ଇତ୍ୟାଦି ବାକ୍ୟଦ୍ୱାରା ଲାଳନ ପାଳନ କରୁଥିଲେ । ୪ ।

ରାଜା ନାଭି ପୌର ପ୍ରଭୃତି ଜନଗଣଙ୍କର ମତାବଲମ୍ବୀ ଥିଲେ, ତେଣୁ ସେ ପୌର ଓ ଅମାତ୍ୟ ମାନଙ୍କୁ ନିଜ ପୁତ୍ରପ୍ରତି ଅନୁରକ୍ତ ଜାଣିପାରି ସଦାଶ୍ରୟ ମର୍ଯ୍ୟାଦା ରକ୍ଷାକରିବାର ଭାର ଏବଂ ବ୍ରାହ୍ମଣଗଣଙ୍କ ତତ୍ତ୍ୱାବଧାନଭାର ତାହାଙ୍କ ଉପରେ ଦେଇ ନିଜର ପତ୍ନୀ ମେରୁଦେବୀଙ୍କ ସହିତ ବଦରିକାଶ୍ରମକୁ ଗମନକରି ଏକାଗ୍ରଚିତ୍ତରେ ନିପୁଣ ତପସ୍ୟାରେ ନାରାୟଣରୂପୀ ଭଗବାନ୍ ବାସୁଦେବଙ୍କୁ ଆରାଧନା କରିଥିଲେ ଏବଂ

---

ଯେବେ ତାହାଙ୍କ ସଙ୍ଗତରେ
ବିବାଦ କଲା ପୁରନ୍ଦରେ
ସେ ଭଗବାନ ଯୋଗେଶ୍ୱର
ଋଷଭ ନାମଟି ଯାହାର
ଆପଣା ଯୋଗମାୟା ବଳେ
ଇନ୍ଦ୍ରଙ୍କୁ ନିଗ୍ରହ ଯେ କଲେ ।୩।
ନାଭି ସେ କର୍ମମାନ ଦେଖି
ପୁଲକେ ପୂର୍ଣ୍ଣ କଲା ଆଖି

ବିହ୍ୱଳେ ଗଦଗଦ ହୋଇ
ହେ ପୁତ୍ର ହେ ତାତ ବୋଲଇ
ଯେ ଭଗବାନ ଯୋଗେଶ୍ୱର
ପୁରାଣ ପୁରୁଷ ଠାକୁର
ମାୟାରେ ଅଂଶ ରୂପ ହୋଇ
ଲୀଳାରେ ଶରୀର ବହଇ
ତାହାଙ୍କୁ ପୁତ୍ର ଭାବ କରି
ବଦନେ ବଚନ ଉଚ୍ଚାରି

ସ୍ନେହ ଭାବରେ ସେ ଭଜିଲା
ପରମ ବ୍ରହ୍ମକୁ ପାଇଲା । ୪ ।
ଏଥୁ ଅନ୍ତରେ ନୃପମଣି
ପୁତ୍ରର ବଳ ବୁଦ୍ଧି ଜାଣି
ଆମ୍ନୀୟ ବ୍ରାହ୍ମଣଙ୍କୁ ରଖି
ରାଜତ୍ୱ ପଣ ପୁତ୍ରେ ଦେଇ
ଯେ ମେରୁ ଦେବୀ ପତ୍ନୀ ତାର
ସଙ୍ଗତେ ଘେନି ନୃପବର

ତପସା ସମାଧିଯୋଗେନ ନରନାରାୟଣାଖ୍ୟଂ ଭଗବନ୍ତଂ ବାସୁଦେବମୁପାସୀନଃ କାଲେନ ତନ୍ମହିମାନମବାପ । ୫ ।

ଯସ୍ୟ ହ ପାଣ୍ଡବେୟଶ୍ଳୋକାବୁଦାହରନ୍ତି-
କୋନୁ ତତ୍ କର୍ମ ରାଜର୍ଷେର୍ନାଭେରନ୍ୱାଚରେତ୍ ପୁମାନ୍ ।
ଅପତ୍ୟତାମଗାଦ୍ୟସ୍ୟ ହରିଃ ଶୁଦ୍ଧେନ କର୍ମଣା । ୬ ।
ବ୍ରହ୍ମଣ୍ୟୋଽନ୍ୟଃ କୁତୋ ନାଭେର୍ବିପ୍ରା ମଙ୍ଗଲପୂଜିତାଃ ।
ଯସ୍ୟ ବର୍ହିଷି ଯଜ୍ଞେଶଂ ଦର୍ଶୟାମାସୁରୋଜସା । ୭ ।

ଅଥ ହ ଭଗବାନୃଷଭଦେବଃ ସ୍ୱଂ ବର୍ଷଂ କର୍ମକ୍ଷେତ୍ରମନୁମନ୍ୟମାନଃ ପ୍ରଦର୍ଶିତ-ଗୁରୁକୁଲବାସୋ ଲବ୍ଧବରୈର୍ଗୁରୁଭିରନୁଜ୍ଞାତୋ ଗୃହମେଧିନାଂ ଧର୍ମାନନୁଶିକ୍ଷମାଣୋ

---

କାଳକ୍ରମେ ଭଗବାନଙ୍କର ମହିମାମୟ ବୈକୁଣ୍ଠ ଭୁବନକୁ ଗମନ କରିଥିଲେ । ହେ ପାଣ୍ଡବବଂଶଧର ପରୀକ୍ଷିତ ! ଏ ସମ୍ବନ୍ଧେ ପ୍ରାଚୀନମାନେ ଦୁଇଟି ଶ୍ଳୋକ ବ୍ୟାଖ୍ୟା କରିଥାନ୍ତି । ୫ ।

ଭଗବାନ୍ ବିଷ୍ଣୁ ଯେ ରାଜର୍ଷି ନାଭିଙ୍କର ବିଶୁଦ୍ଧ ଭକ୍ତି ଯୋଗରେ ଅତ୍ୟନ୍ତ ପରିତୁଷ୍ଟ ହୋଇ ତାହାଙ୍କର ପୁତ୍ରରୂପେ ଅବତୀର୍ଣ୍ଣ ହୋଇଥିଲେ, ପରବର୍ତ୍ତୀ ଯୁଗରେ ଏପରି କୌଣସି ବ୍ୟକ୍ତି ଅଛି ଯେ କି ରାଜର୍ଷି ନାଭିଙ୍କୁ ଅନୁକରଣ କରିପାରେ ? । ୬ ।

ଯେଉଁ ନାଭିଙ୍କର ଯଜ୍ଞରେ ବ୍ରାହ୍ମଣଗଣ ଦକ୍ଷିଣାଦ୍ୱାରା ସତ୍କୃତ ହୋଇ ମନ୍ତ୍ରଶକ୍ତିବଳରେ ଭଗବାନ୍ ଯଜ୍ଞେଶ୍ୱରଙ୍କର ଦର୍ଶନଲାଭ କରିଥିଲେ, ଦ୍ୱିଜାତିସୁଲଭତେଜରେ ଉଦ୍ଦୀପ୍ତ ଅନ୍ୟ କିଏ ଆଉଅଛି ଯେ ତାଙ୍କ ସମାନ ହେବ ? । ୭ ।

ତଦନନ୍ତର ଭଗବାନ ଋଷଭ ଦେବ ନିଜର ବର୍ଷ ବା ମଣ୍ଡଳକୁ ନିଜର କର୍ମକ୍ଷେତ୍ର ଭାବି ବିଦ୍ୟାଶିକ୍ଷା ନିମନ୍ତେ ଗୁରୁଗୃହରେ ବାସ କରିବାକୁ ଲାଗିଥିଲେ । ବିଦ୍ୟାଶିକ୍ଷା ସମାପନକରି ଗୁରୁଙ୍କୁ ଉପଯୁକ୍ତ ଦକ୍ଷିଣା ଦେଇ ଗୃହସ୍ଥାଶ୍ରମକୁ ଗୁରୁଙ୍କ ଅନୁମତିକ୍ରମେ ଫେରି ଆସିଥିଲେ ଏବଂ ଗୃହସ୍ଥାଶ୍ରମରେ ଲୋକଶିକ୍ଷା ନିମନ୍ତେ ଶିକ୍ଷା ଦେବାକୁ ଲାଗିଲେ । ଇନ୍ଦ୍ରଦେବ ସନ୍ତୁଷ୍ଟ ହୋଇ ଜୟନ୍ତୀନାମ୍ନୀକନ୍ୟା ତାଙ୍କୁ ପ୍ରଦାନକରିଥିଲେ ।

---

ବିଶାଳା ଆଶ୍ରମେ ରହିଲ
ପରମ ତପ ଆଚରିଲ
ସମାଧି ଯୋଗେ ସେ ରାଜନ
ଚିନ୍ତଇ ପ୍ରଭୁ ଭଗବାନ
କେତେହେଁ ଦିନ ତପ କଲ
ଅନ୍ତେ ସେ ମୁକତି ଲଭିଲ
ଯା ଯଶ ଏ ବେନି ଶ୍ଳୋକରେ
ଗାୟନ କରନ୍ତି ସଂସାରେ ।୫।
ଏମନ୍ତ ସଂସାରେ କେ ହେବ
ନାଭିର କର୍ମକୁ କରିବ

ଯାହାର ଶୁଦ୍ଧ ଭକ୍ତି କରି
ପୁତ୍ର ହୋଇଲେ ନରହରି
ସେ ରାଜା ବିପ୍ରଭକ୍ତ ହୋଇ
ଯଜ୍ଞେ ପୂଜିଲ ଭୂଦେବମାନେ
ଅଗ୍ନିରେ ପ୍ରଭୁ ଚକ୍ରଧର
ଦେଖିଲ ନୟନଗୋଚର । ୬-୭
ଏ ଅନନ୍ତରେ ନୃପ ! ଶୁଣ
ସେ ଯେ ଋଷଭ ଭଗବାନ
ଗୁରୁ କୁଳରେ ବାସ କଲେ
ଲୋକରେ ଧର୍ମ ଦେଖାଇଲେ

ସମସ୍ତ ବିଦ୍ୟା ପୂର୍ଣ୍ଣ କରି
ଗୁରୁଙ୍କ ଆଜ୍ଞା ଶିରେ ଧରି
ଗୃହସ୍ଥ ଧର୍ମ ଆଚରଣ
କରନ୍ତି ସଂସାର ପାଳନ
ଗୁରୁ ସନ୍ତୋଷେ ଦେଲେ ବର
ହୋଇବ ଶତେକ କୁମର
ଏମନ୍ତେ ଗଲା କେତେ ଦିନ
ଋଷଭ ସେ ମହାରାଜନ
ବେଦ ଉଚିତ କର୍ମ ମତେ
ବିବାହୋଇଲେ ଯଥୋଚିତେ

ଜୟନ୍ତ୍ୟାମିନ୍ଦ୍ରଦତ୍ତାୟାମୁଭୟଲକ୍ଷଣଂ କର୍ମ୍ମ ସମାମ୍ନାୟାମ୍ନାତମଭିଯୁଞ୍ଜନ୍ନାତ୍ମଜାନାମାତ୍ମସମାନାନାଂ ଶତଂ ଜନୟାମାସ । ୮ ।

ଯେଷାଂ ଖଲୁ ମହାଯୋଗୀ ଭରତୋ ଜ୍ୟେଷ୍ଠଃ ଶ୍ରେଷ୍ଠଗୁଣ ଆସୀତ୍, ଯେନେଦଂ ବର୍ଷଂ ଭାରତମିତି ବ୍ୟପଦିଶନ୍ତି । ୯ ।

ତମନୁ କୁଶାବର୍ତ୍ତ ଇଳାବର୍ତ୍ତୋ ବ୍ରହ୍ମାବର୍ତ୍ତୋ ମଳୟଃକେତୁର୍ଭଦ୍ରସେନ ଇନ୍ଦ୍ରସ୍ପୃଗ୍ ବିଦର୍ଭଃ କୀକଟ ଇତି ନବ ନବତିପ୍ରଧାନାଃ । ୧୦ ।

କବିର୍ହବିରନ୍ତରୀକ୍ଷଃ ପ୍ରବୁଦ୍ଧଃ ପିପ୍‌ପଲାୟନଃ ।
ଆବିର୍ହୋତ୍ରୋଽଥ ଦ୍ରୁମିଳଶ୍ଚମସଃ କରଭାଜନଃ । ୧୧ ।

---

ସେ ସେହି କନ୍ୟାସହ ବାସକରି ଶ୍ରୁତିସ୍ମୃତି ନିର୍ଦ୍ଦିଷ୍ଟ ଉଭୟବିଧ ଧର୍ମକର୍ମାନୁଷ୍ଠାନ କରିଥିଲେ । ଏହିକନ୍ୟା ଗର୍ଭରେ ତାଙ୍କର ଶତପୁତ୍ର ଜାତ ହୋଇଥିଲେ, ସେମାନେ ତାଙ୍କରିପରି ସୁଗୁଣଯୁକ୍ତ । ୮ ।

ସେମାନଙ୍କ ମଧ୍ୟରେ ମହାଯୋଗୀ ଭରତ ବୟୋଜ୍ୟେଷ୍ଠ ଓ ଗୁଣରେଶ୍ରେଷ୍ଠ ଥିଲେତାଙ୍କର ନାମାନୁସାରେ ଏହିବର୍ଷର ନାମ 'ଭାରତବର୍ଷ' ହୋଇଅଛି । ୯ ।

ଭରତଙ୍କର କନିଷ୍ଠ ଋଷଭଦେବଙ୍କର ନଅଟି ପୁତ୍ରଙ୍କର ନାମ କୁଶାବର୍ତ୍ତ, ଇଳାବର୍ତ୍ତ, ବ୍ରହ୍ମାବର୍ତ୍ତ, ମଳୟ, କେତୁ, ଭଦ୍ରସେନ, ଇନ୍ଦ୍ରସ୍ପୃକ, ବିଦର୍ଭ ଓ କୀକଟ ଅନ୍ୟାନ୍ୟ ନବତିଜଣ ଭାଇଙ୍କ ମଧ୍ୟରେ ଏମାନେ ପ୍ରଧାନ ଥିଲେ । ୧୦ ।

ସେହି ନଅପୁତ୍ରଙ୍କ ପରବର୍ତ୍ତୀ ଅନ୍ୟ ନଅଟି ପୁତ୍ରଙ୍କ ନାମ-କବି, ହବି, ଅନ୍ତରୀକ୍ଷ, ପ୍ରବୁଦ୍ଧ, ପିପ୍ପଳାୟନ ଆବିର୍ହୋତ୍ର, ଦ୍ରୁମିଳ, ଚମସ, କରଭାଜନ । ସେମାନେ ଭାଗବତ ଧର୍ମ ପ୍ରଦର୍ଶକ ଓ ମହାଭାଗବତ ଥିଲେ ।

---

ପୂର୍ବେ ଇନ୍ଦ୍ରର ହୋଇ ଦତ୍ତ
ଯେ କନ୍ୟା ଜୟନ୍ତୀ ବିଦିତ
ତହିଁ ବିବିଧ ଭୋଗ କରି
ଆନନ୍ଦେ ସ୍ୱଚ୍ଛନ୍ଦେ ବିହରି
ଯଥାକାଳରେ ତାହାଙ୍କର
ହୋଇଲେ ଶତେକ କୁମର
ଏହାଙ୍କ ମଧ୍ୟେ ମହାଧୀର
ଜ୍ୟେଷ୍ଠ ଯେ ଭରତ କୁମର
ଏ ଭୂମି ଯାହାର ନାମରେ
"ଭାରତ"ବୋଲାଇ ସଂସାରେ ।୮।
ଏ ଜ୍ୟେଷ୍ଠ ଭରତ ଅନ୍ତରେ
ହୋଇଲେ ଋଷଭ କୁମରେ

ଯେ ଇଳାବର୍ତ୍ତ କୁଶାବର୍ତ୍ତ
ଇନ୍ଦ୍ରସ୍ପୃକ ଯେ ବ୍ରହ୍ମାବର୍ତ୍ତ
ମଳୟକେତୁ ଯେ ନନ୍ଦନ
ବିଦର୍ଭ ଆଉ ଭଦ୍ରସେନ
କୀକଟ ଆଦି ନବପୁତ୍ର
ପଛେ କହିବା ତା ଚରିତ । ୯ ।
ଏହାଙ୍କ ଯେ ନବ ଅନୁଜ
ଶୁଣ କହିବା ମହାରାଜ
ପ୍ରବୁଦ୍ଧ ଯେ ପିପ୍ପଳାୟନ
ଦ୍ରବିଡ ଆବିର୍ହୋତ୍ର ନାମ
ଚମସ ଅନ୍ତରୀକ୍ଷ କବି
କରଭାଜନ ଆଉ ହବି

ଏ ନବ ଶ୍ରେଷ୍ଠ ଭାଗବତ
ପବିତ୍ର କଲେ ସେ ଜଗତ
ପରେ ବସୁଦେବ ନାରଦ
ବେନି ଜନଙ୍କ ଯେ ସମ୍ବାଦ
ସେଠାରେ ବର୍ଣ୍ଣନା ସମସ୍ତ
ହୋଇବ ଶୁଣ ପରୀକ୍ଷିତ । ୧୦ ।
ଏକାଶୀ ପୁତ୍ରଙ୍କ ଚରିତ
ଶୁଣ ରାଜନ ପରୀକ୍ଷିତ
ଶ୍ରୋତ୍ରିୟ ସୁଶୀଳ ମହାନ୍ତ
ପିତା ଆଜ୍ଞାରେ ଅନୁରତ
ସେ ଯଜ୍ଞ କର୍ମରେ ନିପୁଣ
ହୋଇଲେ ବିଶୁଦ୍ଧ ବ୍ରାହ୍ମଣ ।୧୧।

ଇତି ଭାଗବତଧର୍ମଦର୍ଶନା ନବ ମହାଭାଗବତାସ୍ତେଷାଂ ସୁଚରିତଂ ଭଗବନ୍ମହିମୋପବୃଂହିତଂ ବସୁଦେବନାରଦସମ୍ବାଦମୁପଶମାୟନମୁପରିଷ୍ଟାଦ୍‌ବର୍ଣ୍ଣୟିଷ୍ୟାମଃ । ୧୨ ।

ଯବୀୟାଂସ ଏକାଶୀତିର୍ଜାୟନ୍ତେୟାଃ ପିତୁରାଦେଶକରା ମହାଶାଳୀନା ମହାଶ୍ରୋତ୍ରିୟା ଯଜ୍ଞଶୀଳାଃ କର୍ମ୍ମବିଶୁଦ୍ଧା ବ୍ରାହ୍ମଣା ବଭୂବୁଃ । ୧୩ ।

ଭଗବାନୃଷଭସଂଜ୍ଞ ଆତ୍ମତନ୍ତ୍ରଃ ସ୍ୱୟଂ ନିତ୍ୟନିବୃତ୍ତାନର୍ଥପରମ୍ପରଃ କେବଲ ଆନନ୍ଦାନୁଭବ ଈଶ୍ୱର ଏବ ବିପରୀତବତ୍ କର୍ମ୍ମାଣ୍ୟାରଭମାଣଃ କାଲେନାନୁଗତଂ ଧର୍ମ୍ମମାଚରଣେନୋପଶିକ୍ଷୟନ୍ନତଦ୍‌ବିଦାଂ ସମ ଉପଶାନ୍ତୋ ମୈତ୍ରଃ କାରୁଣିକୋ ଧର୍ମ୍ମାର୍ଥଯଶଃପ୍ରଜାନନ୍ଦାମୃତାବରୋଧେନ ଗୃହେଷୁ ଲୋକଂ ନିୟମୟତ୍ । ୧୪ ।

ଯଦ୍‌ଯଚ୍ଛୀର୍ଷଣ୍ୟାଚରିତଂ ତତ୍ତଦନୁବର୍ତ୍ତତେ ଲୋକଃ । ୧୫ ।

---

ସେମାନଙ୍କ ଚରିତ ଭଗବାନଙ୍କ ମହାତ୍ମ୍ୟରେ ପରିପୁଷ୍ଟ । ବସୁଦେବ ଓ ନାରଦଙ୍କ କଥୋପକଥନରେ ଏହା ଅତି ରମଣୀୟଭାବରେ ବ୍ୟକ୍ତ ହୋଇଅଛି । ଏ ଚରିତ ଉପଶମଗୁଣର ଆଦର୍ଶ, ଏହାପରେ ଏକାଦଶସ୍କନ୍ଧରେ ବର୍ଣ୍ଣିତ ହେବ । ୧୧,୧୨ ।

ସେମାନଙ୍କଠାରୁ କନିଷ୍ଠ ଜୟନ୍ତୀ ଦେବୀଙ୍କ ଗର୍ଭଜାତ ଅନ୍ୟ ଏକାଅଶୀଜଣ ପୁତ୍ର ପିତା ଋଷଭଦେବଙ୍କର ଆଜ୍ଞାଧୀନ, ଅତିବିନୀତ, ବେଦବିତ୍, ଯଜ୍ଞକ୍ରିୟାକୁଶଳ, ନିତ୍ୟନୈମିତ୍ତିକ କର୍ମରେ ବିଶୁଦ୍ଧ ଏବଂ ବ୍ରହ୍ମନିଷ୍ଠ ଥିଲେ । ୧୩ ।

ଭଗବାନ ଋଷଭଦେବ ବିଷୟ ଅଧୀନ ନ ହେଲେ ମଧ୍ୟ ଏବଂ ସ୍ୱତଃ ତାଙ୍କର ଅର୍ଥ ନିବୃତ୍ତି ପ୍ରତିନିୟତ ବିଦ୍ୟମାନ ଥିଲେ ମଧ୍ୟ, ସେ ବିଶୁଦ୍ଧ ସଦାନନ୍ଦମୟ ପରମେଶ୍ୱରଙ୍କର ସ୍ୱରୂପ ମାତ୍ର, ତଥାପି ଯେଉଁମାନେ ସଂସାର ଧର୍ମ ବିଷୟରେ ଅନଭିଜ୍ଞ ସେମାନଙ୍କୁ କାଳାନୁଗତ ଧର୍ମାନୁଷ୍ଠାନ ଶିକ୍ଷାଦେବାଲାଗି ସାମ୍ୟ, ଉପଶମ, ମୈତ୍ରୀ, ଓ କରୁଣା ଅବଲମ୍ବନକରି ସେ କର୍ମାନୁଷ୍ଠାନକରି ଧର୍ମ, ଅର୍ଥ, ଯଶ, ସନ୍ତତି, ସୁଖଭୋଗ, ମୋକ୍ଷଲାଭଦ୍ୱାରା ଗୃହାଶ୍ରମରେ ଲୋକମାନଙ୍କୁ ନିୟନ୍ତ୍ରିତ କରିଥିଲେ । ୧୪ ।

ଶ୍ରେଷ୍ଠବ୍ୟକ୍ତିମାନେ ଯେଉଁକାର୍ଯ୍ୟ ଅନୁଷ୍ଠାନକରନ୍ତି, ଅନ୍ୟମାନେ ତାହାର ଅନୁସରଣ କରିଥାନ୍ତି । [ତେଣୁ ଋଷଭଦେବ ଲୋକଶିକ୍ଷାର୍ଥେ କାର୍ଯ୍ୟ କରିଥିଲେ] । ୧୫ ।

---

ଏଥୁ ଉତ୍ତାରେ ସେ ଈଶ୍ୱର
ଋଷଭ ନାମେ ଯୋଗେଶ୍ୱର
ସେ ନିତ୍ୟ ଅବ୍ୟୟ ଅନନ୍ତ
ପରମାନନ୍ଦ ସେ ଅଚ୍ୟୁତ
ମାୟାର ବଳେ ଦେହ ଧରି
ଅନେକ କାଳ ସେ ବିହରି
ଧର୍ମ ଆସ୍ଥିର ଶିକ୍ଷାମାନେ
ଦିଅନ୍ତି ପ୍ରଜା ପୁତ୍ର ଜନେ
ପରମ ଦୟାଳୁ ସେ ପୁଣ
ସର୍ବ ଭୂତରେ ମିତ୍ରପଣ
ପ୍ରତିପାଳନ୍ତି ପ୍ରଜାଜନ
ପୁତ୍ରଙ୍କୁ ପିତାହିଁ ଯେସନ
ବେଦ ପ୍ରମାଣେ ମୁନିଗଣ
ଯେ ପଥ କରନ୍ତି ଦର୍ଶନ
ସେହି ପ୍ରକାରେ ନୃପବର
ପାଳନ କରନ୍ତି ସଂସାର ।୧୨-୧୪।
ଉତ୍ତମକାଳେ ଶୁଦ୍ଧ ଜଳେ
ନାନା ସମ୍ଭାରେ ସେ ଭିଷ୍ଟଳେ
ଅତିସମ୍ପଦ ଅନୁକ୍ରମେ
ଯଜ୍ଞ କରନ୍ତି ଶୁଦ୍ଧମନେ
ଏମନ୍ତେ କଲେ ଯଜ୍ଞଶତ
ବେଦବିହିତ ଯଥୋଚିତ ।୧୫।

ଯଦ୍ୟପି ସ୍ୱବିଦିତଂ ସକଳଧର୍ମଂ ବ୍ରାହ୍ମଂ ଗୁହ୍ୟଂ ବ୍ରାହ୍ମଣୈର୍ଦର୍ଶିତମାର୍ଗେଣ ସାମାଦିଭିରୁପାୟୈର୍ଜନତାମନୁଶଶାସ । ୧୬ ।

ଦ୍ରବ୍ୟଦେଶକାଳବୟଃଶ୍ରଦ୍ଧର୍ତ୍ତ୍ୱିଗ୍‌ବିବିଧୋଦ୍ଦେଶୋପଚିତୈଃ ସର୍ବୈରପି କ୍ରତୁଭିର୍ଯଥୋପଦେଶଂ ଶତକୃତ୍ୱ ଇୟାଜ । ୧୭ ।

ଭଗବତର୍ଷଭେଣ ପରିରକ୍ଷ୍ୟମାଣ ଏତସ୍ମିନ୍ ବର୍ଷେ ନ କଶ୍ଚନ ପୁରୁଷୋ ବାଞ୍ଛତ୍ୟବିଦ୍ୟମାନମିବାତ୍ମନୋଽନ୍ୟସ୍ମାତ୍ କଥଞ୍ଚନ କିମପି କର୍ହିଚିଦବେକ୍ଷତେ ଭର୍ତ୍ତର୍ଯ୍ୟନୁସବନଂ ବିଜୃମ୍ଭିତସ୍ନେହାତିଶୟମନ୍ତରେଣ । ୧୮ ।

ସ କଦାଚିଦଟମାନୋ ଭଗବାନୃଷଭୋ ବ୍ରହ୍ମାବର୍ତ୍ତଗତୋ ବ୍ରହ୍ମର୍ଷିପ୍ରବରସଭାୟାଂ ପ୍ରଜାନାଂ ନିଶାମୟନ୍ତୀନାମାତ୍ମଜାନବହିତାତ୍ମନଃ ପ୍ରଶ୍ରୟପ୍ରଣୟଭରସୁଯନ୍ତ୍ରିତାନପ୍ୟୁପଶିକ୍ଷୟନ୍ନିତି ହୋବାଚ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଋଷଭଦେବାନୁଚରିତେ ନାମ ଚତୁର୍ଥୋଽଧ୍ୟାୟଃ । ୪ ।

---

ସର୍ବଧର୍ମ ଉପଦେଶକ ବେଦରହସ୍ୟ ସମ୍ପୂର୍ଣ୍ଣ ଅବଗତ ଥିଲେ ମଧ୍ୟ ରାଜା ଋଷଭଦେବ, କେବଳ ଲୋକଶିକ୍ଷାର୍ଥ ବ୍ରାହ୍ମଣଗଣଙ୍କ ପ୍ରଦର୍ଶିତ ମାର୍ଗ ଅବଲମ୍ବନକରି ସାମ, ଦାନ, ଭେଦ ଦଣ୍ଡ ଏହି ନୀତି ଚତୁଷ୍ଟୟ ଅବଲମ୍ବନକରି ପ୍ରଜାମାନଙ୍କୁ ଶାସନ କରିଥିଲେ । ୧୬ ।

ରାଜା ଋଷଭଦେବ ଶାସ୍ତ୍ର ଓ ବ୍ରାହ୍ମଣଗଣଙ୍କ ଉପଦେଶାନୁସାରେ ଶତଶତବାର ଦ୍ରବ୍ୟ, ଦେଶ, କାଳ ବୟସ, ଶ୍ରଦ୍ଧା ଋତ୍ୱିକ୍ ଓ ନାନାଦେବତାଙ୍କ ଉପଦେଶରେ ପରିପୁଷ୍ଟ ସକଳପ୍ରକାର ଯଜ୍ଞାନୁଷ୍ଠାନ କରିଥିଲେ ।୧୭।

ଯେଉଁ ସମୟରେ ରାଜା ଋଷଭଦେବ ଏହିଭାରତବର୍ଷ ପାଳନକରିଥିଲେ । ସେତେବେଳେ କୌଣସିବ୍ୟକ୍ତି ଏକମାତ୍ର ରାଜାଙ୍କପ୍ରତି ଏକାନ୍ତ ଭକ୍ତି ପ୍ରଦର୍ଶନ କରିବା ଭିନ୍ନ ଅନ୍ୟ କାହାରଠାରୁ କୌଣସି ଦ୍ରବ୍ୟ ଗ୍ରହଣ କରିବାକୁ ଇଚ୍ଛା ନ କରୁ ଥିଲା ଏବଂ ଆକାଶକୁସୁମ ତୁଲ୍ୟ ଅସତ୍ ଅନ୍ୟ କୌଣସି ପଦାର୍ଥ ପ୍ରତି ଦୃଷ୍ଟିପାତ ମଧ୍ୟ କରୁ ନ ଥିଲା । ୧୮ ।

ଦିନେ ଭ୍ରମଣ କରୁ କରୁ ସେହି ଋଷଭଦେବ ବ୍ରହ୍ମାବର୍ତ୍ତରେ ଆସି ଉପସ୍ଥିତ ହେଲେ ଏବଂ ବ୍ରହ୍ମର୍ଷିମାନଙ୍କ ସଭାରେ ପ୍ରବିଷ୍ଟ ହେଲେ । ପ୍ରଜାମାନେ ଓ ପୁତ୍ରମାନେ ବିନୀତ ଶ୍ରଦ୍ଧାଦ୍ୱାରା ସୁନିୟନ୍ତ୍ରିତ ଓ ସଂଯତଚିତ୍ତ ହେଲେ ମଧ୍ୟ ସେମାନଙ୍କୁ ଶିକ୍ଷା ଦେବାଲାଗି ପରବର୍ତ୍ତୀ ଅଧ୍ୟାୟ ବର୍ଣ୍ଣିତ ବାକ୍ୟମାନ ପ୍ରକାଶ କରିଥିଲେ । ୧୯ ।

---

ଋଷଭ ପାଳନ୍ତେ ଏ ମହୀ
ଏମନ୍ତ କେ ଅବା ଅଛଇ
ଦରିଦ୍ର ଖଳ ହିଂସ୍ର ବାଦୀ
ଅବିଦ୍ୟାବନ୍ତ ଯେ ପ୍ରସିଦ୍ଧି
ଦ୍ରବ୍ୟ ଯାଚନ୍ତାକୁ କରଇ
ଏମନ୍ତ ଜନ କେହି ନାହିଁ
ତାଙ୍କ ଭକତି ବିନୁ ଆର
ଆନ ନ ବାଞ୍ଛନ୍ତି ସେ ନର ।୧୭।

ଏବେ ହୋ ଶୁଣ ସାବଧାନେ
ଋଷଭ ବୁଲି ଏକଦିନେ
ବ୍ରହ୍ମଋଷି–ସଭାରେ ଯାଇ
ତନୟମାନେ ଛନ୍ତି ଯହିଁ
କୋମଳ ମଧୁର ବଚନେ
ଶିକ୍ଷା କରାଇବାର ମନେ
କହନ୍ତି ହିତ ବାକ୍ୟମାନ
ଶୁଣନ୍ତୁ ଯେତେ ସଜ୍ଜନ ।୧୭-୧୯

କହଇ ଜଗନ୍ନାଥ ଦାସ
ଋଷଭ ନାରାୟଣ ଅଂଶ
ତାଙ୍କ ଚରିତ ଯେ ଶୁଣନ୍ତି
ସେ ପ୍ରାଣୀ ସଂସାରୁ ତରନ୍ତି



**ବିଶଦ ବ୍ୟାଖ୍ୟା :**—ଋଷଭଦେବ ଭଗବାନଙ୍କ ଅଂଶରେ ଜନ୍ମ, ସେ ଲୋକଶିକ୍ଷାର୍ଥ ପୃଥିବୀରେ ଅବତୀର୍ଣ୍ଣ ହୋଇଥିଲେ । ଶ୍ରୀମଦ୍ ଭାଗବତର ଏହି ଅଧ୍ୟାୟର ପନ୍ଦର ଶ୍ଳୋକରେ ଯାହା ପ୍ରକାଶ କରାଯାଇଅଛି, ଶ୍ରୀମଦ୍ ଭଗବଦ୍ ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଠିକ ସେହିକଥା କହିଥିଲେ ।

"ଯଦ୍‌ଯଦା ଚରତିଶ୍ରେଷ୍ଠ ସ୍ତତ୍‌ଦେବା ତରେତ୍‌ଜନଃ
ସ ଯତ୍ ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ ।"

ଅର୍ଥାତ୍ ଶ୍ରେଷ୍ଠବ୍ୟକ୍ତିମାନେ ଯେଉଁ ଆଚରଣକରନ୍ତି, ସାଧାରଣ ଲୋକେ ସେହିମାର୍ଗ ଅବଲମ୍ବନ କରନ୍ତି । ଓଡ଼ିଆରେ ଗୋଟିଏ ସାଧାରଣ କଥାରେ ଲୋକେ କହନ୍ତି "ବଡ଼ ନାହାକ ଯେଉଁବାଟେ ଯାଏ ସାନ ନାହାକ ସେଇବାଟେ ଯାଏ ।" ଋଷଭଦେବ ଯଥା ନିୟମରେ ବହୁ ଯଜ୍ଞାନୁଷ୍ଠାନ କଲେ, ତଦ୍ଦ୍ୱାରା ଯେସବୁ ବେଦୋକ୍ତ ଗୁପ୍ତତଥ୍ୟ ସମସ୍ତେ ଅବଗତ ହୁଅନ୍ତି, ଏହାହିଁ ଉଦ୍ଦେଶ୍ୟ । ସେ ବେଦୋକ୍ତ ନୀତି ସାମାଦାନ, ଭେଦ, ଦଣ୍ଡ ଏହିନୀତି ପ୍ରୟୋଗକରି ରାଜ୍ୟ ପରିପାଳନ କରିଥିଲେ । ସେ ନିଜର ଅଭିପ୍ରାୟ ଓ ଉପଦେଶ ପ୍ରଜାବର୍ଗଙ୍କୁ ଓ ଋଷିମାନଙ୍କୁ ଶୁଣାଇଥିଲେ, ଏହି ଉପଦେଶାବଳୀ ପରବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣିତ ।

## ପ ଞ୍ଚ ମ ଅ ଧ୍ୟା ୟ ।

**ପଞ୍ଚମେ ମୋକ୍ଷଧର୍ମୋପଦେଶୈଃ ପୁତ୍ରାନୁଶାସନମ୍ ।**
**ଉକ୍ତଂ ପାରମହଂସ୍ୟଞ୍ଚ ତସ୍ୟ ବୃଦ୍ଧତିତିକ୍ଷୟା । ୦ ।** (ଶ୍ରୀଧରସ୍ୱାମୀ)

**ଶ୍ରୀଋଷଭ ଉବାଚ ।**

**ନାୟଂ ଦେହୋ ଦେହଭାଜାଂ ନୃଲୋକେ କଷ୍ଟାନ୍ କାମାନର୍ହତେ ବିଡ୍‌ଭୁଜାଂ ଯେ ।**
**ତପୋ ଦିବ୍ୟଂ ପୁତ୍ରକା ଯେନ ସତ୍ତ୍ୱଂ ଶୁଦ୍ଧ୍ୟେଦ୍ୟସ୍ମାଦ୍‌ବ୍ରହ୍ମସୌଖ୍ୟନ୍ତ୍ୱନନ୍ତମ୍ । ୧ ।**

### ମୋକ୍ଷଧର୍ମୋପଦେଶ ବା ଋଷଭଦେବଙ୍କ ଅନୁଶାସନ ।

ପଞ୍ଚମ ଅଧ୍ୟାୟରେ ଋଷଭଦେବ ପୁତ୍ରମାନଙ୍କୁ ମୋକ୍ଷମାର୍ଗ ଏବଂ ଭଗବଦ୍‌ବିଷୟ ଉପଦେଶଦେଇ ଶେଷରେ ଯୋଗମାର୍ଗ ଅବଲମ୍ବନ କରିବା ବିଷୟ ବର୍ଣ୍ଣିତ ହୋଇଅଛି । ॰ ।

ଶ୍ରୀଋଷଭଦେବ କହିଲେ :—

ପୁତ୍ରଗଣଙ୍କ ପ୍ରତି ଉପଦେଶ—ହେ ବତ୍ସଗଣ ! ନରଲୋକରେ ଦେହଧାରଣକରି ବିଷ୍ଠାଭୋଜୀ ଶୂକରାଦି ପଶୁ ଦୁଃଖପ୍ରଦ ଯେଉଁ ବିଷୟ ସମୂହ ଭୋଗକରିଥାନ୍ତି, ନରଦେହଧାରୀ ଜୀବଦେହ ସେହି ବିଷୟ ଭୋଗର ଯୋଗ୍ୟ ନୁହେଁ । ଅର୍ଥାତ୍ ନର ଦେହ ଲାଭକରି ବିଷୟଭୋଗଦ୍ୱାରା ସେହି ଶରୀର କ୍ଷୟ କରିବା ଉଚିତ ନୁହେଁ । ପକ୍ଷାନ୍ତରେ ଅପ୍ରାକୃତ ତପସ୍ୟାଦ୍ୱାରା ଅନ୍ତଃକରଣର ବିଶୁଦ୍ଧତା ଲାଭକଲେ, ତଦ୍ୱାରା ଅସୀମ ବ୍ରହ୍ମାନନ୍ଦ ଅନୁଭୂତ ହୁଏ, ସେହି ଦିବ୍ୟ ତପସ୍ୟାହିଁ ମନୁଷ୍ୟ ପକ୍ଷରେ ଉତ୍କୃଷ୍ଟ । ୧ ।

ପୁତ୍ରଙ୍କୁ ମୋକ୍ଷ ମାର୍ଗକହି, ପରମହଂସ ଦୀକ୍ଷା ବହି । ଋଷଭ ଯୋଗଆଚରଣ, ପଞ୍ଚମ ଅଧ୍ୟାୟେ ବର୍ଣ୍ଣନ । ॰ ।

ଶ୍ରୀ ଋଷଭଉବାଚ—
ଶ୍ରେପୁତ୍ରମାନେ ସାବଧାନ
ଶୁଣ ହେ ଆମ୍ଭର ବଚନ

ଯେ ପ୍ରାଣୀ କାମ୍ୟକର୍ମମାନ
ନରଦେହ କରେ ଆଚରଣ
ସେ ପ୍ରାଣୀ ବ୍ୟର୍ଥ ଏ ସଂସାରେ
ପଡ଼େ ନରକେ ମହାଘୋରେ

ଯେ ବ୍ରହ୍ମକର୍ମ ସତ୍ତ୍ୱଗୁଣ
ତପେ ଅନନ୍ତ ଆରାଧନ
ନିର୍ବାଣ ମାର୍ଗ ଏ ବିହିତ
ଶୁଣ କହିବା ପୁତ୍ରେ ସତ୍ୟ । ୧ ।

ମହତ୍ସେବାଂ ଦ୍ୱାରମାହୁର୍ବିମୁକ୍ତେସ୍ତମୋଦ୍ୱାରଂ ଯୋଷିତାଂ ସଙ୍ଗିସଙ୍ଗମ୍ ।
ମହାନ୍ତସ୍ତେ ସମଚିତ୍ତାଃ ପ୍ରଶାନ୍ତା ବିମନ୍ୟବଃ ସୁହୃଦଃ ସାଧବୋ ଯେ । ୨ ।
ଯେ ବା ମୟୀଶେ କୃତସୌହୃଦାର୍ଥା ଜନେଷୁ ଦେହମ୍ଭରବାର୍ତ୍ତିକେଷୁ ।
ଗୃହେଷୁ ଜାୟାତ୍ମଜରାତିମତ୍ସୁ ନ ପ୍ରୀତିଯୁକ୍ତା ଯାବଦର୍ଥାଶ୍ଚ ଲୋକେ । ୩ ।
ନୂନଂ ପ୍ରମତ୍ତଃ କୁରୁତେ ବିକର୍ମ ଯଦିନ୍ଦ୍ରିୟପ୍ରୀତୟ ଆପୃଣୋତି ।
ନ ସାଧୁ ମନ୍ୟେ ଯତ ଆତ୍ମନୋଽୟମସନ୍ନପି କ୍ଲେଶଦ ଆସ ଦେହଃ । ୪ ।

---

ମନୀଷିଗଣ ମହତ୍‌ବ୍ୟକ୍ତିର ସେବାକୁ ମୁକ୍ତିଦ୍ୱାର ଏବଂ କାମିନୀସମାସକ୍ତ ( ବିଷୟାସକ୍ତ ) ବ୍ୟକ୍ତିର ସଂସର୍ଗକୁ ତମ ବା ବନ୍ଧନର ଦ୍ୱାର ବୋଲି ନିର୍ଦ୍ଦେଶ କରିଥାନ୍ତି । ଯେଉଁମାନେ ଅନ୍ୟପ୍ରତି କ୍ରୋଧଶୂନ୍ୟ, ସର୍ବଜୀବରେ ସୌହାର୍ଦ୍ଦ୍ୟଯୁକ୍ତ ଏବଂ ସଦାଚାରସମ୍ପନ୍ନ ସେହି ସମଚିତ୍ତ ବା ବ୍ରହ୍ମନିଷ୍ଠ ସେପରି ପ୍ରଶାନ୍ତ ବା ଭଗବତ୍ ଉପାସକ ବ୍ୟକ୍ତିମାନେ ମହତ୍, ସେହିମାନଙ୍କ ସେବା କରିବ । ୨ ।



ଋଷଭଙ୍କର ପୁତ୍ରମାନଙ୍କୁ ଉପଦେଶ

ଅଥବା ଯେଉଁମାନେ ଈଶ୍ୱରରୂପୀ ମୋଠାରେ ସୌହାର୍ଦ୍ଦ୍ୟକୁ ପରମପୁରୁଷାର୍ଥ ବିବେଚନା କରନ୍ତି ଏବଂ ଯେଉଁମାନେ ଭୋଜନ ପାନାଦି ବିଷୟରେ ଆସକ୍ତବ୍ୟକ୍ତିମାନଙ୍କ ପ୍ରସଙ୍ଗରେ ସମୟ ଅତିବାହିତ ନ କରନ୍ତି, ଯେଉଁମାନଙ୍କର ଗୃହାଶ୍ରମ ପ୍ରତି ଆସକ୍ତି ନାହିଁ ଏବଂ ଜୀବିକା ନିର୍ବାହ ଉପଯୋଗୀ ଅର୍ଥ ଅପେକ୍ଷା ଅଧିକ ଉପାର୍ଜନ କରିବାକୁ ଯେଉଁମାନଙ୍କର ସ୍ପୃହା ନାହିଁ, ସେମାନେ ଯଥାର୍ଥରେ ମହତ୍ । ୩ ।

ଯେତେବେଳେ ଜୀବ ଇନ୍ଦ୍ରିୟ ତୃପ୍ତି ସମ୍ପାଦନ ନିମିତ୍ତ ବ୍ୟସ୍ତ, ସେତେବେଳେ ସେ ଅବଧାନ ଶୂନ୍ୟ ହୋଇ ପାପାଚରଣ କରେ । ସୁତରାଂ ଆତ୍ମା ଯାହାଠାରୁ ଏହି ଅଶେଷ କ୍ଲେଶପ୍ରଦ ଦେହ ଲାଭ କରିଅଛି; ସେହି କର୍ମର ପୁନରନୁଷ୍ଠାନ ମୁଁ ସମୀଚୀନ ମନେ କରେ ନାହିଁ । ୪ ।

---

ସ୍ତ୍ରୀସଙ୍ଗୀସଙ୍ଗ ଆଦି ଯେତେ
ଯେ ତମଦ୍ୱାରଟି ଜଗତେ
ଏ ସର୍ବ ଦୂରେ ପରିହରି
ମହାନ୍ତଜନ-ସେବାକରି
ମହାନ୍ତ ପ୍ରାଣୀ ଅଟେ ସେହି
ପ୍ରଶାନ୍ତ ସାଧୁ ସେ ବୋଲାଇ

ଯେ ଜନ କ୍ରୋଧ ବିବର୍ଜିତ
ଯାହାର ସୁହୃଦ ଜଗତ
ଯେ ପ୍ରାଣୀ ମୋର ପଦ୍ମପାଦେ
ମନ ଅର୍ପିଇ ଅପ୍ରମାଦେ । ୨-୩।
ଯେ ଜନ ଜାୟା ଗୃହ ଧନ
ତନୟ କେଶ ନାନା କର୍ମ

କରଇ ନାନା ଭ୍ରମ ହୋଇ
ଯାବତ ମୋତେ ନ ଭଜଇ
ଅନିତ୍ୟ ଦେହ ନିତ୍ୟ କରେ
ସେ ସାଧୁ ନୁହଇ ସଂସାରେ ।୪।

ପରାଭବସ୍ତାବଦବୋଧଜାତୋ ଯାବନ୍ନ ଜିଜ୍ଞାସତ ଆତ୍ମତତ୍ତ୍ୱମ୍ ।
ଯାବତ୍‌କ୍ରିୟାସ୍ତାବଦିଦଂ ମନୋ ବୈ କର୍ମ୍ମାତ୍ମକଂ ଯେନ ଶରୀରବନ୍ଧଃ । ୫ ।
ଏବଂ ମନଃ କର୍ମବଶଂ ପ୍ରଯୁଂକ୍ତେ ଅବିଦ୍ୟୟାତ୍ମନ୍ୟୁପଧୀୟମାନେ ।
ପ୍ରୀତିର୍ନ ଯାବନ୍ମୟି ବାସୁଦେବେ ନ ମୁଚ୍ୟତେ ଦେହଯୋଗେନ ତାବତ୍ । ୬ ।
ଯଦା ନ ପଶ୍ୟତ୍ୟୟଥା ଗୁଣେହାଂ ସ୍ୱାର୍ଥେ ପ୍ରମତ୍ତଃ ସହସା ବିପଶ୍ଚିତ୍ ।
ଗତସ୍ମୃତିର୍ବିନ୍ଦତି ତତ୍ର ତାପାନାସାଦ୍ୟମୈଥୁନ୍ୟମଗାରମଜ୍ଞଃ । ୭ ।
ପୁଂସଃ ସ୍ତ୍ରିୟା ମିଥୁନୀଭାବମେତଂ ତୟୋର୍ମିଥୋ ହୃଦୟଗ୍ରନ୍ଥିମାହୁଃ ।
ଅତୋ ଗୃହକ୍ଷେତ୍ରସୁତାପ୍ତବିତ୍ତୈର୍ଜନସ୍ୟ ମୋହୋଽୟମହଂ ମମେତି । ୮ ।

---

ଯେତେଦିନଯାଏ ଜୀବ ଆତ୍ମତତ୍ତ୍ୱଜ୍ଞାନ ଲାଭ ନ କରେ, ସେତେଦିନଯାଏ ଅଜ୍ଞାନହେତୁ ଦେହାଦି-ଦ୍ୱାରା ଆତ୍ମାର ସ୍ୱରୂପ ତିରୋହିତ ହୋଇ ରହେ । ଯେତେଦିନ ଯାଏ କ୍ରିୟା ଥିବ, ସେତେଦିନଯାଏ ମନର କର୍ମସ୍ୱଭାବ ରହିଥାଏ, ସେହି କର୍ମ ସ୍ୱଭାବ ମନରୁ ଆତ୍ମାର ଦେହାଦି ବନ୍ଧନ ଜନ୍ମିଥାଏ । ୫ ।

ଯେତେଦିନଯାଏ ଜୀବ ଅବିଦ୍ୟାଯୁକ୍ତ ଥାଏ, ସେତେଦିନଯାଏ କର୍ମ ମନକୁ ନିଜର ଅଧୀନ କରି ପୁନର୍ବାର କର୍ମରେ ପ୍ରବୃତ୍ତ କରେ । ଆତ୍ମାସ୍ୱରୂପ ବାସୁଦେବରୂପୀ ମୋଠାରେ ଭକ୍ତିଯୋଗ ଉତ୍ପନ୍ନ ନ ହେଲେ ଅର୍ଥାତ୍ ଅବିଦ୍ୟା ବା ଅଜ୍ଞାନ ଦୂରୀଭୂତ ନ ହେବାଯାଏ ବିଷୟ ସମ୍ବନ୍ଧ ଦେହକୁ ଛାଡ଼େ ନାହିଁ । ୬ ।

ଯାବତ୍ ସ୍ୱାର୍ଥ ପ୍ରମତ୍ତ ଜୀବ ବିବେକ ଆଶ୍ରୟ କରି ଇନ୍ଦ୍ରିୟ ଘଟିତ ବ୍ୟାପାରମାନଙ୍କୁ ମିଥ୍ୟା ଅର୍ଥାତ୍ ଆତ୍ମାର ନୁହେଁ ବୋଲି ନିଶ୍ଚୟ ନ କରେ, ତାବତ୍ ସହସା ଆତ୍ମାର ସ୍ୱରୂପ ସ୍ମୃତିଶୂନ୍ୟ ଥିବାରୁ ଅଜ୍ଞାନ ହେତୁ ମିଥୁନ ସୁଖ ପ୍ରଧାନ ସଂସାର ଗୃହ ପ୍ରାପ୍ତହୋଇ ସୁଦ୍ଧା ତାହାକୁ ଅସୀମ ଦୁଃଖ ଲାଭ କରିବାକୁ ହୁଏ । ୭ ।

ପୁରୁଷ ଓ ସ୍ତ୍ରୀର ଏହି ମିଥୁନଭାବକୁ ପଣ୍ଡିତମାନେ ସେମାନଙ୍କର ହୃଦୟର ପରସ୍ପର ଗ୍ରନ୍ଥି ବୋଲି କହି ଅଛନ୍ତି । ଏହି ମିଥୁନଭାବ ହେତୁ ଲୋକର ଗୃହ, ସ୍ତ୍ରୀ, ପୁତ୍ର, ବନ୍ଧୁ, ବାନ୍ଧବ, ବିତ୍ତ, ବିଷୟ, ଅହଂକାର ଓ 'ମୁଁ' ଭାବ ଇତ୍ୟାଦି ମହାଭିମାନ ଜନ୍ମିଥାଏ । ୮ ।

---

ତାବତ ପରାଭବ ପାଇ
ଯାବତ ଆତ୍ମା ନ ଚିହ୍ନଇ
ଯାବତ ନାନା କର୍ମ କରେ
ମନ ବଢ଼ାଇ ନିରନ୍ତରେ
ତାବତ କର୍ମବଶ ହୋଇ
ନାନାଦି ଶରୀର ବହଇ
ଅବ୍ୟୟ ବାସୁଦେବ ମୁହିଁ
ମୋରେ ଯାହାର ପ୍ରୀତି ନାହିଁ
ସେ ନୋହେ ଦେହବନ୍ଧୁ ପାର
ଯେଣୁ ନ ଚିହ୍ନେ ସେ ଈଶ୍ୱର ।୫।୬
ସ୍ୱପନ ପ୍ରାୟ ଦେହେ ନର
କରଇ ନାନା ଅହଙ୍କାର
ନିଦ୍ରାରେ ଯେହ୍ନେ ସୁଖଭୋଗ
ଜାଗ୍ରତେ ନ ଯାଇ ତା ଲାଭ
ଗୃହବନ୍ଧରେ ଏ କାରଣ
ନାରୀସଙ୍ଗତେ ଅନୁଦିନ
ସ୍ତ୍ରୀପୁରୁଷଭାବ ବହି
ତହିଁରେ ମନକୁ ବାନ୍ଧଇ
ମୋହର ଗୃହ ମୋର ଧନ
ବୋଲି ମାୟାରେ ହୋଇ ଛନ୍ନ
ତାବତ କର୍ମବନ୍ଧମାନ
ନୁହଇ ତାହାର ଖଣ୍ଡନ । ୭,୮

ଯଦା ମନୋ ହୃଦୟଗ୍ରନ୍ଥିରସ୍ୟ କର୍ମ୍ମାନୁବଦ୍ଧୋ ଦୃଢ଼ ଆଶ୍ଳଥେତ ।
ତଦା ଜନଃ ସମ୍ପରିବର୍ତ୍ତତେଽସ୍ମାନ୍‌ମୁକ୍ତଃ ପରଂ ଯାତ୍ୟତିହାୟ ହେତୁମ୍ । ୯ ।
ହଂସେ ଗୁରୌ ମୟି ଭକ୍ତ୍ୟାନୁବୃତ୍ତ୍ୟା ବିତୃଷ୍ଣୟା ଦ୍ୱନ୍ଦ୍ୱତିତକ୍ଷୟା ଚ ।
ସର୍ବତ୍ର ଜନ୍ତୋର୍ବ୍ୟସନାବଗତ୍ୟା ଜିଜ୍ଞାସୟା ତପସେହାନିବୃତ୍ତ୍ୟା । ୧୦ ।
ମତ୍କର୍ମଭିର୍ମତ୍କଥୟା ଚ ନିତ୍ୟଂ ମଦ୍‌ଦେବସଙ୍ଗାଦ୍‌ଗୁଣକୀର୍ତ୍ତନାନ୍ମେ ।
ନିର୍ବୈରସାମ୍ୟୋପଶମେନ ପୁତ୍ରା ଜିହାସୟା ଦେହଗେହାତ୍ମବୁଦ୍ଧେଃ । ୧୧ ।
ଅଧ୍ୟାତ୍ମଯୋଗେନ ବିବିକ୍ତସେବୟା ପ୍ରାଣେନ୍ଦ୍ରିୟାତ୍ମାଭିଜୟେନ ସଧ୍ର୍ୟକ୍ ।
ସଚ୍ଛ୍ରଦ୍ଧୟା ବ୍ରହ୍ମଚର୍ଯ୍ୟେଣ ଶଶ୍ୱଦସମ୍ପ୍ରମାଦେନ ଯମେନ ବାଚାମ୍ । ୧୨ ।
ସର୍ବତ୍ର ମଦ୍ଭାବବିଚକ୍ଷଣେନ ଜ୍ଞାନେନ ବିଜ୍ଞାନବିରାଜିତେନ ।
ଯୋଗେନଧୃତ୍ୟୁଦ୍ୟମସତ୍ତ୍ୱଯୁକ୍ତୋ ଲିଙ୍ଗଂ ବ୍ୟପୋହେତ୍ କୁଶଲୋଽହମାଖ୍ୟମ୍ । ୧୩

---

ଯେତେବେଳେ ଜୀବର କର୍ମାନୁବନ୍ଧନ ମନରୂପ ଦୃଢ ହୃଦୟଗ୍ରନ୍ଥି କ୍ଷଣ ବୈରାଗ୍ୟାଦି ଅଭ୍ୟାସରେ ଶିଥିଳତା ପ୍ରାପ୍ତହେବ, ସେତେବେଳେ ଜୀବ ଏହି ମିଥୁନଭାବ ଗୃହ ଏବଂ ଅହଂକାର ହେତୁ ପରିତ୍ୟାଗ କରି ମୁକ୍ତଅବସ୍ଥାରେ ପରମପଦ ଆଶ୍ରୟ କରିବ । ୯ ।

ବର୍ତ୍ତମାନ ସଂସାର ହେତୁ ତ୍ୟାଗର ପଚିଶିଟି ଉପାୟ କହୁ ଅଛନ୍ତି :—

ହେ ପୁତ୍ରଗଣ ! ଯେଉଁବ୍ୟକ୍ତି ନିପୁଣବୁଦ୍ଧି, ଧୈର୍ଯ୍ୟ, ଉତ୍ସାହ ଓ ସତ୍ତ୍ୱଯୁକ୍ତ, ସେହି ବ୍ୟକ୍ତି ପଚିଶଂଶତ ସାଧନ ଭାବ ସାହାଯ୍ୟରେ ଅହଂକାରର ବିଲୟସାଧନ କରିପାରେ, ସେହି ପଚିଶଂଶତ ଭାବ—ଯଥା—ପରମାତ୍ମସ୍ୱରୂପ ଗୁରୁ ମୁଁ, ମୋ ପ୍ରତି ଭକ୍ତି, ମୋର ଅନୁବର୍ତ୍ତନ, ବିଷୟ ବୈରାଗ୍ୟ, ସୁଖ ଦୁଃଖାଦି ଦ୍ୱନ୍ଦ୍ୱ ସହିଷ୍ଣୁତା, ଇହଲୋକ ଓ ପରଲୋକ ସର୍ବତ୍ର ଜୀବର ଦୁଃଖ ଏହିପରି ନିଶ୍ଚୟ, ଭକ୍ତି ଓ ଭଗବତ୍ ବିଷୟକ ତତ୍ତ୍ୱ ଅବଗତ ହେବାର ଇଚ୍ଛା, ବ୍ରତାଦି ଆଚରଣ, କାମ୍ୟକର୍ମ ପରିତ୍ୟାଗ, ମୋ ଉଦ୍ଦେଶ୍ୟରେକର୍ମସମ୍ପାଦନ, ନିତ୍ୟ ମୋର ପ୍ରସଙ୍ଗ ଆଲୋଚନା, ମୋଠାରେ ଭକ୍ତି ସହିତ ସମାଗମ, ମୋର ଗୁଣ କୀର୍ତ୍ତନ, କାହାରି ପ୍ରତି ଦ୍ୱେଷଭାବର ଅଭାବ, ସମସ୍ତଙ୍କ ପ୍ରତି ସମତା ଅର୍ଥାତ୍ ପରର ସୁଖ ଦୁଃଖରେ ତୁଲ୍ୟାନୁଭୂତି, କ୍ରୋଧାଦି ଉପଶମ, ଦେହ ଓ ଗୃହରେ ଆତ୍ମବୁଦ୍ଧିର ଅଭାବ, ଅଧ୍ୟାତ୍ମ ଶାସ୍ତ୍ରାନୁଶୀଳନ, ନିର୍ଜନ ପବିତ୍ର ସ୍ଥାନ ଆଶ୍ରୟ, ସମ୍ୟକରୂପେ ପ୍ରାଣ ଜୟ, ଇନ୍ଦ୍ରିୟ ଜୟ ଓ ଅନ୍ତଃକରଣଜୟ, ସାଧୁବ୍ୟକ୍ତି ଓ ସାଧୁ ବିଷୟରେ ଶ୍ରଦ୍ଧା, ବ୍ରହ୍ମଚର୍ଯ୍ୟ, ସତତ ସାବଧାନତା, ବାକ୍ୟ ସଂଯମ, ସର୍ବତ୍ର ଭଗବଦ୍‌ଭାବପ୍ରାପ୍ତି ଅନୁଭବ ଏବଂ ସମାଧି । ୧୦-୧୩ ।

---

ଯେବେଛି ପଦପାଦେ ମୋର
ଆଶ୍ରୟ କରଇ ସେ ନର
ପାଦପଲ୍ଲବଯୁଗ ଧରି
ତରଇ ଏ ଭବ-ଲହରୀ । ୯ ।
ଅଖିଳଗୁରୁ ମୁହିଁ ହରି
ମୋତେ ଭଜିବ ଦେହ ଧରି
ନିବୃତ୍ତିରତ ହୋଇ ନର
ଭକ୍ତି କରିବ ମୋ ପୟର

ବ୍ୟସନ ହିଂସାକୁ ଛାଡିବ
ତାପରେ ମୋତେ ଆରାଧିବ
ମୋହର ଗୁଣ କର୍ମନାମ
ନିରତେ କରିବ କୀର୍ତ୍ତନ
ଏକାନ୍ତ ଭାବ ମୋହଠାରେ
ଦ୍ୱେଷ ସ୍ନେହ କରନ୍ତି ଯେ ନରେ
ଇନ୍ଦ୍ରିୟଗଣଙ୍କ ନିବାରି
ଅଧ୍ୟାତ୍ମ ବିଦ୍ୟାକୁ ଆଚରି

ଶ୍ରଦ୍ଧାରେ ବ୍ରହ୍ମଚର୍ଯ୍ୟ କରେ
ପ୍ରଶାନ୍ତ ସତ୍ୟ ବଚନରେ
ମୋହର ଭାବ ଅବଧାନ-
ରତରେ ଅର୍ପନ୍ତି ଅନୁକ୍ଷଣ
ଭବଜଳଧି ସେ ତରଇ
ଗୃହବନ୍ଧନ ତାର ନାହିଁ । ୧୦-୧୩

କର୍ମାଶୟଂ ହୃଦୟଗ୍ରନ୍ଥିବନ୍ଧମବିଦ୍ୟୟାସାଦିତମପ୍ରମତ୍ତଃ ।
ଅନେନ ଯୋଗେନ ଯଥୋପଦେଶଂ ସମ୍ୟଗ୍‌ବ୍ୟପୋହ୍ୟୋପରମେତ ଯୋଗାତ୍ ॥
ପୁତ୍ରାଂଶ୍ଚ ଶିଷ୍ୟାଂଶ୍ଚ ନୃପୋ ଗୁରୁର୍ବା ପିତା ମଲ୍ଲୋକକାମୋ ମଦନୁଗ୍ରହାର୍ଥଃ ।
ଇତ୍ଥଂ ବିମନ୍ୟୁରନୁଶିଷ୍ୟାଦତଜ୍‌ଜ୍ଞାନ୍ ନ ଯୋଜୟେତ୍ କର୍ମସୁ କର୍ମମୂଢ଼ାନ୍ ॥
( କଂ ଯୋଜୟନ୍ ମନୁଜୋଽର୍ଥଂ ଲଭେତ ନିପାତୟନ୍ ନଷ୍ଟଦୃଶଂ ହି ଗର୍ତ୍ତେ ) ।୧୫।
ଲୋକ ସ୍ୱୟଂ ଶ୍ରେୟସି ନଷ୍ଟଦୃଷ୍ଟିର୍ଯୋଽର୍ଥାନ୍ ସମୀହେତ ନିକାମକାମଃ ।
ଅନ୍ୟୋନ୍ୟବୈରଃ ସୁଖଲେଶହେତୋରନନ୍ତଦୁଃଖଞ୍ଚ ନ ବେଦ ମୂଢ଼ଃ ।୧୬।
କସ୍ତଂ ସ୍ୱୟଂ ତଦଭିଜ୍ଞୋ ବିପଶ୍ଚିଦବିଦ୍ୟାୟାମନ୍ତରେ ବର୍ତ୍ତମାନମ୍ ।
ଦୃଷ୍ଟ୍ୱା ପୁନସ୍ତଂ ସଘୃଣଃ କୁବୁଦ୍ଧିଂ ପ୍ରଯୋଜୟେଦୁତ୍‌ପଥଗଂ ଯଥାନ୍ଧମ୍ ।୧୭।

---

ଅବ ଅବଧାନ ପୂର୍ବକ ଗୁରୁଙ୍କ ଉପଦେଶ ଅନୁଶରଣକରି ପୂର୍ବୋକ୍ତ ସାଧନୋପାୟ ଅନୁଶରଣ ପୂର୍ବକ ଅଜ୍ଞାନହେତୁ ସଂପ୍ରାପ୍ତ କର୍ମାଶୟ ହୃଦୟଗ୍ରନ୍ଥି ବନ୍ଧନ ସମ୍ୟକ୍‌ରୂପେ ଛେଦନକରି ପରେ ସେହି ଯୋଗରୁ ବିରତ ହେବ । ୧୪ ।

ଯେଉଁ ରାଜା ମୋ ଲୋକରେ ରହିବା କାମନା କରେ ଏବଂ ମୋର ଅନୁଗ୍ରହକୁ ପରମାର୍ଥ ବୋଲି ମନେ କରେ, ସେହି ରାଜା, ଗୁରୁ ଓ ପିତା ଯଥାକ୍ରମେ ପ୍ରଜା ଓ ଶିଷ୍ୟ ଓ ପୁତ୍ରକୁ ଏହିପରି ଉପଦେଶ ଦେବା କର୍ତ୍ତବ୍ୟ । ମାତ୍ର ସେମାନେ ଉପଦେଶ ଅନୁସାରେ କର୍ମାନୁଷ୍ଠାନ ନ କଲେ ସେମାନଙ୍କ ପ୍ରତି କୋପ କରିବା ଉଚିତ ନୁହେଁ, କାରଣ ସେମାନେ ତତ୍ତ୍ୱ ଜାଣନ୍ତି ନାହିଁ, ସେମାନେ କର୍ମ ବନ୍ଧନକୁ ଶ୍ରେୟମନେକରି ତହିଁରେ ମୂଢ଼, ସେମାନଙ୍କୁ ପୁନର୍ବାର କର୍ମରେ ନିଯୁକ୍ତ କରିବା ଉଚିତ ନୁହେଁ । (ଯେଉଁବ୍ୟକ୍ତି ଦୃଷ୍ଟିହୀନ, ତାହାକୁ ଗର୍ତ୍ତମଧ୍ୟରେ ନିକ୍ଷେପ କଲେ କି ଲାଭ ହେବ ? ) । ୧୫ ।

ଯେଉଁବ୍ୟକ୍ତି ଅତଶୟ କାମନା ପରତନ୍ତ୍ର, ସୁତରାଂ ନିଜର ମଙ୍ଗଳମାର୍ଗ ଜାଣିବାରେ ଅନ୍ଧ, ସେ, କେବଳ ଅର୍ଥ ପ୍ରାପ୍ତି ନିମିତ୍ତ ଚେଷ୍ଟା କରେ ଏବଂ ଅତି କ୍ଷୁଦ୍ର ସୁଖ ନିମିତ୍ତ ପରସ୍ପର ବୈର ଆଚରଣ କରିଥାଏ ଅତଏବ ସେହି ମୂଢ଼, ସେଥିରେ ତାର ଅସୀମ ଦୁଃଖ ଭୋଗ ହେବ ବୋଲି ଜାଣିପାରେ ନାହିଁ । ୧୬ ।

ଅବିଦ୍ୟା ମଧ୍ୟରେ ବର୍ତ୍ତମାନ ସେହି କୁବୁଦ୍ଧି ବ୍ୟକ୍ତିକୁ ଦେଖି ତତ୍ତ୍ୱବିଷୟରେ ଅଭିଜ୍ଞ କେଉଁ ପଣ୍ଡିତ ତାହାକୁ ସେ ବିଷୟରେ ପ୍ରବୃତ୍ତ କରାଇବ ? ଯେପରି "ଅନ୍ଧ ଅବାଟରେ ଯାଉଅଛି", ଏକଥା ଦେଖି କେଉଁ ଅଭିଜ୍ଞ ଦୟାଳୁ, ବିଦ୍ୱାନ୍ ତାହାକୁ ସେହି ବାଟରେ ଯିବାକୁ ଉପଦେଶ ଦେବ ? ।୧୭।

---

ସ୍ୱକର୍ମ କରି ଏ ସଂସାରେ
ଯେ ଅର୍ପେ ମୋହର ପଦ୍ମରେ
ତାହାର କର୍ମବନ୍ଧ ମୁହିଁ
ଅକ୍ଳେଶେ ନିଶ୍ଚୟ ଛେଦଇ
ଅମ୍ଭର ଶ୍ରେୟକର୍ମଠାରେ
ଇଚ୍ଛା ନ କରନ୍ତି ପାମରେ

ଅଳପ ସୁଖ ହେତୁ କରି
ଅନ୍ୟୋନ୍ୟ ହିଂସାକୁ ଆଚରି
ଅଶେଷ ଦୁଃଖର କାରଣ
କରନ୍ତି ହୋଇ ମତି ଭ୍ରମ
ଦୃଷ୍ଟି ତାହାର ନଷ୍ଟ ହୋଇ
ଅବିଦ୍ୟା ସମୂହେ ଭ୍ରମଇ

ଅନ୍ଧ ଯେସନେ ପଥେ ଯାଇ
କଣ୍ଟକ ଦୁର୍ଗମେ ଭ୍ରମଇ ।୧୪-୧୭।

ଗୁରୁର୍ନ ସ ସ୍ୟାତ୍ ସ୍ୱଜନୋ ନ ସ ସ୍ୟାତ୍ ପିତା ନ ସ ସ୍ୟାଜ୍ଜନନୀ ନ ସା ସ୍ୟାତ୍ ।
ଦୈବଂ ନ ତତ୍ ସ୍ୟାନ୍ନ ପତିଶ୍ଚ ସ ସ୍ୟାନ୍ନମୋଚୟେଦ୍ୟଃ ସମୁପେତମୃତ୍ୟୁମ୍ ।୧୮।
ଇଦଂ ଶରୀରଂ ମମ ଦୁର୍ବିଭାବ୍ୟଂ ସତ୍ତ୍ୱଂ ହି ମେ ହୃଦୟଂ ଯତ୍ର ଧର୍ମଃ ।
ପୃଷ୍ଠେ କୃତୋ ମେ ଯଦଧର୍ମ ଆରାଦତୋ ହି ମାମୃଷଭଂ ପ୍ରାହୁରାର୍ଯ୍ୟାଃ । ୧୯ ।
ତସ୍ମାଦ୍ଭବନ୍ତୋ ହୃଦୟେନ ଜାତାଃ ସର୍ବେ ମହୀୟାଂସମମୁଂ ସନାଭମ୍ ।
ଅକ୍ଲିଷ୍ଟବୁଦ୍ଧ୍ୟା ଭରତଂ ଭଜଧ୍ୱଂ ଶୁଶ୍ରୂଷଣଂ ତଦ୍ଭରଣଂ ପ୍ରଜାନାମ୍ । ୨୦ ।
ଭୂତେଷୁ ବୀରୁଦ୍ଭ୍ୟ ଉଦୁତ୍ତମା ଯେ ସରୀସୃପାସ୍ତେଷୁ ସବୋଧନିଷ୍ଠାଃ ।
ତତୋ ମନୁଷ୍ୟାଃ ପ୍ରମଥାସ୍ତତୋଽପି ଗନ୍ଧର୍ବସିଦ୍ଧା ବିବୁଧାନୁଗା ଯେ । ୨୧ ।

---

ଯେଉଁ ବ୍ୟକ୍ତି ଉପଦେଶ ଦେଇ ସଂସାରବଦ୍ଧ ବ୍ୟକ୍ତିକୁ ମୁକ୍ତ କରାଇ ନ ଦିଏ, ସେ ବ୍ୟକ୍ତି ଗୁରୁ ନୁହେଁ, ପିତା ନୁହେଁ, ଜନନୀ ନୁହେଁ, ଦେବତା ନୁହେଁ ବା ପତି ନୁହେଁ । ୧୮ ।

ହେ ପୁତ୍ରଗଣ ! ମୋର ଏହି ମନୁଷ୍ୟ ଦେହ ଅବିତର୍କ୍ୟ ଅର୍ଥାତ୍ ଅପ୍ରାକୃତ, ଅର୍ଥାତ୍ ମୁଁ ଏହା ଇଚ୍ଛା ଅନୁସାରେ ଧାରଣ କରିଅଛି । ମୋର ହୃଦୟ ସତ୍ତ୍ୱ ସ୍ୱରୂପ, ତହିଁରେ ଶୁଦ୍ଧସତ୍ତ୍ୱ ବିରାଜିତ, କାରଣ ମୁଁ ଅଧର୍ମକୁ ବହୁଦୂରକୁ ବିତାଡ଼ିତ କରି ଦେଇଅଛି । ତେଣୁ ଆର୍ଯ୍ୟମାନେ ମୋତେ ଋଷଭ ବା ଶ୍ରେଷ୍ଠବୋଲି କହିଥାନ୍ତି । ୧୯ ।

ତୁମ୍ଭେମାନେ ସମସ୍ତେ ମୋର ଶୁଦ୍ଧ ସତ୍ତ୍ୱମୟ ହୃଦୟ ଦ୍ୱାରା ଉତ୍ପନ୍ନ ସୁତରାଂ ମାତ୍ସର୍ଯ୍ୟ ପରିତ୍ୟାଗକରି ସ୍ଥିରଚିତ୍ତରେ ତୁମ୍ଭମାନଙ୍କର ଜ୍ୟେଷ୍ଠଭ୍ରାତା ଏହି ମହାତ୍ମା ଭରତଙ୍କୁ ଭଜନ କର, ଭରତଙ୍କୁ ଶୁଶ୍ରୂଷାକଲେ ପ୍ରଜାପାଳନ ପ୍ରଭୃତି କର୍ତ୍ତବ୍ୟ ପାଳନ କରି ପାରିବ । ୨୦ ।

ହେ ପୁତ୍ରଗଣ ! ବ୍ରାହ୍ମଣାଦିମାନଙ୍କର ସେବା କରିବା ତୁମ୍ଭମାନଙ୍କର କର୍ତ୍ତବ୍ୟ; କାରଣ ଚେତନ ଓ ଅଚେତନ ଭୂତମାନଙ୍କ ମଧ୍ୟରେ ସ୍ଥାବର ଶ୍ରେଷ୍ଠ, ସ୍ଥାବର ଅପେକ୍ଷା ସର୍ପାଦି ସରୀସୃପ ପ୍ରାଣି ଶ୍ରେଷ୍ଠ, ସରୀସୃପ ଅପେକ୍ଷା ଜ୍ଞାନ ସମ୍ପନ୍ନ ପଶ୍ୱାଦି ଶ୍ରେଷ୍ଠ, ପଶୁମାନଙ୍କଠାରୁ ମାନବମାନେ ଶ୍ରେଷ୍ଠ, ମାନବମାନଙ୍କ ଅପେକ୍ଷା ପ୍ରମଥଗଣ ଅର୍ଥାତ୍ ଭୂତ ପ୍ରେତଗଣ ଶ୍ରେଷ୍ଠ ସେମାନଙ୍କ ଅପେକ୍ଷା ଗନ୍ଧର୍ବଗଣ, ଗନ୍ଧର୍ବମାନଙ୍କ ଅପେକ୍ଷା ସିଦ୍ଧଗଣ ଓ ସିଦ୍ଧଗଣ ଅପେକ୍ଷା ଦେବାନୁଗଣ ଶ୍ରେଷ୍ଠ, ଦେବାନୁଗଣମାନଙ୍କ ଅପେକ୍ଷା ଅସୁରଗଣ ଶ୍ରେଷ୍ଠ, ଅସୁରଗଣଙ୍କ ଅପେକ୍ଷା ଦେବଗଣ ଶ୍ରେଷ୍ଠ, ଦେବତାମାନଙ୍କ ମଧ୍ୟରେ ଇନ୍ଦ୍ରପ୍ରଧାନ ଇନ୍ଦ୍ରଙ୍କ ଅପେକ୍ଷା ବ୍ରହ୍ମପୁତ୍ର ଦକ୍ଷାଦି ଶ୍ରେଷ୍ଠ,

---

ଉକତ ଯୋଗେ ସେ ସଂସାରେ
ନିକଟ ମୃତ୍ୟୁ ନ ନିବାରେ
ସେ ନୋହେ ଗୁରୁ ମିତ୍ର ପିତା
ପତି ଜନନୀ ବା ଦେବତା
ମୂଢ଼ ଜାଣିବ ଏହା କାହିଁ
ନିତ୍ୟେ ମାୟାରେ ଭ୍ରମୁଥାଇ ।୧୮।
ହେ ପୁତ୍ରେ ଶୁଣ ମୋ ଉତ୍ତର
ଏ ଯେ ମୋହର କଳେବର

ଅଷ୍ଟାଙ୍ଗଯୋଗ ଧ୍ୟାନମତେ
ମୁନି ଚିନ୍ତନ୍ତି ଅବିରତେ । ୧୯ ।
ଯେଣୁ ଆମ୍ଭର ତୁମ୍ଭେ ସୁତ
ପରମ ଶ୍ରେଷ୍ଠ ଭଗବତ
ଏବେ ଏମନ୍ତ ତୁମ୍ଭେ କର
ଭରତ ଜ୍ୟେଷ୍ଠ ଯେ ତୁମ୍ଭର
ଅକ୍ଳେଶ ବୁଦ୍ଧିରେ ସମସ୍ତେ
ତାହାଙ୍କୁ ଭଜ ଯଥୋଚିତେ

ମୋର ବଚନ ଧରି ଶିରେ
ସୁଖେ ଭ୍ରମିବ ଏ ସଂସାରେ ।୨୦।
ସର୍ବ ଭୂତରେ ମୁହିଁ ଥାଇ
ସୁଖ ଦୁଃଖକୁ ମୁଁ ଭୁଞ୍ଜଇ
ଭୂତ ଗନ୍ଧର୍ବ ଯେ ମାନବ
ପ୍ରମଥଗଣ ଯେତେ ଦେବ
ଯେ ବ୍ରହ୍ମାସୁତ ଦକ୍ଷ ଆଦି
ମୋର ଶରୀର ଯେ ପ୍ରସିଦ୍ଧି

ଦେବାଽସୁରେଭ୍ୟୋ ମଘବତ୍‌ପ୍ରଧାନା ଦକ୍ଷାଦୟୋ ବ୍ରହ୍ମସୁତାସ୍ତୁ ତେଷାମ୍ ।
ଭବଃ ପରଃ ସୋଽଥ ବିରିଞ୍ଚିବୀର୍ଯ୍ୟଃ ସ ମତ୍‌ପରୋଽହଂ ଦ୍ୱିଜଦେବଦେବଃ ।୨୨।
ନ ବ୍ରାହ୍ମଣୈସ୍ତୁଲୟେ ଭୂତମନ୍ୟତ୍ ପଶ୍ୟାମି ବିପ୍ରାଃ କିମତଃପରନ୍ତୁ ।
ଯସ୍ମିନ୍ନୃଭିଃ ପ୍ରହୁତଂ ଶ୍ରଦ୍ଧୟାହମଶ୍ନାମି କାମଂ ନ ତଥାଗ୍ନିହୋତ୍ରେ । ୨୩ ।
ଧୃତା ତନୂ ରୁଶତୀ ମେ ପୁରାଣୀ ଯେନେହ ସତ୍ତ୍ୱଂ ପରମଂ ପବିତ୍ରମ୍ ।
ଶମୋ ଦମଃ ସତ୍ୟମନୁଗ୍ରହଶ୍ଚ ତପସ୍ତିତିକ୍ଷାନୁଭବଶ୍ଚ ଯତ୍ର । ୨୪ ।
ମତ୍ତୋଽପ୍ୟନନ୍ତାତ୍ ପରତଃ ପରସ୍ମାତ୍ ସ୍ୱର୍ଗାପବର୍ଗାଧିପତେର୍ନ କିଞ୍ଚିତ୍ ।
ଯେଷାଂ କିମୁ ସ୍ୟାଦିତରେଣ ତେଷାମକିଞ୍ଚନାନାଂ ମୟି ଭକ୍ତିଭାଜାମ୍ । ୨୫ ।

---

ଦକ୍ଷାଦିଙ୍କ ଅପେକ୍ଷା ଭଗବାନ୍ ଶଙ୍କର ଶ୍ରେଷ୍ଠ, ପରନ୍ତୁ ସେ ବ୍ରହ୍ମାଙ୍କ ବଳରେ ବଳୀୟାନ୍ । ଏଣୁ ତାଙ୍କଅପେକ୍ଷା ବ୍ରହ୍ମା ଶ୍ରେଷ୍ଠ, ବ୍ରହ୍ମା ମୋ ପ୍ରତି ଭକ୍ତିମାନ୍ । ତେଣୁ ବ୍ରହ୍ମାଙ୍କ ଅପେକ୍ଷା ମୁଁ ଶ୍ରେଷ୍ଠ ମୁଁ ବ୍ରାହ୍ମଣମାନଙ୍କର ପୂଜା କରିଥାଏ, ସୁତରାଂ ବ୍ରାହ୍ମଣମାନେ ମୋ ଅପେକ୍ଷା ଶ୍ରେଷ୍ଠ ଓ ସର୍ବପୂଜ୍ୟ ତେଣୁ ସେମାନଙ୍କର ପୂଜା କରିବା କର୍ତ୍ତବ୍ୟ । ୨୧,୨୨ ।

[ତଦନନ୍ତର ବ୍ରାହ୍ମଣମାନଙ୍କୁ ସମ୍ବୋଧନ କରି କହିଲେ] :—ହେ ବ୍ରାହ୍ମଣଗଣ ! ମୁଁ ଅନ୍ୟପ୍ରାଣୀଙ୍କୁ ବ୍ରାହ୍ମଣଙ୍କ ସହିତ ତୁଳନା କରିବା ଉଚିତ ମନେ କରେ ନାହିଁ, କିମ୍ବା ବ୍ରାହ୍ମଣ ଅପେକ୍ଷା ଅନ୍ୟ କେହି ଶ୍ରେଷ୍ଠ ନୁହେଁ । କାରଣ ଏହି ବ୍ରାହ୍ମଣମାନଙ୍କୁ ଲୋକେ ଶ୍ରଦ୍ଧା କରି ଯେଉଁ ଅନ୍ନାଦି ଦାନ କରନ୍ତି, ମୁଁ ତାହା ଆନନ୍ଦରେ ଭୋଜନ କରି ତୃପ୍ତି ଲାଭ କରେ । ଅଗ୍ନିରେ ହୋମ ଯୋଗେ ପ୍ରଦତ୍ତ ଘୃତପ୍ରଭୃତି ଦ୍ୱାରା ସେ ଲାଭ ହୁଏ ନାହିଁ । ଯାହାକି ବ୍ରାହ୍ମଣ ଭୋଜନ ଦ୍ୱାରା ହୁଏ । ୨୩ ।

ଯେଉଁ ବ୍ରାହ୍ମଣ ଇହଲୋକରେ ମୋହର ରମଣୀୟ ବେଦମୂର୍ତ୍ତି ଧାରଣ କରିଅଛନ୍ତି ଏବଂ ଯେଉଁମାନଙ୍କ ମଧ୍ୟରେ ପରମପବିତ୍ର ସତ୍ତ୍ୱ ଗୁଣ ଏବଂ ସମ, ଦମ, ସତ୍ୟ, ଅନୁଗ୍ରହ, ତପସ୍ୟା, ତିତିକ୍ଷା, ପ୍ରତାପ-ଏହି ଅଷ୍ଟଗୁଣ ବିଦ୍ୟମାନ୍ । ସେହି ବ୍ରାହ୍ମଣ ଅପେକ୍ଷା ଆଉ କାହାକୁ ଶ୍ରେଷ୍ଠ ବୋଲି ମନେ କରାଯିବ ? । ୨୪ ।

ଯେଉଁମାନେ ମୋ ପ୍ରତି ଭକ୍ତିମାନ୍ ହୋଇ ମୋଠାରେ ସମସ୍ତ ସମର୍ପଣ କରିଥାନ୍ତି, ସେମାନେ "ମୁଁ ଅନନ୍ତ ଐଶ୍ୱର୍ଯ୍ୟର ଅଧିକାରୀ, ସ୍ୱର୍ଗ ଓ ମୋକ୍ଷର ଦେବତା, ଉତ୍କୃଷ୍ଟ ଅପେକ୍ଷା ଉତ୍କୃଷ୍ଟତର, ଏହା ଜାଣି ମଧ୍ୟ ମୋ ନିକଟରେ କିଛିହିଁ କାମନା କରନ୍ତି ନାହିଁ । ସେମାନେ ଅତ୍ୟନ୍ତ ନିସ୍ପୃହ ବୋଲି ରାଜ୍ୟାଦି ଲାଭକୁ ତୁଚ୍ଛ ମନେ କରନ୍ତି [ ବ୍ରାହ୍ମଣମାନଙ୍କର ନିସ୍ପୃହତ୍ୱ ଏଠାରେ ପ୍ରକାଶ କରାଯାଇଅଛି ] ।୨୫।

---

ସର୍ବଦେବଙ୍କ ମଧ୍ୟେ ସାର
ସଂସାରେ ବିପ୍ରକଳେବର ।୨୧,୨୨
ଶ୍ରଦ୍ଧାରେ ଶୁଦ୍ଧଚିତ୍ତେ ଯେହି
ଯେ ଦ୍ରବ୍ୟ ବିପ୍ରଙ୍କୁ ଦିଅଇ
ସନ୍ତୋଷେ ମୁଁ ତାହା ଭୁଞ୍ଜଇ
ଯଜ୍ଞେ ସନ୍ତୋଷ ତେତେ ନୋହି ।୨୩

ସମ ନିୟମ ଦମେ ମୋତେ
ବିପ୍ରେ ପୂଜନ୍ତି ଯଥୋଚିତେ
ସକଳ ପରଙ୍କର ପର
ମୁହିଁ ଅନନ୍ତ ଯଜ୍ଞେଶ୍ୱର
ସ୍ୱର୍ଗ ମୋକ୍ଷର ଦାତା ମୁହିଁ
ମୋ ବିନୁ ଅନ୍ୟ କେହି ନାହିଁ

ଯେ ପ୍ରାଣୀ ଅକିଞ୍ଚନ ହୋଇ
ମୋହର ପାଦେ ଚିତ୍ତ ଦେଇ
ତାହାର ଯେତେ କର୍ମମାନ
ସକଳ କରଇ ଦହନ
ମୋହର ପୂଜା ତୁମ୍ଭେମାନେ
କରିବ ଯଥାର୍ଥ ବିଧାନେ

ସର୍ବାଣି ମଦ୍ଧିଷ୍ଣ୍ୟତୟା ଭବଦ୍ଭିଶ୍ଚରାଣି ଭୂତାନି ସୁତା ଧ୍ରୁବାଣି ।
ସମ୍ଭାବିତବ୍ୟାନି ପଦେ ପଦେ ବୋ ବିବିକ୍ତଦୃଗ୍ଭିସ୍ତଦୁହାର୍ହଣଂ ମେ । ୨୬ ।
ମନୋବଚୋଦୃକ୍କରଣେହିତସ୍ୟ ସାକ୍ଷାତ୍ କୃତଂ ମେ ପରିବର୍ହଣଂ ହି ।
ବିନା ପୁମାନ୍ ଯେନ ମହାବିମୋହାତ୍ କୃତାନ୍ତପାଶାନ୍ନ ବିମୋକ୍ତୁମୀଶେତ୍ । ୨୭ ।

ଶ୍ରୀଶୁକ ଉବାଚ ।

ଏବମନୁଶାସ୍ୟାତ୍ମଜାନ୍ ସ୍ୱୟମନୁଶିଷ୍ଟାନପି ଲୋକାନୁଶାସନାର୍ଥଂ ମହାନୁଭାବଃ ପରମସୁହୃଦ୍ଭଗବାନ୍ ଋଷଭାପଦେଶ ଉପଶମଶୀଳାନାମୁପରତକର୍ମଣାଂ ମହାମୁନୀନାଂ ଭକ୍ତିଜ୍ଞାନବୈରାଗ୍ୟଲକ୍ଷଣଂ ପାରମହଂସ୍ୟଧର୍ମମୁପଶିକ୍ଷମାଣଃ ସ୍ୱତନୟଶତଜ୍ୟେଷ୍ଠଂ ପରମଭାଗବତଂ ଭଗବଜ୍ଜନପରାୟଣଂ ଭରତଂ ଧରଣୀପାଲନାୟାଭିଷିଚ୍ୟ ସ୍ୱୟଂ ଭବନ ଏବୋର୍ବରିତଶରୀରମାତ୍ରପରିଗ୍ରହ ଉନ୍ମତ୍ତ ଇବ ଗଗନପରିଧାନଃ ପ୍ରକୀର୍ଣ୍ଣକେଶ ଆତ୍ମନ୍ୟାରୋପିତାହବନୀୟୋ ବ୍ରହ୍ମାବର୍ତ୍ତାତ୍ ପ୍ରବବ୍ରାଜ । ୨୮ ।

---

ହେ ପୁତ୍ରମାନେ ! ତୁମ୍ଭେମାନେ ସମସ୍ତେ ସ୍ଥାବର ଓ ଜଙ୍ଗମ ପଦାର୍ଥକୁ ମୋର ଅଧିଷ୍ଠାନ ମନେକରି ସମ୍ମାନ କର । ତାହା ହେଲେ ପ୍ରତିମୁହୂର୍ତ୍ତରେ ନିର୍ମଳ ଦୃଷ୍ଟିରେ ମୋର ପୂଜା କରିପାରିବ । ୨୬ ।

ମନ, ବାକ୍ୟ, ଚକ୍ଷୁ ଓ ଅନ୍ୟାନ୍ୟ ଇନ୍ଦ୍ରିୟଦ୍ୱାରା ମୋର ଆରାଧନାରେ ସାକ୍ଷାତ୍ ଫଳଲାଭ ହୁଏ, ମୋର ଆରାଧନା ବ୍ୟତୀତ ଜୀବ ମହାମୋହମୟ ଯମ ପାଶରୁ ମୁକ୍ତିଲାଭ କରି ନ ପାରେ । ୨୭ ।

ଶ୍ରୀଶୁକଦେବ କହିଲେ :—

ମହାନୁଭବ ପରମସୁହୃତ୍ ଭଗବାନ୍ ଋଷଭଦେବ, ପୁତ୍ରମାନେ ସ୍ୱୟଂ ସୁଶିକ୍ଷିତ ହେଲେ ମଧ୍ୟ ଲୋକ ଶିକ୍ଷା ନିମିତ୍ତ ସେମାନଙ୍କୁ ଉତ୍ତମରୂପେ ଉପଦେଶଦେଇ ସ୍ୱୟଂ ଉପଶମଶୀଳ କର୍ମୋପରତ ମହାମୁନିଗଣଙ୍କର ଭକ୍ତି, ଜ୍ଞାନ, ବୈରାଗ୍ୟ ଲକ୍ଷଣ, ପରମହଂସ ସ୍ୱଭାବ ଦ୍ୱାରା ଶିକ୍ଷାଦେବା ନିମିତ୍ତ ନିଜର ଶତପୁତ୍ରଙ୍କ ମଧ୍ୟରେ ଜ୍ୟେଷ୍ଠ ପରମଭାଗବତ ଭଗବଦ୍ଭକ୍ତାନୁରକ୍ତ ଭରତଙ୍କୁ ପୃଥିବୀ ପାଳନ ନିମିତ୍ତ ଅଭିଷିକ୍ତ କରି ଉନ୍ମତ୍ତତୁଲ୍ୟ ଦିଗମ୍ବର, ବିକ୍ଷିପ୍ତକେଶ ହୋଇ, କେବଳ ଆହବନୀୟ ଅଗ୍ନିକୁ ସଙ୍ଗରେ ଘେନି ବ୍ରହ୍ମାବର୍ତ୍ତ ଦେଶରୁ ପ୍ରବ୍ରଜ୍ୟା ଅବଲମ୍ବନ କରିଥିଲେ । ୨୮ ।

---

ସର୍ବତ୍ର ଅବଲୋକନରେ
ସ୍ଥିର ମନ ବାକ୍ୟ ବୁଦ୍ଧିରେ
ମୋହର ଅନୁଗ୍ରହ ବିନେ
ସଂସାରେ ଯେତେକ ପ୍ରାଣିମାନେ
ଶମନ ପାଶ ବନ୍ଧନରୁ
କେ ଅବା ତରିବ ସଂସାରୁ ।୨୪-୨୭

ଶ୍ରୀ ଶୁକଉବାଚ ।

ଏମନ୍ତ ଶିକ୍ଷା ପୁତ୍ରେ ଦେଇ
ଋଷଭ ପ୍ରଭୁ ସ୍ୱଇଚ୍ଛାୟୀ
ପ୍ରାଣିର ଉଦ୍ଧାର କାରଣେ
ଧର୍ମ ବିସ୍ତାରିଲେ ଆପଣେ
ଶତେକ ପୁତ୍ର ମଧ୍ୟେ ସାର
ଜ୍ୟେଷ୍ଠ ଯେ ଭରତ କୁମର
ପରମ ଭାଗବତ ସେହି
ନିରତେ ପ୍ରଭୁଙ୍କୁ ଭଜଇ
ସାଧୁ ସଙ୍ଗତେ ଅନୁରତ
ତାହାର ପୁଣ୍ୟ ଯେ ବହୁତ
ଅବନୀ ପାଳନର ପାଇଁ
ରାଜ୍ୟପଣ ତାକୁ ଦେଇ
ଯେ ମୁକ୍ତିଧର୍ମ ମହାମୁନି
ଜ୍ଞାନ ବୈରାଗ୍ୟ ଭକ୍ତି ଘେନି
ତାହାଙ୍କ ଲକ୍ଷଣ ଆଚରି
ଋଷଭ ପ୍ରଭୁ ନରହରି
ବାହ୍ୟେ ଶରୀର ମାତ୍ର ଧରି
ଉନ୍ମତ୍ତ ରୂପକୁ ଆଚରି

ଜଡ଼ାନ୍ଧମୂକବଧିରପିଶାଚୋନ୍ମାଦକବଦବଧୂତବେଶୋଽଭିଭାଷ୍ୟମାଣୋଽପି ଜନାନାଂ ଗୃହୀତମୌନବ୍ରତସ୍ତୂଷ୍ଣୀମ୍ବଭୂବ । ୨୯ ।

ତତ୍ର ତତ୍ର ପୁରଗ୍ରାମାକରଖେଟବାଟଖର୍ବଟଶିବରବ୍ରଜଘୋଷସାର୍ଥଗିରିବନାଶ୍ରମାଦିଷ୍ୱନୁପଥମବନୀଚରାପସଦୈଃ ପରିଭୂୟମାନୋ ମକ୍ଷିକାଭିରିବ ବନଗଜସ୍ତର୍ଜନତାଡ଼ନାବମେହନଷ୍ଠୀବନଗ୍ରାବଶକୃଦ୍ରଜଃପ୍ରକ୍ଷେପପୂତିବାତଦୁରୁକ୍ତୈସ୍ତଦବିଗଣୟନ୍ନେବାସତ୍‌ସଂସ୍ଥାନ ଏତସ୍ମିନ୍ ଦେହୋପଲକ୍ଷଣେ ସଦପଦେଶ ଉଭୟାନୁଭବସ୍ୱରୂପେଣ ସ୍ୱମହିମାବସ୍ଥାନେନାସମାରୋପିତାହଂମମାଭିମାନତ୍ୱାଦବିଖଣ୍ଡିତମନାଃପୃଥିବୀମେକଚରଃପରିବଭ୍ରାମ । ୩୦ ।

---

ସେହି ଋଷଭଦେବ ଅବଧୂତତୁଲ୍ୟ ବେଶ ଗ୍ରହଣକରି ଜଡ଼, ଅନ୍ଧ, ମୂକ, ବଧୀର, ପିଶାଚ, ଓ ଉନ୍ମାଦତୁଲ୍ୟ କାହାରି କୌଣସି ପ୍ରଶ୍ନର ଉତ୍ତର ଦେଲେ ନାହିଁ ମୌନ ବ୍ରତାବଲମ୍ବୀ ହେଲେ । ୨୯ ।

ସେ ସେହି ନଗର, ଗ୍ରାମ, ଆକର କୃଷିଜୀବୀଗ୍ରାମ, ପୁଷ୍ପବାଟିକା, ପର୍ବତାନ୍ତର୍ଗତଗ୍ରାମ, ସେନାନିବାସ, ଗୋଷ୍ଠ, ଗୋପପଲ୍ଲି, ପଥିକମାନଙ୍କର ମିଳନ ସ୍ଥାନ, ପର୍ବତ, ବନ ଓ ଆଶ୍ରମ ପଥରେ ଭ୍ରମଣ କରୁଥିଲାବେଳେ ଦୁଷ୍ଟମାନେ ତାହାଙ୍କ ପ୍ରତି ଭୟ ପ୍ରଦର୍ଶନ, ତାହାଙ୍କୁ ପ୍ରହାର, ତାଙ୍କର ଉପରେ ମୂତ୍ରତ୍ୟାଗ, ତାଙ୍କପ୍ରତି, ଷ୍ଠିବନ ( ଛେପପକାଇବା ) ଶ୍ଳେଷ୍ମପ୍ରକ୍ଷେପ ( ଖଙ୍କାର ବା ଶିଙ୍ଘାଣି ପକାଇବା ) ପ୍ରସ୍ତର, ବିଷ୍ଠା ବା ଧୂଳି ନିକ୍ଷେପ, ପୂତଗନ୍ଧଯୁକ୍ତ ବାୟୁତ୍ୟାଗ, କଟୂକ୍ତି ଦ୍ୱାରା ନାନାପ୍ରକାର ଭର୍ତ୍ସନା ଓ ଉପଦ୍ରୁତ କରିବାକୁ ଲାଗିଲେ । ବନ୍ୟହସ୍ତୀ ଯେପରି ମକ୍ଷିକାର ଅତ୍ୟାଚାରକୁ ତୁଚ୍ଛଜ୍ଞାନ କରି ତାହା ଉପେକ୍ଷା କରେ ସେହିପରି ସେ ମଧ୍ୟ ଦୁଷ୍ଟବ୍ୟକ୍ତିମାନଙ୍କ ଉପଦ୍ରବକୁ ଉପେକ୍ଷା କରିଥିଲେ ଏବଂ ଦେହାଦି ଆକାର ସମ୍ପନ୍ନ ମିଥ୍ୟାଭୂତ ସଦ୍‌ବୁଦ୍ଧିଯୁକ୍ତ ସଂସାରରେ "ସତ୍ ଓ ଅସତ୍" ଏହି ଉଭୟର ସ୍ୱରୂପ ଅବଧାରଣ କରି ସ୍ୱୀୟ ମହତ୍ତ୍ୱରେ ଅବସ୍ଥାନ କରୁଥିବାରୁ ତାହାଙ୍କର ଅଭିମାନ ଭାବ ନ ଥିଲା । ସୁତରାଂ ଅଖଣ୍ଡିତ ଚିତ୍ତବୃତ୍ତିରେ ସେ ଏକାକୀ ସମଗ୍ର ପୃଥିବୀ ଭ୍ରମଣ କରିଥିଲେ । ୩୦ ।

---

ମୁକୁଳା କରି କେଶପାଶ
ଗଗନ କରି କଟିବାସ
ଯେସନ୍ତେ ବଧୀର ଜଡ଼ ମୂକ
ଅନ୍ଧ ପିଶାଚ ଉନ୍ମାଦକ
ଏମନ୍ତ ଅବଧୂତ ବେଶ
ଧରି ସେ ବ୍ରହ୍ମାଣ୍ଡର ଈଶ

ପ୍ରାଣିଙ୍କୁ ବଚନ ନ କହି
ମଉନ ବ୍ରତକୁ ସେ ଲଇ
ସକଳ ପୁର ଗ୍ରାମ ଗିରି
ଘୋର କାନନ ଆଦି କରି
ଦୁର୍ଜନ ଦୁଷ୍ଟଙ୍କ ବଚନ
ପ୍ରହାର ଆଦି ଅପମାନ

ଏ ସର୍ବଭବକୁ ସେ ସହି
ଆପଣାଠାରେ ଚିତ୍ତ ଥୋଇ
ନିତ୍ୟ ଆନନ୍ଦ ମନ ହୋଇ
ସୁଖେ ଭ୍ରମନ୍ତି ଏକା ମହୀ । ୨୮-୩୦

ଅତିସୁକୁମାରକରଚରଣୋରଃସ୍ଥଲବିପୁଲବାହ୍ୱଂସଗଳବଦନାଦ୍ୟବୟବବିନ୍ୟାସଃ ପ୍ରକୃତିସୁନ୍ଦରସ୍ୱଭାବହାସସୁମୁଖୋ ନବନଳିନଦଳାୟମାନଶିଶିରତାରାରୁଣାୟତନୟନରୁଚିରଃ ସଦୃଶସୁଭଗକପୋଳକର୍ଣ୍ଣକଣ୍ଠନାସୋ ବିଗୂଢ଼ସ୍ମିତବଦନମହୋତ୍ସବେନ ପୁରବନିତାନାଂ ମନସି କୁସୁମଶରାସନମୁପଦଧାନଃ ପରାଗବଲମ୍ବମାନକୁଟିଳଜଟିଲକପିଶକେଶଭୂରିଭାରୋଽବଧୂତମଳିନନିଜଶରୀରେଣ ଗ୍ରହଗୃହୀତ ଇବ ଅଦୃଶ୍ୟତ ।୩୧।

ଯର୍ହି ବାବ ସ ଭଗବାନ୍‌ଲୋକମିମଂ ଯୋଗସ୍ୟାଦ୍ଧା ପ୍ରତୀପମିବାଚକ୍ଷାଣସ୍ତତ୍‌ପ୍ରତିକ୍ରିୟାକର୍ମବୀଭତ୍ସିତମିତି ବ୍ରତମାଜଗରମାସ୍ଥିତଃ ଶୟାନ ଏବାଶ୍ନାତି ପିବତି ଖାଦତ୍ୟବମେହତି ହଦତି ସ୍ମ ଚେଷ୍ଟମାନ ଉଚ୍ଚରିତ ଆଦିଗ୍‌ଧୋଦ୍ଦେଶଃ । ୩୨ ।

ତସ୍ୟ ହ ଯଃ ପୁରୀଷସୁରଭିସୌଗନ୍ଧ୍ୟବାୟୁସ୍ତଂଦେଶଂ ଦଶଯୋଜନଂ ସମନ୍ତାତ୍ ସୁରଭିଂ ଚକାର । ୩୩ ।

---

ତାହାଙ୍କର କର, ଚରଣ, ବକ୍ଷସ୍ଥଳ, ବିଶାଳବାହୁଦ୍ୱୟ ବାହୁମୂଳଦ୍ୱୟ ମୁଖର ବିନ୍ୟାସ, ଅତ୍ୟନ୍ତ କୋମଳ ଥିଲା ସ୍ୱଭାବିକ ହାସ୍ୟରେ ତାହାଙ୍କର ବଦନ ସୁଶୋଭିତଥିଲା । ନୂତନ ପଦ୍ମପତ୍ର ତୁଲ୍ୟ ଶୋଭାଯୁକ୍ତ ଆନନ୍ଦପ୍ରଦ ତାରକାଯୁକ୍ତ ଲୋହିତନେତ୍ରଦ୍ୱୟ ଶୋଭାରେ ତାହାର ରମଣୀୟତା ପ୍ରକାଶ ପାଉଥିଲା । ସେହିପରି ସୁନ୍ଦର କପୋଳଦ୍ୱୟ, କର୍ଣ୍ଣଦ୍ୱୟ, କଣ୍ଠ ଓ ନାସିକାଦ୍ୱାରା ସେ ଅତ୍ୟନ୍ତ ସୁନ୍ଦର ଦିଶୁଥିଲେ, ସ୍ୱଭାବିକ ତାହାଙ୍କର ସୌନ୍ଦର୍ଯ୍ୟ ମଧ୍ୟ ଅସାମାନ୍ୟ ଥିଲା । ପ୍ରଚ୍ଛନ୍ନହାସ୍ୟଯୁକ୍ତ ମୁଖଶ୍ରୀ ପୁରନାରୀମାନଙ୍କ ଚିତ୍ତରେ କାମୋଦ୍ରେକ କରୁଥିଲା, ମାତ୍ର ତାଙ୍କର ସମ୍ମୁଖଭାଗରେ ଯେଉଁ କୁଞ୍ଚିତ ଜଟାଯୁକ୍ତ ପିଙ୍ଗଳବର୍ଣ୍ଣ କେଶ ଭାର ଲମ୍ବୁଥିଲା ଏବଂ ନିଜର ଶରୀର ପ୍ରତି ଅନାଦର ହେତୁ ତାହା ମଳିନ ହୋଇ ଯାଇଥିଲା । ସେଥିରେ ତାହାଙ୍କୁ ଗ୍ରହଗ୍ରସ୍ତ ତୁଲ୍ୟ ମନେ ହେଉଥିଲା । ୩୧ ।

ଋଷଭଦେବ ଯେତେବେଳେ ଦେଖିଲେ ଯେ ଦୃଶ୍ୟମାନ ଲୋକସମୂହ ତାହାଙ୍କ ଯୋଗରେ ପ୍ରତିକୂଳାଚରଣ କରୁଅଛନ୍ତି ମାତ୍ର ତହିଁର ପ୍ରତିକାର କରିବା ଉଚିତ ନୁହେଁ, ସେତେବେଳେ ସେ ଅଜଗର ବ୍ରତ ଅବଲମ୍ବନ କରିଥିଲେ । ଅର୍ଥାତ୍ ଶୟନ କରି ଭୋଜନ, ପାନ, ଚର୍ବଣ, ମଳମୂତ୍ରତ୍ୟାଗ, ଇତ୍ୟାଦି କରିଥିଲେ । ନିଜର ପରିତ୍ୟକ୍ତ ମଳମୂତ୍ରରେ ତାହାଙ୍କର ଶରୀର ଲୁଣ୍ଠିତ ହେଉଥିଲା । ୩୨ ।

ଋଷଭଦେବଙ୍କର ପୁରୀଷ ଗନ୍ଧରେ ବାୟୁ ସୁଗନ୍ଧଯୁକ୍ତ ହୋଇ ସେହିସ୍ଥାନର ଚାରିଆଡ଼େ ଦଶଯୋଜନ ପର୍ଯ୍ୟନ୍ତ ସ୍ଥାନ ସୁଗନ୍ଧଯୁକ୍ତ ହୋଇଥିଲା । ୩୩ ।

---

ଅତି ସୁନ୍ଦର ସୁକୁମାର
ଚରଣ ଯୁଗ କୋମଳକର
ବିପୁଳ ଉଚ୍ଚ ବକ୍ଷଃସ୍ଥଳ
ମଞ୍ଜୁଳ ବଦନ କମଳ
ଅତି ସୁନ୍ଦର ସେ ଶରୀର
ଈଷତହାସ ବିମ୍ବାଧର
ନବ ନଳିନୀଦଳ ଯେସନ୍ତ
ଲୋଚନଯୁଗଳ ତେସନେ

ସୁକର୍ଣ୍ଣ ସୁଭଗ କପୋଳ
ନିଗୂଢ଼ କଣ୍ଠ ଯେ ମଞ୍ଜୁଳ
ସେ ରୂପ ଦେଖିଣ ନୟନେ
ଟଳନ୍ତି ପୁରପତ୍ନୀମାନେ
କୁସୁମାୟୁଧ ବିନ୍ଧେ ମନ
ହୁଅଇ ତାଙ୍କ ଛନଛନ
ସୁନ୍ଦର ଶରୀର ମଳିନ
ଦିଶିଲେ ଆନୁଆନ ବର୍ଣ୍ଣ ।୩୧।

ସଂସାରେ ଯେତେ ଦୁଷ୍ଟ ପ୍ରାଣୀ
ଯୋଗ ଭାଙ୍ଗିବେ ଏହା ଜାଣି
ଯେ ବ୍ରତ ଅତି ଭୟଙ୍କର
ଅଜଗରର ଯେ ଆଚାର
ସେ ଅଜଗର ପ୍ରାୟେ ହୋଇ
ରହିଲେ ନିଜରୂପ ଧାୟି
ଏମନ୍ତେ ନାନା ଯୋଗତନ୍ତ୍ରା
କରି ସେ କୈବଲ୍ୟଦାତା

ଏବଂ ଗୋମୃଗକାକଚର୍ଯ୍ୟୟା ବ୍ରଜଂସ୍ତିଷ୍ଠନ୍ନାସୀନଃ ଶୟ୍ୟା କାକମୃଗଗୋଚରିତଃ ପିବତି ଖାଦତ୍ୟବମେହତି ସ୍ମ । ୩୪ ।

ଇତି ନାନାଯୋଗଚର୍ଯ୍ୟାଚରଣୋ ଭଗବାନ୍ କୈବଲ୍ୟପତିଃ ଋଷଭୋଽବିରତପରମମହାନନ୍ଦାନୁଭବ ଆତ୍ମନି ସର୍ବେଷାଂ ଭୂତାନାମାତ୍ମଭୂତେ ଭଗବତି ବାସୁଦେବ ଆତ୍ମନୋଽବ୍ୟବଧାନାନନ୍ତରୋଦରଭାବେନସିଦ୍ଧସମସ୍ତାର୍ଥପରିପୂର୍ଣ୍ଣୋଯୋଗୈଶ୍ୱର୍ଯ୍ୟାଣିବୈହାୟସମନୋଜବାନ୍ତର୍ଦ୍ଧାନପରକାୟପ୍ରବେଶଦୂରଗ୍ରହଣାଦୀନି ଯଦୃଚ୍ଛୟୋପଗତାନି ନାଞ୍ଜସା ନୃପ ହୃଦୟେନାଭ୍ୟନନ୍ଦତ୍ । ୩୫ ।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଋଷଭଦେବାନୁଚରିତେ ନାମ ପଞ୍ଚମୋଽଧ୍ୟାୟଃ । ୫ ।

---

କାକ, ଗୋ, ମୃଗମାନଙ୍କ ତୁଲ୍ୟ ସେହି ଋଷଭଦେବ ଆଚରଣ କରୁଥିଲେ । ୩୪ ।

ଆତ୍ମାରେ ସତତ ପରମଆନନ୍ଦଯୁକ୍ତ ଭଗବାନ୍ କୈବଲ୍ୟ ପତି ଋଷଭଦେବ ଏହିପରି ବିବିଧ ଯୋଗ ଚର୍ଯ୍ୟାରେ ସର୍ବଭୂତର ଆତ୍ମାସ୍ୱରୂପ ଭଗବାନ୍ ବାସୁଦେବଙ୍କଠାରେ ଅଭିନ୍ନତାଜ୍ଞାନରେ ଏବଂ ଉପାଧିଶୂନ୍ୟ ଭାବରେ ସମସ୍ତ ସିଦ୍ଧି ଓ ସମସ୍ତ ଫଳରେ ପରିପୂର୍ଣ୍ଣ ଥିବାରୁ ଯଦୃଚ୍ଛାକ୍ରମେ ଉପସ୍ଥିତ ପକ୍ଷୀଭଳି ଅର୍ଥାତ୍ ମନତୁଲ୍ୟ ବେଗରେ ଦ୍ରୁତଗତି, ଅନ୍ତର୍ଦ୍ଧାନବିଦ୍ୟା, ପରକାୟ ପ୍ରବେଶ, ସୁଦୂରରେ ଅବସ୍ଥିତ ପଦାର୍ଥ ଦର୍ଶନ ଇତ୍ୟାଦି ବହୁପ୍ରକାର ବିଭୂତିକୁ ମନେ ମନେ ଆଦର କରୁ ନ ଥିଲେ । କିନ୍ତୁ ଯୋଗିମାନଙ୍କ ଶିକ୍ଷାଲାଗି ଯୋଗ ବିଭୂତିରେ ଆନନ୍ଦ ପ୍ରକାଶ କରୁଥିଲେ । ୩୫ ।

---

ସକଳ ଭୂତ ଆତ୍ମା ସେହି
ଋଷଭ ଅଂଶେ ଧରି ଦେହି
ପରମ ପ୍ରଭୁ ଯୋଗେଶ୍ୱର
ସେଯୋଗସାଧିଲେଅପାର ।୩୪।୩୫

ସେ ପ୍ରଭୁ ଚରଣେ ମୋ ଚିତ୍ତ
କଣ୍ଟଳେ ରହୁ ଅବିରତ
ଭଣଇ ବିପ୍ର ଜଗନ୍ନାଥ
ଋଷଭ ଦେବଙ୍କ ଚରିତ

ଏହା ଘୋଷାକୁ ମନେ କରି
ଭବସାଗରୁ ହେବ ପାରି ।





## ବିଶଦାର୍ଥ :—

ଋଷଭଦେବ ଯେଉଁ ଉପଦେଶ ପୁତ୍ରମାନଙ୍କୁ ପ୍ରଦାନ କରିଥିଲେ, ତାହା ଲୋକଶିକ୍ଷା ନିମିତ୍ତ, ବହୁ ଜୀବଯୋନି ପ୍ରାପ୍ତ ହୋଇ ମନୁଷ୍ୟ ମାନବଦେହ ଧାରଣକରି ଜନ୍ମଗ୍ରହଣ କରେ । ଏହିର କାରଣ ହେଉଛି-ମନୁଷ୍ୟ ଶରୀରରେ ଜ୍ଞାନର ଯେପରି ପରିପୂର୍ଣ୍ଣ ବିକାଶ ହୁଏ ଅନ୍ୟ କୌଣସି ଶରୀରରେ ସେପରି ହୁଏ ନାହିଁ । ପୃଥିବୀମଧ୍ୟରେ ଭାରତବର୍ଷ ଯେପରି କର୍ମକ୍ଷେତ୍ର ଜୀବଜଗତରେ ମନୁଷ୍ୟ ସେହିପରି ଉପଯୁକ୍ତ । ପଶୁମାନେ ଜ୍ଞାନହୀନ, ସେମାନଙ୍କର ବିଚାରଶକ୍ତି ନ ଥାଏ, କିନ୍ତୁ ମନୁଷ୍ୟ ଜ୍ଞାନହୀନ ଓ ବିଚାରଶୂନ୍ୟ ହେଲେ ପଶୁ ସହିତ ତାହାର କୌଣସି ପାର୍ଥକ୍ୟ ନ ଥାଏ । ଅବସ୍ଥା ବା ସ୍ତରଭେଦରେ ମନୁଷ୍ୟଙ୍କୁ ନୀଚ ଉଚ୍ଚ ଓ ମହାନ୍ ଏହିପରି ଶ୍ରେଣୀ ବିଭାଗ କରାଯାଇ ପାରେ । ଭଗବଦ୍‌ଭକ୍ତ ବ୍ରହ୍ମଉପାସକ ବ୍ୟକ୍ତି ଯଥାର୍ଥରେ ମହାନ୍ । ଉପାସକ ଭେଦରେ ମୁକ୍ତି ଦ୍ୱିବିଧ, ସାଯୁଜ୍ୟ ଓ ଭଗବଦ୍‌ପାର୍ଷଦତ୍ୱ ଲକ୍ଷଣ, ଯେଉଁମାନେ ବିଷ୍ଣୁ ଉପାସକ ସେମାନେ ଭଗବତ୍ ପାର୍ଷଦ, ଯେଉଁମାନେ ନିର୍ବିଶେଷ ଭୂମାର ବ୍ରହ୍ମ ଉପାସକ ସେମାନେ ବ୍ରହ୍ମଭାବ ଲାଭକରି ସାରୂପ୍ୟ ମୁକ୍ତିର ଅଧିକାରୀ ହୋଇଥାନ୍ତି । ଯେଉଁମାନେ କାମିନୀକାଞ୍ଚନରେ ଆସକ୍ତ ଏବଂ ବିଷୟଭୋଗକୁ ପରମପୁରୁଷାର୍ଥ ମନେକରନ୍ତି ସେମାନେ ନୀଚ, ଯେଉଁମାନେ କର୍ମମୟ ଜୀବନଯାପନ କରନ୍ତି ଅଥଚ ଭଗବଦ୍ ଭକ୍ତ ସେମାନଙ୍କର କାମନାପୂର୍ଣ୍ଣ ସେମାନଙ୍କୁ ମଧ୍ୟମ ବା ଉଚ୍ଚମାନବ ଶ୍ରେଣୀରେ ଗଣନା କରାଯାଇ ପାରେ ।

ସାଧନ ପକ୍ଷରେ ପଞ୍ଚବିଂଶତି ବିଭିନ୍ନ ଅନୁଷ୍ଠାନ ପ୍ରସଙ୍ଗ ଏହି ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ସାଧନା ଦ୍ୱାରା ଜୀବ ଯେତେବେଳେ ଫଳଲାଭ କରେ, ସେତେବେଳେ ଆଉ ସାଧନାନୁଷ୍ଠାନ କରିବାର ପ୍ରୟୋଜନ ହୁଏ ନାହିଁ । ପୁରୁଷ ଫଳ କାମନାରେ ଉପାୟ ଅନୁଷ୍ଠାନ କରେ । ଏହି ଉପାୟ ଯଥା ଯଥ ଅନୁଷ୍ଠାନ ଫଳରେ ଯେତେବେଳେ ଫଳଲାଭ ହୁଏ, ସେତେବେଳେ ସେ ମନେ କରେ ମୁଁ ସାଧନାଦ୍ୱାରା ଯେଉଁ ଫଳ ଲାଭକରି ଅଛି—ଏହି ଉପାୟ ବା ସାଧନରୁ କ୍ଷାନ୍ତ ହେଲେ କାଳେ ସେ ଫଳ ବିଲୁପ୍ତ ହୋଇଯିବ, ତେଣୁ ଦେହଥିବା ଯାଏ ତାହା ଅନୁଷ୍ଠାନ କରିବା ଉଚିତ, ମାତ୍ର ଏହା ତାହାର ଭ୍ରାନ୍ତି । ଏହି ପ୍ରସଙ୍ଗରେ ପିତା, ମାତା ବା ଗୁରୁଙ୍କର କର୍ତ୍ତବ୍ୟ ମଧ୍ୟ ପ୍ରକାଶିତ ହୋଇଅଛି । ଗୁରୁ ସ୍ଥାନୀୟ ବ୍ୟକ୍ତିମାନେ ଶିଷ୍ୟସ୍ଥାନୀୟ ବ୍ୟକ୍ତିମାନଙ୍କୁ ଉପଦେଶ ଦେବେ ମାତ୍ର ସେମାନେ ତାହା ପାଳନ ନ କରିବା ଦୋଷରେ ସେମାନଙ୍କୁ ପରିତ୍ୟାଗ କରିବେ ନାହିଁ । ଏହାର ଉଦାହରଣରେ ଅନ୍ଧବ୍ୟକ୍ତିର କଥା କୁହା ଯାଇ ଅଛି । ଅର୍ଥାତ୍ ଗୋଟିଏ ଅନ୍ଧ ଅବାଟରେ ଯାଉଥିଲେ, ତାହାକୁ ଠିକ୍ ବାଟରେ ପରିଚାଳିତ କରିବା ଜ୍ଞାନୀର କର୍ତ୍ତବ୍ୟ

ଋଷଭଦେବ ଅବଶେଷରେ ପୁତ୍ରମାନଙ୍କ ପ୍ରତି ଉପଦେଶ ଦେଇଥିଲେ—ଭରତଙ୍କୁ ସେମାନେ କିପରି ପୂଜା କରିବେ । ଭରତ ପୁତ୍ରମାନଙ୍କ ମଧ୍ୟରେ ଶ୍ରେଷ୍ଠଥିଲେ, ଏତଦ୍ୱାରା କନିଷ୍ଠଭ୍ରାତାମାନଙ୍କର ଜ୍ୟେଷ୍ଠ ଭ୍ରାତାଙ୍କ ପ୍ରତି କର୍ତ୍ତବ୍ୟ ନିର୍ଦ୍ଦେଶ କରାଯାଇଅଛି । ଏହି ଅଧ୍ୟାୟରେ ବ୍ରାହ୍ମଣମାନେ ବିଷ୍ଣୁଙ୍କର ପୂଜ୍ୟ, ବିଷ୍ଣୁ ବ୍ରାହ୍ମଣ ମୁଖରେ ଆହାର କରନ୍ତି ଏବଂ ଯଜ୍ଞାନୁଷ୍ଠାନ ଅପେକ୍ଷା ବ୍ରାହ୍ମଣ ଭୋଜନ ବିଷ୍ଣୁଙ୍କର ପ୍ରୀତି ସାଧନ କରେ ଏହା ମଧ୍ୟ ନିର୍ଦ୍ଦେଶ କରାଯାଇ ଅଛି ।

## ଷ ଷ୍ଠ ଅ ଧ୍ୟା ୟ ।

ଷଷ୍ଠେ ଲୀନାଭିମାନସ୍ୟ ଦେହତ୍ୟାଗକ୍ରମାଭିଧା ।
ପ୍ରଦହନ୍ତଂ ଦବାଗ୍ନିଂ ଯଃ ପଶ୍ୟନ୍ନପି ନ ପଶ୍ୟତି । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀ ରାଜୋବାଚ ।

ନ ନୂନଂ ଭଗବ ଆତ୍ମାରାମାଣାଂ ଯୋଗସମୀରିତଜ୍ଞାନାବଭର୍ଜିତକର୍ମବୀଜା-ନାମୈଶ୍ୱର୍ଯ୍ୟାଣି ପୁନଃ କ୍ଲେଶଦାନି ଭବିତୁମର୍ହନ୍ତି ଯଦୃଚ୍ଛୟୋପଗତାନି । ୧ ।

ଶ୍ରୀ ଋଷିରୁବାଚ ।

ସତ୍ୟମୁକ୍ତଂ କିନ୍ତ୍ୱିହ ବା ଏକେ ନ ମନସୋଽଦ୍ଧା ବିଶ୍ରମ୍ଭମନବସ୍ଥାନସ୍ୟ ଶଠ କିରାତ ଇବ ସଙ୍ଗଚ୍ଛନ୍ତେ । ୨ ।

---

### ଋଷଭଙ୍କର ଦେହତ୍ୟାଗ ।

ଷଷ୍ଠ ଅଧ୍ୟାୟରେ ଋଷଭଦେବ ଦାବାଗ୍ନିରେ ନିଜର ଦେହ ତ୍ୟାଗକରିବା ବିଷୟରେ ବର୍ଣ୍ଣିତ ହୋଇଅଛି ।୦।

ଶ୍ରୀରାଜା କହିଲେ :—

ହେ ଭଗବାନ୍ ! ଯେଉଁମାନେ ଆତ୍ମାରାମ, ଯେଉଁମାନଙ୍କର କର୍ମବୀଜ ଯୋଗଦ୍ୱାରା ଉଦ୍ଦୀପିତ-ଜ୍ଞାନରେ ଦଗ୍ଧୀଭୂତ ହୋଇଅଛି, ଯଦୃଚ୍ଛା କ୍ରମେ ଉପସ୍ଥିତ ଐଶ୍ୱର୍ଯ୍ୟମାନ ଯେଉଁମାନଙ୍କ ପ୍ରତି କ୍ଲେଶପ୍ରଦ ହୋଇ ନ ପାରେ, ସେମାନେ କି କାରଣରୁ ଯୋଗ ସିଦ୍ଧିଲାଭ କରିବାକୁ ଇଚ୍ଛା କରନ୍ତି ନାହିଁ ? । ୧ ।

ଶ୍ରୀଶୁକଦେବ କହିଲେ :—

ମହାରାଜ ! ଆପଣ ଯାହା କହିଲେ ତାହା ସତ୍ୟ, କିନ୍ତୁ କୌଣସି କୌଣସି ବୁଦ୍ଧିମାନ୍ ବ୍ୟକ୍ତି ଚଞ୍ଚଳମନକୁ ବିଶ୍ୱାସ କରନ୍ତି ନାହିଁ । ଯେପରି ଶଠ ବ୍ୟାଧ ମୃଗକୁ ଧରିଲେ ସୁଦ୍ଧା ବିଶ୍ୱାସ କରି ନ ପାରେ ଯେ ସେ ତାର ଆୟତ୍ତ ହୋଇଅଛି । ଅର୍ଥାତ୍ ହରିଣକୁ ଧରିଥିଲେ ମଧ୍ୟ ତାହାକୁ ବାନ୍ଧିରଖି ତାହାପ୍ରତି ଯେ ସର୍ବଦା ଦୃଷ୍ଟି ରଖିଥାଏ, ସେହିପରି ବୁଦ୍ଧିମାନ୍ ବ୍ୟକ୍ତି ଚିତ୍ତକୁ ଥରେ ସଂଯତକରି ପୁନଶ୍ଚ ବିଷୟଭୋଗରେ ରତ କରାଏ ନାହିଁ, କାରଣ ଚିତ୍ତ ଚଞ୍ଚଳ, ତାହା ବିଶୁଦ୍ଧତାଲାଭ କରିଥିଲେ ମଧ୍ୟ ବିଷୟଭୋଗ ହେତୁ ପୁନଶ୍ଚ ଅବିଶୁଦ୍ଧ ହୋଇଯାଏ । ୨ ।

---

ଷଷ୍ଠରେ ଦେହ ବିନାଶିଲେ, ଋଷଭ ଯୋଗରେ ଛାଡ଼ିଲେ । ୦ ।

ଶ୍ରୀରାଜୋବାଚ—

ମୋର ସଂଶୟ ହୃଦଗତେ
ଶୁଣମୁନି କହ ତୋଷଣତେ
ଯେ ଇଚ୍ଛାବିହାରୀ ପୁରୁଷ
ସକଳ କର୍ମର ସେ ଈଶ
ଏ ରୂପେ ଥିବା କାର୍ଯ୍ୟ ତାର
ସଂଶୟ ଫେଡ଼ ମୁନିବର
ଅଷ୍ଟ ଐଶ୍ୱର୍ଯ୍ୟଦାତା ହୋଇ
ଏ କ୍ଲେଶ କାହିଁକି ସେ ପାଇ ।୧।

ଶ୍ରୀଶୁକଉବାଚ—

ଏ ସତ୍ୟ କହିଲ ରାଜନ
କହିବା ଶୁଣ ସାବଧାନ
ଐଶ୍ୱର୍ଯ୍ୟ ଧନ ଆଦି ଯେତେ
ଛିଦ୍ରେ କଦର୍ଥନ୍ତି ସମସ୍ତେ
ଏ ମନ ଚଞ୍ଚଳ ସ୍ୱଭାବ
କେବେହେଁ ବିଶ୍ୱାସ ନ ଯିବ
ଯାହାର ମୂଳ କାମ କୋପ
ଶୋକ ମୋହ ଯେ କ୍ରୋଧ ଗର୍ବ

ତଥା ଚୋକ୍ତଂ—

ନ କୁର୍ଯ୍ୟାତ୍ କର୍ହିଚିତ୍ ସଖ୍ୟଂ ମନସି ହ୍ୟନବସ୍ଥିତେ ।
ଯଦ୍‌ବିଶ୍ରମ୍ଭାଚ୍ଚିରାଚ୍ଚୀର୍ଣ୍ଣଂ ଚସ୍କନ୍ଦ ତପ ଐଶ୍ୱରମ୍ । ୩ ।
ନିତ୍ୟଂ ଦଦାତି କାମସ୍ୟ ଛିଦ୍ରଂ ତମନୁ ଯେଽରୟଃ ।
ଯୋଗିନଃ କୃତମୈତ୍ରସ୍ୟ ପତ୍ୟୁର୍ଜାୟେବ ପୁଂଶ୍ଚଳୀ । ୪ ।
କାମୋ ମନ୍ୟୁର୍ମଦୋ ଲୋଭଃ ଶୋକମୋହଭୟାଦୟଃ ।
କର୍ମବନ୍ଧଶ୍ଚ ଯନ୍ମୂଳଃ ସ୍ୱୀକୁର୍ଯ୍ୟାତ୍ କୋ ନୁ ତଦ୍‌ବୁଧଃ । ୫ ।

ଅଥୈବମଖିଲଲୋକପାଲଲଲାମୋଽପି ବିଲକ୍ଷଣୈର୍ଜଡ଼ବଦବଧୂତବେଶଭାଷାଚରିତୈରବିଲକ୍ଷିତଭଗବତ୍‌ପ୍ରଭାବୋ ଯୋଗିନାଂ ସାମ୍ପରାୟବିଧିମନୁଶିକ୍ଷୟନ୍ ସ୍ୱକଳେବରଂ ଜିହାସୁ ରାତ୍ମନ୍ୟାତ୍ମାନମସଂବ୍ୟବହିତମନର୍ଥାନ୍ତରଭାବେଣ ନରୀକ୍ଷ୍ୟମାଣ ଉପରତାନୁବୃତ୍ତି ରୁପରରାମ । ୬ ।

ପଣ୍ଡିତମାନେ କହିଅଛନ୍ତି ଯେ ଚଞ୍ଚଳ ସ୍ୱଭାବ ମନକୁ କଦାପି ବିଶ୍ୱାସକରିବା ଉଚିତ ନୁହେଁ, କାରଣ ଏହାଉପରେ ବିଶ୍ୱାସ ହେତୁ ମହାଦେବ ମଧ୍ୟ ମୋହିନୀରୂପ ଦର୍ଶନ କରି ବହୁକାଳ ସଞ୍ଚିତ ତପସ୍ୟାରୁ ବିଚ୍ୟୁତ ହୋଇଥିଲେ ଏବଂ ସୌଭରି ପ୍ରଭୃତି ମହର୍ଷିଗଣଙ୍କର ମଧ୍ୟ ଚିରସଞ୍ଚିତ ତପସ୍ୟା ନଷ୍ଟ ହୋଇଥିଲା । ୩ ।

କୁଳଟା ପତ୍ନୀ ଯେପରି ଉପପତିକୁ ଅଭ୍ୟନ୍ତରରେ ରଖି ସ୍ୱୀୟ ବିଶ୍ୱସ୍ତ ପତିକୁ ପ୍ରାଣରେ ବଧକରେ, ସେହିପରି ମନପ୍ରତି ବିଶ୍ୱସ୍ତ ଯୋଗୀ ଥିଲେ, କାମ ଓ ତଦନୁଚର ଶତ୍ରୁ ସ୍ୱରୂପ କୋଧ ଲୋଭାଦିକୁ ଉଦ୍‌ବୁଦ୍ଧ, କରି ସେହି ଯୋଗୀର ତପସ୍ୟା ଧ୍ୱଂସ କରିଥାଏ । ୪ ।

ସେହି ଚିତ୍ତହିଁ ଏକମାତ୍ର କାମ, କ୍ରୋଧ, ମଦ, ଲୋଭ, ଶୋକ, ମୋହ ଏବଂ ଭୟାଦି ଓ କର୍ମବନ୍ଧନର ହେତୁ ଅଟେ । ତାହାକୁ କେଉଁ ବୁଦ୍ଧିମାନ୍‌ବ୍ୟକ୍ତି ସ୍ୱାଧୀନ ବୋଲି ମନେ କରିପାରେ ? । ୫ ।

ତଦନନ୍ତର ଅଖିଳ ଲୋକପାଳଗଣଙ୍କର ଶ୍ରେଷ୍ଠ ଭଗବାନ୍ ଋଷଭଦେବ ଜଡ଼ତୁଲ୍ୟ ଅବଧୂତବେଶ ଭାଷା ଓ ଚରିତ୍ର ଦ୍ୱାରା ଭଗବତ୍‌ପ୍ରଭାବ କାହାରିକୁ ଜାଣିବାକୁ ଦେଲେ ନାହିଁ । ସର୍ବଲୋକପାଳମାନଙ୍କର ଶ୍ରେଷ୍ଠ ହେଲେ ମଧ୍ୟ ସେ ଯୋଗିଗଣଙ୍କର ଦେହତ୍ୟାଗ ବିଧାନ ଶିକ୍ଷା ନିମିତ୍ତ ନିଜର ବାହ୍ୟଦେହ ପରିତ୍ୟାଗ କରିବା ଇଚ୍ଛାରେ ଆତ୍ମାର ଅଭିନ୍ନମାତ୍ମାର ଅବ୍ୟବହିତରୂପେ ଆତ୍ମାକୁ ଦେଖିପାରି ବାସନାନୁବୃତ୍ତି ଶୂନ୍ୟହୋଇ ଲିଙ୍ଗଦେହାଭିମାନ ପରିତ୍ୟାଗ କରିଥିଲେ । ୬ ।

ଏ ସର୍ବ ଯାର ମୂଳ ହୋଇ
ପ୍ରାଣିଙ୍କୁ ବନ୍ଧନ କରଇ
କେ ଏହା ସାଧୁ କରି ମଣେ
ମୂଢ଼ ପାମର ଜନ ବିନେ । ୨-୫
ଏବେ ହେ ଶୁଣ ମହୀପାଳ
ସେ ଯେ ଋଷଭ ଅଦମୂଳ

ଅଖିଳଲୋକପାଳ-ବର
ବନ୍ଦନ୍ତି ଚରଣେ ଯାହାର
ସେ ଦେବ ନାନା ବିଲକ୍ଷଣ
ଜଡ଼ବତ୍ ପ୍ରାୟ ଆଚରଣ
ଭ୍ରମନ୍ତି ନାନା ଦେଶ ଗ୍ରାମେ
ଯୋଗ ଶିଖାଇ ଯୋଗିଗଣେ

ଏମନ୍ତେ ଗଲା କେତେ ଦିନ
ଶୁଣ ରାଜନ ଏକମନ
ଋଷଭ ମନେ ବିଚାରିଲେ
ଏ ଦେହ ଛାଡ଼ିବି ବୋଇଲେ
ଆତ୍ମାରେ ମନକୁ ବୁଡ଼ାଇ
ଇନ୍ଦ୍ରିୟ ବୃତ୍ତେ ମନ ନାହିଁ

ତସ୍ୟ ହ ବା ଏବଂ ମୁକ୍ତଲିଙ୍ଗସ୍ୟ ଭଗବତ ଋଷଭସ୍ୟ ଯୋଗମାୟାବାସନୟା ଦେହ ଇମାଂ ଜଗତୀମଭିମାନାଭାସେନ ସଙ୍କ୍ରମମାଣଃ କୋଙ୍କ-ବେଙ୍କଟ-କୁଟକାନ୍ ଦକ୍ଷିଣକର୍ଣ୍ଣାଟକାନ୍ ଦେଶାନ୍ ଯଦୃଚ୍ଛୟୋପଗତଃ କୁଟକାଚଲୋପବନ ଆସ୍ୟେକୃତାଶ୍ମକବଲ ଉନ୍ମାଦ ଇବ ମୁକ୍ତମୂର୍ଦ୍ଧଜୋଽସଂବୀତ ଏବ ବିଚଚାର । ୭ ।

ଅଥ ସମୀରବେଗବିଧୂତବେଣୁବିଘର୍ଷଣଜାତୋଗ୍ରଦାବାନଲସ୍ତଦ୍‌ବନମାଲେଲିହାନଃ ସହ ତେନ ଦଦାହ । ୮ ।

ଯସ୍ୟ କିଲାନୁଚରିତମୁପାକର୍ଣ୍ଣ୍ୟ କୋଙ୍କବେଙ୍କଟକୁଟକାନାଂ ରାଜାର୍ହନ୍ନାମୋପଶିକ୍ଷ୍ୟ କଳାବଧର୍ମ ଉତ୍କୃଷ୍ୟମାଣେ ଭବିତବ୍ୟେନ ବିମୋହିତଃ ସ୍ୱଧର୍ମପଥମକୁତୋଭୟମପହାୟ କୁପଥପାଷଣ୍ଡମସମଞ୍ଜସଂ ନିଜମନୀଷୟା ମନ୍ଦଂ ସମ୍ପ୍ରବର୍ତ୍ତୟିଷ୍ୟତେ । ୯ ।

---

ଭଗବାନ୍ ଋଷଭଦେବ ଏହିପରି ମୁକ୍ତଲିଙ୍ଗ ହେଲେ ମଧ୍ୟ ଯୋଗମାୟା ବାସନା ହେତୁ ଓ ଅଭିମାନ ଆଭାସ ବଶତଃ କୋଙ୍କ, ବେଙ୍କଟ, କୁଟକ ଓ ଦକ୍ଷିଣ କର୍ଣ୍ଣାଟକ ଦେଶରେ ପରିଭ୍ରମଣ କରୁ କରୁ ଯଦୃଚ୍ଛାକ୍ରମେ କୁଟକାଚଳ ନିକଟବର୍ତ୍ତୀ ଅରଣ୍ୟରେ ଉପସ୍ଥିତ ହୋଇ ପ୍ରସ୍ତର ଖଣ୍ଡ ଭକ୍ଷଣ କରି ଉନ୍ମାଦ ତୁଲ୍ୟ ନଗ୍ନାବସ୍ଥାରେ ଭ୍ରମଣ କରୁଥିଲେ । ୭ ।

ଅନନ୍ତର ବାୟୁବେଗରେ ସଂଚାଳିତ ବଂଶ ଓ ଅନ୍ୟାନ୍ୟ ବୃକ୍ଷସମୂହ ପରସ୍ପର ସଂଘର୍ଷଣରେ ଉତ୍ପନ୍ନ ବନାଗ୍ନି ଶିଖା ବିସ୍ତାର କରି ଋଷଭଦେବଙ୍କ ଶରୀରକୁ ବନମଧ୍ୟରେ ଦଗ୍ଧ କରିଥିଲା । ୮ ।

କୋଙ୍କ, ବେଙ୍କଟ, କୁଟ୍ଟକ ଦେଶରେ ଅର୍ହନ୍ ନାମକ ଏକ ରାଜା ଥିଲେ । ସେ ସେହି ଦେଶବାସୀ ଲୋକମାନଙ୍କ ମୁଖରୁ ଋଷଭ ଦେବଙ୍କର ସବୁ ଆଶ୍ରମର ବୃତ୍ତାନ୍ତ ଶ୍ରବଣକରି ତାହା ସ୍ୱୟଂ ଶିକ୍ଷା କରିବେ । କଳିକାଳରେ ଅଧର୍ମ ବୃଦ୍ଧି ପ୍ରାପ୍ତ ହେଲେ ପ୍ରାଣିଗଣଙ୍କର ପୂର୍ବସଞ୍ଚିତ ପାପଫଳରେ ମନ୍ଦବୁଦ୍ଧି ବିମୋହିତ ହୋଇ ଅକୁତୋ ଭୟରେ ନିଜର ଧର୍ମପଥ ପରିତ୍ୟାଗ ପୂର୍ବକ ସ୍ୱୀୟ କପୋଳ କଳ୍ପିତ କୁତ୍ସିତ ଅସଙ୍ଗତ ପାଷଣ୍ଡମାର୍ଗ ପ୍ରଦର୍ଶିତ କରିବେ । ୯ ।

---

ଏମନ୍ତେ ମୁକ୍ତଲିଙ୍ଗରୂପ
ହୋଇଲେ ଈଶ୍ୱରସ୍ୱରୂପ
ମୃତ୍ପିଣ୍ଡ ପ୍ରାୟେ ଦେହ ମଣି
ସ୍ୱଚ୍ଛନ୍ଦେ ବିହରିଲେ ଜ୍ଞାନୀ
ଦକ୍ଷିଣ କର୍ଣ୍ଣାଟ ଦେଶରେ
ମିଳିଲେ କୁଟକ ଗିରିରେ
ତହିଁର ଉପବନ ଛୁଇଁ
ବୁଲନ୍ତି ମୁକ୍ତକେଶ ହୋଇ ।୬,୭।

ଏମନ୍ତେ ପବନବେଗରେ
ଅଗ୍ନି ଜଳିଲା ଅତିଖରେ
ବନସ୍ଥ ବୃକ୍ଷ ଜୀବମାନ
ଶୀଘ୍ର ସେ କରଇ ଦହନ
ତହୁଁ ଉନମତ୍ତ ରୂପରେ
ପଶିଲେ ଅଗ୍ନିର ଭିତରେ
ଅନଳ ତେଜ ଅତିଖର
ଦହିଲା ତାହାଙ୍କ ଶରୀର । ୮ ।

କଳିଯୁଗରେ ନରନାଥ
ଏ ଯେ ଋଷଭଦେବ-ପଥ
ନ ବୁଝି ପାଷଣ୍ଡ ବହୁତ
ବାହ୍ୟ ଆଚାରରେ ଅବଧୂତ
ଶୌଚ ପବିତ୍ର ଦୂରକରି
ଦେବତା ନିନ୍ଦାକୁ ଆଚରି,
କଳିର ଆଚାର ଯେସନ
ତହିଁରେ ହୋଇ ମତଭ୍ରମ

ଯେନ ହ ବାବ କଲୌ ମନୁଜାପସଦା ଦେବମାୟାବିମୋହିତାଃ ସ୍ୱବିଧିନିଯୋଗ-ଶୌଚଚାରିତ୍ରବିହୀନା ଦେବହେଳନାନ୍ୟପବ୍ରତାନି ନିଜନିଜେଚ୍ଛୟା ଗୃହ୍ଣାନା ଅସ୍ନାନାନାଚମନାଶୌଚକେଶୋଲ୍ଲୁଞ୍ଚନାଦୀନି କଲିନାଽଧର୍ମବହୁଲେନୋପହତଧିୟୋ ବ୍ରହ୍ମବ୍ରାହ୍ମଣ-ଯଜ୍ଞପୁରୁଷଲୋକବିଦୂଷକାଃ ପ୍ରାୟେଣ ଭବିଷ୍ୟନ୍ତି । ୧୦ ।

ତେ ଚ ହ୍ୟର୍ବାକ୍‌ତନୟା ନିଜଲୋକଯାତ୍ରୟାନ୍ଧପରମ୍ପରୟାଶ୍ୱସ୍ତାସ୍ତମସ୍ୟନ୍ଧେ ସ୍ୱୟମେବ ପ୍ରପତିଷ୍ୟନ୍ତି । ୧୧ ।

ଅୟମବତାରୋ ରଜସୋପପ୍ଳୁତକୈବଲ୍ୟୋପଶିକ୍ଷଣାର୍ଥଃ । ୧୨ ।

ତସ୍ୟାନୁଗୁଣାନ୍ ଶ୍ଳୋକାନ୍ ଗାୟନ୍ତି:—

ଅହୋ ଭୁବଃ ସପ୍ତସମୁଦ୍ରବତ୍ୟା ଦ୍ୱୀପେଷୁ ବର୍ଷେଷ୍ୱଧିପୁଣ୍ୟମେତତ୍ ।
ଗାୟନ୍ତି ଯତ୍ରତ୍ୟଜନା ମୁରାରେଃ କର୍ମାଣି ଭଦ୍ରାଣ୍ୟବତାରବନ୍ତି । ୧୩ ।

---

ଏଣୁ କଳି କାଳରେ ନିକୃଷ୍ଟ ମନୁଷ୍ୟମାନେ ଦେବମାୟାରେ ବିମୋହିତ ହୋଇ ନିଜ ନିଜର ବର୍ଣ୍ଣାଶ୍ରମ ବିହିତ ବିଶୁଦ୍ଧ ଚରିତ୍ରରୁ ସ୍ଖଳିତ ହେବେ ଏବଂ ସ୍ୱେଚ୍ଛାରେ କୁବ୍ରତଅବଲମ୍ବନକରି ଦେବତାମାନଙ୍କର ଅବଜ୍ଞା ଏବଂ ସ୍ନାନ, ଆଚମନ ଓ ଶୌଚବିଧି ପରିତ୍ୟାଗ କରି ମସ୍ତକ ମୁଣ୍ଡନ କରିବେ । ଏହାପରି ବୁଦ୍ଧିଭ୍ରଷ୍ଟ ହୋଇ ସେମାନେ ବେଦ, ବ୍ରାହ୍ମଣ, ଯଜ୍ଞପୁରୁଷ ଓ ଲୋକନିନ୍ଦା କରିବେ । ୧୦ ।

ସେହି ଅବେଦ ମୂଳକ ବ୍ୟକ୍ତିମାନେ ସ୍ୱେଚ୍ଛାକୃତ ପ୍ରବୃତ୍ତିକୁ ଶ୍ରେଷ୍ଠ ବୋଲି ଜ୍ଞାନକରି ଅନ୍ଧ ପରମ୍ପରା କ୍ରମେ ସ୍ୱୟଂ ଅନ୍ଧତମସରେ ନିପତିତ ହେବେ । ୧୧ ।

ରଜୋଗୁଣରେ ଯେଉଁମାନେ ଉପଦ୍ରୁତ ଅର୍ଥାତ୍ ରଜୋଗୁଣଦ୍ୱାରା ଯେଉଁମାନଙ୍କର ସତ୍ତ୍ୱଗୁଣ ଅନ୍ଧକାରାଚ୍ଛନ୍ନ ହୋଇଅଛି, ସେମାନଙ୍କୁ ପୁନର୍ବାର ମୋକ୍ଷମାର୍ଗ ଶିକ୍ଷା ଦେବା ନିମିତ୍ତ ଭଗବାନ୍ ଋଷଭ ଦେବଙ୍କର ଆବିର୍ଭାବ ଘଟିଥିଲା । ତାହାଙ୍କର ଉପଦେଶ ଅନୁସାରେ ଏହି ଶ୍ଳୋକ ଗୁଡ଼ିକ ଗୀତ ହୋଇଥାଏ । ୧୨ ।

ଅହୋ ! ସପ୍ତ ସମୁଦ୍ର ପରିବେଷ୍ଟିତ ପୃଥିବୀ ମଧ୍ୟରେ ଯେତେଗୁଡ଼ିଏ ଦ୍ୱୀପ ଓ ବର୍ଷ ଅଛି, ତନ୍ମଧ୍ୟରେ ଏହି ଭାରତବର୍ଷହିଁ ଅଧିକ ପୁଣ୍ୟମୟ । ଯେଉଁ ଭାରତବର୍ଷରେ ଭଗବାନ୍ ନାରାୟଣ ଋଷଭ ଦେବରୂପେ ଅବତୀର୍ଣ୍ଣ ହୋଇଥିବାରୁ ତାହାଙ୍କର ମଙ୍ଗଳମୟ କାର୍ଯ୍ୟାବଳୀ କୀର୍ତ୍ତିତ ହୋଇଥାଏ । ୧୩ ।

---

ଦେବ ବ୍ରାହ୍ମଣ ପିତୃଗଣ
ନିନ୍ଦା କରିବେ ଅନୁକ୍ଷଣ
ସୁକର୍ମ ପଥକୁ ଛାଡ଼ିବେ
କୁମାର୍ଗ ପଥ ଆବୋରିବେ ।୧୦-୧୧
ଶୁଣ କହିବା ନୃପବର
ଏ ଯେ ଋଷଭ ଅବତାର

ରଜୋଗୁଣରେ ଜାତ ଯେତେ
ତାହାଙ୍କ କଇବଲ୍ୟ ଅର୍ଥେ
ତାହାର ଗୁଣ ଯେ ସଂସାରେ
ଗାୟନ କରୁଛନ୍ତି ନରେ । ୧୨ ।
ସପତ ସିନ୍ଧୁ ମଧ୍ୟେ ଥାଇ
ଦ୍ୱୀପ ବରଷ ଯେତେ ହୋଇ

ଭାରତ ବର୍ଷ ତହିଁ ଧନ୍ୟ
ଯହିଁରେ ଜନ୍ମ ପ୍ରାଣିମାନ
ଅଖିଳ ଜନର ଠାକୁର
ତାହାଙ୍କ ଜନ୍ମ ଅବତାର
ଗାୟନ କରନ୍ତି ହରଷେ
ଯେଣେ ଅଜ୍ଞାନ ପାପ ନାଶେ ।୧୩

ଅହୋ ନୁ ବଂଶୋ ଯଶସାବଦାତଃ ପ୍ରୈୟବ୍ରତୋ ଯତ୍ର ପୁମାନ୍ ପୁରାଣଃ ।
କୃତାବତାରଃ ପୁରୁଷଃ ସ ଆଦ୍ୟଶ୍ଚଚାର ଧର୍ମଂ ଯଦକର୍ମହେତୁମ୍ । ୧୪ ।
କୋ ନ୍ୱସ୍ୟ କାଷ୍ଠାମପରୋଽନୁଗଚ୍ଛେନ୍ମନୋରଥେନାପ୍ୟଭବସ୍ୟ ଯୋଗୀ ।
ଯୋ ଯୋଗମାୟାଃ ସ୍ପୃହୟତ୍ୟୁଦସ୍ତା ହ୍ୟସତ୍ତୟା ଯେନ କୃତପ୍ରୟତ୍ନାଃ । ୧୫ ।
ଇତି ହ ସ୍ମ ସକଲବେଦଲୋକଦେବବ୍ରାହ୍ମଣଗବାଂ ପରମଗୁରୋର୍ଭଗବତ ଋଷଭାଖ୍ୟସ୍ୟ ବିଶୁଦ୍ଧାଚରିତମୀରିତଂ ପୁଂସାଂ ସମସ୍ତଦୁଶ୍ଚରିତାଭିହରଣଂ ପରମମହାମଙ୍ଗଳାୟନମିଦମନୁଶ୍ରଦ୍ଧୟୋପଚିତୟାନୁଶୃଣୋତ୍ୟାଶ୍ରାବୟତି ବାଽବହିତୋ ଭଗବତି ତସ୍ମିନ୍ ବାସୁଦେବ ଏକାନ୍ତତୋ ଭକ୍ତିରନୟୋରପି ସମନୁବର୍ତ୍ତତେ । ୧୬ ।

---

ଅହୋ ! ପ୍ରିୟବ୍ରତ ବଂଶର ଯଶଦ୍ୱାରା ପବିତ୍ରୀଭୂତ, ଯେଉଁ ବଂଶରେ ପୁରାଣପୁରୁଷ ବାସୁଦେବ ଅବତୀର୍ଣ୍ଣ ହୋଇ ଆଦ୍ୟ ପୁରୁଷରୂପେ ଅବସ୍ଥାନ କରି ମୋକ୍ଷହେତୁ ଧର୍ମାନୁଷ୍ଠାନ କରିଥିଲେ । ୧୪ ।

ଏହି ଭଗବାନ୍ ଋଷଭଦେବ ଯେଉଁ ସମସ୍ତ ସିଦ୍ଧିକୁ ଅସତ୍ ବୋଲି ଭୁଚ୍ଛରୂପେ ପରିତ୍ୟାଗ କରିଥିଲେ ଅନ୍ୟ ଯୋଗିମାନେ ସେହି ସିଦ୍ଧିକୁ କାମନା କରି ପ୍ରଭୂତଯତ୍ନରେ ତାହା ଅବଲମ୍ବନ କରିଥାନ୍ତି । ସୁତରାଂ ଏପରି କେଉଁ ଯୋଗୀଅଛି ଯେ କଳ୍ପନାରେ ସୁଦ୍ଧା ଏହି ଭଗବାନଙ୍କର କାର୍ଯ୍ୟାବଳୀ ଅନୁକରଣ କରିବାକୁ ସମର୍ଥ ହେବ ? । ୧୫ ।

ପୂର୍ବେ ଯେପରି ସମସ୍ତ ବେଦ, ଲୋକ, ଦେବତା, ବ୍ରାହ୍ମଣ, ଗୋ ମାନଙ୍କର ପରମ ଗୁରୁ ଭଗବାନ୍ ଋଷଭଦେବଙ୍କର ବିଶୁଦ୍ଧ ଆଚରଣ ବିଷୟ ବର୍ଣ୍ଣିତ ହେଲା, ତାହା ଜୀବର ସର୍ବବିଧ ଦୁରିତ ନଷ୍ଟକରେ । ପରମ କଲ୍ୟାଣକର ଏହି ଚରିତ୍ର ପ୍ରତି ପ୍ରଭୂତ ଶ୍ରଦ୍ଧାବଶତଃ ଯେଉଁବ୍ୟକ୍ତି ମନଯୋଗ ପୂର୍ବକ ଏହା ଶ୍ରବଣ କରେ ବା ଅନ୍ୟକୁ ଶ୍ରବଣ କରାଏ, ସେହି ଉଭୟବ୍ୟକ୍ତିଙ୍କର ଭଗବାନ୍ ବାସୁଦେବଙ୍କଠାରେ ଏକାନ୍ତଭକ୍ତି ଉତ୍ପନ୍ନ ହୁଏ । ୧୬ ।

---

ଧନ୍ୟ ଏ ପ୍ରିୟବ୍ରତ ବଂଶ
ଯହିଁରେ ଜନ୍ମ ବିଷ୍ଣୁ ଅଂଶ
ଧନ୍ୟ ସେ ରାଜାମଧ୍ୟେ ଶ୍ରେଷ୍ଠ
ଭକ୍ତମଧ୍ୟେ ସେ ଗରିଷ୍ଠ
ଏହାର ତୁଲ୍ୟ କେ ଅପର
ଯେ ବଂଶେ ଦେବ ଯୋଗେଶ୍ୱର
।୧୪,୧୫।

ବେଦ ବ୍ରାହ୍ମଣ ଗୋରୁ ଆଦି
ଦେବତା ନର ଯେ ପ୍ରସିଦ୍ଧି
ଏ ସର୍ବଗୁରୁ ଭଗବାନ
ଋଷଭ ପରମ କାରଣ
ତାହାଙ୍କ ଅଦଭୁତ କର୍ମ
ବିଶୁଦ୍ଧ ଯେତେକ ଆଚରଣ
ପ୍ରାଣିମାନଙ୍କ ପାପହର
ପରମ ମଙ୍ଗଳ-ମନ୍ଦିର

ଶ୍ରଦ୍ଧାରେ ଶୁଣନ୍ତି ଯେ ନର
ହରଷେ କରନ୍ତି ବିସ୍ତର
ଚଞ୍ଚଳ ଛାଡ଼ି ସ୍ଥିରକରି
ଯେ ଅବା ବଚନେ ଉଚ୍ଚାରି
ତାହାର ମତି କୃଷ୍ଣଠାରେ
ରହଇ ଅତି ଦୃଢ଼ତରେ । ୧୬ ।

ଯସ୍ୟାମେବ କବୟ ଆତ୍ମାନମବିରତଂ ବିବିଧବୃଜିନସଂସାରପରିତାପୋପତପ୍ୟମାନମନୁସବନଂ ସ୍ନାପୟନ୍ତସ୍ତୟୈବ ପରୟା ନିର୍ବୃତ୍ୟା ହ୍ୟପବର୍ଗମାତ୍ୟନ୍ତିକଂ ପରମପୁରୁଷାର୍ଥମପି ସ୍ୱୟମାସାଦିତଂ ନୋ ଏବାଦ୍ରିୟନ୍ତେ ଭଗବଦୀୟତ୍ୱେନୈବ ପରିସମାପ୍ତସର୍ବାର୍ଥାଃ । ୧୭ ।

ରାଜନ ପତିର୍ଗୁରୁରଲଂ ଭବତାଂ ଯଦୂନାଂ
ଦୈବଂ ପ୍ରିୟଃ କୁଳପତିଃ କ୍ୱ ଚ କିଙ୍କରୋ ବଃ ।
ଅସ୍ତ୍ୱେବମଙ୍ଗ ଭଗବାନ୍ ଭଜତାଂ ମୁକୁନ୍ଦୋ
ମୁକ୍ତିଂ ଦଦାତି କର୍ହିଚିତ୍ ସ୍ମ ନ ଭକ୍ତିଯୋଗମ୍ । ୧୮ ।

ନିତ୍ୟାନୁଭୂତନିଜଲାଭନିବୃତ୍ତତୃଷ୍ଣଃ ଶ୍ରେୟସ୍ୟତଦ୍ରଚନୟା ଚିରସୁପ୍ତ ବୁଦ୍ଧେଃ ।
ଲୋକସ୍ୟ ଯଃ କରୁଣୟାଽଭୟମାତ୍ମଲୋକମାଖ୍ୟାନ୍ନମୋ ଭଗବତେ ଋଷଭାୟ ତସ୍ମୈ । ୧୯ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଋଷଭଦେବାନୁଚରିତଂ ନାମ ଷଷ୍ଠୋଽଧ୍ୟାୟଃ । ୬ ।

---

ପଣ୍ଡିତମାନେ ଯେଉଁ ଭକ୍ତି ରସରେ ଅବିରତ ବିବିଧ ପାପମୟ ସଂସାର ତାପରେ ତାପିତ ସ୍ୱୀୟ ଅନ୍ତଃକରଣକୁ ବାରମ୍ବାର ସ୍ନାନ କରାଇ ଭଗବତ୍ ସମ୍ବନ୍ଧ ବଶତଃ ସର୍ବ ପ୍ରୟୋଜନ ସମାପ୍ତ ମନେ କରିଥାନ୍ତି; ସେହି ଭକ୍ତି ପ୍ରସୂତ ନିବୃତ୍ତି ଭାବ ହେତୁ ଅଯତ୍ନ ଲବ୍ଧ ପରମ ପୁରୁଷାର୍ଥ ଆତ୍ୟନ୍ତିକ ଅପବର୍ଗ ବା ମୋକ୍ଷକୁ ସେମାନେ ଆଦର କରନ୍ତି ନାହିଁ । ୧୭ ।

ହେ ରାଜନ୍ ! ଭଗବାନ୍ ପାଣ୍ଡବମାନଙ୍କର ଏବଂ ଯଦୁବଂଶୀୟ ବ୍ୟକ୍ତିମାନଙ୍କର ପାଳକ, ଉପଦେଶକ, ଉପାସ୍ୟ, ପ୍ରିୟ, କୁଳପତି ଏବଂ ବେଳେ ୨ କିଙ୍କର ହୋଇପାରନ୍ତି । କିନ୍ତୁ ସେ ଈଶ୍ୱର ହେଲେମଧ୍ୟ ଅନ୍ୟପେ ତାଙ୍କର ଭଜନ କରେ ସେ ତାଙ୍କୁ ମୁକ୍ତିଦାନ କରିଥାନ୍ତି, କିନ୍ତୁ ଉତ୍କୃଷ୍ଟ ପ୍ରେମ ଭକ୍ତିଦାନ କରନ୍ତିନାହିଁ ।୧୮।

ଯାହାଙ୍କର ନିତ୍ୟ ସ୍ୱକୀୟ ସ୍ୱରୂପାନୁଭବ ଦ୍ୱାରା ତୃଷ୍ଣା ନିବୃତ୍ତ ହୁଏ, ଦେହାଦି ନିମିତ୍ତ କାମନା ହେତୁ ଯେଉଁମାନଙ୍କର ବୁଦ୍ଧି ଶ୍ରେୟ ବିଷୟରେ ଚିର ନିଦ୍ରିତା, ଯେ କରୁଣା କରି ସେମାନଙ୍କୁ ଅଭୟ ଆତ୍ମା ସ୍ୱରୂପ ଉପଦେଶ ପ୍ରଦାନ କରିଥିଲେ; ସେହି ଭଗବାନ୍ ଋଷଭଦେବଙ୍କୁ ନମସ୍କାର । ୧୯ ।

---

ପରମ କୃପାମୟ ତହିଁ
ନିଷ୍ଠାଇ ଭକତ ଲଭଇ
ଯେ ଭକ୍ତି ପ୍ରସାଦରୁ ନର
ସଂସାର ବନ୍ଧୁଁ ହୋଇ ପାର
ବିଷୟତାପେ ବୁଡ଼ିଥାଇ
ଭକ୍ତି ଭେଳାରେ ଯେ ତରଇ
ସର୍ବ ପୁରୁଷାର୍ଥକୁ ପାଇ
ତାର ପ୍ରସାଦୁ ମୋକ୍ଷ ହୋଇ ।୧୭
ଶୁଣ କହିବା ନୃପବର
ଯେ ଯଦୁବଂଶର ଠାକୁର
ଯାହାର ଭୃତ୍ୟ ଭୂ ରାଜନ
ସେ ଯେ ଅନାଦି ଭଗବାନ
ନାନା ଅବତାରକୁ ବହି
ସଂସାରୁ ପ୍ରାଣିଙ୍କୁ ତାରଇ
ଭକ୍ତିରେ ତାଙ୍କୁ ଯେ ଭଜଇ
ସେ ପ୍ରଭୁ ମୋକ୍ଷ ତାକୁ ଦେଇ ।୧୮
ଯେ ନିତ୍ୟ ଆନନ୍ଦ ଶରୀର
ଯାହାର ତୃଷ୍ଣା ଅଛି ଦୂର
ପରମ କଲ୍ୟାଣ କାରଣ
ଲୋକରେ ଦର୍ଶିପରାୟଣ
ସେ ଯେ ଋଷଭ ଦେବବର
ତାହାଙ୍କୁ ମୋର ନମସ୍କାର ।୧୯।
କହଇ ଦାସ ଜଗନ୍ନାଥ
ଭାଷା ପ୍ରବନ୍ଧେ ଭାଗବତ
ସେ ପ୍ରଭୁ ଋଷଭ ଚରଣେ
ମୋ ମନ ରହୁ ଅନୁକ୍ଷଣେ ।



**ବିଶଦାର୍ଥ :—**

ରାଜା ପରୀକ୍ଷିତଙ୍କର ଗୋଟିଏ ସନ୍ଦେହ ଉପସ୍ଥିତ ହୋଇଥିଲା, ଭଗବାନ୍ ଋଷଭଦେବ ପରମ ପୁରୁଷ । ତାଙ୍କ ତପଃ ପ୍ରଭାବରୁ ସଂସାରରେ ଯୌଗିକ ଐଶ୍ୱର୍ଯ୍ୟବୃଦ୍ଧି ପ୍ରାପ୍ତ ହୋଇଥିଲା ମାତ୍ର ସେ କାହିଁକି ହେତୁରୁ ବୈରାଗ୍ୟ ଅବଲମ୍ବନ କଲେ ? ଏହି ସନ୍ଦେହ ମୋଚନ ଲାଗି ଶ୍ରୀ ଶୁକଦେବ କହିଲେ—"ମହାରାଜ ମନ ବଡ଼ ଚଞ୍ଚଳ । ଏପରି କୌଣସି ବ୍ୟକ୍ତି ନାହିଁ ଯେ ମନର ଚାଞ୍ଚଲ୍ୟ ଏଡ଼ାଇପାରେ । ଉଦାହରଣ ସ୍ୱରୂପ ସେ ପୁରାଣର କେତୋଟି ଘଟଣା ଉଲ୍ଲେଖ କରିଥିଲେ । ସମୁଦ୍ର ମନ୍ଥନ ଉତ୍ତାରୁ ଅସୁରମାନଙ୍କୁ ଅମୃତ ଭକ୍ଷଣରୁ କ୍ଷାନ୍ତ କରିବାଲାଗି ବିଷ୍ଣୁ ମୋହିନୀ କନ୍ୟା ହୋଇଥିଲେ । ମୋହିନୀକନ୍ୟାର ରୂପଛଟାରେ ଅସୁରମାନେ ଏପରି ମୁଗ୍ଧ ହୋଇଗଲେ ଯେ ସେମାନେ ସୁଧାପରିବର୍ତ୍ତେ ସୁରାପାନ କରିଥିଲେ । ପରମ ଯୋଗୀ ମହାଦେବ ମଧ୍ୟ ମୋହିନୀରୂପଧାରୀ ବିଷ୍ଣୁମାୟାରେ ମୁଗ୍ଧ ହୋଇଥିଲେ । ସେ ମୋହିନୀକନ୍ୟା ପ୍ରତି ଆକୃଷ୍ଟ ହେଲେ, ନିଜର ମନ ଉପରେ ଆଧିପତ୍ୟ ରଖିପାରିଲେ ନାହିଁ । ଯେଉଁ କାମଦେବକୁ ସେ କାଳକ୍ରମେ ଦଗ୍ଧ କରିଥିଲେ, ଆଜି ତାହାର ଅଧୀନ ହୋଇ ପଡ଼ିଲେ । ତେଣୁ ବିବେକୀବ୍ୟକ୍ତି ପକ୍ଷରେ ନିଜର ଚଞ୍ଚଳ ମନକୁ ବିଶ୍ୱାସ କରିବା କଦାପି ଉଚିତ ନୁହେଁ । ଏହି ପ୍ରସଙ୍ଗରେ ପୁଣି ସୌଭରି ଋଷିଙ୍କ ପ୍ରସଙ୍ଗ ଶ୍ରୀଶୁକଦେବ ଉଲ୍ଲେଖ କରିଥିଲେ । ସେ ଜୀବନ୍ମୁକ୍ତ ହେଲେ ମଧ୍ୟ ଦିନେ ଜଳରେ ମତ୍ସ୍ୟ ଦମ୍ପତିମାନଙ୍କର କ୍ରୀଡ଼ା ଦେଖି ତାଙ୍କର ମାନସିକ ଦୁର୍ବଳତା ଉପସ୍ଥିତ ହୋଇଥିଲା । ସେ ସଂସାର ସୁଖରେ ମଜ୍ଜିଥିଲେ । ଏହିସବୁ ହିଁ ସେ ବିଷୟ ଐଶ୍ୱର୍ଯ୍ୟରୁ ବିରତ ହୋଇଥିଲେ । ସେ ଏହି ଚଞ୍ଚଳ ମନକୁ ଉନ୍ମୁକ୍ତ କରି ଅବଧୂତ ହୋଇ ଜୀବନ କଟାଇ ଥିଲେ । ଚତୁର ବ୍ୟାଧ କଣ କରେ ? ସେ ବନ ମଧ୍ୟରେ ବିଚରଣ କରୁ କରୁ ହରିଣ ଶିଶୁକୁ ଧରେ । ସେ ସେହି ଶିଶୁକୁ ଅବରୋଧ କରି ରଖି ମଧ୍ୟ ତାହାପ୍ରତି ସର୍ବଦା ତୀବ୍ର ଦୃଷ୍ଟି ରଖିଥାଏ । କାରଣ ବ୍ୟାଧ ସର୍ବଦା ଭାବୁଥାଏ କାଳେ ଏ ହରିଣ ଶିଶୁ ଫିଟିଗଲେ ନିଜର ଦଳକୁ ପଳାଇ ଯିବ । ମନ ଅତି ଚଞ୍ଚଳ ଓ ଦୁର୍ମଦ, ସେ ନିଜର ପ୍ରଭାବ ହେତୁ କାମାଦି ରିପୁଦ୍ୱାରା ଜୀବକୁ ପରାଜିତ କରାଇ ପାରେ । ସୁତରାଂ ମନ ସଂଯମ ଏକାନ୍ତ ଆବଶ୍ୟକ । ଋଷଭ ଦେବ ତେଣୁ ଅସୀମ ଶକ୍ତିସମ୍ପନ୍ନ ଓ ଐଶ୍ୱର୍ଯ୍ୟ ସମ୍ପନ୍ନ ହେଲେ ମଧ୍ୟ ଜଡ଼ତୁଲ୍ୟ ବେଶ, ଭାଷା ପ୍ରଭୃତି ଅବଲମ୍ବନ କରିଥିଲେ । ଏହି ଅବସ୍ଥାରେ କିଛିଦିନ ରହି ଯୋଗୀଙ୍କୋଚିତଶିକ୍ଷାଲାଗି ଦେହତ୍ୟାଗ କରିଥିଲେ । ଜୀବର ଲିଙ୍ଗଦେହ ଓ ଲିଙ୍ଗ ଦେହାଭିମାନ ଥିବାଯାଏ ସେ ସଂସାରରୁ ମୁକ୍ତିଲାଭ କରି ନ ପାରେ । ଏହି ଲିଙ୍ଗ ଦେହାଭିମାନ ତ୍ୟାଗହିଁ ଯୋଗୀର ଦେହତ୍ୟାଗ । ସାଧାରଣ ଭୌତିକ ଶରୀର ତ୍ୟାଗ ନୁହେଁ । ଜୀବନ୍ମୁକ୍ତ ଅବସ୍ଥାଦ୍ୱାରା ଯଥାର୍ଥରେ ତତ୍ତ୍ୱଜ୍ଞାନ ପ୍ରକାଶ ପାଏ । ଅବଧୂତ ଋଷଭଦେବଙ୍କ ବୃତ୍ତାନ୍ତ କୋଙ୍କ, ବେଙ୍କଟ, କୁଟକ, ଅର୍ହଣ ନାମକ ରାଜା ଶ୍ରବଣ କରି ମୁଗ୍ଧ ହୋଇଥିଲେ ଏବଂ ତାହାଙ୍କ ଆଦର୍ଶରେ ଜୀବନ ଯାପନ କରିଥିଲେ । ସତ୍ୟ, ତ୍ରେତା, ଦ୍ୱାପର, କଳି ସର୍ବ ଯୁଗର ରାଜସ ଜୀବର ପରିତ୍ରାଣ ନିମନ୍ତେ ଏ ଆଦର୍ଶ ଜଗତ ସମକ୍ଷରେ ସ୍ଥାପନ କରିଥିଲେ" ।

( ଏହି ଅବଧୂତ ଚରିତ ପୁଣି ଏକାଦଶ ସ୍କନ୍ଧରେ ଭଗବାନ୍ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ ଶୁଣାଇଥିଲେ ) । ଶ୍ରୀ ଶୁକଦେବ ରାଜା ପରୀକ୍ଷିତଙ୍କୁ ପୁଣି କହିଲେ "ହେ ରାଜନ୍ ! ତୁମ୍ଭେ ଏହି ପାଣ୍ଡବସଖାଙ୍କୁ ଆଶ୍ରୟ କର" ।

---

## ସ ପ୍ତ ମ ଅ ଧ୍ୟା ୟ ।

ସପ୍ତମେ ଭରତୋ ରାଜ୍ୟେ ଚରଂ ଯଜ୍ଞୈର୍ହରିଂ ଯଜନ୍ ।
ଆରବ୍‌ଧକର୍ମନିର୍ବାଣେ ହରିକ୍ଷେତ୍ରେଽଭଜଦ୍ଧରିମ୍ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ ।

ଭରତସ୍ତୁ ମହାଭାଗବତୋ ଯଦା ଭଗବତାଽବନୀତଳପରିପାଳନାୟ ସଞ୍ଚିନ୍ତିତସ୍ତଦନୁଶାସନପରଃ ପଞ୍ଚଜନୀଂ ବିଶ୍ୱରୂପଦୁହିତରମୁପଯେମେ । ୧ ।

ତସ୍ୟାମୁହ ବା ଆତ୍ମଜାନ୍ କାର୍ତ୍ସ୍ନ୍ୟେନାନୁରୂପାନାତ୍ମନଃ ପଞ୍ଚ ଜନୟାମାସ ଭୂତାଦିରିବ ଭୂତସୂକ୍ଷ୍ମାଣି । ୨ ।

ସୁମତିଂ ରାଷ୍ଟ୍ରଭୃତଂ ସୁଦର୍ଶନମାବରଣଂ ଧୂମ୍ରକେତୁମିତି । ଅଜନାଭଂ ନାମୈତଦ୍‌ବର୍ଷଂ ଭାରତମିତି ଯତ ଆରଭ୍ୟ ବ୍ୟପଦିଶନ୍ତି । ୩ ।

---

### ଭରତରାଜାଙ୍କ ଚରିତ ।

ସପ୍ତମ ଅଧ୍ୟାୟରେ ରାଜା ଭରତ ରାଜ୍ୟ ଶାସନ କରି ଯଜ୍ଞଦ୍ୱାରା ଶ୍ରୀହରିଙ୍କୁ ସନ୍ତୁଷ୍ଟ କରି ଅନ୍ତିମ କାଳରେ ପୁଲହାଶ୍ରମରେ ରହି ତପସ୍ୟା କରିବା ବିଷୟ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀଶୁକଦେବ କହିଲେ :—

ଭଗବାନ୍ ଋଷଭଦେବ ପରମ ଭାଗବତ ଭରତଙ୍କୁ ପୃଥିବୀ ପାଳନରୁପେ ଅଭିଷିକ୍ତ କଲାପରେ ସେ ଋଷଭ ଦେବଙ୍କ ଆଜ୍ଞା ପାଳନରେ ତତ୍ପର ହୋଇ ବିଶ୍ୱରୂପଙ୍କ ଦୁହିତା ପଞ୍ଚଜନୀଙ୍କୁ ବିବାହ କରିଥିଲେ । ( ପିତା ରାଜ୍ୟଶାସନ ଭାର ଦେବାରୁ ଗୃହସ୍ଥଧର୍ମ ଅବଲମ୍ବନ କରିବା ନିମନ୍ତେ ପତ୍ନୀଗ୍ରହଣର ଆବଶ୍ୟକତା ହେଲା, କାରଣ ପତ୍ନୀ ବ୍ୟତୀତ ଗୃହସ୍ଥଧର୍ମ ପାଳନ ସମ୍ଭବ ନୁହେଁ )। ୧ ।

ଯେପରି ଅହଙ୍କାର ତତ୍ତ୍ୱ ପଞ୍ଚସୂକ୍ଷ୍ମଭୂତ ଉତ୍ପାଦନ କରେ; ସେ ସେହିପରି ପଞ୍ଚପୁତ୍ର ଉତ୍ପାଦନ କରିଥିଲେ । ଏହି ପଞ୍ଚସୂକ୍ଷ୍ମଭୂତର ନାମ—ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ, ଭରତଙ୍କର ପଞ୍ଚପୁତ୍ରଙ୍କର ନାମ—ସୁମତି, ରାଷ୍ଟ୍ରଭୃତ, ସୁଦର୍ଶନ, ଆବରଣ, ଧୂମ୍ରକେତୁ, ଏମାନେ ସର୍ବବିଷୟରେ ଭରତଙ୍କ ସଦୃଶ ।୨

ଏହି ଅଜନାଭ ବର୍ଷ ମହାରାଜ ଭରତଙ୍କ ସମୟରୁ ଅଦ୍ୟାପି ଭାରତବର୍ଷ ନାମରେ ଆଖ୍ୟାତ । ଭରତଙ୍କ ଗୁଣରେ ମୁଗ୍ଧ ହୋଇ ପ୍ରଜାମାନେ ଏହାକୁ 'ଭାରତ' ବୋଲି ନାମ ଦେଇଥିଲେ । ୩ ।

---

ସପ୍ତମେ ଭରତ ରାଜନ, ଯଜ୍ଞେ ଆରାଧି ଭଗବାନ । ପୁଲହାଶ୍ରମେ ହରିକ୍ଷେତ୍ରେ, ହରି ଭଜିଲା ଦୃଢ଼ଚିତ୍ତେ ।୦।

ଶ୍ରୀ ଶୁକ ଉବାଚ—

ଭରତ ମହାଭାଗବତ
ଋଷଭେ ହୋଇ ସନ୍ତୁଷ୍ଟ
ତାହାଙ୍କ ଆଜ୍ଞା ଶିରେ ଘେନି
ଆନନ୍ଦେ ପାଳନ୍ତି ଅବନୀ

ବିଶ୍ୱରୂପର କନ୍ୟା ସେହି
ପାଞ୍ଚଜନୀକୁ ବିଭା ହୋଇ
ପଞ୍ଚ କୁମର ତାରଠାରେ
ହୋଇଲେ ଅତି ମନୋହରେ
ଧୂମ୍ରକେତୁ ଯେ ସୁଦର୍ଶନ
ସୁମତି ରାଷ୍ଟ୍ରଭୃତ ନାମ

ଅପରେ ଆବରଣ ନାମ
ହୋଇଲେ ଅତି ଅନୁପମ ।୧,୨।
ଏ ଦେଶ "ଅଜନାଭ" ଥିଲା
ଭରତୁଁ "ଭାରତ" ହୋଇଲା ।୩।

ସ ଚ ବହୁବିଦ୍‌ମହୀପତିଃ ପିତୃପିତାମହବଦୁରୁବତ୍ସଲତୟା ସ୍ୱେ ସ୍ୱେ କର୍ମଣି ବର୍ତ୍ତମାନାଃ ପ୍ରଜାଃ ସ୍ୱଧର୍ମମନୁବର୍ତ୍ତମାନଃ ପର୍ଯ୍ୟପାଲୟତ୍ । ୪ ।

ଈଜେ ଚ ଭଗବନ୍ତଂ ଯଜ୍ଞ କ୍ରତୁରୂପଂ କ୍ରତୁଭିରୁଚ୍ଚାବଚୈଃ ଶ୍ରଦ୍ଧୟାହୃତାଗ୍ନି ହୋତ୍ର ଦର୍ଶପୂର୍ଣ୍ଣମାସ-ଚାତୁର୍ମାସ୍ୟପଶୁସୋମାନାଂପ୍ରକୃତିବିକୃତିଭିରନୁସବନଂଚାତୁର୍ହୋତ୍ରବିଧିନା ॥

ସଂପ୍ରଚରତ୍ସୁନାନାଯାଗେଷୁ ବିରଚିତାଙ୍ଗକ୍ରିୟେଷ୍ୱପୂର୍ବଂ ଯତ୍‌ତତ୍ କ୍ରିୟାଫଲଂ ଧର୍ମାଖ୍ୟଂ ପରେ ବ୍ରହ୍ମଣି ଯଜ୍ଞପୁରୁଷେ ସର୍ବଦେବତାଲିଙ୍ଗାନାଂ ମନ୍ତ୍ରାଣାମର୍ଥନିୟାମକତୟା ସାକ୍ଷାତ୍ କର୍ତ୍ତରି ପରମଦେବତାୟାଂ ଭଗବତି ବାସୁଦେବ ଏବ ଭାବୟମାନ ଆତ୍ମନୈପୁଣ୍ୟମୃଦିତକଷାୟୋ ହବିଃଷ୍ୱଧ୍ୱର୍ୟୁଭିର୍ଗୃହ୍ୟମାଣେଷୁ ସ ଯଜମାନୋ ଯଜ୍ଞଭାଜୋ ଦେବାଂସ୍ତାନ୍ ପୁରୁଷାବୟବେଷ୍ୱଭ୍ୟଧ୍ୟାତ୍ । ୬ ।

---

ବହୁ ବିଷୟାଭିଜ୍ଞ ରାଜା ଭରତ ପିତୃପିତାମହଙ୍କପରି ପ୍ରଚୁର ପ୍ରଜାବାତ୍ସଲ୍ୟ ସହକାରେ ସ୍ୱଧର୍ମାନୁଗତ ନିଜ କର୍ତ୍ତବ୍ୟନିଷ୍ଠ ହୋଇ ପ୍ରଜାପାଳନ କଲେ । ୪ ।

ସେହି ରାଜା ଭରତ ଚତୁର୍ହୋତ୍ର ବିଧିଅନୁସାରେ ଶ୍ରଦ୍ଧା ପୂର୍ବକ ଅଗ୍ନିହୋତ୍ର, ଦର୍ଶ, ପୌର୍ଣ୍ଣମାସ, ଚାତୁର୍ମାସ୍ୟ, ପଶୁଯାଗ, ସୋମଯାଗର ପ୍ରକୃତ ଓ ବିକୃତ ପ୍ରଭୃତି ବିବିଧ ମହାନ୍ ଓ ଅଳ୍ପ ଯଜ୍ଞଦ୍ୱାରା ଯୂପଶୂନ୍ୟ ଓ ଯୂପଯୁକ୍ତ ଯଜ୍ଞରୂପୀ ଭଗବାନଙ୍କ ଆରାଧନା କରିଥିଲେ । ୫ ।

ଯେତେବେଳେ ଅଙ୍ଗକ୍ରିୟା ସମୂହ ସହିତ ବିବିଧ ଯଜ୍ଞ ଅନୁଷ୍ଠିତ ହେଉଥିଲା, ସେତେବେଳେ ସେ ଭଗବାନ୍ ବାସୁଦେବଙ୍କୁ ଚିନ୍ତା କରୁଥିଲେ, କାରଣ ସେହି ଭଗବାନ ବାସୁଦେବ ସର୍ବଯଜ୍ଞକ୍ରିୟାର ଫଳ 'ଅପୂର୍ବ' ସ୍ୱରୂପ ଏବଂ ଧର୍ମନାମରେ ବିଖ୍ୟାତ । କ୍ରିୟାଫଳ କର୍ତ୍ତାଙ୍କଠାରେ ଅବସ୍ଥାନକରେ, ବାସୁଦେବ କର୍ତ୍ତାର ଅନ୍ତର୍ଯ୍ୟାମୀ ଓ ପ୍ରବର୍ତ୍ତକ, ତେଣୁ ସାକ୍ଷାତ୍ କର୍ତ୍ତା । ସୁତରାଂ କ୍ରିୟାଫଳ ତାଙ୍କର ଆଶ୍ରୟୀଭୂତ, କ୍ରିୟାଫଳ ଦେବତାଙ୍କ ଆଶ୍ରୟୀଭୂତ ଏହା ଭାବନା କଲେ, ତାହା ମନ୍ତ୍ରମାନଙ୍କ ଦ୍ୱାରା ଇନ୍ଦ୍ରାଦି ଦେବଗଣ ପ୍ରକାଶିତ, ଶ୍ରୀ ବାସୁଦେବ ସେମାନଙ୍କର ନିୟାମକ, ତେଣୁ ଭଗବାନ୍ କର୍ମଫଳର ଆଶ୍ରୟ । କର୍ମଫଳର ଆଶ୍ରୟ ସ୍ୱରୂପ ଭଗବାନ ବାସୁଦେବଙ୍କ ଚିନ୍ତାରେ ତାଙ୍କର ପରମ ନୈପୁଣ୍ୟ ଥିଲା, ତଦ୍ୱାରା ତାଙ୍କର ସମସ୍ତ ରାଗ କ୍ଷୀଣ ହୋଇଥିଲା । ୬ ।

---

ଏମନ୍ତେ ଶୁଣ ପରୀକ୍ଷିତ
ବିଷ୍ଣୁର ଭକ୍ତ ସେ ଭରତ
ବେଦପ୍ରମାଣେ ପ୍ରଜାଜନ
ସ୍ୱଛନ୍ଦେ କରଇ ପାଳନ
ଯେ ଯାହା ଧର୍ମଅନୁସାର
ଆନ ନ କରନ୍ତି ଆଚାର । ୪ ।
ଯେ ଦର୍ଶ ପୂର୍ଣ୍ଣମାସ ଆଦି
ଚାତୁର୍ମାସ୍ୟ ଯଜ୍ଞ ପ୍ରସିଦ୍ଧି
ଅଗ୍ନିହୋତ୍ର ଯେ ପଶୁ ସୋମ
ଏ ଆଦି ଯେତେ ଯଜ୍ଞମାନ

ପ୍ରକୃତ ବିକୃତରେ କରି
ପୂଜନ୍ତି ଚିତ୍ତେ ଦେବ ହରି । ୫ ।
ଯଜ୍ଞେ ସକଳ ଦେବ ତୋଷି
ଯେ ଯାହା ଭାବେ ଦେବଋଷି
ନାନା ଯଜ୍ଞରେ ଯେ ରାଜନ
ସୁହୃଦେ ପୂଜି ଭଗବାନ
ସର୍ବଦେବତା ମୂଳ ଏହି
ଅଶେଷ ପ୍ରଭୁ ଭାବଗ୍ରାହୀ
ଅଖିଳ ଦେବଙ୍କର ପର
ସକଳ ବ୍ରହ୍ମାଣ୍ଡ ଠାକୁର

ତାହାଙ୍କ ଚରଣାରବିନ୍ଦେ
ମନ ନିବେଶି ଅପ୍ରମାଦେ
ସକଳ ଯଜ୍ଞ ଅବସାନେ
ଦେବେ ସନ୍ତୋଷ ହେଲେ ମନେ
ପରମ କଲ୍ୟାଣକୁ କରି
ହରଷେ ଗଲେ ଯେଝା ପୁରୀ ।୬।

ଏବଂ କର୍ମବିଶୁଦ୍ଧ୍ୟା ବିଶୁଦ୍ଧସତ୍ତ୍ୱସ୍ୟାନ୍ତର୍ହୃଦୟାକାଶଶରୀରେ ବ୍ରହ୍ମଣି ଭଗବତି ବାସୁଦେବେ ମହାପୁରୁଷରୂପୋପଲକ୍ଷଣେ ଶ୍ରୀବତ୍ସକୌସ୍ତୁଭବନମାଲାଽରିଦରଗଦାଦିଭିରୁପଲକ୍ଷିତେ ନିଜପୁରୁଷହୃଲ୍ଲିଖିତେନାତ୍ମନି ପୁରୁଷରୂପେଣ ବିରୋଚମାନ ଉଚ୍ଚୈସ୍ତରାଂ ଭକ୍ତିରନୁଦିନମେଧମାନରୟାଽଜାୟତ । ୭ ।

ଏବଂ ବର୍ଷାୟୁତସହସ୍ରପର୍ଯ୍ୟନ୍ତାବସିତକର୍ମନିର୍ବାଣାବସରୋଽଧିଭୁଜ୍ୟମାନଂ ସ୍ୱତନୟେଭ୍ୟୋ ରିକ୍ଥଂ ପିତୃପୈତାମହଂ ଯଥାଦାୟଂ ବିଭଜ୍ୟସ୍ୱୟଂ ସକଳସମ୍ପନ୍ନିକେତାତ୍‌ପୁଲହାଶ୍ରମଂ ପ୍ରବବ୍ରାଜ । ୮ ।

ଯତ୍ର ହ ବାବ ଭଗବାନ୍ ହରିରଦ୍ୟାପି ତତ୍ରତ୍ୟାନାଂ ନିଜଜନାନାଂ ବାତ୍ସଲ୍ୟେନ ସନ୍ନିଧାପ୍ୟତ ଇଚ୍ଛାରୂପେଣ । ୯ ।

---

ଏହିପରି କର୍ମ ବିଶୁଦ୍ଧି ଦ୍ୱାରା ବିଶୁଦ୍ଧ ରାଜା ଭରତଙ୍କର ହୃଦୟାଭ୍ୟନ୍ତର ସ୍ଥିତ ଆକାଶ ଯାହାଙ୍କର ଅଭିବ୍ୟକ୍ତିର ସ୍ଥାନ ଏବଂ ଯେ ମହାପୁରୁଷାକାର ଓ ଶ୍ରୀବତ୍ସ, କୌସ୍ତୁଭ, ବନମାଳା, ଶଙ୍ଖ, ଚକ୍ର, ଗଦାଦିଦ୍ୱାରା ଶୋଭି ପାଉଥିଲେ, ନିଜର ପାର୍ଷଦ ନାରଦାଦିଙ୍କହୃଦୟରେ ଚିତ୍ରତୁଲ୍ୟ ନିଶ୍ଚଳପୁରୁଷରୂପେ ସ୍ୱୟଂ ଦେଦୀପ୍ୟମାନ; ସେହି ପରମପୁରୁଷ ପରମବ୍ରହ୍ମ ଭଗବାନ ବାସୁଦେବଙ୍କଠାରେ ସର୍ବଦା ତାଙ୍କର ମହତି ଭକ୍ତି ଜାତ ହୋଇଥିଲା । ୭ ।

ହେ ରାଜନ୍ ! ରାଜର୍ଷି ଭରତ ଆପଣାର ରାଜ୍ୟ ଅୟୁତସହସ୍ରବର୍ଷ ଭୋଗ କରିସାରି ରାଜ୍ୟ ଭୋଗ ସମାପ୍ତ ହେବାରୁ ସେ ରାଜ୍ୟ ଓ ପିତୃପିତାମହ ଧନ ପୁତ୍ରମାନଙ୍କ ମଧ୍ୟରେ ଯଥୋଚିତଭାବରେ ବିଭାଗ କରିଦେଇ ନିଜଗୃହରୁ ପୁଲହାଶ୍ରମକୁ ପ୍ରବ୍ରଜ୍ୟା ଅବଲମ୍ବନ କରି ଗମନ କରିଥିଲେ । ୮ ।

ସେହି କ୍ଷେତ୍ରରେ ଭଗବାନ୍ ଶ୍ରୀହରି ଅଦ୍ୟାପି ତତ୍ରତ୍ୟ ଭକ୍ତମାନଙ୍କ ପ୍ରତି ବାତ୍ସଲ୍ୟ ହେତୁ ସେମାନେ ଯେଉଁ ମୂର୍ତ୍ତି ଆକାଙ୍କ୍ଷା କରିଥାନ୍ତି ସେହି ମୂର୍ତ୍ତିରେ ଭକ୍ତମାନଙ୍କୁ ଦର୍ଶନ ଦେଇଥାନ୍ତି । ୯ ।

---

ସୁକର୍ମ ପ୍ରସାଦେ ରାଜାର
ନିର୍ମଳ ହୋଇଲା କଳେବର
ସତ୍ତ୍ୱଗୁଣରେ ନୃପମଣି
ଏମନ୍ତେ ଚିନ୍ତି ଚକ୍ରପାଣି
ଆକାଶ ପ୍ରାୟ ଯେ ଈଶ୍ୱର
ଶୁଦ୍ଧ ନିର୍ମଳ ସତ୍ତ୍ୱସାର
ପରମ ବ୍ରହ୍ମ ବାସୁଦେବ
ଅନାଦି ପୁରୁଷ ମାଧବ
ନାନା ଲକ୍ଷଣେ ବିରାଜିତ
ଚତୁର ଭୁଜ ଅଦଭୁତ
ଶ୍ରୀବତ୍ସ କଉସ୍ତୁଭମଣି
ଗଦା କମଳ ଚକ୍ରପାଣି
ଶଙ୍ଖ ବିରାଜେ ବାମକରେ
ବନମାଳା ଯେ ଲମ୍ବେ ଉରେ
ଏ ଆଦି ଯେତେକ ଚିହ୍ନ ବର୍ଣ୍ଣ
ଚିନ୍ତାକରଇ ସେ ରାଜନ
ଅତି ଭକତି ନାରାୟଣେ
ହୋଇଲା ତାର ଦିନୁଦିନେ । ୭ ।
ଶୁଣ କହିବା ହେ ରାଜନ
ଏମନ୍ତେ ଗଲା କେତେ ଦିନ
ଲକ୍ଷ ବରଷ ସେ ରାଜନ
ଅବନୀ କରିଣ ପାଳନ
ସକଳ ସଙ୍ଗ ତ୍ୟକ୍ତ କଲେ
ପୁତ୍ରଙ୍କୁ ରାଇ ସେ ନିଶ୍ଚଳେ
ଯେତେକ ସମ୍ପଦ ଯଥୋଚିତେ
ବିଭାଗ କରି ଯେଝାମତେ
ଦେଇ ସେ ଋଷଭକୁମର
ଆପଣେ ହୋଇଲେ ବାହାର
ପୁଲହ ଋଷିଙ୍କ ଆଶ୍ରମ
ତହିଁକି କଲେ ଆଗମନ । ୮ ।
ଅଦ୍ୟାପି ହରି ଭଗବାନ
ଯହିଁ ଅଛନ୍ତି କରି ସ୍ଥାନ । ୯ ।

ଯତ୍ରାଶ୍ରମପଦାନ୍ୟୁଭୟତୋନାଭିଭିର୍ଦୃଷଚ୍ଚକ୍ରୈଶ୍ଚକ୍ରନଦୀ ନାମ ସରିତ୍ପ୍ରବରା ସର୍ବତଃ ପବିତ୍ରୀକରୋତି । ୧୦ ।

ତସ୍ମିନ୍ ବାବ କିଲ ସ ଏକଲଃ ପୁଲହାଶ୍ରମୋପବନେ ବିବିଧକୁସୁମକିଶଲୟ-ତୁଲସୀକାମ୍ବୁଭିଃ କନ୍ଦମୂଳଫଲୋପହାରୈଶ୍ଚ ସମୀହମାନୋ ଭଗବତ ଆରାଧନଂ ବିବିକ୍ତ ଉପରତବିଷୟାଭିଲାଷ ଉପସଂଭୃତୋପଶମଃ ପରାଂ ନିର୍ବୃତିମବାପ । ୧୧ ।

ତୟେତ୍ଥମବିରତପୁରୁଷପରିଚର୍ଯ୍ୟୟା ଭଗବତି ପ୍ରବର୍ଦ୍ଧମାନାନୁରାଗଭରଦ୍ରୁତ-ହୃଦୟଶୈଥିଲ୍ୟଃ ପ୍ରହର୍ଷବେଗେନାତ୍ମନ୍ୟୁଦ୍ଭିଦ୍ୟମାନରୋମପୁଲକକୁଲକ ଔତ୍କଣ୍ଠ୍ୟପ୍ରବୃତ୍ତପ୍ରଣୟବାଷ୍ପନିରୁଦ୍ଧାବଲୋକନୟନ ଏବଂ ନିଜରମଣାରୁଣଚରଣାରବିନ୍ଦାନୁଧ୍ୟାନପରି-

ସେହିସ୍ଥାନରେ ଚକ୍ରନଦୀ ବା ଗଣ୍ଡକୀନାମ୍ନୀ ପ୍ରସିଦ୍ଧ ନଦୀ ଉପର ଉଭୟତଟରେ ଓ ଅଧୋଭାଗରେ ନାଭିଚକ୍ର ଯୁକ୍ତ ଅର୍ଥାତ୍ ଶିଳା ମଧ୍ୟବର୍ତ୍ତୀ ଚକ୍ରଚିହ୍ନ ଯୁକ୍ତ ଶାଳଗ୍ରାମ ସମୂହ ଦ୍ୱାରା ଆଶ୍ରମସ୍ଥାନମାନଙ୍କୁ ପବିତ୍ରୀକୃତ କରିଥାଏ । ୧୦ ।

ସେହି ପୁଲହାଶ୍ରମର ଉପବନରେ ଏକାକୀ ଅବସ୍ଥାରେ ସେହି ଭରତ ନାନାପ୍ରକାର ପୁଷ୍ପ, ପଲ୍ଲବ, ତୁଳସୀ, ଜଳ, କନ୍ଦମୂଳ, ଓ ଫଳ ଉପହାରାଦିଦ୍ୱାରା ଭଗବାନଙ୍କର ଆରାଧନା କରୁଥିଲେ ଓ ବିଶୁଦ୍ଧତା ଅବଲମ୍ବନ ପୂର୍ବକ ବିଷୟାଭିଳାଷରୁ ନିବୃତ୍ତି ଲାଭ କରିଥିଲେ ଏବଂ ଉପଶମ ସଞ୍ଚୟକରି ପରମ ଆନନ୍ଦ ଲାଭ କରିଥିଲେ । ୧୧ ।

ଏହିପରି ଅନବରତ ଭଗବତ୍ ସେବା କରୁକରୁ ଅନୁରାଗ ବୃଦ୍ଧିପାଇ ତାଙ୍କର ହୃଦୟକୁ ଦ୍ରବୀଭୂତ ଓ ଶିଥିଳ କରିଥିଲା । ପ୍ରହର୍ଷବେଗରେ ତାହାଙ୍କ ଦେହରେ ପୁଲକୋଦ୍‌ଗମ ହୋଇଥିଲା ଏବଂ ଉତ୍କଣ୍ଠାହେତୁରୁ ପ୍ରେମାଶ୍ରୁ ଗଳିତ ହୋଇ ଦୃଷ୍ଟି ନିରୁଦ୍ଧ ହୋଇଥିଲା ଏହିପରି ପ୍ରୀତି ପ୍ରଦାନକାରୀ ଭଗବାନ୍ ନାରାୟଣଙ୍କର ଅରୁଣବର୍ଣ୍ଣ ଚରଣାରବିନ୍ଦ ଯୁଗଳର ନିରନ୍ତର ଧ୍ୟାନ ବଶତଃ ତାହାଙ୍କର ଯେଉଁ ଭକ୍ତିଯୋଗ ଉଦ୍ଭୁତ

ଚକ୍ରର ନଦୀ ଶୁଦ୍ଧଜଳ
ସୁଦର୍ଶ ବର୍ଣ୍ଣିତ ସେ ସକଳ
ତାହାର ଗଣ୍ଡକୀ ଯେ ନାମ
ସ୍ମରଣେ ପାପ ବିନାଶନ । ୧୦ ।
ପୁଲହ ଆଶ୍ରମ ଯେ ସ୍ଥାନ
ବିବିଧ-ବିଧି ଗହନ
ନାନା କୁସୁମେ ପରିମଳ
ନିର୍ମଳ ଶୀତଳ ଯେ ଜଳ
ମଳୟ ପବନ ନିରତେ
ତହିଁ ଭରତ ଶୁଦ୍ଧ ଚିତ୍ତେ
କୋମଳ ତୁଳସୀର ଦଳ
ସୁସ୍ୱାଦୁ ସକ ଫଳ ମୂଳ
ଅନ୍ୟ ଯେ ବନ ଉପହାର
ନିବେଦି ଗୋବିନ୍ଦପୟର
ଇନ୍ଦ୍ରିୟ ଗଣଙ୍କୁ ନିବାରି
ବିଷୟରସ ଦୂର କରି
ନିତ୍ୟେ ଗୋବିନ୍ଦଆରାଧନ
କରଇ ହରଷିତ ମନ
ମହାପୁରୁଷ-ସେବା ବିନେ
କିଛି ନ ବାଞ୍ଛେ ଅନ୍ୟ ମନେ
ଶ୍ରଦ୍ଧା ବଢାଇ ଅନୁକ୍ଷଣେ
ଜଗତପ୍ରଭୁ ଭଗବାନେ
କୈବଲ୍ୟଦାତା ନାମ ଧରି
ହୃଦୟ ଗଦଗଦ କରି
ପ୍ରେମ ପୁଲକ ଅଶ୍ରୁ ପାତ
ହରଷ ହୋଇ ଅବିରତ
ଏମନ୍ତ ପ୍ରଭୁ ଯେ ଗୋବିନ୍ଦ
ଅରୁଣ ଚରଣାରବିନ୍ଦ
ଆସ୍ୱାଦ କରି ଅବିରତେ
ପରମ ଯୋଗ ଭକ୍ତି ମତେ
ଗମ୍ଭୀର ହ୍ରଦ ହୃଦୟରେ
ଚିତ୍ତ ବୁଡ଼ାଇ ନିରନ୍ତରେ
ନିରତେ ପ୍ରଭୁ ସେବା ତାର
ସ୍ମରଣ କରେ ନୃପବର । ୧୧,୧୨

ଚରତଭକ୍ତିଯୋଗେନ ପରିପ୍ଲୁତପରମାହ୍ଲାଦଗମ୍ଭୀରହୃଦୟହ୍ରଦାବଗାଢ଼ଧୀଷଣସ୍ତାମପି କ୍ରିୟମାଣାଂ ଭଗବତ୍‌ସପର୍ଯ୍ୟାଂ ନ ସସ୍ମାର । ୧୨ ।

ଇତ୍ଥଂ ଧୃତଭଗବଦ୍‌ବ୍ରତ ଐଣେୟାଜିନବାସସାଽନୁସବନାଭିଷେକାର୍ଦ୍ରକପିଶକୁଟିଲଜଟାକଲାପେନ ଚ ବିରୋଚମାନଃ ସୂର୍ଯ୍ୟର୍ଚା ଭଗବନ୍ତଂ ହିରଣ୍ମୟଂ ପୁରୁଷମୁଜ୍ଜିହାନେ ସୂର୍ଯ୍ୟମଣ୍ଡଲେଽଭ୍ୟୁପତିଷ୍ଠନ୍ନେତଦୁହୋବାଚ । ୧୩ ।

ପରୋରଜଃ ସବିତୁର୍ଜାତବେଦୋ ଦେବସ୍ୟ ଭର୍ଗୋ ମନସେଦଂ ଜଜାନ ।
ସୁରେତସାଦଃ ପୁନରାବିଶ୍ୟ ଚଷ୍ଟେ ହଂସଂ ଗୃଧ୍ରାଣଂ ନୃଷଦ୍ରିଙ୍ଗିରାମିମଃ । ୧୪ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଭରତୋପାଖ୍ୟାନେ ଭଗବତ୍‌ପରିଚର୍ଯ୍ୟାୟାଂନାମ ସପ୍ତମୋଽଧ୍ୟାୟଃ । ୭ ।

---

ହୋଇଥିଲା, ସେଥିରେ ପରମାନନ୍ଦ ଉତ୍ପନ୍ନହୋଇ ତାଙ୍କର ହୃଦୟ ଦ୍ରବବ୍ୟାପ୍ତ କରିବାରୁ ସେହି ଆନନ୍ଦରେ ବୁଦ୍ଧି ନିମଗ୍ନ ହୋଇଥିଲା, ସୁତରାଂ ବୁଦ୍ଧି ବୃତ୍ତିର ଉନ୍ମେଷାଭାବବଶତଃ ସ୍ୱକୃତ ଭଗବତ୍ ପରିଚର୍ଯ୍ୟା ବିଷୟ ମଧ୍ୟ ତାଙ୍କ ସ୍ମୃତିପଥରେ ଉଦିତ ହେଉ ନାହିଁ । ୧୨ ।

ଭରତ ଏହିପରି ଭଗବତ୍ ବ୍ରତ ଧାରଣକରି ପରିଧେୟ ହରିଣଚର୍ମ ଓ ପ୍ରତନିୟମ ଅର୍ଥାତ୍ ସ୍ନାନ ସମୟରେ ସ୍ନାନ ବଶତଃ ଆର୍ଦ୍ର ପିଙ୍ଗଳବର୍ଣ୍ଣ କୁଟିଳ ଜଟା କଳାପ ଦ୍ୱାରା ଶୋଭିତ ହୋଇ ଉଦୟମାନ ସୂର୍ଯ୍ୟମଣ୍ଡଳରେ ସୂର୍ଯ୍ୟ ପ୍ରତିପାଦକ ମନ୍ତ୍ରଦ୍ୱାରା ଭଗବାନ୍ ହିରଣ୍ମୟ ପରମପୁରୁଷ ନାରାୟଣଙ୍କ ଆରାଧନା କରି ଏହିପରି କହିଥିଲେ । ୧୩ ।

"ସୂର୍ଯ୍ୟଦେବଙ୍କର ଯେ ଭର୍ଗ ଅର୍ଥାତ୍ ସ୍ୱରୂପଭୂତ ତେଜଃ ପ୍ରକୃତିର ଅତୀତ, ଶୁଦ୍ଧସତ୍ତ୍ୱାତ୍ମକ ଓ କର୍ମ ଫଳପ୍ରଦ, ଯାହା ମନଦ୍ୱାରା ଏହି ବିଶ୍ୱକୁ ସୃଷ୍ଟିକରି ଏବଂ ଅନ୍ତର୍ଯ୍ୟାମୀରୂପେ ତହିଁରେ ପ୍ରବେଶ କରି ଆକାଙ୍କ୍ଷୀଜୀବକୁ ସ୍ୱୀୟ ଚିତ୍‌ଶକ୍ତିଦ୍ୱାରା ପାଳନ କରୁଅଛି ଓ ତାହାର ବୁଦ୍ଧିକୁ ପ୍ରେରଣ କରୁଅଛି, ସେହି ଭର୍ଗଙ୍କର ମୁଁ ଶରଣାପନ୍ନ ହେଲି ।" । ୧୪ ।

---

ଏ ଅନନ୍ତରେ ସେ ରାଜନ
ଅଜିନ କରି ପରିଧାନ
ଶିରେ କପିଳ ଜଟାଭାର
ଶରୀର ଦିଶଇ ସୁନ୍ଦର
ସୂର୍ଯ୍ୟମଣ୍ଡଳେ ସେ ରାଜନ
ବ୍ରହ୍ମରୂପକୁ କରି ଧ୍ୟାନ
ଏମନ୍ତେ ବାକ୍ୟ ଅନୁମାନେ
ବୋଲଇ ହରଷିତମନେ ।୧୩।

ହେ ପରଂବ୍ରହ୍ମ ତୁ ସବିତା
ନିଖିଳ କର୍ମଫଳଦାତା
ଇଚ୍ଛାମାତ୍ରକେ ସୃଷ୍ଟି କରୁ
ସକଳଜୀବେ ପ୍ରତିପାରୁ
ତୋତେ ଯେ ସର୍ବବୁଦ୍ଧି ସ୍ଫୁରେ
ଶରଣ ଗଲି ତୋ ପୟରେ ।୧୪।
ଭରତ କର୍ମ ଅନୁସରି
ସୁଜନେ ଚିନ୍ତ ନରହରି

ସେ ପ୍ରଭୁ ଚରଣାରବିନ୍ଦେ
ମନ ନିବେଶି ଅପ୍ରମାଦେ
କହଇ ଦାସ ଜଗନ୍ନାଥ
ଶ୍ରୀକୃଷ୍ଣ ଭଜନ ଚରିତ



**ବିଶଦ ବ୍ୟାଖ୍ୟା :—**

ଋଷଭଦେବ ରାଜ୍ୟଶାସନର ଭାର ଭରତଙ୍କ ଉପରେ ଦେଇ ପ୍ରବ୍ରଜ୍ୟା ଅବଲମ୍ବନ କରିଥିଲେ । ଭରତ ଭଗବଦ୍‌ଭକ୍ତ ଏବଂ ପିତାଙ୍କର ଅନୁରୂପ ପୁତ୍ରଥିଲେ । ସେ ପଞ୍ଚଜନୀଙ୍କୁ ପତ୍ନୀରୂପେ ଲାଭକରି ପରମାନନ୍ଦିତ ହୋଇଥିଲେ । ତାହାଙ୍କ ଗର୍ଭରୁ ପାଞ୍ଚପୁତ୍ର ଜାତ ହେଲେ । ଭରତଙ୍କର ରାଜ୍ୟକାଳ ଶେଷ ହେବାରୁ ସେ ମଧ୍ୟ ବାନପ୍ରସ୍ଥ ଅବଲମ୍ବନ କରି ପୁଲହାଶ୍ରମ ନିକଟବର୍ତ୍ତୀ ଏବଂ ଗଣ୍ଡକୀନଦୀତୀରସ୍ଥ ଆଶ୍ରମରେ ଶେଷ ଜୀବନ ଯାପନ କରିଥିଲେ । ସେ ବିବିଧ ପ୍ରକାରେ ବିଷ୍ଣୁ ଆରାଧନାରେ ବ୍ୟାପୃତ ରହି ଅସୀମ ଆନନ୍ଦ ଉପଭୋଗ କରିଥିଲେ ।

---

## ଅ ଷ୍ଟ ମ ଅ ଧ୍ୟା ୟ ।

**ଅଷ୍ଟମେ ଭରତୋ ବିଷ୍ଣୁଂ ତସ୍ୟ କର୍ମାନ୍ତରାୟତଃ ।**
**ଏଣରକ୍ଷାପ୍ରସକ୍ତସ୍ୟ ଜାତମେଣତ୍ୱମୀର୍ଯ୍ୟତେ । ୦ ।** ( ଶ୍ରୀଧରସ୍ୱାମୀ )

**ଶ୍ରୀ ଶୁକଉବାଚ ।**

**ଏକଦା ତୁ ମହାନଦ୍ୟାଂ କୃତାଭିଷେକନୈୟମିକାବଶ୍ୟକୋ ବ୍ରହ୍ମାକ୍ଷରମଭିଗୃଣାନୋ ମୁହୂର୍ତ୍ତତ୍ରୟମୁଦକାନ୍ତ ଉପବିବେଶ । ୧ ।**

**ତତ୍ର ତଦା ରାଜନ୍ ହରିଣୀ ପିପାସୟା ଜଲାଶୟାଭ୍ୟାସମେକୈବୋପଜଗାମ ।୨।**

---

### ଭରତଙ୍କ ହରିଣଜନ୍ମ ଓ ଦେହ ତ୍ୟାଗ ।

ଅଷ୍ଟମ ଅଧ୍ୟାୟରେ ବିଷ୍ଣୁଙ୍କର ଉପାସନା କରୁ କରୁ ମୃଗଶିଶୁର ଲାଳନ ପାଳନ କରି ଅତ୍ୟାଶକ୍ତ ହେବାରୁ ମୃଗରୂପରେ ଜନ୍ମ ହେବା ବର୍ଣ୍ଣିତ ହୋଇ ଅଛି । ० ।

ଶ୍ରୀଶୁକଦେବ କହିଲେ :—

ଦିନେ ଭରତ ମହାନଦୀ ଗଣ୍ଡକୀରେ ସ୍ନାନ ଓ ନିତ୍ୟ ନୈମିତ୍ତିକ କର୍ମ ସମ୍ପାଦନ କରି ପ୍ରଣବ ଜପ ଇତ୍ୟାଦି କରୁଥିଲେ । ଜପ କାଳରେ ଏହି ନଦୀତୀରରେ ସେ ମୁହୂର୍ତ୍ତକାଳ ଉପବେଶନ କରିଥିଲେ । ୧ ।

ଏହି ସମୟରେ ଗୋଟିଏ ହରିଣୀ ଜଳ ପାନକରିବା ଲାଗି ସେହି ଜଳାଶୟ ନିକଟକୁ ଆଗମନ କରିଥିଲା । ୨ ।

---

ଅଷ୍ଟମେ ଭରତ ରାଜନ, କରନ୍ତେ ବିଷ୍ଣୁ ଆରାଧନ । ମୃଗ ପୋଷଣେ ଦେଇମନ, ଲଭିଲେ ମୃଗରୂପେଜନ୍ମ ॥

ଶ୍ରୀ ଶୁକଉବାଚ—

ଶୁଣ ରାଜନ ସାବଧାନେ
ମହାନଦୀରେ ଏକଦିନେ
ସ୍ନାନ ଆହ୍ନିକ କ୍ରିୟା ସାରି
ଭରତ ଗୋବିନ୍ଦ ସୁମରି
ମୁହୂର୍ତ୍ତମାତ୍ର ଜଳେ ରହି
ଏକାନ୍ତେ ବ୍ରହ୍ମକୁ ଧ୍ୟାଇ । ୧ ।

ସେ କ୍ଷଣେ ଶୁଣ ମହୀପାଳ
ହରିଣୀ ଏକ ତୃଷାକୁଳ
ମିଳିଲା ଜଳାଶୟ ତୀରେ
ଜଳ ପିଅଇ ସେ ସଧୀରେ ।୨।

ତସ୍ୟା ଉପେପୀୟମାନ ଉଦକେ ତାବଦେବାବଦୂରେଣ ନଦତୋ ମୃଗପତେରୁନ୍ନାଦୋ ଲୋକଭୟଙ୍କର ଉଦପତତ୍ । ୩ ।

ତମୁପଶ୍ରୁତ୍ୟ ସା ମୃଗବଧୂଃ ପ୍ରକୃତିବିକ୍ଲବା ଚକିତନିରୀକ୍ଷଣା ସୁତରାମପି ହରିଭୟାଭିନିବେଶବ୍ୟଗ୍ରହୃଦୟା ପାରିପ୍ଲବଦୃଷ୍ଟିରଗତତୃଷା ଭୟାତ୍ ସହସୈବୋଚ୍ଚକ୍ରାମ ।୪।

ତସ୍ୟା ଉତ୍ପତନ୍ତ୍ୟା ଅନ୍ତର୍ବତ୍ନ୍ୟା ଉରୁଭୟାବଗଳିତୋ ଯୋନିନିର୍ଗତୋ ଗର୍ଭଃ ସ୍ରୋତସି ନିପପାତ । ୫ ।

ତତ୍ପ୍ରସବୋତ୍ସର୍ପଣଭୟଖେଦାତୁରା ସ୍ୱଗଣେନ ବିୟୁଜ୍ୟମାନା କସ୍ୟାଞ୍ଚିଦ୍ଦର୍ଯ୍ୟାଂ କୃଷ୍ଣସାରସତୀ ନିପପାତାଥ ଚ ମମାର । ୬ ।

---

ସେହି ହରିଣୀ ଅତି ଆଗ୍ରହରେ ଜଳପାନ କରୁଥିଲାସେତେବେଳେଅନତିଦୂରରେ ଲୋକଭୀତି ଉତ୍ପାଦକ ସିଂହଗର୍ଜନ ଶୁଣାଗଲା । ୩ ।

ସ୍ୱଭାବ ଚଞ୍ଚଳା ସେହି ହରିଣୀ ସିଂହଗର୍ଜନ ଶ୍ରବଣକରି ଚକିତ ନେତ୍ରରେ ସିଂହଭୟରେ ବ୍ୟାକୁଳ ହୋଇ ସ୍ଥିର ଆଡ଼କୁ ଚଞ୍ଚଳଦୃଷ୍ଟି ନିକ୍ଷେପ କରି ତୃଷ୍ଣା ନିବାରଣକରି ନ ପାରି ସହସାନଦୀ ଜଳକୁ ଡେଇଁ ପଡ଼ିଲା । ୪ ।

ସେହି ଗର୍ଭିଣୀ ଜଳମଧ୍ୟକୁ ଡେଇଁପଡ଼ନ୍ତେ ତାହାର ଗର୍ଭଚ୍ୟୁତ ହୋଇ ଜଳମଧ୍ୟରେ ପତିତ ହେଲା ।୫।

ଗର୍ଭପାତ, ଉଲ୍ଲମ୍ଫନ, ଭୟ ଓ ନାନାବିଧ ପରିଶ୍ରମକ୍ଲିଷ୍ଟ ଜଳଚ୍ୟୁତ ସେହି କୃଷ୍ଣସାର ମୃଗୀ ଗୋଟିଏ ଗିରି ଗହ୍ୱର ମଧ୍ୟରେ ପତିତ ହେଲା ଏବଂ ତତ୍କ୍ଷଣାତ୍ ପ୍ରାଣ ହରାଇଲା । ୬ ।



ଭରତଙ୍କର ମୃଗଜନ୍ମ

---

ଏମନ୍ତ ସମସ୍ତ ରାଜନ
ମୃଗେନ୍ଦ୍ର-ଭୟଙ୍କରସ୍ୱନ
ଉଠିଲା ଅଲ୍ପଦୂର ବନ
ଜଳ ପିଅନ୍ତେ ଅତିଘନେ ।୩।
ସେ ମୃଗବଧୂ ତାହା ଶୁଣି
ଅତି ଚକିତେ ନୃପମଣି

ସ୍ଥିରହିଗତରେ ସେ ନୟନ
ବୁଲାଇ ଅତି ଘନଘନ
ନିକଟେ ସିଂହ ପ୍ରାୟେ ମଣି
ଅତି କାତରେ ସେ ହରିଣୀ
ଜଳପାନରେ ତୃଷା ତାର
ନୁହିଁ ନୋହୁଛ ନୃପବର

ଜଳୁ ଉଠିଣ ଧାଇଁକାରେ
ଡେଇଁଲା ମରଣ କାତରେ ।୪।
ସ୍ୱଭାବେ ଗର୍ଭ ହୋଇଥିଲା
ସେ ଗର୍ଭ ଜଳରେ ପଡ଼ିଲା
ଗର୍ଭନିପାତେ ଖେଦମତି
ପ୍ରାଣ ଛାଡ଼ିଲା ମୃଗସତୀ ।୫,୬।

ତଂ ତ୍ୱେଣକୁଣକଂ କୃପଣଂ ସ୍ରୋତସାଽନୁହ୍ୟମାନମଭିବୀକ୍ଷ୍ୟାପବିଦ୍ଧଂବନ୍ଧୁରିବାନୁକମ୍ପୟା ରାଜର୍ଷିର୍ଭରତ ଆଦାୟ ମୃତମାତରମିତ୍ୟାଶ୍ରମପଦମନୟତ୍ । ୭ ।

ତସ୍ୟ ହ ବା ଏଣକୁଣକ ଉଚ୍ଚୈରେତସ୍ମିନ୍ କୃତନିଜାଭିମାନସ୍ୟାହରହସ୍ତତ୍ପୋଷଣପାଳନଲାଳନପ୍ରୀଣନାନୁଧ୍ୟାନେନାତ୍ମନିୟମାଃ ସହୟମାଃ ପୁରୁଷପରିଚର୍ଯ୍ୟାଦୟ ଏକୈକଶଃ କତିପୟେନାହର୍ଗଣେନ ବିୟୁଜ୍ୟମାନାଃ କିଲ ସର୍ବ ଏବୋଦବସନ୍ । ୮ ।

ଅହୋ ବତାୟଂ ହରିଣକୁଣକଃ କୃପଣ ଈଶ୍ୱରରଥଚରଣପରିଭ୍ରମଣରୟେଣ ସ୍ୱଗଣସୁହୃଦ୍‌ବନ୍ଧୁଭ୍ୟଃ ପରିବର୍ଜିତଃ ଶରଣଞ୍ଚ ମୋପସାଦିତୋ ମାମେବ ମାତାପିତରୌ ଭ୍ରାତୃଜ୍ଞାତୀନ୍ ଯୌଥିକାଂଶ୍ଚୈବୋପେୟାୟ ନାନ୍ୟଂ କଞ୍ଚନ ବେଦ ମୟ୍ୟତିବିଶ୍ରବ୍ଧଶ୍ଚାତଏବ ମୟା ମତ୍‌ପରାୟଣସ୍ୟ ପୋଷଣପାଳନପ୍ରୀଣନଲାଳନମନସୂୟୁନାନୁଷ୍ଠେୟଂ ଶରଣୋପେକ୍ଷାଦୋଷ ବିଦୁଷା । ୯ ।

---

ରାଜର୍ଷି ଭରତ ଦେଖିଲେ ମାତୃହୀନ ବନ୍ଧୁ ବାନ୍ଧବ ଶୂନ୍ୟ ଦୀନ ହରିଣ ଶିଶୁ ଜଳସ୍ରୋତରେ ଭାସି ଯାଉଅଛି । ସେ ଅତ୍ୟନ୍ତ କାତର, ତାହାଙ୍କର କରୁଣା ହେଲ ସେ ବନ୍ଧୁତୁଲ୍ୟ ଅନୁକମ୍ପା ପୂର୍ବକ ତାହାକୁ ଗ୍ରହଣ କରି ନିଜ ଆଶ୍ରମରେ ସ୍ଥାନ ଦେଲେ ।୭ ।

ରାଜର୍ଷି ଭରତ ସେହି ହରିଣ ବାଳକ ପ୍ରତି "ଏ ମୋର" ଏହି ଅଭିମାନଜନ୍ମିଲା, ସୁତରାଂ ଅହରହଃ ତୃଣାଦି ଦାନଦ୍ୱାରା ତାହାକୁ ପୋଷଣ ଏବଂ ବ୍ୟାଘ୍ରାଦି ମାନଙ୍କଠାରୁ ରକ୍ଷଣ ଏବଂ ତାହାର ପାଳନ ପ୍ରୀତି ସମ୍ପାଦନ ଏବଂ ଚୁମ୍ବନାଦି କରୁଥିଲେ । ତହୁଁ ତାଙ୍କର ସ୍ନାନାଦିନିୟମ, ଯମ ଓ ଭଗବଦ୍‌ପରିଚର୍ଯ୍ୟା ପ୍ରଭୃତି କ୍ରମେ କ୍ରମେ ହ୍ରାସ ହୋଇ ଦିନେ ସମୁଦାୟ ଲୋପ ହୋଇଗଲା । ୮ ।

ଅହୋ ! ଦୀନ ଦୁବାସନ ଏହି ହରିଣ ଶିଶୁ କାଳଚକ୍ରର ଆବର୍ତ୍ତନରେ ନିଜର ସ୍ୱଜନ, ସୁହୃଦ୍ ଓ ବନ୍ଧୁଗଣଙ୍କଠାରୁ ବିଚ୍ଛିନ୍ନ ହୋଇ ବିଧାତାଙ୍କ ପ୍ରେରଣାରେ ମୋତେ ତାହାର ରକ୍ଷକରୂପେ ପ୍ରାପ୍ତ ହୋଇଅଛି ଏହି ଶିଶୁ ମୋ ପ୍ରତି ଅତ୍ୟନ୍ତ ବିଶ୍ୱସ୍ତଚିତ୍ତ, ସେ ମୋତେ ମା, ବାପ, ଭାଇ, ଜାତି ଓ ଯୂଥ ସମ୍ବନ୍ଧ ବୋଲି ଜାଣେ, ଅନ୍ୟ କାହାରିକୁ ଜାଣେ ନାହିଁ । ଏହି ମୃଗଶାବକ ଯେତେବେଳେ ଏକାକୀ ମୋତେ ରକ୍ଷକ ବୋଲି ଜାଣିଅଛି, ରକ୍ଷାକାଂକ୍ଷୀ ଆଶ୍ରିତକୁ ରକ୍ଷା ନ କଲେ ଅତ୍ୟନ୍ତ ଦୋଷ ଘଟେ । ସୁତରାଂ ଅସୂୟା ପରିତ୍ୟାଗ କରି ଅର୍ଥାତ୍ ଏହାଦ୍ୱାରା ମୋର ସ୍ୱାର୍ଥ ନଷ୍ଟ ହେବ ଏହା ନ ଭାବି ଏହି ମୃଗଶାବକକୁ ପୋଷଣ ପାଳନ ଓ ତାହାର ପ୍ରୀତି ସମ୍ପାଦନ କରିବା ମୋର କର୍ତ୍ତବ୍ୟ । ୯ ।

---

ନଦୀରେ ଥାଇ ମୃଗବାଳ
ସେ ଯେ ଭରତ ମହୀପାଳ
ମାତାର ମୃତ୍ୟୁ ତାର ଦେଖି
ଦୟାରେ ଅଶ୍ରୁପୂର୍ଣ୍ଣ ଆଖି
ମୃଗନନ୍ଦନ ଘେନି କରେ
ଆଶ୍ରମେ ମିଳିଲେ ସତ୍ୱରେ ।୭।
ସେ ମୃଗ ନନ୍ଦନର ତହିଁ
ଅତ୍ୟନ୍ତ ସ୍ନେହଭର ହୋଇ

ହସ୍ତେ କୋମଳ ଦୁର୍ବାଙ୍କୁର
ନ୍ନେହ ଆଣଇ ନୃପବର
ଯାହା ସେ କରେ ଅଭିଳାଷ
ତା ଦେଇ କରେ ମନ ତୋଷ
ତା ସେବା ନିରତେ କରଇ
ମାୟାରେ ମତିଭ୍ରମ ହୋଇ
ଯମ ନିୟମ ଶ୍ରଦ୍ଧା ଯେତେ
ବିସ୍ମର ହେଲ ନୃପଚିତ୍ତେ

କେତେହେଁ ଦିନ ଅନନ୍ତର
ପ୍ରଭୁର ସେବା କଲ ଦୂର ।୮।
ଜଗତ ମାତା ପିତା ହରି
ତାର ଚରଣ ଚିତ୍ତେ ଧରି
ଦାରା ତନୟ ଆଦି ଯେତେ
ସକଳ ଦୂର କରି ଚିତ୍ତେ
ଏ ଭାବେ ଥିଲା ସେ ରାଜନ
ଦେଖ ଏହାର ମୂଢ଼ପଣ

ନୂନଂ ହ୍ୟାର୍ଯ୍ୟାଃ ସାଧବ ଉପଶମଶୀଳାଃ କୃପଣସୁହୃଦ ଏବଂବିଧାର୍ଥେ ସ୍ୱାର୍ଥାନପି ଗୁରුତରାନୁପେକ୍ଷନ୍ତେ । ୧୦ ।

ଇତି କୃତାନୁଷଙ୍ଗ ଆସନଶୟନାଟନସ୍ନାନାଶନାଦିଷୁ ସହ ମୃଗଜହ୍ନୁନା ସ୍ନେହାନୁବଦ୍ଧହୃଦୟ ଆସୀତ୍ । ୧୧ ।

କୁଶକୁସୁମସମିତ୍ପଲାଶଫଳମୂଳୋଦକାନ୍ୟାହରିଷ୍ୟମାଣୋ ବୃକଶାଲାବୃକାଦିଭ୍ୟୋ ଭୟମାଶଂସମାନୋ ଯଦା ସହ ହରିଣକୁଣକେନ ବନଂ ସମାବିଶତି । ୧୨ ।

ପଥିଷୁ ଚ ମୁଗ୍ଧଭାବେନ ତତ୍ର ତତ୍ର ବିଷକ୍ତମତି ପ୍ରଣୟଭରହୃଦୟଃ କାର୍ପଣ୍ୟାତ୍ ସ୍କନ୍ଧେନୋଦ୍ୱହତି । ଏବମୁତ୍ସଙ୍ଗ ଉରସି ଚାଧାୟୋପଲାଳୟନ୍ ମୁଦଂ ପରମାମବାପ । ୧୩ ।

---

ଆର୍ଯ୍ୟାଚାରଯୁକ୍ତ ଶାନ୍ତ ସ୍ୱଭାବ ଦୀନବନ୍ଧୁ ସାଧୁମାନଙ୍କର ଏହିପରି ବିଷୟ ଉପସ୍ଥିତ ହେଲେ, ସେମାନେ ନିଜର ଗୁରୁତର ସ୍ୱାର୍ଥ ମଧ୍ୟ ଉପେକ୍ଷା କରନ୍ତି । ୧୦ ।

ଏହିପରି ଭାବରେ ସେହି ହରିଣଶିଶୁପ୍ରତି ଅନୁରାଗୀ ହୋଇ ରାଜର୍ଷି ଭରତ ଆସନ, ଶୟନ, ଭ୍ରମଣ, ସ୍ନାନ ଓ ଆହାରାଦି କୌଣସିପ୍ରକାର କାର୍ଯ୍ୟରେ ତାହାପ୍ରତି ସ୍ନେହ ଛାଡ଼ି ନ ଥିଲେ, ସର୍ବଦା ତାହାଙ୍କର ହୃଦୟ ଏହି ହରିଣ ଶିଶୁପ୍ରତି ସ୍ନେହ ପ୍ରବଣ ହୋଇଥିଲା । ୧୧ ।

ଯେତେବେଳେ ସେ ହୋମାଦି କାର୍ଯ୍ୟ ସମ୍ପାଦନ ନିମିତ୍ତ କୁଶ, ପୁଷ୍ପ, ସମିଧ, ପତ୍ର, ଫଳ, ମୂଳ, ଜଳ ସଂଗ୍ରହ କରିବା ନିମିତ୍ତ ବନକୁ ଗମନ କରୁଥିଲେ, ସେତେବେଳେ ତାହାଙ୍କର ଆଶଙ୍କା ହେଉଥିଲା ଯେ ହରିଣ ଶିଶୁଟି ଆଶ୍ରମରେ ଏକାକୀ ଥିବାବେଳେ ତାକୁ କାଳେ କୁକୁର ବା ବ୍ୟାଘ୍ର ବିନାଶ କରିବ । ତେଣୁ ତାହାକୁ ସଙ୍ଗରେ ନେଇ ଯାଉଥିଲେ । ୧୨ ।

ପଥମଧ୍ୟରେ ନାନାସ୍ଥାନରେ କର୍ଦ୍ଦମାଦିପରିଜାତ ତୃଣାଦି ଦର୍ଶନ କରି ସେହିସ୍ଥାନରେ ଯେତେବେଳେ ହରିଣ ଶିଶୁଟି ଭିଡି ଯାଉଥିଲା, ସେତେବେଳେ ହୃଦୟରେ ଅତ୍ୟନ୍ତ ସ୍ନେହବଶତଃ ଭରତ ତାହାକୁ ସ୍କନ୍ଧରେ ବହନ କରୁଥିଲେ । ଏହିପରି କ୍ରୋଡ଼ରେ ଓ ସ୍କନ୍ଧରେ ତାହାକୁ ସ୍ଥାପନ କରି ନାନାପ୍ରକାର ଆଦର ଦ୍ୱାରା ସେ ଆନନ୍ଦ ଅନୁଭବ କରୁଥିଲେ । ୧୩ ।

---

ସକଳ କର୍ମ ଦୂର କଲେ
ମୃଗବାଳକେ ମନ ଦେଲେ
ବିଶ୍ୱରେ ମାତା ପିତା ଭାଇ
ଏହାର ଆନ କେହି ନାହିଁ
ଆଶ୍ରୟ କରିଅଛି ମୋତେ
ମୁଁ ତାକୁ ତେଜିବି କେମନ୍ତେ
ଏ ସାଧୁ କର୍ମର କାରଣ
ଏମନ୍ତ ଚିନ୍ତିଣ ରାଜନ

ଆସନ ଶୟନ ଗମନେ
ସ୍ନାନ ଭୋଜନ ଜଳପାନେ
ମୃଗବାଳକେ ମନ ତାର
ନିମେଷେ ନ କରଇ ଦୂର ।୯-୧୧
କାଷ୍ଠ ପଲାଶ ଆଣିବାରେ
ଯେବେ ସେ ଯାଇ ବନସ୍ତରେ
ମୃଗବାଳକ ନେଇ ସଙ୍ଗେ
ପଥେ ଚାଲଇ ନାନାରଙ୍ଗେ

ବାଳକ ଚାଲି ନ ପାରଇ
ଏମନ୍ତ ମନେ ବିଚାରଇ
ଅତ୍ୟନ୍ତ ସ୍ନେହବଶ ହୋଇ
କନ୍ଧେ ତାହାକୁ ସେ ବହଇ
ହୃଦରେ ଆରୋପେ ହରଷେ
ବାହୁରେ ଭିଡ଼େ ସ୍ନେହବଶେ
ସ୍ନାନ ଭୋଜନ ବେଳେ ତାର
କ୍ଷଣେ ହୋନ୍ତି ନାହିଁ ଅନ୍ତର ।୧୨-୧୩

କ୍ରିୟାସ୍ୱାମନବର୍ତ୍ତ୍ୟମାନାସ୍ୱାମନ୍ତରାପ୍ୟୁତ୍ଥାୟୋତ୍ଥାୟ ଯଦୈନମଭିଚକ୍ଷୀତତର୍ହି ବାବ ସ ବର୍ଷପତିଃ ପ୍ରକୃତିସ୍ଥେନ ମନସା ତସ୍ମା ଆଶିଷ ଆଶାସ୍ତେ ସ୍ୱସ୍ତି ସ୍ତାଦ୍‌ବତ୍ସ ତେ ସର୍ବତ ଇତି । ୧୪ ।

ଅନ୍ୟଦା ଭୃଶମୁଦ୍‌ବିଗ୍ନମନା ନଷ୍ଟଦ୍ରବିଣ ଇବ କୃପଣଃ ସକରୁଣମତିତର୍ଷେଣ ହରିଣକୁଣକବିରହବିହ୍ୱଲହୃଦୟସନ୍ତାପସ୍ତମେବାନୁଶୋଚନ୍ କିଲ କଶଲଂ ମହଦଭିରମ୍ଭିତ ଇତ୍ୟହୋବାଚ । ୧୫ ।

ଅପି ବତ ସ ବୈ କୃପଣ ଏଣବାଲକୋ ମୃତହରିଣୀସୁତୋଽହୋ ! ମମାନାର୍ଯ୍ୟସ୍ୟ ଶଠକିରାତମତେରକୃତସୁକୃତସ୍ୟ କୃତବିସ୍ରମ୍ଭ ଆତ୍ମପ୍ରତ୍ୟୟେନ ତଦବିଗଣୟନ୍ ସୁଜନ ଇବାଗମିଷ୍ୟତି । ୧୬ ।

ଅପି କ୍ଷେମେଣାସ୍ମିନ୍ନାଶ୍ରମୋପବନେ ଶଷ୍ପାଣି ଚରନ୍ତଂ ଦେବଗୁପ୍ତଂ ଦ୍ରକ୍ଷ୍ୟାମି ।୧୭।

---

ରାଜର୍ଷି ଭରତ ଭଗବାନଙ୍କ ପରିଚର୍ଯ୍ୟାରେ ନିଯୁକ୍ତ ରହି ଯେତେବେଳେ କ୍ରିୟା ଶେଷ ନ ହେଉଣୁ ମଧ୍ୟେ ମଧ୍ୟେ ଉଠି ସେହି ହରିଣ ଶିଶୁଟିକୁ ସମ୍ମୁଖରେ ଦେଖି ତାହାକୁ ଆଶୀର୍ବାଦ କରୁଥିଲେ—ରେ ବତ୍ସ ! ତୋର ସବୁ ବିଷୟରେ ମଙ୍ଗଳ ହେଉ । ୧୪ ।

ପୁଣି ଭଗବତ୍ ଆରାଧନା ଶେଷ ନ ହେଉଣୁ ଉଠି ସେ ହରିଣଶାବକକୁ ସମ୍ମୁଖରେ ଦେଖି ତାହାର ଅନିଷ୍ଟ ଆଶଙ୍କା ହେତୁ ଅତ୍ୟନ୍ତ ଉଦ୍‌ବିଗ୍ନ ହେଉଥିଲେ ଏବଂ ଦରିଦ୍ରର ଧନ ନାଶ ହେଲେ ସେ ଯେପରି ଉତ୍କଣ୍ଠିତ ହୁଏ ସେହିପରି ତାହାଙ୍କର ହୃଦୟ ବିରହ ଓ ସନ୍ତାପରେ ବିହ୍ୱଳ ହେଉଥିଲା ଏବଂ ହୃଦୟର ବିକାର ହେତୁ ସେ ତାହାପାଇଁ ଶୋକରେ ଅଧୀର ହେଉଥିଲେ । ୧୫ ।

ଭରତ ଏହିପରି କହି ଶୋକ କରୁଥିଲେ—ହାୟ ! ହାୟ ! ମାତୃହୀନ ଏହି ଦୀନ ହରିଣଶାବକ ଅନାର୍ଯ୍ୟ, ଶଠ ଓ କିରାତତୁଲ୍ୟ କ୍ରୂରମତି ହତଭାଗ୍ୟ "ମୁଁ ଏହି ଅପରାଧ ଗ୍ରହଣ ନ କରି" ସେ ମୋ ପ୍ରତି ବିଶ୍ୱାସ ବଳରେ ମୋତେ ଆତ୍ମୀୟ ସ୍ୱଜନ ଭାବୁଅଛି । ୧୬ ।

ମୁଁ କଣ ତାକୁ ପୁଣି ଦେଖି ପାରିବି ? ଏହି ଆଶ୍ରମର ଉପବନରେ ସେ ଦେବ ରକ୍ଷିତହୋଇ ନିର୍ବିଘ୍ନରେ ବାସ କରୁଅଛି । ୧୭ ।

---

କ୍ଷଣମାତ୍ରକେ ନୃପବର
ନ ଦେଖି ମୃଗର କୁମର
ଅସ୍ଥିରେ ତାହାକୁ ଲୋଡ଼ଇ
ପୁଣି ସେ ଯେବେଟି ଦେଖଇ
ତହିଁକି ଚିତ୍ତ ସ୍ଥିର କରେ
ଆଶିଷ ଦିଅଇ ତାହାରେ
ହେବତ୍ସ ! ତୋହର କଲ୍ୟାଣ
ସର୍ବଦା କରୁ ନାରାୟଣ ।୧୪।

ଯେବେ ନିମେଷେ ନ ଦେଖଇ
ଶୋକସାଗରେ ସେ ବୁଡ଼ଇ
କୃପଣ ଦ୍ରବ୍ୟକୁ ଯେସନ
ଚୋରଯ୍ୟ କରି ନେଲେ ଆନ
ତେମନ୍ତ ପ୍ରାୟେ ମହୀପାଳ
କ୍ଷଣେ ନ ଦେଖି ମୃଗବାଳ
ବିହ୍ୱଳେ ହୃଦୟ କାତର
ଲୋଡ଼ଇ ମୃଗର କୁମର

ତୁମେ ବୋଲଇ ବାକ୍ୟମାନ
ମନ୍ଦ ବା ମୃଗର ନନ୍ଦନ
କି କର୍ମ କଲି ମୁଁ ନିସ୍ୱତ
କେଣେ ମୋ ଗଲା ମୃଗସୁତ
ମୃଗବାଳକ ସୁକଲ୍ୟାଣେ
ଚରୁ କି ଥିବ ଉପବନେ ?
ପ୍ରଭୁ କି ରଖୁଥିବେ ତାରେ
ଦେଖିବି ନୟନଗୋଚରେ ।୧୫-୧୭

ଅପି ତ ନ ବୃକଃ ଶାଲାବୃକୋଽନ୍ୟତମୋ ବା ନୈକଚରେ ଏକଚରେ ବା ଭକ୍ଷୟତି ।୧୮।

ନିମ୍ଲୋଚତି ହ ଭଗବାନ୍ ସକଳଜଗତ୍‌କ୍ଷେମୋଦୟସ୍ତ୍ରୟ୍ୟାତ୍ମାଦ୍ୟାପି ମମ ନ ମୃଗବଧୂନ୍ୟାସ ଆଗଚ୍ଛତି । ୧୯ ।

ଅପିସ୍ୱିଦକୃତସୁକୃତମାଗତ୍ୟ ମାଂ ସୁଖୟିଷ୍ୟତି ହରିଣରାଜକୁମାରୋ ବିବିଧରୁଚିରଦର୍ଶନୀୟନିଜମୃଗଦାରକ ବିନୋଦୈରସନ୍ତୋଷଂ ସ୍ୱାନାମପନୁଦନ୍ । ୨୦ ।

କ୍ଷ୍ୱେଲିକାୟାଂ ମାଂ ମୃଷାସମାଧିନାମୀଲିତଦୃଶଂ ପ୍ରେମସଂରମ୍ଭେଣ ଚକିତଚକିତ ଆଗତ୍ୟ ପୃଷଦପରୁଷବିଷାଣାଗ୍ରେଣ ଲୁଠତି । ୨୧ ।

ଆସାଦିତହବିଷି ବର୍ହିଷି ଦୂଷିତେ ମୟୋପାଲବ୍‌ଧୋ ଭୀତଭୀତଃ ସପଦ୍ୟୁପରତରାସ ଋଷିକୁମାରବଦବହିତକରୁଣକଲାପ ଆସ୍ତେ । ୨୨ ।

କିଂବା ଅରେ ଆଚରିତଂ ତପସ୍ତପସ୍ୱିନ୍ୟାନୟା ଯଦୟମବନିଃ ସବିନୟକୃଷ୍ଣସାରତନୟତନୁତରସୁଭଗଶିବତମାଖରଖୁରପଦପଂକ୍ତିଭିର୍ଦ୍ରବିଣବିଧୁରାତୁରସ୍ୟ କୃପଣସ୍ୟ

ବ୍ୟାଘ୍ର ବା କୁକ୍କୁର ବା ଶୃଗାଳ ଦଳବଦ୍ଧହୋଇ ବା ଏକାକୀ ତାହାକୁ ଭକ୍ଷଣ କରୁନାହାନ୍ତି ? ।୧୮।

ଯେ ଉଦୟ ହେବାରୁ ସମସ୍ତ ଜଗତର ମଙ୍ଗଳ ସାଧିତ ହୁଏ, ସେହି ଭଗବାନ୍ ଦେବାତ୍ମା ସୂର୍ଯ୍ୟଦେବ ପ୍ରାୟ ଅସ୍ତଗାମୀ ହେଲେଣି, ଏ ପର୍ଯ୍ୟନ୍ତ ସେହି ମୃଗଶାବକ ଫେରି ଆସୁନାହିଁ କାହିଁକି ? । ୧୯ ।

ସେହି ହରିଣ ନାନାପ୍ରକାର ଶିଶୁକ୍ରୀଡ଼ାଦ୍ୱାରା ଚିତ୍ତବିନୋଦକରି ମୁଁ ଦୁର୍ଭାଗ୍ୟ ନିକଟକୁ ଫେରି ଆସି ମୋର ଚିତ୍ତ ବିନୋଦ କରିବକି ? । ୨୦ ।

କ୍ରୀଡ଼ା ସମୟରେ ପ୍ରଣୟକୋପବଶତଃ ମିଥ୍ୟା ସମାଧି ଦ୍ୱାରା ନିମିଳିତ ନୟନ ମୋତେ ଚକିତ ଭାବରେ ପ୍ରଦକ୍ଷିଣକରି ଜଳକଣା ତୁଲ୍ୟ ନିଜର କୋମଳଶୃଙ୍ଗାଗ୍ର ଦ୍ୱାରା ସେ ମୋତେ ସ୍ପର୍ଶ କରେ । ୨୧ ।

କୁଶ ଉପରେ ହୋମସାମଗ୍ରୀ ରଖିଲେ ସେହି ହରିଣଶିଶୁ ଚପଳତା ବଶତଃ କୁଶକୁ ଆକର୍ଷଣକରି ବେଳେ ବେଳେ ଦୂଷିତ କରି ପକାଏ, ସେତେବେଳେ ମୁଁ ତାକୁ ତିରସ୍କାର କରେ, ସେତେବେଳେ ସେ ଋଷିକୁମାର ତୁଲ୍ୟ ସଂଯତେନ୍ଦ୍ରିୟ ହୁଏ । ୨୨ ।

ଏହିପରି ବିଳାପ କରୁ କରୁ ସେ ବାହାରଗତ ହୋଇ ହରିଣଶିଶୁର ଚିହ୍ନ ଦର୍ଶନ କରି ପୁନର୍ବାର କହିଲେ—ରେ ମନ୍ଦ ଭାଗ୍ୟ ଭରତ ! ଏହି ପୃଥିବୀ କେତେ ତପସ୍ୟା କରିଅଛି । କି ସାମାନ୍ୟ ତପସ୍ୟା କରି

କେଉଁଣେ ସେ ମୃଗବାଳ ମୋର
ଭକ୍ଷିଲେ ବ୍ୟାଘ୍ର ବା କୁକୁର
ରବିର ଅସ୍ତକାଳ ହୋଇ
ଏବେହେଁ ମୃଗବାଳ ନାହିଁ
ଶୋକେ ଆକୁଳ ମୋର ଦେଖି
ସେ ଆସି ମୁଖକୁ ନ ଦେଇ
ସେ ଯେ ମୃଗରାଜକୁମର
ମନୋଜ୍ଞ ଗମନ ତାହାର
କ୍ଷଣକେ ଆଶ୍ରମ ଜେବର
ଦୁଃଖ ଖଣ୍ଡଇ ନିରନ୍ତର ।୧୮-୨୦।
ମିଥ୍ୟାରେ ଚକ୍ଷୁ ବୁଜି ମୁହିଁ
କ୍ଷଣମାତ୍ରକ ଯେବେ ରହି
ଚକିତପ୍ରାୟ ସେ ହୁଅଇ
ମୋହର ଅଗ୍ରତେ ଲୋଟଇ ।୨୧।
ଋଷିକୁମରଙ୍କର ସଙ୍ଗେ
ଖେଳୁ ଯେ ଥାଇ ନାନାରଙ୍ଗେ
କୋମଳ କୁଶାଙ୍କୁରମାନେ
କ୍ରମରେ ହଅନ୍ତି ବଦନେ
ସେ ସର୍ବ ସୁଖ ଦୂର କଲି
ମୃଗବାଳକ କେଉଁଣେ ଗଲା ।୨୨।
ସେ ମୋର କୃଷ୍ଣସାର ବାଳ
ମୃଦୁ ତାହାର ପାଦତଳ
କୋମଳ ଖୁର-ପୁଟ-ପନ୍ତି
ସେ ମୋର ଦ୍ରବିଣ ସମ୍ପତ୍ତି

ମମ ଦ୍ରବିଣପଦବୀଂ ସୂଚୟନ୍ତ୍ୟାମ୍ନାନଞ୍ଚ ସର୍ବତଃ କୃତକୌତୁକଂ ଦ୍ୱିଜାନାଂ ସ୍ୱର୍ଗାପବର୍ଗ-କାମାନାଂ ଦେବଯଜନଂ କରୋତି । ୨୩ ।

ଅପିସ୍ୱିଦସୌ ଭଗବାନୁଡୁପତିରେନଂ ମୃଗପତିଭୟାନ୍ମୃତମାତରଂ ମୃଗବାଳକଂ ସ୍ୱାଶ୍ରମପରିଭ୍ରଷ୍ଟମନୁକମ୍ପୟା କୃପଣଜନବତ୍ସଳଃ ପରିପାତି । ୨୪ ।

କିଂ ବାତ୍ମଜବିଶ୍ଳେଷଜ୍ୱରଦବଦହନଶିଖାଭିରୁପତପ୍ୟମାନହୃଦୟସ୍ଥଳନଳିନୀକଂ ମାମୁପସୃତମୃଗୀତନୟଂ ଶିଶିରଶାନ୍ତାନୁରାଗଗୁଣିତନିଜବଦନସଲିଳାମୃତମୟଗଭସ୍ତିଭିଃ ସ୍ୱଧୟତୀତି ଚ ।୨୫ ।

ଏବମଘଟମାନମନୋରଥାକୁଲହୃଦୟୋ ମୃଗଦାରକାଭାସେନ ସ୍ୱାରବ୍ଧକର୍ମଣା ଯୋଗାରମ୍ଭଣତୋ ବିଭ୍ରଂଶିତଃ ସ ଯୋଗତାପସୋ ଭଗବଦାରାଧନଲକ୍ଷଣାଚ୍ଚ । କଥମିତରଥା ଯାତ୍ୟନ୍ତର ଏଣକୁଣକ ଆସଙ୍ଗଃ ସାକ୍ଷାନ୍ନିଃଶ୍ରେୟସପ୍ରତିପକ୍ଷତୟା ପ୍ରାକ୍‌ପରିତ୍ୟକ୍ତ-

---

ଗର୍ବ ଅନୁଭବ କରୁ । ସେ ପରମ ସୌଭାଗ୍ୟବତୀ, କାରଣ ସେହି ପୃଥିବୀ ସେହି ମୃଗର ସୁନ୍ଦର ମଙ୍ଗଳମୟ କୋମଳ ପଦଚିହ୍ନ ଦ୍ୱାରା ଭୂଷିତ ହୋଇଅଛି । ୨୩ ।

ଆହା ! ଏହି ଆଶ୍ରମ ପରିଭ୍ରଷ୍ଟ ମାତୃହୀନ ମୃଗଶିଶୁକୁ ଦେଖି ଦୀନଜନବତ୍ସଳ ଭଗବାନ୍ ଚନ୍ଦ୍ରମା ସିଂହ ଭୟରେ ତାକୁ ନିଜ ନିକଟରେ ପ୍ରତିପାଳନ କରୁଅଛନ୍ତି । ଅଥବା ସିଂହ ଭୟରୁ ତାହାର ମାତାକୁ ରକ୍ଷା କରିଅଛନ୍ତି । ୨୪ ।

ଅହୋ ! ମୁଁ ମୃଗୀତନୟର ଅନୁଗାମୀ ହେବାରୁ ଆତ୍ମଜ ବିୟୋଗ ନିମିତ୍ତ ଜ୍ୱରତାପ ଦାବାଗ୍ନି ଶିଖାଦ୍ୱାରା ନିରନ୍ତର ମୋର ହୃଦୟସ୍ଥଳ ଉତ୍ତପ୍ତ ହେଉଥିଲା, ବୋଧହୁଏ ଭଗବାନ୍ ଚନ୍ଦ୍ରମା ଅନୁକମ୍ପା ପ୍ରକାଶ କରି ଆପଣାର ଶାନ୍ତ ସୁଶୀତଳ ବଦନସଲିଳ ରୂପ ଅମୃତମୟ କିରଣଦ୍ୱାରା ମୋତେ ସୁଖୀ କରୁ ଅଛନ୍ତି । ୨୫ ।

ହେ ରାଜନ୍ ! ଏହିପରି ଅଘଟମାନ ଅସମ୍ଭାବ୍ୟ ମନୋରଥାକୁଳ ହୃଦୟ ସେହି ଯୋଗ ତାପସ ଭରତର ଶାବକାଭାସ ରୂପ ପ୍ରାରବ୍ଧ କର୍ମଦ୍ୱାରା ଯୋଗାନୁଷ୍ଠାନରୁ ଓ ଭଗବଦ୍ ଆରାଧନାରୁ ବିଭ୍ରଷ୍ଟ ହୋଇଥିଲେ । ତାହା ନ ହେଲେ ଯେଉଁ ବ୍ୟକ୍ତି ପୂର୍ବେ ମୁକ୍ତିର ପ୍ରତିବନ୍ଧକ ବୋଲି ଦୁସ୍ତ୍ୟଜ୍ୟ ସନ୍ତାନମାନଙ୍କୁ ସୁଦ୍ଧା ପରିତ୍ୟାଗ କରିଥିଲେ, ତାଙ୍କୁ ସାମାନ୍ୟ ମୃଗଶିଶୁ ଆତ୍ମଜ ପୁତ୍ରତୁଲ୍ୟ ଆସକ୍ତ କରି ନ ଥାନ୍ତା । ଏହିପରି

---

ପଥରେ ପଦଚିହ୍ନ ଦେଖି
କହଇ ନିରେଖି ନିରେଖି
ଧନ୍ୟ ପୃଥିବୀ ! ତୋର ପୁଣ୍ୟ
ଏ ଚିହ୍ନ କଲୁ ତୁ ଧାରଣ
ବିପ୍ରଙ୍କ ଯଜ୍ଞସ୍ଥାନ ପ୍ରାୟେ
ତୋ ଦେହ ଶୋଭାକୁ ଯେ ପାଏ
ପୁଣି ଊର୍ଦ୍ଧ୍ୱକୁ ଦୃଷ୍ଟି ଦେଲା
ଯହୁଁ ସେ ଚନ୍ଦ୍ରଙ୍କୁ ଦେଖିଲା

ଚନ୍ଦ୍ରେ ଦେଖିଣ ମୃଗଚିହ୍ନ
ଭାବିଲା ନିଜ ମନେମନ
ମୃଗଶାବକ ଦେଖି ଏକ
ଦୟାରେ କ ତାରାନାୟକ
ସିଂହଭୟରୁ ରକ୍ଷାକଲେ
ଆପଣା ନିକଟେ ରଖିଲେ
ଅତ୍ୟନ୍ତ ସୁଖକୁ ସେ ଦେଇ
ତାବନୁ ମୋର କେହି ନାହିଁ

ଏ ଯେ ଆଶ୍ରମ ମୁନିଗଣ
କରନ୍ତି ନାନା ଶୁଭ କର୍ମ
ହରଷ ଚିତ୍ତେ ମୁନିଗଣ
କରନ୍ତି ତାହାରେ କଲ୍ୟାଣ
ମୃଗେନ୍ଦ୍ର ଭୟରୁ ତାହାର
ମାତା ଯେ ରଖିଲା ଶରୀର
ତେଣୁ ମୁଁ ଲଭିଲି ତାହାରେ
ଏବେ ବେଶି ଏ ଗଲ୍ପ କେତେ ଦୂରେ । ୨୩। ୨୫

ଦୁସ୍ତ୍ୟଜହୃଦୟାଭିଜାତସ୍ୟ ତସ୍ୟୈବମନ୍ତରାୟବିହତଯୋଗାରମ୍ଭଣସ୍ୟ ରାଜର୍ଷେର୍ଭରତସ୍ୟ ତାବନ୍ମୃଗାର୍ଭକପୋଷଣପାଲନପ୍ରୀଣନଲାଲନାନୁଷଙ୍ଗେଣାବିଗଣୟତ ଆତ୍ମାନମହିରିବାଖୁବିଲଂ ଦୁରତିକ୍ରମଃ କାଳଃ କରାଳରଭସ ଆପଦ୍ୟତ । ୨୬ ।

ତଦାନୀମପି ପାର୍ଶ୍ୱବର୍ତ୍ତିନମାତ୍ମଜମିବାନୁଶୋଚନ୍ତମଭିବୀକ୍ଷ୍ୟମାଣୋ ମୃଗ ଏବାଭିନିବେଶିତମନା ବିସୃଜ୍ୟ ଲୋକମିମଂ ସହ ମୃଗେଣ କଳେବରଂ ମୃତମନୁ ନ ମୃତଜନ୍ମାନୁସ୍ମୃତିରିତରବନ୍ମୃଗଶରୀରମବାପ । ୨୭ ।

ତତ୍ରାପି ହ ବା ଆତ୍ମନୋ ମୃଗତ୍ୱକାରଣଂ ଭଗବଦାରାଧନସମୀହାନୁଭାବେନାନୁସ୍ମୃତ୍ୟ ଭୃଶମନୁତପ୍ୟମାନ ଆହ । ୨୮ ।

---

ବିଘ୍ନ ଦ୍ୱାରା ଯୋଗାରମ୍ଭ ବିରହିତ ହୋଇ ଆତ୍ମତନ୍ତ୍ରାପରାଙ୍ମୁଖ ରାଜର୍ଷି ଭରତ ସେହି ମୃଗଶିଶୁର ଲାଳନ ପାଳନ, ପୋଷଣ, ପ୍ରୀତି ସମ୍ପାଦନ ଓ ପ୍ରଶଂସାଦିରେ ଆସକ୍ତ ରହି ଯଥା କାଳରେ ସର୍ପ ମୂଷିକ ଗର୍ତ୍ତ ପ୍ରାପ୍ତ ହେଲାପରି ତୀବ୍ର ବେଗରେ ମୃତ୍ୟୁମୁଖରେ ଉପସ୍ଥିତ ହେଲେ । ୨୬ ।

ହେ ରାଜନ୍ ! ସେହି ସମୟରେ ସେ ଧ୍ୟାନବଳରେ ଦେଖିଲେ, ସେହି ମୃଗଶିଶୁ ସନ୍ତାନପରି ନିକଟରେ ବସି ଶୋକ କରୁଅଛି, ସୁତରାଂ ମୃଗଠାରେ ଆସକ୍ତ ଚିତ୍ତ ହୋଇ ସେ ମୃଗଶାବକ ସହିତ ଆତ୍ମ ଦେହତ୍ୟାଗ ପୂର୍ବକ ମୃଗଶରୀର ପ୍ରାପ୍ତ ହୋଇଥିଲେ । ମାତ୍ର ତାହାଙ୍କର ପୂର୍ବଜନ୍ମ ସ୍ମୃତି ନଷ୍ଟ ହେଲା ନାହିଁ । ୨୭ ।

ସେହି ମୃଗଶରୀର ଲାଭକରି ମଧ୍ୟ ପୂର୍ବ ଜନ୍ମରେ ଭଗବଦ୍ ଆରାଧନା ପ୍ରଭାବହେତୁ ସେ ମୃଗଶରୀର ଲାଭର କାରଣ ସ୍ମରଣକରି ଅନୁତପ୍ତ ଭାବରେ କହିଥିଲେ । ୨୮ ।

---

ଏମନ୍ତେ ଶୁଣ ମହୀପାଳ
କ୍ଷଣେ ନ ଦେଖି ମୃଗବାଳ
ବ୍ୟର୍ଥ କର୍ମରେ ସେ କାତର
ସ୍ୱକର୍ମ ତେଜି ନୃପବର
ପୂର୍ବର ଧ୍ୟାନକର୍ମ ତାର
ଶୁଭ କର୍ମକୁ କଲା ଦୂର
ଅଖିଳ ବ୍ରହ୍ମାଣ୍ଡ କାରଣ
ଅନାଦି ନାଥ ନାରାୟଣ
ତାର ଚରଣ ଦୂର କରି
ମୃଗବାଳକ ମନେ ଧରି
ମୋକ୍ଷ ପଦକୁ ପ୍ରତିବନ୍ଧ
ସେ ମୃଗବାଳ ପଶୁ ମନ
ତହିଁ ଅତ୍ୟନ୍ତ ଭାବ କଲା
ଯୋଗନାଶନ ନ ଜାଣିଲା
ମୃଗର ଲାଳନ ପୋଷଣ
ଏଣେ ହରଇ ସେହୁ ଦିନ
ଏମନ୍ତେ କେତେ ଦିନ ଗଲା
ଆୟୁଷ ଶେଷ ତା ହୋଇଲା ।୨୬।
ଏମନ୍ତେ ଶୁଣ ହେ ରାଜନ
କାଳର ହେଲା ସେ ଅଧୀନ
ସମୀପେ ଦେଖି ମୃଗବାଳ
ଶୋକରେ ହୋଇଲା ବ୍ୟାକୁଳ
ପୁତ୍ରର ପ୍ରାୟ ସ୍ନେହଭରେ
ମନ କଲିଲା ତାରଠାରେ
ତକ୍ଷଣେ ପ୍ରାଣକୁ ଛାଡ଼ିଲା
ମୃଗଶରୀରକୁ ଲଭିଲା । ୨୭ ।
ପୂର୍ବ ଜନ୍ମର କଥା ତାର
ସ୍ମରଣ ହେଲା ନୃପବର
ମୃଗ ଜନ୍ମର ଯେ କାରଣ
ମନେ ଜାଣିଲା ସେ ରାଜନ
ପ୍ରଭୁର ସେବା ଭ୍ରଷ୍ଟ ହୋଇ
ମନେ ବହୁତ ତାପ ପାଇ
ଅତ୍ୟନ୍ତ ଶୋକ କରି ମନେ
ବୋଲଇ ଲୋତକ ନୟନେ ।୨୮ ।

ଅହୋ କଷ୍ଟଂ ଭ୍ରଷ୍ଟୋଽହମାତ୍ମବତାମନୁପଥାଦ୍ୟଦ୍‌ବିମୁକ୍ତସମସ୍ତସଙ୍ଗସ୍ୟ ବିବିକ୍ତ-
ପୁଣ୍ୟାରଣ୍ୟଶରଣସ୍ୟାତ୍ମବତ ଆତ୍ମନି ସର୍ବେଷାମାତ୍ମନାଂ ଭଗବତି ବାସୁଦେବେ ତଦନୁ
ଶ୍ରବଣମନନସଂକୀର୍ତ୍ତନାରାଧନାନୁସ୍ମରଣାଭିଯୋଗେନାଶୂନ୍ୟସକଲଯାମେନ କାଲେନ
ସମାବେଶିତଂ ସମାହିତଂ କାର୍ତ୍ସ୍ନ୍ୟେନ ମନସ୍ତତ୍ତୁ ପୁନର୍ମମାବୁଧସ୍ୟାରାନ୍ମୃଗସୁତମନୁ
ପରିସୁସ୍ରାବ ।୨୯।

ଇତ୍ୟେବଂ ନିଗୂଢ଼ନିର୍ବେଦୋ ବିସୃଜ୍ୟ ମୃଗୀଂ ମାତରଂ ପୁନର୍ଭଗବତ୍‌କ୍ଷେତ୍ରମୁପଶମ-
ଶୀଲମୁନିଗଣଦୟିତଂ ଶାଲଗ୍ରାମଂ ପୁଲସ୍ତ୍ୟପୁଲହାଶ୍ରମଂ କାଲଞ୍ଜରାତ୍‌ପ୍ରତ୍ୟାଜଗାମ ।୩୦।

ତସ୍ମିନ୍ନପି କାଲଂ ପ୍ରତୀକ୍ଷମାଣଃ ସଙ୍ଗାଚ୍ଚ ଭୃଶମୁଦ୍‌ବିଗ୍ନ ଆତ୍ମସହଚରଃ ଶୁଷ୍କପର୍ଣ୍ଣ-
ତୃଣବୀରୁଧା ବର୍ତ୍ତମାନୋ ମୃଗତ୍ୱନିମିତ୍ତାବସାନମେବ ଗଣୟନ୍ମୃଗଶରୀରଂ ତୀର୍ଥୋଦକ-
କ୍ଲିନ୍ନମୁତ୍ସସର୍ଜ । ୩୧ ।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ
ଭରତଚରିତେ ନାମ ଅଷ୍ଟମୋଽଧ୍ୟାୟଃ । ୮ ।

---

ଆହା ! କି କଷ୍ଟର ବିଷୟ ମୁଁ ସଂଯତଚିତ୍ତ ବ୍ୟକ୍ତିମାନଙ୍କର ଆଶ୍ରିତପଥରୁ ଭ୍ରଷ୍ଟ ହୋଇଅଛି । କାରଣ ମୁଁ ପୂର୍ବେ ସଂସାରର ସମସ୍ତ ଆସକ୍ତି ପରିତ୍ୟାଗକରି ନିର୍ଜନ ପବିତ୍ରକାନନ ଆଶ୍ରୟ କରି ସର୍ବଜୀବର ଆତ୍ମା ସ୍ୱରୂପ ଭଗବାନ୍ ବାସୁଦେବଙ୍କଠାରେ ଚିତ୍ତ ସମର୍ପଣ କରିଥିଲି ।ଅର୍ଥାତ୍ ତାଙ୍କ ବିଷୟ ଶ୍ରବଣ, ମନନ କୀର୍ତ୍ତନ, ଉପାସନା ଓ ସ୍ମରଣକରି ନିରନ୍ତର ଯେଉଁ ଚିତ୍ତକୁ ଭଗବାନଙ୍କଠାରେ ସର୍ବଦା ସମାହିତ କରିଥିଲି ଅଜ୍ଞତା ବଶତଃ ସେହି ଚିତ୍ତକୁ ହରିଣଶିଶୁଠାରେ ସମର୍ପଣ କଲି । ୨୯ ।

ଏହିପରି ଗୁପ୍ତରୂପେ ନିଜର ଅନ୍ତଃକରଣରେ ନିର୍ବେଦପ୍ରାପ୍ତ ହୋଇ ସ୍ୱୀୟ ଜନନୀ ହରିଣୀକୁ ପରିତ୍ୟାଗ ପୂର୍ବକ ମୃଗରୂପୀ ରାଜର୍ଷି ଭରତ ପୁନର୍ବାର ଭଗବାନ୍‌ଙ୍କ କ୍ଷେତ୍ର ଶାନ୍ତସ୍ୱଭାବ ମୁନିମାନଙ୍କର ଅତିପ୍ରିୟ ଶାଳଗ୍ରାମଶିଳାଦ୍ୱାରା ପବିତ୍ରୀକୃତ ପୁଲସ୍ତ୍ୟାଶ୍ରମକୁ କାଳଞ୍ଜୟ ପର୍ବତରୁ ପ୍ରତ୍ୟାଗମନ କରିଥିଲେ, ଅର୍ଥାତ୍ ସେହି ସ୍ଥାନରେ ମୃଗରୂପେ ଜନ୍ମ ଲାଭ କରିଥିଲେ । ୩୦ ।

ସେହି ସ୍ଥାନରେ ରହି ମଧ୍ୟ ସେ କାଳର ପ୍ରତୀକ୍ଷା କରି ବିଷୟାସକ୍ତିରେ ଅତ୍ୟନ୍ତ ଭୀତ ହୋଇ ଏକାକୀ ଶୁଷ୍କପତ୍ର, ତୃଣ ଓ ଲତାଦିଦ୍ୱାରା ଜୀବିକାଅର୍ଜ୍ଜନ କରି ମୃଗଦେହର ହେତୁଭୂତ ଦୁରଦୃଷ୍ଟର ଅବସାନ କାମନା କରି ତୀର୍ଥୋଦକରେ ଶରୀର ଅର୍ଦ୍ଧମଗ୍ନ କରି ସେହି ମୃଗଦେହ ପରିତ୍ୟାଗ କରିଥିଲେ । ୩୧ ।

---

ଭ୍ରଷ୍ଟ ହୋଇଲି ମୁଁ ପାମର
ପ୍ରଭୁର ସେବା କଲି ଦୂର
ସମସ୍ତ ତପକୁ ଛାଡ଼ିଣ
ବିବିଧ ଯଜ୍ଞ ଶୁଭ କର୍ମ
ନାମ ଶ୍ରବଣ ଉଚ୍ଚାରଣ
ନିରତେ କରି ଆରାଧନ
ସକଳ ଆତ୍ମା ଭଗବାନ
ମନ ଅର୍ପିଲି ଅନୁଦିନ

ଯେଣୁ ସେ ସକଳ ଛାଡ଼ିଲି
ମୃଗ ବାଳକେ ମନ ଦେଲି
ତେଣୁ ଏ ଜୀବନ ମୋହର
ପାଇଲି ମୃଗର ଶରୀର
ଏମନ୍ତ ନିଶ୍ଚୟ ବିଚାରି
ଚଳିଲେ ଚିତ୍ତ ସ୍ଥିର କରି
ଆପଣା ମାତା ଯେ ହରିଣୀ
ତାହାକୁ ତେଜି ନୃପମଣି

ପ୍ରଭୁର ଅତିପ୍ରିୟ ସ୍ଥାନ
ଯେ ତୀର୍ଥ ଶାଳଗ୍ରାମ ନାମ
ପରମ ସାଧୁ ମୁନିଗଣେ
ଅଛନ୍ତି ତହିଁ ଅନୁକ୍ଷଣେ
ତହିଁକୁ ଶୀଘ୍ର ଚଳିଯାଇ
ରହିଲ ମୃଗୁବାଟ ଗ୍ରହି ।୨୯-୩୦।
କୁ ସଙ୍ଗ ଦୋଷକୁ ସେ ଡରି
ମନେ ଚିନ୍ତଇ ନରହରି

ନୀରସ ବନକୁ ଭ୍ରମଇ
ମୃଗ ଶରୀର ଯିବାପାଇଁ
ଏମନ୍ତେ କରଇ ବସ୍ତର
କେବେ ତେଜିବ କଳେବର
ଏମନ୍ତେ ଶୁଣ ହେ ରାଜନ
କେତେଦିନେ ଗଲା ଚହିଁ ବନ

ସେ ତୀର୍ଥଜଳରେ ତାହାର
ତେଜିଲା ମୃଗ କଳେବର ।୮୧।
ସେ ପ୍ରଭୁ ବ୍ରହ୍ମାଣ୍ଡକାରଣ
ବ୍ରହ୍ମା ଚିନ୍ତଇ ଯା ଚରଣ
ସେ ଚକ୍ରଧର ନାରାୟଣ
ପଦପଲ୍ଲବ ସୁମରଣ

କହଇ ଦାସ ଜଗନ୍ନାଥ
ସାଧୁଙ୍କ ହିତେ ଭାଗବତ
ପଞ୍ଚମସ୍କନ୍ଧେ ହରିବାଣୀ
ଶୁଣି ସଂସାରୁ ତର ପ୍ରାଣୀ



**ଭାବାର୍ଥ :—**

ରାଜର୍ଷି ଭରତ ଗଣ୍ଡକୀନଦୀ ତୀରବର୍ତ୍ତୀ ଆଶ୍ରମରେ ଅବସ୍ଥାନ କରୁଥିଲାବେଳେ ହରିଣୀର ଦୁରବସ୍ଥା ଦର୍ଶନ କରିଥିଲେ, ସିଂହ ଗର୍ଜନ ଶୁଣି ସେ ଭୀତା, ସେ ଗର୍ଭବତୀ, ଗଣ୍ଡକୀନଦୀରେ ତୃଷା ନିବାରଣ କରିବା ପୂର୍ବରୁ ତାହାର ବିପଦ ଉପସ୍ଥିତ ହେଲା । ସେ ନଦୀମଧ୍ୟକୁ ଡେଇଁ ପଡ଼ୁ ପଡ଼ୁ ତାହାର ଗର୍ଭସ୍ରାବ ହେଲା, ତାହାର ଗର୍ଭରୁ ଯେଉଁ ଶିଶୁଟି ପଡ଼ିଗଲା, ଭରତ ତାହାକୁ ପାଇ ଲାଳନପାଳନ କଲେ । ସେ ନିଜର ସନ୍ତାନ ମାନଙ୍କର ମାୟା ତ୍ୟାଗକରି ନିର୍ଜନବନରେ ବାସ କରୁଥିଲେ ମଧ୍ୟ, ବିଧାତାର ଇଚ୍ଛାରେ ହରିଣଶିଶୁର ସ୍ନେହାନୁବନ୍ଧନରେ ଏପରି ଜଡ଼ିତ ହୋଇ ପଡ଼ିଲେ ଯେ ସେ ଭଗବତ୍ ପରିଚର୍ଯ୍ୟାରୁ କ୍ରମେ ବିଚ୍ୟୁତହୋଇ ହରିଣ ଶିଶୁର ପରିଚର୍ଯ୍ୟାରେ ବ୍ୟାପୃତ ରହିଲେ । ଦିନେ ହରିଣଶିଶୁଟି ହଜିଯିବାରୁ ତାହାର ବିରହ ଶୋକରେ ଏପରି ଅଧୀର ହୋଇ ପଡ଼ିଲେ ଯେ ତାହାଙ୍କର ଅବଶେଷରେ ମୃତ୍ୟୁ ଘଟିଲା । ମୃତ୍ୟୁବେଳେ ସେହି ହରିଣଶିଶୁଠାରେ ତାଙ୍କର ହୃଦୟ ମଜ୍ଜିଥିବାରୁ ସେ ହରିଣ ଜନ୍ମହେଲେ, ମାତ୍ର ଭଗବତ୍ ପ୍ରସାଦରୁ ତାଙ୍କର ପୂର୍ବସ୍ମୃତି ବିନଷ୍ଟ ହୋଇ ନ ଥିଲା । ସେ ନିଜର ଭ୍ରାନ୍ତିଲାଗି ପରେ ଅନୁତପ୍ତ ହୋଇଥିଲେ ।

ବିଧିର ବିଧାନ ବିଚିତ୍ର । ତାହା ବୁଝିବା କ୍ଷୁଦ୍ର ମାନବପକ୍ଷରେ ସମ୍ଭବ ନୁହେଁ । ସେ ଯୋଗୀ ହୋଇଥିଲେ ମଧ୍ୟ ଭଗବତ୍ ଇଚ୍ଛାରେ ସେ ଏହି ଅବସ୍ଥା ଲାଭ କରିଥିଲେ । ଏ ପ୍ରସଙ୍ଗରୁ ଶିକ୍ଷା ମିଳେ ମାନବ ସଂସାରର ଯେ କୌଣସି ବିଷୟ ପ୍ରତି ଅତ୍ୟାସକ୍ତ ହେଲେ ସେ ଭଗବତ୍‌ପ୍ରାପ୍ତି ମାର୍ଗରୁ ସ୍ଖଳିତ ହୁଏ । ସୁତରାଂ ଅନାସକ୍ତି ଭାବ ପ୍ରୟୋଜନ ।

ମରଣକାଳରେ ଭରତ ହରିଣଶିଶୁ ପ୍ରତି ଆସକ୍ତି ହେତୁରୁ ହରିଣଜନ୍ମ ଲାଭ କରିଥିଲେ। ଶ୍ରୀମଦ୍ ଭଗବଦ୍ ଗୀତାରେ ମଧ୍ୟ ଏହି ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ସୁତରାଂ ଅନ୍ତକାଳରେ ଭଗବାନଙ୍କୁ ପାଇବାକୁ ହେଲେ ସେହି ଚରଣାରବିନ୍ଦରେ ମନନିବେଶ କରିବା ଉଚିତ । ଗୀତାରେ କଥିତ ଅଛି—

"ଅନ୍ତକାଳେ ଚ ମାମେବ ସ୍ମରନ୍ମୁକ୍ତ୍ୱା କଳେବରଂ
ଯଃ ପ୍ରୟାତି ସମଦ୍‌ଭାବମ୍ ଯାତି ନାସ୍ତ୍ୟତ୍ର ସଂଶୟ୍ଃ ।
ଯଂ ଯଂ ବାପି ସ୍ମରନ୍‌ଭାବଂ ତ୍ୟଜତ୍ୟନ୍ତେ କଳେବରମ୍
ତମ୍ ତମେବୈତି କୌନ୍ତେୟ ସଦା ତଦ୍‌ଭାବଭାବିତଃ" ॥

ଅର୍ଥାତ୍ ମରଣ ସମୟରେ ଯେ ମୋତେ ସ୍ମରଣ କରୁ କରୁ ଶରୀର ତ୍ୟାଗକରେ ସେ ମୋର ସ୍ୱରୂପ ପ୍ରାପ୍ତ ହୁଏ, ଏଥିରେ ସନ୍ଦେହ ନାହିଁ । ହେ କୌନ୍ତେୟ ସର୍ବଦା ଚିନ୍ତା କରୁଥିବାରୁ ମରଣ ସମୟରେ ଯେ ଯେଉଁଭାବ ସ୍ମରଣକରି ଦେହ ତ୍ୟାଗ କରେ, ସେ ସେହି ଭାବ ପ୍ରାପ୍ତ ହୁଏ ।

ଗଲ୍ପ ଅଛି ଯେ କୁମ୍ଭକାର କୀଟ ମରଣ ପୂର୍ବରୁ ଭ୍ରମର ବା ପ୍ରଜାପତି ରୂପ ଧ୍ୟାନକରି ସେହି ରୂପକୁ ପାଇଥାଏ । ବିଦଗ୍‌ଧଚିନ୍ତାମଣିରେ ଅଭିମନ୍ୟୁ ସାମନ୍ତସିଂହାର ରାଧାଙ୍କର ବିରହାବସ୍ଥା ଓ ଶ୍ରୀକୃଷ୍ଣପ୍ରାପ୍ତି ଆକାଂକ୍ଷା ବର୍ଣ୍ଣନା କରି ଲେଖି ଅଛନ୍ତି—

"ଏତେ କଦର୍ଥନା ପାଇ କାହିଁକି   ଶଶ ଶଶି ପ୍ରାପ୍ତି ହେବୁ ନାହିଁକି ।
କୁମ୍ଭକାର କୀଟ ସାକ୍ଷୀ ଭୁବହି   କୃଷ୍ଣ ଦେହ ପାଇ କରତେ ରହି
କୃଷ୍ଣ ନାମ ଧରି, ଯା ଯା ଅନକୂଳ କରି ବାହାରି"

ଅର୍ଥାତ୍ ଶଶ ଯେପରି ଚନ୍ଦ୍ରଙ୍କୁ ପାଇବାଲାଗି ଆଶାକରି ଚନ୍ଦ୍ରଙ୍କଦେହରେ ଶଶଲାଞ୍ଛନ ହୋଇ ରହିଲା, କୁମ୍ଭକାର କୀଟ ଯେପରି ପ୍ରଜାପତିରୂପ ଦେଖି ମୃତ୍ୟୁ ଉତ୍ତାରୁ ସେହିରୂପ ପ୍ରାପ୍ତ ହୁଏ, ରାଧା କହୁଅଛନ୍ତି ରେ ଜୀବ ! ତୁ କୃଷ୍ଣଙ୍କର ନାମଧରି ଅନୁକୂଳକରି ବାହାରି ଯା, ତାହା ହେଲେ ତୋର କୃଷ୍ଣପ୍ରାପ୍ତି ହେବ, ଆଉ କୃଷ୍ଣ ବିରହକଷ୍ଟ ତୋର ରହିବ ନାହିଁ ।

---

## ନ ବ ମ  ଅ ଧ୍ୟା ୟ ।

**ନବମେ ଜଡ଼ବତ୍ପ୍ରବୃତ୍ତେ ସ୍ତସ୍ୟ ବିଗାଦ୍ୟଶ୍ରବତଃ ।**
**ଭଦ୍ରକାଳୀ ପଶୁତ୍ୱେଽପି ନିର୍ବିକାରତ୍ୱମୀର୍ଯ୍ୟତେ । ୦ । ( ଶ୍ରୀଧରସ୍ୱାମୀ )**

**ଶ୍ରୀଶୁକ ଉବାଚ ।**

**ଅଥ କସ୍ୟଚିଦ୍ଦ୍ୱିଜବରସ୍ୟାଙ୍ଗିରସପ୍ରବରସ୍ୟ ଶମଦମତପଃସ୍ୱାଧ୍ୟାୟାଧ୍ୟୟନତ୍ୟାଗସନ୍ତୋଷତିତିକ୍ଷାପ୍ରଶ୍ରୟବିଦ୍ୟାନସୂୟାତ୍ମଜ୍ଞାନାନନ୍ଦଯୁକ୍ତସ୍ୟାତ୍ମସଦୃଶଶ୍ରୁତଶୀଲାଚାରରୂପୌଦାର୍ଯ୍ୟଗୁଣା ନବ ସୋଦର୍ଯ୍ୟା ଅଙ୍ଗଜା ବଭୂବୁଃ. ମିଥୁନଞ୍ଚ ଯବୀୟସ୍ୟାଂ ଭାର୍ଯ୍ୟାୟାମ୍ ।୧।**

---

### ଜଡ଼ଭରତ ଉପାଖ୍ୟାନ ।

ନବମ ଅଧ୍ୟାୟରେ ଭରତ ଜଡ଼ ବ୍ରାହ୍ମଣରୂପରେ ଜନ୍ମହୋଇ ଶେଷରେ ଭଦ୍ରକାଳୀଙ୍କ ନିକଟକୁ ରାଜାଙ୍କର ଭୃତ୍ୟମାନଙ୍କ କର୍ତ୍ତୃକ ନୀତ ହୋଇଥିଲେ । ୦ ।

ଶ୍ରୀଶୁକଦେବ କହିଲେ :—

"ହେ ରାଜନ୍ ! ଏଥି ଉତ୍ତାରୁ କଅଣ ହେଲା ଶ୍ରବଣ କରନ୍ତୁ । ଆଙ୍ଗିରସ ପ୍ରବର ଜାତ ବ୍ରାହ୍ମଣମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଶମ, ଦମ, ତପ, ବେଦାଧ୍ୟୟନ, ଦାନ, ସନ୍ତୋଷ, ସହିଷ୍ଣୁତା, ବିଦ୍ୟା ବିନୟ, ଅନସୂୟା ଆତ୍ମଜ୍ଞାନ, ଆନନ୍ଦମନା ଏକ ବ୍ରାହ୍ମଣଥିଲେ, ଆତ୍ମତୁଲ୍ୟ ଶୀଳ, ଆଚାର, ରୂପ, ଔଦାର୍ଯ୍ୟ, ଗୁଣସମ୍ପନ୍ନ

---

ନବମେ ସେ ଭରତ ପୁଣି, ଜଡ଼ ବ୍ରାହ୍ମଣରୂପେ ଜନ୍ମି । ଭଦ୍ରକାଳୀଙ୍କଠାରେ ବଳି, ଦେବାକୁ ରାଜାନେଲେଧରି ॥

ଶ୍ରୀ ଶୁକଉବାଚ ।

ଶୁଣ ହେ ରାଜା ପରୀକ୍ଷିତ
ଏ ଅନନ୍ତରେ ସେ ଭରତ

ସନ୍ଧ୍ୟାଦି ତପ ଶମ ଦମ
ତିତିକ୍ଷା ଆଦି ଯେ ନିୟମ

ଜ୍ଞାନଙ୍କ ମଧ୍ୟେ ଶ୍ରେଷ୍ଠବର
ଦ୍ୱିଜ ଅଙ୍ଗିରସପ୍ରବର

ଯସ୍ତୁ ତତ୍ର ପୁମାଂସ୍ତଂ ପରମଭାଗବତଂ ରାଜର୍ଷିପ୍ରବରଂ ଭରତମୁତ୍‌ସୃଷ୍ଟମୃଗଶରୀରଂ ଚରମଶରୀରେଣ ବିପ୍ରତ୍ୱଂ ଗତମାହୁଃ । ୨ ।

ତତ୍ରାପି ସ୍ୱଜନସଂଗାଚ୍ଚ ଭୃଶମୁଦ୍‌ବିଜମାନୋ ଭଗବତଃ କର୍ମବନ୍ଧବିଧ୍ୱଂସନଶ୍ରବଣ-ସ୍ମରଣଗୁଣବିବରଣଚରଣାରବିନ୍ଦଯୁଗଳଂ ମନସା ବିଦଧଦାତ୍ମନଃ ପ୍ରତିଘାତମାଶଙ୍କମାନୋ ଭଗବଦନୁଗ୍ରହେଣାନୁସ୍ମୃତସ୍ୱପୂର୍ବଜନ୍ମାବଳିରାତ୍ମାନମୁନ୍ମତ୍ତଜଡାନ୍ଧବଧିରସ୍ୱରୂପେଣ ଦର୍ଶୟାମାସ ଲୋକସ୍ୟ । ୩ ।

---

ତାଙ୍କର ନଅଗୋଟି ପୁତ୍ର ସ୍ତ୍ରୀଙ୍କଗର୍ଭରୁ ଜାତହେଲେ, ସେହି ବ୍ରାହ୍ମଣର କନିଷ୍ଠାଭାର୍ଯ୍ୟାର ଗର୍ଭରୁ ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ଜାତ ହୋଇଥିଲେ । ସେମାନଙ୍କ ମଧ୍ୟରୁ ପୁରୁଷ ସନ୍ତାନଟି ଭରତଙ୍କର ପୁନର୍ଜନ୍ମର ରୂପ ମୃଗ ଶରୀର ତ୍ୟାଗ କରି ବ୍ରାହ୍ମଣ ଦେହରେ ଜନ୍ମି ଥିଲେ । ୧-୨ ।

ରାଜର୍ଷି ଭରତ ସେହି ବିପ୍ରଦେହ ଲାଭକରି ମଧ୍ୟ ସ୍ୱଜନସଙ୍ଗ ଓ ଅପରସଙ୍ଗରୁ ଆତ୍ମଭ୍ରଂଶଆଶଙ୍କା କରି ଅତିଭୀତ ହୋଇ, ଯେଉଁ ଭଗବାନଙ୍କ ଚରଣାରବିନ୍ଦ ବିଷୟ ଶ୍ରବଣ, ମନନ ଓ ଗୁଣ କୀର୍ତ୍ତନ କର୍ମବନ୍ଧ ବିନାଶ କରେ, ସେହି ଚରଣଦ୍ୱୟ ହୃଦୟରେ ଧ୍ୟାନକରି ଭଗବାନଙ୍କ ଅନୁଗ୍ରହରେ ନିଜର ପୂର୍ବଜନ୍ମ ବୃତ୍ତାନ୍ତ ସ୍ମରଣ କରି ଲୋକଙ୍କ ନିକଟରେ ନିଜକୁ ଉନ୍ମତ୍ତ, ଜଡ଼, ଅନ୍ଧ, ଓ ବଧିରରୂପେ ପ୍ରତିପାଦନ କରିବାକୁ ଲାଗିଲେ ( କାରଣ ଲୋକେ ତାଙ୍କୁ ଉନ୍ମାଦଗ୍ରସ୍ତ ମନେକରି ଯେପରି ବ୍ୟତିବ୍ୟସ୍ତ ନ କରନ୍ତି ) । ୩ ।



ଭରତଙ୍କର ବ୍ରାହ୍ମଣ ଗୃହରେ ଜନ୍ମ ।

---

ତାହାଙ୍କ ପୁତ୍ରରୂପ ହୋଇ
ଜନ୍ମିଲେ ବିପ୍ରଦେହବହି
ଅପରେ ତାର ସହୋଦର
ଉତ୍ତମ ସାଧୁ ଶୀଳସର ।୧,୨ ।
ସେ ସାଧୁସଙ୍ଗରୁ ରାଜନ
ତାହାର ହେଲା ଶୁଦ୍ଧଜ୍ଞାନ
ଯେଣୁ କର୍ମବନ୍ଧ ଖଣ୍ଡନ
ଶ୍ରୀକୃଷ୍ଣ ନାମର ଶ୍ରବଣ
ତାହା କରଇ ଅବିରତେ
ପଦାରବିନ୍ଦ ଧରି ଚିତ୍ତେ
ପ୍ରଭୁଙ୍କ କୃପାରୁ ରାଜନ
ପୂର୍ବ ଜନ୍ମର କଥାମାନ
ସ୍ମରଣ ହୋଇଲା ତାହାର
ଅସାଧୁସଙ୍ଗକୁ ତା ଡର
ଉନ୍ମତ୍ତ ଜଡ଼ ଯେ ବଧିର
ପ୍ରାୟେ ସେ ବ୍ରାହ୍ମଣ-କୁମର
ଅଶେଷ ଜ୍ଞାନେ ଶ୍ରେଷ୍ଠ ହୋଇ
କପଟ ଲୋକରେ ଦେଖାଇ ।୩।

ତସ୍ୟାପି ହ ବା ଆତ୍ମଜସ୍ୟ ବିପ୍ରଃ ପୁତ୍ରସ୍ନେହାନୁବଦ୍ଧମନା ଆସମାବର୍ତ୍ତନାତ୍ ସଂସ୍କାରାନ୍ ଯଥୋପଦେଶଂ ବିଦଧାନ ଉପନୀତସ୍ୟ ଚ ପୁନଃଶୌଚାଚମନାଦୀନ୍କର୍ମନିୟମାନନଭିପ୍ରେତାନପି ସମଶିକ୍ଷୟଦନୁଶିଷ୍ଟେନ ହି ଭାବ୍ୟଂ ପିତୁଃ ପୁତ୍ରେଣେତି । ୪ ।

ସ ଚାପି ତଦୁ ହ ପିତୃସନ୍ନିଧାବେବାସଧ୍ରୀଚୀନମିବ ସ୍ମ କରୋତି, ଛନ୍ଦାଂସ୍ୟଧ୍ୟାପୟିଷ୍ୟନ୍ ସହ ବ୍ୟାହୃତିଭିଃ ସପ୍ରଣବଶିରସ୍ତ୍ରିପଦାଂ ସାବିତ୍ରୀଂ ଗ୍ରୈଷ୍ମବାସନ୍ତିକାନ୍ ମାସାନଧୀୟାନମପ୍ୟସମବେତରୂପଂ ଗ୍ରାହୟାମାସ । ୫ ।

ଏବଂ ସ୍ୱତନୁଜ ଆତ୍ମନ୍ୟନୁରାଗାବେଶିତଚିତ୍ତଃ ଶୌଚାଧ୍ୟୟନବ୍ରତନିୟମଗୁର୍ବନଲଶୁଶ୍ରୂଷଣାଦ୍ୟୌପକୁର୍ବାଣକକର୍ମାଣ୍ୟନଭିୟୁକ୍ତାନ୍ୟପି ସମନୁଶିଷ୍ଟେନ ଭାବ୍ୟମିତ୍ୟ-

---

ପିତାର ପୁତ୍ରକୁ ଉପଦେଶ ଦେବା କର୍ତ୍ତବ୍ୟ ଅଟେ ସେହି ବ୍ରାହ୍ମଣ ପୁତ୍ରସ୍ନେହ ହେତୁ ପୁତ୍ର ଭରତ ଜଡ଼ ହେଲେ ମଧ୍ୟ ତାହାଙ୍କର ସମାବର୍ତ୍ତନ ପର୍ଯ୍ୟନ୍ତ ସଂସ୍କାର ଯଥାବିଧି ସମାପନ କରି ଉପନୟନ କରିଥିଲେ । ପରେ ଶୌଚ, ଆଚମନାଦି କର୍ମ ନିୟମମାନ ଶିକ୍ଷା ଦେଇଥିଲେ । ୪ ।

ପିତାଙ୍କର ଶିକ୍ଷାଦାନରେ ଆଗ୍ରହାତିଶଯ୍ୟ ଦେଖି ତାହାଙ୍କୁ ତହିଁରୁ ନିବୃତ୍ତ କରିବା ଲାଗି ତାହାଙ୍କ ସମ୍ମୁଖରେ ସମସ୍ତ ନିୟମ ଲଙ୍ଘନ କରିଥିଲେ । ବ୍ରାହ୍ମଣ ପୁତ୍ରର ଉପନୟନ ସଂସ୍କାର ହେଉଛି ଶ୍ରାବଣମାସରୁ ବେଦ ଅଧ୍ୟୟନ କରାଇବେ ଏହି ଅଭିପ୍ରାୟରେ ପ୍ରଥମତଃ ବ୍ୟାହୃତି ଓ ପ୍ରଣବ ପୂର୍ବିକା ତ୍ରିପଦା "ଭୂ ର୍ଭୁବ ସ୍ୱଃ" ଶିକ୍ଷାଦେବାକୁ ଆରମ୍ଭ କଲେ । ମାତ୍ର ପୁତ୍ର ଚୈତ୍ରାଦି ଚାରିମାସ ଅଧ୍ୟୟନକରି ସୁଦ୍ଧା ତାହା ସମ୍ପୂର୍ଣ୍ଣ ଗ୍ରହଣ କରି ପାରିଲେ ନାହିଁ । ଗାୟତ୍ରୀର ଗୋଟିଏ ଗୋଟିଏ ବର୍ଣ୍ଣ ଶିଖିଲେ ମଧ୍ୟ କେଉଁ ଅକ୍ଷରପରେ କେଉଁଟି ଉଚ୍ଚାରଣ କରିବେ ଓ କେଉଁ ସ୍ୱରରେ ବୋଲିବେ ତାହା ଶିଖି ପାରିଲେ ନାହିଁ । ୫ ।

ବ୍ରାହ୍ମଣ ଏହିପରି ନିଜର ପ୍ରାଣସ୍ୱରୂପ ପୁତ୍ରପ୍ରତି ଅନୁରାଗଚିତ୍ତ ହୋଇ ତାଙ୍କର ଅନିଚ୍ଛାସତ୍ତ୍ୱେ ପୁତ୍ରକୁ ଶିକ୍ଷାଦେବା କର୍ତ୍ତବ୍ୟ ଏହିଭାବର ବଶବର୍ତ୍ତୀ ହୋଇ ଶୌଚ, ଅଧ୍ୟୟନ; ବ୍ରତ; ନିୟମ, ଗୁରୁଶୁଶ୍ରୂଷା ହୋମ ପ୍ରଭୃତି ବ୍ରହ୍ମଚର୍ଯ୍ୟର ସମସ୍ତ କର୍ତ୍ତବ୍ୟ ଉପଦେଶ ଦେଲେ, କିନ୍ତୁ ତାଙ୍କର ମନୋରଥ ପୂର୍ଣ୍ଣ ହେଲା ନାହିଁ ।

---

ତେବେହେଁ ପୁତ୍ରଠାରେ ତାର
ସ୍ନେହ ହେବାରୁ ନୃପବର
ବେଦ ଉଚିତ କର୍ମ ଯେତେ
ଦଶ କର୍ମରେ ଯଉଥାଇତେ
ସେ ସାଧୁଶୀଳ ବିପ୍ରବର
ସଂସ୍କାର କଲେକ କୁମର । ୪ ।
କହିବା ଶୁଣ ନୃପବର
ସେ ଅଟେ ବ୍ରାହ୍ମଣ କୁମର

ଶଉଚ ଆଚମନ ବିଧି
ବ୍ରାହ୍ମଣକର୍ମ ଯେ ପ୍ରସିଦ୍ଧି
ଗୁରୁ ଉପଦେଶ ବଚନେ
ଜାଣିଲ ସେଯେ ଅନୁମାନେ
ପୁତ୍ରର ଶୁଦ୍ଧ ମନ ଜାଣି
ସେ ଯେ ବ୍ରାହ୍ମଣ ଶିରୋମଣି
ଅତ୍ୟନ୍ତ ସ୍ନେହଭରେ ହୋଇ
ମନ ଅର୍ପିଲ ତାରଠହିଁ

ଓଁକାର ଆଦି ବେଦସାର
ବ୍ୟାହୃତି ପ୍ରଣବ ଅକ୍ଷର
ସାବିତ୍ରୀ ମୂଳମନ୍ତ୍ର ସାର
ସକଳ ଦେଲେ ବିପ୍ରବର । ୫ ।
ଯଜନ ଆଦି ଷଟ୍‌କର୍ମ ।
ଏ ଯେ ବ୍ରାହ୍ମଣ ନିତ୍ୟଧର୍ମ
ପୁରୁଷସୂକ୍ତ ଆଦି ଯେତେ
ସର୍ବ କହିଲେ ଯଥୋଚିତେ

ସଦାଗ୍ରହଃ ପୁତ୍ରମନୁଶାସ୍ୟ ସ୍ୱୟଂ ତାବଦନଧିଗତମନୋରଥଃ କାଳେନାପ୍ରମତ୍ତେନ ସ୍ୱୟଂଗ୍ରହ ଏବ ପ୍ରମତ୍ତ ଉପସଂହୃତଃ । ୬ ।

ଅଥ ଯବୀୟସୀ ଦ୍ୱିଜସତୀ ସ୍ୱଗର୍ଭଜାତଂ ମିଥୁନଂ ସପତ୍ନ୍ୟାମୁପନ୍ୟସ୍ୟ ସ୍ୱୟମନୁସଂସ୍ଥୟା ପତିଲୋକମଗାତ୍ । ୭ ।

ପିତର୍ୟୁପରତେ ଭ୍ରାତର ଏନମତତ୍ପ୍ରଭାବବିଦସ୍ତ୍ରୟ୍ୟାଂ ବିଦ୍ୟାୟାମେବ ପର୍ଯ୍ୟବସିତମତୟୋ ନ ପରବିଦ୍ୟାୟାଂ ଜଡ଼ମତିରିତି ଭ୍ରାତୁରନୁଶାସନନିର୍ବନ୍ଧାନ୍ନ୍ୟବୃତ୍ସନ୍ ।୮।

ସ ଚ ପ୍ରାକୃତୈର୍ଦ୍ୱିପଦପଶୁଭିରୁନ୍ମତ୍ତଜଡବଧିରମୂକେତ୍ୟଭିଭାଷ୍ୟମାଣୋ ଯଦା ତଦନୁରୂପାଣି ପ୍ରଭାଷତେ କର୍ମାଣି ଚ ସ କାର୍ଯ୍ୟମାଣଃ ପରେଚ୍ଛୟା କରୋତି ବିଷ୍ଟିତୋ ବେତନତୋ ବା ଯାଚ୍ଞୟା ଯଦୃଚ୍ଛୟା ବୋପସାଦିତମଳ୍ପଂ ବହୁ ମୃଷ୍ଟଂ କଦନ୍ନଂ ବାଭ୍ୟ-

---

ଏହି କାର୍ଯ୍ୟରେ ରତ ଥିବାରୁ ତାଙ୍କର କାଳପ୍ରତି ଦୃଷ୍ଟି ନ ଥିଲା, କାଳ ଯଥା ଗତିରେ ତାଙ୍କର ସମ୍ମୁଖୀନ ହୋଇ କବଳିତ କଲା । ୬ ।

ତହୁଁ ଉତ୍ତାରୁ କନିଷ୍ଠାପତ୍ନୀ ( ଭରତଙ୍କ ନିଜ ମା ) ପୁତ୍ର ଓ କନ୍ୟାଙ୍କୁ ସପତ୍ନୀ ହସ୍ତରେ ଅର୍ପଣକରି ପତିଙ୍କ ଅନୁଗାମିନୀ ହୋଇ ପତିଲୋକକୁ ଗମନ କଲେ । ୭ ।

ପିତା ପରଲୋକ ଗମନ କରନ୍ତେ ଭରତଙ୍କର ଭାଇମାନେ ତାଙ୍କୁ ଜଡ଼ବୁଦ୍ଧି ବୋଲି ଜାଣିକରି ତାଙ୍କୁ ଶିକ୍ଷାଦାନ କରିବାର ଇଚ୍ଛା ପରିତ୍ୟାଗ କଲେ, କାରଣ ସେମାନେ ବୈଦିକ କ୍ରିୟା କାଣ୍ଡରେ ପାରଙ୍ଗମଥିଲେ; ଆତ୍ମବିଦ୍ୟା ପାରଦର୍ଶୀ ନ ଥିବାରୁ ଭରତଙ୍କର ପ୍ରଭାବ ଅବଗତ ନ ଥିଲେ । ୮ ।

ଇତର ଲୋକମାନେ ତାହାଙ୍କୁ ପଶୁପ୍ରାୟ ଜଡ଼, ଉନ୍ମତ୍ତ, ମୂକବୋଲି କହନ୍ତେ ସେ ନାନାପ୍ରକାର ଶବ୍ଦ କରୁଥିଲେ ଏବଂ ସେମାନେ ତାଙ୍କୁ କାର୍ଯ୍ୟ କରିବାକୁ କହିଲେ ସେ କରନ୍ତି, କାର୍ଯ୍ୟ କରାଇ ବେଳେ ବେଳେ ସେମାନେ ତାଙ୍କୁ ଆହାର ଦିଅନ୍ତି । ବେଳେ ବେଳେ କାର୍ଯ୍ୟରେ ସେ କିଛି କିଛି ପାରିଶ୍ରମିକ ପାଉଥିଲେ । ବେଳେ ବେଳେ ମାଗି ଖାଉଥିଲେ, ବେଳେ ବେଳେ ଖାଇବା ପଦାର୍ଥ ବଳେ ବଳେ ଆସି ପହଞ୍ଚେ । ସେହି କୁତ୍ସିତ ଅନ୍ନ ସେ ଭୋଜନ କରୁଥିଲେ । ଇନ୍ଦ୍ରିୟ ପ୍ରୀତି ଲାଗି ସେ ଭୋଜନ କରୁ ନ

---

ପୁତ୍ର ସ୍ନେହରେ ବିପ୍ରବର
ଶିକ୍ଷା କରାନ୍ତି ନିରନ୍ତର
ଏମନ୍ତେ ଶୁଣ ନରନାଥ
ସମ୍ପୂର୍ଣ୍ଣ ନୋହୁ ମନୋରଥ
ଆୟୁଷଅନ୍ତେ ସେ ବ୍ରାହ୍ମଣ
କାଳର ହୋଇଲେ ଅଧୀନ ।୬।
ଏ ଅନନ୍ତରେ ଦ୍ୱିଜସତୀ
ଦେଖି ଆତ୍ମଜ ଜଡ଼ମତି

ଆପଣା ଜ୍ୟେଷ୍ଠ ସପତ୍ନୀରେ
ସମର୍ପି ଦେଲା ସ୍ନେହଭରେ
ଆପଣେ ପତିର ସଙ୍ଗତେ
ଚଳିଲା ହରଷିତ ଚିତ୍ତେ ।୭।
ଏମନ୍ତେ ପିତାର ଅନ୍ତରେ
ସେ ଯେ ବ୍ରାହ୍ମଣର କୁମରେ
ଜଡ଼ ଯେ ତାହାଙ୍କ ଭ୍ରାତର
ତାହାଙ୍କୁ କଲେ ଅନାଦର

ତାହାର ପ୍ରଭାବ ନ ଜାଣି
ଜଡ଼ର ପ୍ରାୟ ତାକୁ ମଣି
ଜଡ଼ ବଧିର ଯେ ଉନ୍ମତ୍ତ
ଏମନ୍ତ ରୂପ ସେ ଭରତ
ଦ୍ୱିପଦ ନରପଶୁମତେ
ଏହାଙ୍କୁ ଦେଖନ୍ତି ଏମନ୍ତେ
ସେ ପରାଧୀନ ପ୍ରାୟ ହୋଇ ।
ଲୋକରେ କର୍ମକୁ କରଇ

ବହରତି ପରଂ ନେନ୍ଦ୍ରିୟପ୍ରୀତିନିମିତ୍ତଂ ନିତ୍ୟନିବୃତ୍ତିନିମିତ୍ତସ୍ୱସିଦ୍ଧବିଶୁଦ୍ଧାନୁଭବାନନ୍ଦ-ସ୍ୱାତ୍ମଲାଭାଧିଗମଃ ସୁଖଦୁଃଖୟୋର୍ଦ୍ୱନ୍ଦ୍ୱନିମିତ୍ତୟୋରସମ୍ଭାବିତଦେହାଭିମାନଃ । ୯ ।

ଶୀତୋଷ୍ଣବାତବର୍ଷେଷୁ ବୃଷ ଇବାନାବୃତାଙ୍ଗଃ ପୀନଃ ସଂହନନାଙ୍ଗଃ ସ୍ଥଣ୍ଡିଲସଂ-ବେଶନାମର୍ଦ୍ଦନାମଜ୍ଜନରଜସା ମହାମଣିରିବାନଭିବ୍ୟକ୍ତବ୍ରହ୍ମବର୍ଚ୍ଚସଃ କୁପଟାବୃତକଟି-ରୁପବୀତେନୋରୁମଷିଣା ଦ୍ୱିଜାତିରିତି ବ୍ରହ୍ମବନ୍ଧୁରିତି ସଂଜ୍ଞୟାତଜ୍ଜ୍ଞଜନାବମତୋ ବିଚଚାର । ୧୦ ।

ଯଦା ତୁ ପରତ ଆହାରଂ କର୍ମବେତନତ ଈହମାନଃ ସ୍ୱଭ୍ରାତୃଭିରପି କେଦାରକର୍ମଣି ନିରୂପିତସ୍ତଦପି କରୋତି କିନ୍ତୁ ସମଂ ବିଷମଂ ନ୍ୟୂନମଧିକମିତି ନ ବେଦ କଣପିଣ୍ୟାକଫଲୀ-କରଣକୁଲ୍ମାଷସ୍ଥାଲୀପୁରୀଷାଦୀନ୍ୟପ୍ୟମୃତବଦଭ୍ୟବହରତି । ୧୧ ।

---

ଥିଲେ, କାରଣ ସ୍ୱୟଂ ସିଦ୍ଧ ବିଶୁଦ୍ଧ ଆନନ୍ଦମୟ ବ୍ରହ୍ମାନନ୍ଦ ଲାଭକରି ସେ ପରିତୃପ୍ତ ଥିଲେ । ଦ୍ୱନ୍ଦ୍ୱମୂଳକ ଦେହାଭିମାନ ତାଙ୍କର ଏକାବେଳକେ ନ ଥିଲା । ୯ ।

ତାଙ୍କର ଅଙ୍ଗ ପୁଷ୍ଟ ଓ ଅବୟବମାନ କଠିନ ଥିଲା, ତେଣୁ ସେ ଶୀତ, ଉଷ୍ଣ, ବାୟୁ ଓ ବୃଷ୍ଟିରେ ବୃଷଭ ତୁଲ୍ୟ ଅନାବୃତ ଦେହରେ ବିଚରଣ କରୁଥିଲେ । ଭୂତଳରେ ମୃତ୍ତିକାରେ ଶୟନକରୁଥିଲେ ଦେହରେ ତୈଳମର୍ଦ୍ଦନ ଅଭାବ ଏବଂ ସ୍ନାନର ଅଭାବ ହେତୁ ତାଙ୍କ ଦେହ ଧୂଳିମୟ ହୋଇଥିଲା, ମହାମଣି ଅପରିଷ୍କୃତ ହେଲେ ଯେପରି ତା'ର ତେଜ ପ୍ରକାଶିତ ନହୁଏ, ସେହିପରି ତାଙ୍କର ବ୍ରହ୍ମତେଜ ଲୋକରେ ପ୍ରକାଶିତ ହେଉ ନଥିଲା । ସେ ଅତି କୁତ୍ସିତ, ଶତଛିଦ୍ର ଜୀର୍ଣ୍ଣ ମଳିନବସ୍ତ୍ର ଦ୍ୱାରା କଟିମାତ୍ର ଆବରଣ କରି ରଖିଥିଲେ, ତାଙ୍କର ଯଜ୍ଞୋପବୀତ ଏପରି ମଳିନ ହୋଇଥିଲା ଯେ, ଯେଉଁମାନଙ୍କ ନିକଟରେ ସେ ଅପରିଚିତ ସେମାନେ ତାଙ୍କୁ ଦ୍ୱିଜାଧମ ବୋଲି ଭାବୁଥିଲେ—ଏପରି ଲୋକସମାଜରେ ସେ ଅବଜ୍ଞାତ ହୋଇ ବିଚରଣ କରୁଥିଲେ ।୧୦।

ସେ କାର୍ଯ୍ୟର ମୂଲପାଇଁ ଅନ୍ୟଠାରୁ ଆହାର ପାଇବାକୁ ଅପେକ୍ଷା କରୁଥିଲେ, ସେତେବେଳେ ତାଙ୍କର ଭାଇମାନେ ସୁଦ୍ଧା ତାଙ୍କୁ ବିଲରେ କାଦୁଅ ଚକଟା ଇତ୍ୟାଦି କାର୍ଯ୍ୟରେ ନିଯୁକ୍ତ କରୁଥିଲେ । ସେ ତାହା ବିନା ଆପତ୍ତିରେ କରୁଥିଲେ, ପରନ୍ତୁ ଶସ୍ୟକ୍ଷେତ୍ରରେ କେତେ ପରିମାଣରେ କାଦୁଅ ପକାଇଲେ ସମାନ, ଅସମାନ, ଅଳ୍ପ, ବେଶୀ ହେବ ଏଜ୍ଞାନ ତାଙ୍କର ନ ଥିଲା, ଏଣୁ ଭାଇମାନେ ତାହାଙ୍କୁ ଗୁଣ୍ଡିଳକୁନା ଖସା ବା ପୋରିଷ, କୁଣ୍ଡା, ପୋକଖିଆ ବିରି ବା ପୋଡ଼ାଭାତ ଦେଉଥିଲେ, ସେ ଆନନ୍ଦରେ ଏ ସବୁ ଭକ୍ଷଣ କରୁଥିଲେ । ୧୧ ।

---

ଲୋକ ଶ୍ରଦ୍ଧାରେ ଯାହା ଦେଇ
ପରମ ତୋଷେ ତା ଭୁଞ୍ଜଇ
ଇନ୍ଦ୍ରିୟ ପ୍ରୀତି ନିମିତ୍ତରେ
କେବେହେଁ ଆହାର ନକରେ ।୮,୯।
ନିବୃତ୍ତ ହୋଇ ସର୍ବଠାରେ
ପରମ ଆନନ୍ଦ ମନରେ
ଦୁଃଖ ସୁଖରେ ସମତାରି
ଅହଙ୍କାରକୁ କରି ଦୂର

ଗ୍ରୀଷ୍ମ ବରଷା ଶୀତ ବାତ
ସକଳ ସହେ ସେ ଭରତ
ଦିଶଇ ମହାମଣି ସମ
ଶରୀର ଅତି ସ୍ଥୂଳ ପୀନ
ଅତ୍ୟନ୍ତ ବ୍ରହ୍ମ ତେଜ ପାଇ
ଜଡ଼ର ପ୍ରାୟେ ସେ ଭ୍ରମଇ
ଆହାର ଆଦି ସର୍ବଠାରେ
ସେ ଥାଇ ନିସ୍ପୃହ ବେଶରେ ।୧୦।

ତଥାପି ଶୁଣ ହେ ରାଜନ !
ତାହାର ନିଜ ଭ୍ରାତାଗଣ
କୃଷିରକ୍ଷଣ କାରଣରେ
ନିଯୁକ୍ତ କରନ୍ତି ତାହାରେ
ଭ୍ରାତ ବଚନ ଅନୁମତେ
କୃଷି ରଖଇ ଯଥୋଚିତେ
ମୃଗ ବରାହଙ୍କୁ ନିବାରି
ଥାଇ ସେ ଜଗିଛେ ଆବୋରି ।୧୧।

ଅଥ କଦାଚିଦ୍‌ବୃଷଳପତି ର୍ଭଦ୍ରକାଳ୍ୟୈ ପୁରୁଷପଶୁମାଲଭତାପତ୍ୟକାମଃ ।୧୨।

ତସ୍ୟ ହ ଦୈବମୁକ୍ତସ୍ୟ ପଶୋଃ ପଦବୀଂ ତଦନୁଚରାଃ ପରିଧାବନ୍ତୋ ନିଶି ନିଶୀଥସମୟେ ତମସାବୃତାୟାମନଧିଗତପଶବ ଆକସ୍ମିକେନ ବିଧିନା କେଦାରାନ୍ ବୀରାସନେନ ମୃଗବରାହାଦିଭ୍ୟଃ ସଂରକ୍ଷମାଣମଙ୍ଗିରଃପ୍ରବରସୁତମପଶ୍ୟନ୍ । ୧୩ ।

ଅଥ ତ ଏନମନବଦ୍ୟଲକ୍ଷଣମବମୃଷ୍ୟଭର୍ତ୍ତୃକର୍ମ୍ମନିଷ୍ପତ୍ତିଂ ମନ୍ୟମାନା ବଦ୍ଧ୍ୱା ରଶନୟା ଚଣ୍ଡିକାଗୃହମୁପନିନ୍ୟୁର୍ମୁଦା ବିକସିତବଦନାଃ । ୧୪ ।

ଅଥ ପଣୟସ୍ତଂ ସ୍ୱବିଧିନାଭିଷିଚ୍ୟାହତେନ ବାସସାଚ୍ଛାଦ୍ୟ ଭୂଷଣାଲେପସ୍ରକ୍‌ତିଲକାଦିଭିରୁପସ୍କୃତଂ ଭୁକ୍ତବନ୍ତଂ ଧୂପଦୀପମାଲ୍ୟଲାଜାକିଶଳୟାଙ୍କୁରଫଳୋପହାରୋ-

---

ଥରେ ଗୋଟିଏ ଶୂଦ୍ରଜାତିର ଚୋର ରାଜା ପୁତ୍ରକାମନା କରି ଭଦ୍ରକାଳୀଙ୍କ ନିକଟରେ ଗୋଟିଏ ନରବଳି ଦେବେ ବୋଲି ଆୟୋଜନ କରିଥିଲେ । ୧୨ ।

ସେହି ବୃଷଳପତି ବଳିଦେବେ ବୋଲି ଯେଉଁ ପୁରୁଷଟିକୁ ବନ୍ଧନ କରି ରଖିଥିଲେ, ସେ ହଠାତ୍ ବନ୍ଧନମୁକ୍ତ ହୋଇ ପଳାଇ ଯିବାରୁ ବୃଷଳପତିଙ୍କର ଅନୁଚରଗଣ ତାହାକୁ ଖୋଜିବାକୁ ଲାଗିଲେ । ମାତ୍ର ଅନ୍ଧକାର ରାତ୍ରି ଓ ରାତ୍ରି ଅର୍ଦ୍ଧ ସମୟ, ସେମାନେ ସେହି ନରପଶୁଟିକୁ ଆଉ ପାଇଲେ ନାହିଁ । ହଠାତ୍ ଦୈବଚକ୍ରରେ ସେମାନେ ଶସ୍ୟକ୍ଷେତ୍ରରେ ଏହି ଅଙ୍ଗିରସ ଗୋତ୍ରୀୟ ଜଡ଼ ଭରତଙ୍କୁ ବରାହ ଓ ମୃଗ ପ୍ରଭୃତିଙ୍କୁ ଶସ୍ୟକ୍ଷେତ୍ରରୁ ବିତାଡ଼ିତ କରିବାର ଦେଖିଲେ । ୧୩ ।

ରାଜାଙ୍କର ଭୃତ୍ୟମାନେ ତାହାଙ୍କୁ ଦେଖି ପରମ ଆନନ୍ଦିତ ହେଲେ, ତାହାଙ୍କର ଶରୀରରେ ସୁଲକ୍ଷଣମାନ ବିଦ୍ୟମାନ ଥିବା ଦେଖି ସେମାନେ ଭାବିଲେ—ଏହାକୁ ବଳି ଦେଲେ ଆମ୍ଭମାନଙ୍କର ରାଜାଙ୍କ ମନସ୍କାମନା ନିଶ୍ଚୟ ପୂର୍ଣ୍ଣ ହେବ । ରଜ୍ଜୁଦ୍ୱାରା ତାହାଙ୍କୁ ବନ୍ଧନ କରି ଭଦ୍ରକାଳୀ ମନ୍ଦିରକୁ ନେଇଗଲେ । ୧୪ ।

ତହୁଁ ଉତ୍ତାରୁ ଚୋରମାନେ ତାହାଙ୍କୁ ନିୟମାନୁସାରେ ସ୍ନାନ କରାଇଲେ ଓ ନୂତନବସ୍ତ୍ର ଅଳଙ୍କାର ଗନ୍ଧମାଲ୍ୟ ଓ ତିଳକ ପ୍ରଭୃତିଦ୍ୱାରା ଭୂଷିତ କରାଇ ତାଙ୍କୁ କିଛିହୁଁ ଆହାର ମଧ ଦେଲେ । ଭୋଜନ ଶେଷ

---

ଏମନ୍ତେ ସାବଧାନେ ଶୁଣ
ବୃଷଳପତି ଯେ ରାଜନ
ଅତ୍ୟନ୍ତ ପୁତ୍ରକାମୀ ହୋଇ
ଦେବୀଙ୍କି ମହାପଶୁ ସହି
ନରପଶୁଏ ଯତ୍ନ କରି
ରଖଇ ନିରତେ ଆବୋରି
ଦଇବେ ଅଭିମନ୍ୟୁବଳା
ସେ ନର ପଶୁ କେଉଁଣେ ଗଲା
ତାହାର ପଥ ଅନୁସରେ
ଧାଇଁଲେ ତାର ଅନୁଚରେ

ନିଶି ଅନ୍ଧାର ଘୋର ତମେ
ଖୋଜନ୍ତି ନାନାଦିଗ ଗ୍ରାମେ
ପଶୁ ନ ପାଇ ଅନୁଚରେ
ନିରାଶ ହୋଇଲେ ଅନ୍ତରେ
ଗୃହକୁ କରନ୍ତେ ପ୍ରୟାଣ
ଦେଖିଲେ ବିପ୍ରର ନନ୍ଦନ ।୧୨।୧୩
ଏ ଅନନ୍ତରେ ନୃପମଣି
ଜଡ଼ର ପ୍ରାୟ ଭାବ ଜାଣି
ବନ୍ଧନ କରି ତତକ୍ଷଣେ
ସ୍ୱାମିର କର୍ମ ସମ୍ପାଦନେ

ଚଣ୍ଡିକା ଗୃହେ ପ୍ରବେଶିଲେ
ସ୍ୱାମିଙ୍କୁ ସମର୍ପିଣ ଦେଲେ ।୧୪।
ସୁଗନ୍ଧ ଶୀତଳ ଜଳରେ
ସ୍ନାନ କରାଇଲେ ବିଧିରେ
ଶୁଭ୍ର ନିର୍ମଳ ବାସ ଦେଲେ
ନାନା ଭୂଷଣରେ ମଣ୍ଡିଲେ
ବିବିଧ ଉପହାର ମାନ
ତାହାକୁ କରାଇ ଭୋଜନ
ସୁଗନ୍ଧ ଧୂପ ଦୀପ ଦେଇ
ମାଳାଏ କଣ୍ଠରେ ଲମ୍ବାଇ

ପେତନ୍ତ୍ୟା ବୈଶସସଂସ୍ଥୟା ମହତା ଗୀତସ୍ତୁତିମୃଦଙ୍ଗପଣବଘୋଷେଣ ଚ ପୁରୁଷପଶୁଂ ଭଦ୍ରକାଲ୍ୟାଃ ପୁରତ ଉପବେଶୟାମାସୁଃ । ୧୫ ।

ଅଥ ବୃଷଲରାଜପଣିଃ ପୁରୁଷପଶୋରସୃଗାସବେନ ଦେବୀଂ ଭଦ୍ରକାଲୀଂ ଯକ୍ଷ୍ୟମାଣସ୍ତଦଭିମନ୍ତ୍ରିତମସିମତିକରାଳଂ ନିଶିତମୁପାଦଦେ । ୧୬ ।

ଇତି ତେଷାଂ ବୃଷଳାନାଂ ରଜସ୍ତମଃପ୍ରକୃତୀନାଂ ଧନମଦରଜଉତ୍‌ସିକ୍ତମନସାଂ ଭଗବତ୍‌କଲାଧୀରକୁଲଂ କଦର୍ଥୀକୃତ୍ୟୋତ୍‌ପଥେନ ସ୍ୱୈରଂ ବିହରତାଂ ହିଂସାବିହାରାଣାଂ କର୍ମାତିଦାରୁଣଂ ଯଦ୍‌ବ୍ରହ୍ମଭୂତସ୍ୟ ସାକ୍ଷାଦ୍‌ବ୍ରହ୍ମର୍ଷିସୁତସ୍ୟ ନିର୍ବୈରସ୍ୟ ସର୍ବଭୂତସୁହୃଦଃ ସୂନାୟାମପ୍ୟନନୁମତମାଲମ୍ଭନଂ ତଦୁପଲଭ୍ୟ ବ୍ରହ୍ମତେଜସାତିଦୁର୍ବିଷହେଣ ଦନ୍ଦହ୍ୟମାନେନ ବପୁଷା ସହସୋଚ୍ଚଚାଟ ସୈବ ଦେବୀ ଭଦ୍ରକାଳୀ । ୧୭ ।

---

ହେଲେ ପରେ ଧୂପ, ଦୀପ, ମାଲ୍ୟ, ଖଇ, ପଲ୍ଲବାଙ୍କୁର, ଫଳ ପ୍ରଭୃତି ଉପହାର ଦେଇ ହିଂସାତ୍ମକ ଗୀତ, ସ୍ତୁତି, ଭେରୀ, ମୃଦଙ୍ଗ ପ୍ରଭୃତି ସହ ତାହାଙ୍କୁ ଭଦ୍ରକାଳୀଙ୍କ ସମ୍ମୁଖରେ ସ୍ଥାପନ କରିଥିଲେ । ୧୫ ।

ତଦନନ୍ତର ବୃଷଳାଧିପତିଙ୍କର ପୁରୋହିତ ବଳିରୂପେ କଳ୍ପିତପୁରୁଷ ପଶୁର ଶୋଣିତାସବରେ ଭଦ୍ରକାଳୀଙ୍କୁ ପୂଜା କରି ତାହାଙ୍କର ପ୍ରୀତି ସମ୍ପାଦନ ନିମିତ୍ତ ଅତିଭୀଷଣ ଶାଣିତ ଖଡ୍‌ଗ ଗ୍ରହଣ କରିଥିଲେ ।୧୬

ଦେବୀ ଭଦ୍ରକାଳୀ ରଜୋଗୁଣ ଓ ତମୋଗୁଣ ଦ୍ୱାରା ପରିବ୍ୟାପ୍ତ ସ୍ୱଭାବ ଧନ ମଦରେ ଗର୍ବିତ ବିଷ୍ଣୁ ଅଂଶରୂପୀ ବ୍ରାହ୍ମଣକୁଳକୁ ଅବଜ୍ଞାକରି ଏବଂ ହିଂସାଶ୍ରୟ ଦ୍ୱାରା କୁପଥରେ ବିଚରଣ କରୁଥାଏ, ବର୍ତ୍ତମାନ ସେ ସାକ୍ଷାତ୍ ବ୍ରହ୍ମ ସ୍ୱରୂପ ବ୍ରହ୍ମର୍ଷି ପୁତ୍ର ନିର୍ବୈର ସର୍ବଭୂତବନ୍ଧୁ ସେହି ଭରତଙ୍କୁ ବଳି ପ୍ରଦାନ କରିବାକୁ ଉଦ୍ୟତ ହେବାରୁ ଅତି ଦାରୁଣକର୍ମ ଅନୁଷ୍ଠାନ କରିବାକୁ ଯାଉଥିଲେ । ଦେବୀ ତାହା ଜାଣିପାରି ବ୍ରହ୍ମତେଜ ପ୍ରଜ୍ୱଳିତ ଦେହ ଧାରଣ ପୂର୍ବକ ସହସା ପ୍ରତିମା ତ୍ୟାଗ କରି ବହିର୍ଗତ ହେଲେ । ୧୭ ।

---

ମୃଦଙ୍ଗ ଶଙ୍ଖ ଘୋର ସ୍ୱନ
ଆନନ୍ଦେ କରନ୍ତେ ଗାୟନ
ଏମନ୍ତେ ନାନାବିଧି ମତେ
ସ୍ଥାପିଲେ ଦେବୀର ଅଗ୍ରତେ ।୧୫।
ବୃଷଳପତି ଏ ଅନ୍ତରେ
ତୀକ୍ଷ୍ଣ ଖଡ୍‌ଗ ଧରି କରେ
ତାହାର ରୁଧିରକୁ ଦେଇ
ଦେବୀ ସନ୍ତୋଷ ହେବାପାଇଁ
ଏମନ୍ତେ ଶୁଣ ହେ ରାଜନ
ବୃଷଳେ ହୋଇ ମତ୍ତ ଭ୍ରମ
ଧନ ସମ୍ପଦ ମଦେ କରି
ତମ ଗୁଣକୁ ଆଶ୍ରା କରି
ଈଶ୍ୱର ଅଂଶକୁ ସେ ଧରେ
ହିଂସା କରନ୍ତି ସେ ତାହାରେ
ଦାରୁଣ କର୍ମ ତାହାଙ୍କର
ପ୍ରତକ୍ଷେ ବ୍ରାହ୍ମଣ କୁମର
ବିଷ୍ଣୁର କଳାବନ୍ତ ଯେହି
ତାହାକୁ କଦର୍ଥନ୍ତି ନେଇ ।୧୬।
ଯେ ସର୍ବଭୂତେ ସମଚିତ୍ତ
ବିଷ୍ଣୁ ଉପରି ଅବିରତ
ତାହାଙ୍କୁ ପଶୁରେ ବରିରି
ନିକଟେ ହେଲା ଖଡ୍‌ଗ ଧରି
ଏ ଅନନ୍ତରେ ପରୀକ୍ଷିତ !
ବ୍ରାହ୍ମଣତେଜ ଅପ୍ରମିତ
ଜ୍ୱାଳା କରାଳ ଦୁର୍ବିସହ
ତେଣୁ ସେ ଦଗ୍‌ଧ ଦେବୀ ଦେହ
ତକ୍ଷଣେ ଉଚାଟକୁ ପାଇ
ଉଠିଲା ଅତିରୋଷ ବହି ।୧୭

ଭୃଶମମର୍ଷରୋଷାବେଶରଭସବିଲସିତଭ୍ରୁକୁଟିବିଟପକୁଟିଲଦଂଷ୍ଟ୍ରାରୁଣେକ୍ଷଣା-ଟୋପାତିଭୟାନକବଦନା ହନ୍ତୁକାମେବେଦଂ ମହାଟ୍ଟହାସମତିସଂରମ୍ଭେଣ ବିମୁଞ୍ଚନ୍ତୀ ତତ ଉତ୍ପତ୍ୟ ପାପୀୟସାଂ ଦୁଷ୍ଟାନାଂ ବୃଷଲାନାଂ ତେନୈବାସିନା ବିବୃକ୍‌ଣଶୀର୍ଷ୍ଣାଂ ଗଳାତ୍‌ସ୍ରବନ୍ତମସୃଗାସବମତ୍ୟୁଷ୍ଣଂ ସହ ଗଣେନ ନିପୀୟାତିପାନମଦବିହ୍ୱଳୋଚ୍ଚୈସ୍ତରାଂ ସ୍ୱପାର୍ଷଦୈଃ ସହ ଜଗୌ ନନର୍ତ୍ତ ଚ ବିଜହାର ଚ ଶିରଃକନ୍ଦୁକଲୀଳୟା । ୧୮ ।

ଏବମେବ ଖଳୁ ମହଦଭିଚାରାତିକ୍ରମଃ କାର୍ତ୍ସ୍ନ୍ୟେନାତ୍ମନେ ଫଳତି । ୧୯ ।

ନ ବା ଏତଦ୍‌ବିଷ୍ଣୁଦତ୍ତ ମହଦଦ୍ଭୁତଂ ଯଦସମ୍ଭ୍ରମଃ ସ୍ୱଶିରଶ୍ଛେଦ ଆପତିତେଽପି ବିମୁକ୍ତଦେହାଦ୍ୟାତ୍ମଭାବସୁଦୃଢ଼ହୃଦୟଗ୍ରନ୍ଥିନାଂ ସର୍ବସତ୍ତ୍ୱସୁହୃଦାତ୍ମନାଂ ନିର୍ବୈରାଣାଂ

---

ସେହି ଭଦ୍ରକାଳୀ ଏହି ଦୁର୍ବୃତ୍ତମାନଙ୍କର ଆସୁର ବ୍ୟବହାର ସହ୍ୟ କରି ନ ପାରି କ୍ରୋଧରେ ଆବର୍ତ୍ତିତ ହେଲେ । କ୍ରୋଧରେ ତାହାଙ୍କର ଭ୍ରୂକୁଟୀ, ଶିଖା, କୁଟିଳ ଦନ୍ତପଂକ୍ତି ଓ ଅରୁଣଲୋଚନ ପ୍ରକାଶିତ ହେଲା, ତନ୍ଦ୍ୱାରା ପ୍ରଭାବରେ ତାହାଙ୍କର ବଦନ ଭୀଷଣାକୃତି ଧାରଣ କଲା । ଜଗତକୁ ଧ୍ୱଂସ କରିବା ପାଇଁ ସେତେବେଳେ ସେ ଭୀଷଣ ଅଟ୍ଟହାସ୍ୟ କଲେ । ସେତେବେଳେ ସେହି ଅସି ସ୍ଥାନଚ୍ୟୁତ ହୋଇ ପାପିଷ୍ଠ ଦୁର୍ବୃତ୍ତ ବୃଷଳମାନଙ୍କର ଶିରଚ୍ଛେଦନ କଲା । ଦେବୀ ସେତେବେଳେ ସ୍ୱୀୟଗଣ ସହିତ ସେମାନଙ୍କର ଗଳଦେଶରୁ ନିର୍ଗତ ଶୋଣିତଧାରା ପାନ କରିଥିଲେ । ମତ୍ତ ହୋଇ ସେ ନିଜ ପାରିଷଦମାନଙ୍କ ସହିତ ଅତି ଉଚ୍ଚ ସ୍ୱରରେ ଗାନ ଓ ନୃତ୍ୟ କଲେ ଓ ସେମାନଙ୍କର ମସ୍ତକକୁ ଘେନି କନ୍ଦୁକତୁଲ୍ୟ କ୍ରୀଡ଼ା କରିଥିଲେ ।୧୮

ମହତ୍‌ବ୍ୟକ୍ତି ପ୍ରତି ଅତ୍ୟାଚାରର ଅପରାଧୀ ଏହିପରି ଦଣ୍ଡିତ ହୋଇଥାଏ । ୧୯ ।

ହେ ବିଷ୍ଣୁରାତ (ପରୀକ୍ଷିତ) ! ମହାତ୍ମା ଭରତଙ୍କର ନିଜର ଶିରଚ୍ଛେଦନ ବେଳେ ମଧ୍ୟ ହତ୍ୟାକାରୀମାନଙ୍କ ପ୍ରତି ତାହାଙ୍କର କୌଣସି କ୍ରୋଧ ଭାବ ନ ଥିଲା । ଏହା ଆଶ୍ଚର୍ଯ୍ୟର ବିଷୟ ନୁହେଁ, କାରଣ ଯେଉଁମାନେ ଦେହରୁ ଆତ୍ମବୁଦ୍ଧିସ୍ୱରୂପ ସୁଦୃଢ଼ ହୃଦୟଗ୍ରନ୍ଥି ଛିନ୍ନ କରି ଅଛନ୍ତି ଓ ଯେଉଁମାନଙ୍କର ଆତ୍ମା

---

ସେ ଦେବୀ ଚଣ୍ଡୀ ଭଦ୍ରକାଳୀ
ଅତ୍ୟନ୍ତ ପ୍ରକୋପେ ପ୍ରଜ୍ୱଳି
ଭ୍ରୂକୁଟୀ ଚକ୍ଷୁ ବକ୍ର ତାର
ବଦନ ଦିଶେ ଭୟଙ୍କର
ଦନ୍ତ ଦିଶଇ ତା କରାଳ
ଅରୁଣ ନୟନ ଯୁଗଳ
ଅଟ୍ଟାଟ୍ଟହାସ ଘୋର ସ୍ୱନ
ପୂର୍ଣ୍ଣ କୋହନ୍ତି ଦେବୀ ମନ
ଧାଇଁଲେ ଅତି ଖରତରେ
ପାପିଷ୍ଠମାନଙ୍କ ଉପରେ
ତାହାର ହସ୍ତ ଖଡ୍‌ଗ ଘେନି
ଶୁଣ ହେ ନୃପ ଶିରୋମଣି

ଶାଣିତ ଅତି ତୀକ୍ଷ୍ଣ ଧାର
ଛେଦିଲେ ତାହାଙ୍କର ଶିର
ପରମ ସନ୍ତୋଷକୁ ପାଇ
ଆପଣା ଗଣ ସଙ୍ଗେ ନେଇ
ରୁଧିର ସୁରା କରି ପାନ
ଶ୍ଳୋକେ ହୋଇଲେ ମନେ ଛନ୍ନ
ଦେବୀର ଯେତେ ପାରିଷଦ
ଆନନ୍ଦେ କରି ଗୀତ ନାଦ
ମସ୍ତକମାନ ଲଟ୍ଟୁ କରି
ହରଷେ ବୁଲନ୍ତି ବିହରି । ୧୮।
ଶୁଣ ରାଜନ ସାବଧାନେ
ସେ ଯେ ବୃଷଳ ପାପିମାନେ

ସାଧୁଙ୍କୁ କରି ପରାଭବ
ଆପଣେ ନାଶଗଲେ ସର୍ବ
ବିଷ୍ଣୁଭକତ ଯେତେ ନରେ
ଦୟା ବହନ୍ତି ସର୍ବଠାରେ
ବଇର ହିଂସା ଦୂରେ ତେଜି
ସେ ପଦ୍ମପାଦ ଯୁଗେ ଭଜି
ପରମହଂସ ଭାଗବତ
ତାହାଙ୍କୁ ରଖନ୍ତି ଅଚ୍ୟୁତ ।୧୯।୨୦
କହଇ ଦାସ ଜଗନ୍ନାଥ
ପଞ୍ଚମସ୍କନ୍ଧେ ଭାଗବତ
ପ୍ରଭୁ ସଦାରବିନ୍ଦ ତଳେ
ମୋ ମନ ରହିବ ନିଶ୍ଚଳେ

ସାକ୍ଷାଦ୍‌ଭଗବତା ଅନିମିଷାରିବରାୟୁଧେନାଭ୍ରମତେନ ତୈସ୍ତୈର୍ଭାବୈଃ ରଭିରକ୍ଷମାଣାନାଂ
ତତ୍‌ପାଦମୂଳମକୁତଶ୍ଚିଦ୍‌ଭୟମୁପସୃତାନାଂ ଭଗବତପରମହଂସାନାମ୍‌ । ୨୦ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ
ଜଡଭରତଚରିତେ ନାମ ନବମୋଽଧ୍ୟାୟଃ । ୯ ।

---

ସର୍ବଭୂତର ଆତ୍ମା ଓ ସୁହୃତ୍‌, ଯେଉଁମାନେ କାହାପ୍ରତି ବୈରଭାବ ପୋଷଣ କରନ୍ତି ନାହିଁ, ସ୍ୱୟଂ ଭଗବାନ୍ କାଳଚକ୍ରରୂପେ ଉପସ୍ଥିତ ହୋଇ ଉତ୍‌କୃଷ୍ଟ ଆୟୁଧଦ୍ୱାରା ସ୍ୱୟଂ ଅନ୍ତର୍ଯାମୀ ହେତୁ ଭଦ୍ରକାଳୀ ପ୍ରଭୃତି ରୂପଦ୍ୱାରା ସେମାନଙ୍କୁ ରକ୍ଷା କରିଥାନ୍ତି । ଯେଉଁମାନେ ଅକୁତୋଭୟରେ ତାହାଙ୍କର ପାଦମୂଳ ଆଶ୍ରୟ କରନ୍ତି ସେହି ପାଦଉପାସକ ପରମହଂସମାନଙ୍କ ପକ୍ଷରେ କିଛିହିଁ ଅସମ୍ଭବ ନୁହେଁ । ୨୦ ।



## ଦ ଶ ମ ଅ ଧ୍ୟା ୟ ।

ଦଶମେ କ୍ଷିପତା ରାଜ୍ଞା ଶିବିକାଂ ସ୍ୱାଂ ବହନ୍‌ମୁନିଃ ।
ସ୍ୱବଦ୍ଧୁଂବାଦାନୁବାଦେନ ବଞ୍ଚୟ୍ୟାଶୁ ପ୍ରସାଦଦତଃ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ ।

ଅଥ ସିନ୍ଧୁସୌବୀରପତେ ରହୂଗଣସ୍ୟ ବ୍ରଜତଃ ଇକ୍ଷୁମତ୍ୟାସ୍ତଟେ ତତ୍‌କୁଲପତିନା ଶିବିକାବାହକପୁରୁଷାନ୍ୱେଷଣସମୟେ ଦୈବେନୋପସାଦିତଃ ସ ଦ୍ୱିଜବର ଉପଲବ୍ଧଃ ଏଷ ପୀବା ଯୁବା ସଂହନନାଙ୍ଗୋ ଗୋଖରବଦ୍ଧୁରଂ ବୋଢ଼ୁମଲମିତି ପୂର୍ବବିଷ୍ଟିଗୃହୀତୈଃ ସହ ଗୃହୀତଃ ପ୍ରସଭମତଦର୍ହ ଉବାହ ଶିବିକାଂ ସ ମହାନୁଭାବଃ । ୧ ।

---

### ଭରତ ସିନ୍ଧୁରାଜାଙ୍କ ଶିବିକାବାହକତ୍ୱରେ ନିଯୁକ୍ତ ।

ଦଶମ ଅଧ୍ୟାୟରେ ଭରତ ରାଜା ରହୁଗଣଙ୍କର ଶିବିକା ବହନ ନ କରି ପାରିବା ହେତୁ ରାଜାଙ୍କ କର୍ତ୍ତୃକ ଭର୍ତ୍ସିତ ହୋଇ ନାନାବି ଉପଦେଶ ଦେବା ବର୍ଣ୍ଣିତ ହୋଇଅଛି ।୦।

ଶ୍ରୀଶୁକଦେବ କହିଲେ :—

ତହିଁ ଉତ୍ତାରୁ ଦିନେ ସିନ୍ଧୁ ଓ ସୌବୀରଦେଶର ରାଜା ଶିବିକାରେ ଆରୋହଣ କରି ଯାଉଥିଲେ, ରହୁଗଣଙ୍କଶିବିକା ବାହକ ନେତା । ଇକ୍ଷୁମତୀ ନଦୀତୀରରେ ଶିବିକା ବାହକମାନଙ୍କୁ ଖୋଜୁ ଖୋଜୁ ହଠାତ୍ ଏହି ଦ୍ୱିଜବର ଭରତଙ୍କୁ ଦେଖିଲା, ଏହିବ୍ୟକ୍ତି ସ୍ଥୂଳକାୟ, ଯୁବକ, ବଳିଷ୍ଠଶରୀର, ଏ ବୃଷଭ ଓ ଗର୍ଦ୍ଦଭ ତୁଲ୍ୟ ଭାର ବହନରେ କ୍ଷମ ହେବ ଏହା ଭାବି ତାହାଙ୍କୁ ଶିବିକା ବାହକରୂପେ ନିଯୁକ୍ତ କଲା, ମହାନୁଭବ ଭରତ ଏ କାର୍ଯ୍ୟର ଅନୁପଯୋଗୀ ଥିଲେ ମଧ୍ୟ, ଅନ୍ୟ ବାହକଙ୍କ ସଙ୍ଗେ ଶିବିକା ବହନ କରିଥିଲେ । ୧ ।

---

ଭରତ ରାଜା ରହୁଗଣ, ଶିବିକା କରନ୍ତେ ବହନ । ତା ସଙ୍ଗେ ବାଦ ଅନୁବାଦ, ଦଶମ ଅଧ୍ୟାୟ ସମ୍ବାଦ ।୦।

ଶ୍ରୀ ଶୁକଉବାଚ—
ଏଥିଅନ୍ତରେ ଏକଦିନେ
ରାଜନ ଶୁଣ ସାବଧାନେ
ସିନ୍ଧୁପତି ଯେ ରହୁଗଣ
ସେ ରାଜା ବିଷ୍ଣୁ ପରାୟଣ
ତାହାର ଏକ ଶ୍ରେଷ୍ଠ ଭୃତ୍ୟେ
ରାଜାର ଗମନ ନିମନ୍ତେ
ବିମାନ ବହିବାର ପାଇଁ
ଏକ ପୁରୁଷେ ସେ ଲୋଡ଼ଇ
ଦଇବ ଯୋଗେ ଦେଖ ତାର
ଯେ ବିଷ୍ଣୁ ଅଂଶ ଦ୍ୱିଜବର
ସେଠାରେ ଥିଲେ ସେ ଭରତ
ତାକୁ ଦେଖିଲା ନୃପଦୂତ
ହରଷମନେ ବିଚାରଇ
ଏହାର ତୁଲ୍ୟ କେହି ନାହିଁ
କଠିନ ପୃଷ୍ଠ ଏ ଶରୀର
ବିମାନ ବହିବ ସୁନ୍ଦର
ଏମନ୍ତେ ଶୀଘ୍ରେ ଘେନିଗଲା
ବିମାନ ତୁହାରେ ଖଞ୍ଜିଲା
ତହିଁ ନିଯୁକ୍ତ ନର ସଙ୍ଗେ
ବିମାନ ବହିଲେ ସେ ରଙ୍ଗେ
ସାକ୍ଷାତେ ବିଷ୍ଣୁ ଭକ୍ତ ସେହି
ପରଅଧୀନ ପ୍ରାୟ ହୋଇ
ସେ ଯେ ପରମ ଭାଗବତ
ଏ କର୍ମ ତାର ଅନୁଚିତ । ୧ ।

ଯଦା ହି ଦ୍ୱିଜବରସ୍ୟେଷୁମାତ୍ରାବଲୋକାନୁଗତେର୍ନ ସମାହିତା ପୁରୁଷଗତିସ୍ତଦା ବିଷମଗତାଂ ସ୍ୱଶିବିକାଂ ରହୂଗଣ ଉପଧାର୍ଯ୍ୟ ପୁରୁଷାନଧିବହତ ଆହ ହେ ବୋଢାରଃ ସାଧ୍ୱତିକ୍ରାମତ, କିମିତି ବିଷମମୁହ୍ୟତେ ଯାନମିତି । ୨ ।

ଅଥ ତ ଈଶ୍ୱରବଚଃ ସୋପାଲମ୍ଭମୁପାକର୍ଣ୍ୟୋପାୟତ୍ ତୁରୀୟାତ୍ ଶଙ୍କିତମନସସ୍ତଂ ବିଜ୍ଞାପୟାମ୍ବଭୂବୁଃ । ୩ ।

ନ ବୟଂ ନରଦେବ ପ୍ରମତ୍ତା ଭବନ୍ନିୟମାନୁପଥାଃ ସାଧ୍ୱେବ ବହାମଃ ଅୟମଧୁନୈବ ନିଯୁକ୍ତୋଽପି ନ ଦ୍ରୁତଂ ବ୍ରଜତି ନାନେନ ସହ ବୋଢୁମୁହ ବୟଂ ପାରୟାମ ଇତି ।।

କାଳେ ପ୍ରାଣୀହିଂସା ଘଟିବ ତେଣୁ ସେ ଭରତ ପରିମିତ ସ୍ଥାନ ଛାଡ଼ି ପଦକ୍ଷେପ କରୁଥିବାରୁ ଅନ୍ୟ ଶିବିକାବାହକ ମାନଙ୍କ ସହିତ ତାଙ୍କର ଗତି ସମାନ ହେଲା ନାହିଁ । ରାଜା ରହୁ ଶିବିକାବାହକମାନଙ୍କର ଏପରି ବିଷମ ଗତି ପ୍ରତି ଲକ୍ଷ୍ୟକରି ବାହକମାନଙ୍କୁ କହିଲେ "ରେ ବାହକଗଣ ! ଠିକ ଭାବରେ ଚାଲ, ଏପରି ଚାଲୁଛ କାହିଁକି ?" । ୨ ।

ତଦନନ୍ତର ପ୍ରଭୁଙ୍କ ତିରସ୍କାର ଓ ଦଣ୍ଡରୁ ରକ୍ଷା ପାଇବା ଲାଗି ସେ ରହୁମାନେ ନିବେଦନ କଲେ "ହେ ନରଦେବ ଆମ୍ଭେମାନେ ଅସାବଧାନ ନୋହୁଁ, ଆମ୍ଭେମାନେ ତୁମ୍ଭଙ୍କ ଆଜ୍ଞାନୁବର୍ତ୍ତୀ ହୋଇ ଠିକ ଭାବରେ ଶିବିକା ଚଳାଉ ଅଛୁଁ, ଏହି ଲୋକଟି ନୂଆ ଆସିଛି, ଠିକ ଚାଲିପାରୁ ନାହିଁ, ତେଣୁ ଆମ୍ଭେମାନେ ହଇରାଣ ହେଉଅଛୁଁ" ।୩,୪।



ଜଡ଼ଭରତ ଓ ରାଜା ରହୁଗଣ ଭେଟ

ବିମାନ ବହି ନ ଜାଣଇ
ବିଷମଭାବେ ସେ ଚଳଇ
କ୍ଷୁଦ୍ର ଜୀବଙ୍କ ମୃତ୍ୟୁଭୟେ
ପାଦ ନ କ୍ଷେପନ୍ତି ନିର୍ଭୟେ
ତେଣୁ ବିଷମ ଗତି ହୋଇ
ରାଜାଦେହରେ କଷ୍ଟ ପାଇ
ବିମାନ ବହା ପୁରୁଷରେ
ନୃପ କହଇ କୋପଭରେ
ବିଷମ ସମ ଭାବ ହୋଇ
ବିମାନ ବହ କିସପାଇଁ । ୨ ।
ରାଜାବଚନ କୋପଭରେ
ଶୁଣି କମ୍ପନ୍ତି ତା ଶଙ୍କରେ
ଅତ୍ୟନ୍ତ ଭୟଚିତ୍ତ ହୋଇ
ଜଡ଼କୁ ଦେଲେ ସେ ଦେଖାଇ
ହେ ନାଥ ! ଆମ୍ଭ ଦୋଷ ନାହିଁ
ଏ ଯେ ପୁରୁଷ ନ ଚଳଇ
ଏହାର ବକ୍ର ଗତି ପାଇ
ବିମାନ ବକ୍ର ଭାବ ହୋଇ
ହେନାଥ ! ଶୁଣ ସାବଧାନେ
ପୁଣିହିଁ ଚଳଇ ବିଷମେ
ଏହାର ସଙ୍ଗତେ ରାଜନ !
ବହି ନ ପାରୁଁ ବିମାନ ।୩,୪।

ସାଂସର୍ଗିକୋ ଦୋଷ ଏବ ନୂନମେକସ୍ୟାପି ସର୍ବେଷାଂ ସାଂସର୍ଗିକାଣାଂ ଭବିତୁମର୍ହତୀତି ନିଶ୍ଚିତ୍ୟ ନିଶମ୍ୟ କୃପଣବଚୋ ରାଜା ରହୂଗଣ ଉପାସିତବୃଦ୍ଧୋଽପି ନିସର୍ଗେଣ ବଲାତ୍କୃତ ଈଷଦୁତ୍ଥିତମନ୍ୟୁରବିସ୍ପଷ୍ଟବ୍ରହ୍ମତେଜସଂ ଜାତବେଦସମିବ ରଜସାବୃତମତିରାହ ।୫।

ଅହୋ କଷ୍ଟଂ ଭ୍ରାତର୍ବ୍ୟକ୍ତମୁରୁ ପରିଶ୍ରାନ୍ତୋ ଦୀର୍ଘମଧ୍ୱାନମେକ ଏବ ଊହିବାନ୍ ସୁଚିରଂ ନାତିପୀବା ନ ସଂହନନାଙ୍ଗୋ ଜରସା ଚୋପଦ୍ରୁତୋ ଭବାନ୍ ସଖେ ନୋ ଏବାପର ଏତେ ସଂଘଟ୍ଟିନ ଇତି ବହୁ ବିପ୍ରଲବ୍ଧୋଽପ୍ୟବିଦ୍ୟୟା ରଚିତଦ୍ରବ୍ୟଗୁଣକର୍ମାଶୟସ୍ୱଚରମକଳେବରେଽବସ୍ତୁନି ସଂସ୍ଥାନବିଶେଷେଽହଂ ମମେତ୍ୟନଧ୍ୟାରୋପିତମିଥ୍ୟାପ୍ରତ୍ୟୟୋ ବ୍ରହ୍ମଭୂତସ୍ତୂଷ୍ଣୀଂ ଶିବିକାଂ ପୂର୍ବବଦୁବାହ ।୬।

---

ରାଜା ରହୂଗଣ ବାହକମାନଙ୍କର ବିନୀତବାକ୍ୟ ଶ୍ରବଣକରି ଭାବିଲେ ଗୋଟିଏର ସଂସର୍ଗ ଦୋଷରେ ଅନ୍ୟ ଜଣେ ଦୋଷୀ ହୋଇପାରେ, ଏହା ସମ୍ଭବ ନୁହେଁ, ରାଜା ଈଷତ୍ କୁପିତ ହୋଇ ଗୁରୁଜନ ସେବୀ ହେଲେ ମଧ୍ୟ ସ୍ୱାଭାବିକ ରଜୋଗୁଣ ତାହାଙ୍କର ହୃଦୟକୁ ଆଚ୍ଛନ୍ନ କରିଥିଲା । ଭସ୍ମାଚ୍ଛାଦିତ ଅଗ୍ନି ତୁଲ୍ୟ ଭରତଙ୍କର ବ୍ରହ୍ମତେଜ ପ୍ରଚ୍ଛନ୍ନ ଥିଲା, ସେ ତାହା ଅନୁଭବ କରି ପାରି ନ ଥିଲେ ସେ ଭରତଙ୍କୁ ଶ୍ଳେଷବାକ୍ୟ କହିଲେ ।୫।

ରାଜା ପୁଣି ଭରତଙ୍କୁ ଲକ୍ଷ୍ୟକରି କହିଲେ "ଆରେ ବାବୁ ! ମୁଁ ବୁଝିପାରୁଛି ତୋର ବଡ଼ କଷ୍ଟ ହେଉଅଛି, ତୁ ଅନେକକ୍ଷଣ ଏକାକୀ ଏତେବାଟ ପାଲିଙ୍କି ବୋହି ତୋର ଶରୀର କ୍ଳାନ୍ତ ହୋଇ ପଡ଼ିଲାଣି, ତୋର ଶରୀର ମଧ୍ୟ ସ୍ଥୂଳ ନୁହେଁ, ଅବୟବମାନ ମଧ୍ୟ କୋମଳ ସେଥିରେ ପୁଣି ତୋତେ ଜରା ଆକ୍ରମଣ କଲାଣି, ଏମାନେ କେହି ମଧ୍ୟ ତୋ ସଙ୍ଗେ ବହନ କରୁନାହାନ୍ତି, ତେଣୁ ବଡ଼ ଶ୍ରାନ୍ତ ହୋଇ ପଡ଼ିଅଛୁ (ଏପରି ବିପରୀତାର୍ଥ ବୋଧକ ଶ୍ଳେଷ ବାକ୍ୟ ପ୍ରୟୋଗ କରିବାକୁ ଲାଗିଲେ) । ଏହିପରି ଉପହସିତ ହୋଇ ସେ ନୀରବରେ ପୂର୍ବବତ୍ ଶିବିକା ବହନ କରିବାକୁ ଲାଗିଲେ । କାରଣ, ଯେ କାରଣରୁ ଦେହ ଅବିଦ୍ୟାକଳ୍ପିତ ଭୂତ, ଇନ୍ଦ୍ରିୟ, ପାପପୁଣ୍ୟ, ଓ ଅନ୍ତଃକରଣ ଦ୍ୱାରା ରଚିତ ହୋଇଅଛି, ଅବସ୍ତୁସ୍ୱରୂପ ସଂସ୍ଥାନ ଆକାର ବିଶେଷ ଦ୍ୱାରା "ମୁଁ ଓ ମୋର" ଏହି ମିଥ୍ୟାଭିମାନ ତାଙ୍କର ନ ଥିଲା, ସେ ବ୍ରହ୍ମ ସ୍ୱରୂପରେ ଅବସ୍ଥାନ କରୁଥିଲେ ।୬।

---

ଏମନ୍ତେ ଭୃତ୍ୟବାକ୍ୟ ଶୁଣି
ସେ ଯେ ରାଜନ ଶିରୋମଣି
ଏହାଙ୍କୁ ସଂସର୍ଗଦୋଷରେ
କର୍ପା ଦଣ୍ଡିବା ଅବସରେ
ରାଜ ସ୍ୱଭାବେ ସାଧୁହୋଇ
ରଜୋଗୁଣରୁ କ୍ରୋଧବହି
ବିସ୍ମୃତ ଭକତ ନୃପବର
ଭରତେ ବୋଲନ୍ତି ଉତ୍ତର ।୫।

ପୁଷ୍ଟ ପୃଥୁଳ ତୋ ଶରୀର
କଠିନ ପୀନ ଗ୍ରୀବା ତୋର
ସ୍ଥୁଳତେ ଚଳୁ କି କାରଣ
ଏ ତୋର ଦେହ ନିସ୍ତାରଣ
ଏ କ୍ଷୁଦ୍ରେ ତୋର ସଙ୍ଗତରେ
ବିମାନ ବହନ୍ତି ଅପରେ
ବ୍ୟର୍ଥ ତୋହର କଳେବର
ମିଥ୍ୟାରେ ବହୁ ତୁ ଶରୀର

ଏମନ୍ତେ ଶୁଣି ପରିହସିତ
ସେ ଯେ ବ୍ରାହ୍ମଣ ବିସ୍ମୃତ ଭକ୍ତ
ଏମନ୍ତ ବଚନେ ମଉନ
ସ୍ୱଭାବେ ବହନ୍ତି ବିମାନ
ପୁଣି ବିମାନ ବକ୍ର ହେଲା
ସେ ରାଜା ଅତି କୋପ କଲା ।୬।

ଅଥ ପୁନଃ ସ୍ୱଶିବିକାୟାଂ ବିଷମଗତାୟାଂ ପ୍ରକୁପିତ ଉବାଚ ରହୂଗଣଃ କିମିଦମରେ ତ୍ୱଂ ଜୀବନ୍ମୃତୋଽସି ମାଂ କଦର୍ଥୀକୃତ୍ୟ ଭର୍ତୃଃ ଶାସନମତିଚରସି ପ୍ରମତ୍ତସ୍ୟ ଚ ତେ କରୋମି ଚିକିତ୍ସାଂ ଦଣ୍ଡପାଣିରିବ ଜନତାୟାଃ ଯଥା ସ୍ୱାଂ ପ୍ରକୃତିଂ ଭଜିଷ୍ୟସୀତି ।୭।

ଏବଂ ବହ୍ୱବଦ୍ଧମଭିଭାଷମାଣଂ ନରଦେବାଭିମାନଂ ରଜସା ତମସାନୁବିଦ୍ଧେନ ମଦେନ ତିରସ୍କୃତାଶେଷଭଗବତ୍ପ୍ରିୟନିକେତଂ ପଣ୍ଡିତମାନିନଂ ସ ଭଗବାନ୍ ବ୍ରାହ୍ମଣୋ ବ୍ରହ୍ମଭୂତଃ ସର୍ବଭୂତସୁହୃଦାତ୍ମା ଯୋଗେଶ୍ୱରଚର୍ଯାୟାଂ ନାତିବ୍ୟୁତ୍ପନ୍ନମତିଂ ସ୍ମୟମାନ ଇବ ବିଗତସ୍ମୟ ଇଦମାହ ।୮।

ଶ୍ରୀବ୍ରାହ୍ମଣ ଉବାଚ ।

ତ୍ୱୟୋଦିତଂ ବ୍ୟକ୍ତମବିପ୍ରଲବ୍ଧଂ ଭର୍ତୁଃ ସ ମେ ସ୍ୟାଦ୍ ଯଦି ବୀର ଭାରଃ ।
ଗନ୍ତୁର୍ଯଦି ସ୍ୟାଦଧିଗମ୍ୟମଧ୍ୱା ପୀବେତି ରାଶୌ ନ ବିଦାଂ ପ୍ରବାଦଃ । ୯ ।

---

ତଦନନ୍ତର ପୁଣି ଯେତେବେଳେ ଶିବିକା ବିଷମଭାବରେ ଚାଲିଲା, ସେତେବେଳେ ରାଜା ଓ ବାହକମାନେ ଅତ୍ୟନ୍ତ କ୍ରୁଦ୍ଧ ହୋଇ କହିଲେ—"ଆରେ, ତୁ କଣ ଜୀବନ୍ମୃତ ! ତୁ ପ୍ରଭୁଙ୍କୁ ଅବମାନନା କରୁଛୁ । ଯମ ଲୋକମାନଙ୍କର ଶାସ୍ତି ବିଧାନ କଲାପରି ଆମେ ତୋର ଶାସ୍ତି ବିଧାନ କରୁଅଛୁ, ତାହାହେଲେ ତୁ ସାବଧାନ ହେବୁ" । ୭ ।

ରାଜା ଏହିପରି ଅସଂବଦ୍ଧ ବାକ୍ୟ ପ୍ରୟୋଗ କରିବାକୁ ଲାଗିଲେ । ସେ ରାଜା ଓ ପଣ୍ଡିତ ବୋଲି ତାଙ୍କର ଅଭିମାନ ଥିଲା, କିନ୍ତୁ ଭଗବାନ୍ ବ୍ରାହ୍ମଣ ଭରତ ବ୍ରହ୍ମଭୂତ, ସର୍ବଭୂତର ସୁହୃତ୍ ଓ ଆତ୍ମା, ଭଗବାନଙ୍କର ପ୍ରିୟ ନିକେତନ ଓ ଗର୍ବ ରହିତ, ଯୋଗେଶ୍ୱରମାନେ ଯେ ତତ୍ତୁଲ୍ୟ ଆଚରଣ କରନ୍ତି, ରାଜା ସେ ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ଭରତ ଈଷତ୍ ହାସ୍ୟ କରି ନିରହଙ୍କାର ଭାବରେ କହିଲେ ।୮।

ଶ୍ରୀବ୍ରାହ୍ମଣ କହିଲେ :—

ହେ ରାଜନ୍ ! ଆପଣ ବକ୍ରୋକ୍ତି ଦ୍ୱାରା ଯାହା କହିଲେ, ତାହା ଯଥାର୍ଥ, କାରଣ ଦେହହିଁ ଭାର ବହନ କରେ, ଏହି ଭାର ଯଦି ଆତ୍ମା ବହନ କରୁଥାନ୍ତା, ତେବେ ଆପଣଙ୍କ ଉକ୍ତି ଅସମୀଚୀନ ହୁଅନ୍ତା। ଆପଣ ଯେ ମୋତେ "ସ୍ଥୂଳ ନୁହେଁ" ବୋଲି କହିଲେ ତାହା ମଧ୍ୟ ସତ୍ୟ, କାରଣ ମୁଁ ଆତ୍ମାସ୍ୱରୂପ, ମୋର ସ୍ଥୂଳତା ନାହିଁ, ସ୍ଥୂଳତା ବା କୃଶତା ଦେହର ଧର୍ମ, ତାହା ଆତ୍ମାରେ ଥାଇ ନ ପାରେ । ୯ ।

---

ଶ୍ରୀ ରାଜୋବାଚ—

ଆରେ ପାମର ! ମୂଢମତି !
ଜୀବନ ଥାଇଁ ତୁହି ମୃତ
ପ୍ରମତ୍ତ ଭାବକୁ ତୁ ଧରୁ
ଅଜ୍ଞ ଅବଜ୍ଞା ମୋର କରୁ
ଯମର ପ୍ରାୟ ମୁଁ ଅଟଇ
ଦୁଷ୍ଟର ଦର୍ପକୁ ନାଶଇ
ତୋହର ମତ୍ତ ଭାବ ମୁହିଁ
ଆଜହୁଁ ଦୂର କରିବଇଁ । ୭ ।

ଏମନ୍ତେ ଅତି ନିନ୍ଦାମାନ
ବହୁତ କଲା ସେ ରାଜନ
ରଜୋଗୁଣରୁ ତମ ତାର
ତମୋ ଗୁଣରୁ ଅହଙ୍କାର
ସେ ଯେ ବ୍ରାହ୍ମଣର କୁମର
ସକଳ ଭୂତେ ଦୟାପର
ଈଷତ ହାସ୍ୟ ବଦନରେ
ବଚନ କହନ୍ତି ରାଜାରେ । ୮ ।

ଶ୍ରୀ ବ୍ରାହ୍ମଣ ଉବାଚ—

ହେ ବୀର ! ଭାର ନାମ କେହି
ଭାର ବହଇ ଅବା କେହି
ହେ ନୃପ ! ଶୁଣ ସାବଧାନେ
ତୁମ୍ଭେ ଯେ କହିଲ ବଚନେ

ସ୍ଥୌଲ୍ୟଂ କାର୍ଶ୍ୟଂ ବ୍ୟାଧୟ ଆଧୟଶ୍ଚ କ୍ଷୁତ୍ତୃଡ୍ଭୟଂ କଲିରିଚ୍ଛା ଜରା ଚ ।
ନିଦ୍ରା ରତିର୍ମନ୍ୟୁରହଂ ମଦଃ ଶୁଚୋ ଦେହେନ ଜାତସ୍ୟ ହି ମେ ନ ସନ୍ତି । ୧୦ ।
ଜୀବନ୍ମୃତତ୍ୱଂ ନିୟମେନ ରାଜନ୍ନାଦ୍ୟନ୍ତବଦ୍ୟଦ୍ବିକୃତସ୍ୟ ଦୃଷ୍ଟମ୍ ।
ସ୍ୱସ୍ୱାମ୍ୟଭାବୋ ଧ୍ରୁବ ଈଡ୍ୟ ଯତ୍ର ତର୍ହ୍ୟୁଚ୍ୟତେଽସୌ ବିଧିକୃତ୍ୟଯୋଗଃ ।୧୧।
ବିଶେଷବୁଦ୍ଧେର୍ବିବରଂ ମନାକ୍ ଚ ପଶ୍ୟାମ ଯନ୍ନ ବ୍ୟବହାରତୋଽନ୍ୟତ୍ ।
କ ଈଶ୍ୱରସ୍ତତ୍ର କିମୀଶିତବ୍ୟମଥାପି ରାଜନ୍ କରବାମ କିଂ ତେ । ୧୨ ।
ଉନ୍ମତ୍ତମତ୍ତଜଡ଼ବତ୍ ସ୍ୱସଂସ୍ଥାଂ ଗତସ୍ୟ ମେ ବୀର ଚିକିତ୍ସିତେନ ।
ଅର୍ଥଃ କିୟାନ୍ ଭବତା ଶିକ୍ଷିତେନ ସ୍ତବ୍ଧପ୍ରମତ୍ତସ୍ୟ ଚ ପିଷ୍ଟପେଷଃ । ୧୩ ।

---

ସ୍ଥୂଳତା, କୃଶତା, ବ୍ୟାଧି, ଆଧି, କ୍ଷୁଧା, ତୃଷ୍ଣା, ଭୟ, କଳହ, ଇଚ୍ଛା, ଜରା, ନିଦ୍ରା, ରତି, କ୍ରୋଧ, ଅହଙ୍କାର, ମରଣ, ଓ ଶୋକ ଏମାନ ଦେହ ସହିତ ଉତ୍ପନ୍ନ । ଏ ସମସ୍ତ ଦେହାଭିମାନୀ ଜୀବର ଧର୍ମ, ଅଭିମାନ ଶୂନ୍ୟ ଆତ୍ମାର ଧର୍ମ ନୁହେଁ । ୧୦ ।

ହେ ରାଜନ୍ ! ତୁମ୍ଭେ ଯେ ମୋତେ ଜୀବନ୍ମୃତ ବୋଲି କହୁଅଛ, ତାହା ମଧ୍ୟ ଠିକ୍ । କାରଣ ଜଗତରେ ଯେତେ ପରିଣାମୀ ବସ୍ତୁଅଛି ସେ ସମସ୍ତ ଜୀବନ୍ମୃତ ; ପରିଣାମୀ ପଦାର୍ଥ ମାତ୍ରକର ଉତ୍ପତ୍ତି ଓ ବିନାଶ ସ୍ୱରୂପ ଜୀବନ ଓ ମରଣ ଅଛି । ହେ ମାନନୀୟ ! ଆପଣ ଯେ କହିଅଛନ୍ତି, ମୁଁ ଆପଣଙ୍କ ପ୍ରଭୁଙ୍କ ଆଜ୍ଞା ଲଙ୍ଘନ କରୁଅଛି ?—ସେ ବିଷୟରେ ମୋର ଏତିକିମାତ୍ର ବକ୍ତବ୍ୟ ଯେ ଯାହାର ଯଦି ସର୍ବଦା ପ୍ରଭୁ ଓ ଭୃତ୍ୟଭାବ ଥାନ୍ତା; ତାହାହେଲେ ନିଯୁକ୍ତ ଓ ତଦନୁସାରେ କାର୍ଯ୍ୟମାନ ସମ୍ଭବ ହୁଅନ୍ତା, କିନ୍ତୁ ଆଜି ଯେ ରାଜା କାଲି ସେ ଭୃତ୍ୟ, ସୁତରାଂ ନିଯୁକ୍ତ ଓ କାର୍ଯ୍ୟ ସମ୍ଭବ ନୁହେଁ । ୧୧ ।

ହେ ରାଜନ୍ ! ବ୍ୟବହାର ଭିନ୍ନ ରାଜା ଓ ଭୃତ୍ୟମଧ୍ୟରେ ଅନ୍ୟ ବିଶେଷ କିଛି ପାର୍ଥକ୍ୟ ନାହିଁ । କିଏ ଯେ ବାସ୍ତବରେ ପ୍ରଭୁ, କାହାର ଉପରେ ସେ ଭୃତ୍ୟରୂପେ ବ୍ୟବହାର କରେ, ତାହା ସହଜରେ ସ୍ଥିର କରାଯାଇ ନ ପାରେ, ତଥାପି ତୁମ୍ଭେ ଯଦି ପ୍ରଭୁ ଓ ଭୃତ୍ୟ ସମ୍ବନ୍ଧକୁ ନିତ୍ୟ ବୋଲି ମନେକର ତେବେ କହ ମୁଁ ତୁମ୍ଭର କି କାର୍ଯ୍ୟ କରିପାରେ ? । ୧୨ ।

ହେ ବୀର ! ମୁଁ ଉନ୍ମତ୍ତ, ମତ୍ତ, ଜଡ଼ ଏହା ତୁମ୍ଭେ ସ୍ଥୂଳ ବୁଦ୍ଧିରେ ଜାଣୁଥିଲେ ମଧ୍ୟ ମୁଁ ବ୍ରହ୍ମଭାବ ପ୍ରାପ୍ତ-ମୁକ୍ତ । ସୁତରାଂ ତୁମ୍ଭେ ଯେ କହୁଛ ମୋତେ ଦଣ୍ଡ ଦେବ, ସେଥିରେ ମୋର କଣ ଫଳହେବ ? କିମ୍ବା

---

ଗମନ କରି ନ ପାରଇଁ
ଅଟଇ ସ୍ଥୂଳ ମୋର ଦେହ
ଜୀବନ ମୃତ ଯେ ବୋଇଲ
ଏ କଥା ସତ୍ୟେଟ କହିଲ
ଯେ ସ୍ଥୂଳ କୃଶ ଅଧି ବ୍ୟାଧି
କ୍ଷୁଧା ପିପାସା ଭୟ ଆଦି
ନିଦ୍ରା ବିହାର କ୍ରୋଧ ଯେତେ
ମଦ ଅହଙ୍କାର ସହିତେ

ଦେହେ ଯା ଅଭିମାନ ଥାଇ
ତାହାର ତହିଁ ଏତେଥାଇ
ମୋହ ଦେହରେ ଏତେ ନାହିଁ
ଏଣୁ ଜୀବନ ମୃତ ମୁହିଁ
ବିଶେଷେ କହିଲି ରାଜନ
ବୃଥା ବିଷୟରେ ଏ ବଚନ
କେ ଅବା କାହାରେ ବହଇ
ଏମନ୍ତ ମୁହିଁ ନ ଦେଖଇ

କେ ବା ଈଶ୍ୱର କେ କିଙ୍କର
ଏମନ୍ତ ନ ଦେଖି ଅପର
ତୁମ୍ଭେ ଆମ୍ଭରେ ଏ ବଚନ
କେମନ୍ତେ କହିଲ ରାଜନ
ଆମ୍ଭେ କି କରିବୁ ତୁମ୍ଭରେ
ସ୍ୱଭାବେ ଏ ଜଡ଼ ଶରୀରେ
ପ୍ରମତ୍ତ ଜଡ଼ ଭାବ ମୁହିଁ
ବିମାନ କେବେ ବହି ନାହିଁ ।୯-୧୩

ଶ୍ରୀଶୁକ ଉବାଚ ।

ଏତାବଦନୁବାଦପରିଭାଷୟା ପ୍ରତ୍ୟୁଦୀର୍ଯ୍ୟ ସ ମୁନିବର ଉପଶମଶୀଳ ଉପରତାନାତ୍ମ୍ୟନିମିତ୍ତ ଉପଭୋଗେନ କର୍ମାରବ୍ଧଂ ବ୍ୟପନୟନ୍ ରାଜଯାନମପି ତଥୈବୋବାହ ॥

ସ ଚାପି ପାଣ୍ଡବେୟ ସିନ୍ଧୁସୌବୀରପତିସ୍ତତ୍ତ୍ୱଜିଜ୍ଞାସାୟାଂ ସମ୍ୟକ୍ ଶ୍ରଦ୍ଧୟାଧିକୃତାଧିକାରସ୍ତଦ୍ଧୃଦୟଗ୍ରନ୍ଥିବିମୋଚନଂ ଦ୍ୱିଜବଚ ଆଶ୍ରୁତ୍ୟ ବହୁଯୋଗଗ୍ରନ୍ଥସମ୍ମତଂ ତ୍ୱରୟାବରୁହ୍ୟ ଶିରସା ତତ୍ପାଦମୂଳମୁପସୃତଃ କ୍ଷମାପୟନ୍ ବିଗତନୃପଦେବସ୍ମୟ ଉବାଚ ।୧୫।

କସ୍ତ୍ୱଂ ନିଗୂଢଶ୍ଚରସି ଦ୍ୱିଜାନାଂ ବିଭର୍ଷି ସୂତ୍ରଂ କତମୋଽବଧୂତଃ ।
କସ୍ୟାସି କୁତ୍ରତ୍ୟ ଇହାପି କସ୍ମାତ୍ କ୍ଷେମାୟ ନଶ୍ଚେଦସି ନୋତ ଶୁକ୍ଲଃ । ୧୬ ।

---

ମୁଁ ଯଦି ମୁକ୍ତ ନ ହୋଇ ସ୍ତବ୍ଧ କିମ୍ବା ପ୍ରମତ୍ତ ହୁଏ, ତାହାହେଲେ ମଧ୍ୟ ମୋତେ ଦଣ୍ଡଦେଇ ଲାଭ କଅଣ ? କାରଣ ଜଡ଼ ବା ପ୍ରମତ୍ତ ବ୍ୟକ୍ତିର ଦଣ୍ଡବିଧାନ କରି, ତାକୁ ବୁଦ୍ଧିମାନ୍ କହିବା ଅସମ୍ଭବ, ତାହା ପିଷ୍ଟବସ୍ତୁକୁ ପୁନଃ ପେଷଣ ତୁଲ୍ୟ । ୧୩ ।

ଶ୍ରୀଶୁକଦେବ କହିଲେ—ଭରତଙ୍କର ଦେହ ଆତ୍ମବୁଦ୍ଧିନିବୃତ୍ତ ହୋଇଥିଲା ଏବଂ ସେ ଉପଶମଶୀଳ ହୋଇ ଥିଲେ, ସୁତରାଂ ଏତିକି ପ୍ରକାଶକରି ରାଜାଙ୍କବାକ୍ୟର ଉତ୍ତର ଦେଇ ମୌନହୋଇଥିଲେ । ଫଳଭୋଗଦ୍ୱାରା ଆରବ୍ଧକର୍ମକ୍ଷୟ ନିମନ୍ତେ ପୂର୍ବପରି ବିନା ଆପତ୍ତିରେ ରାଜାଙ୍କ ଶିବିକା ବହନ କରିଥିଲେ । ୧୪ ।

ହେ ପାଣ୍ଡୁବଂଶଧର ! (ପରୀକ୍ଷିତ) ! ସେହି ସିନ୍ଧୁ ସୌବୀର ପତି ତତ୍ତ୍ୱଜିଜ୍ଞାସାରେ ଶ୍ରଦ୍ଧାବାନ୍ ଥିଲେ ସୁତରାଂ ବହୁ ଯୋଗଶାସ୍ତ୍ର ସମ୍ମତ ହୃଦୟଗ୍ରନ୍ଥି ମୋଚନକାରୀ ସେହି ବ୍ରାହ୍ମଣବାକ୍ୟ ଶ୍ରବଣକରି ହଠାତ୍ ଶିବିକାରୁ ଅବତରଣ କରି ତାଙ୍କର ପାଦତଳେ ଶିର ଅବନତ କରିଥିଲେ ଏବଂ ରାଜୋଚିତ ଅଭିମାନ ପରିତ୍ୟାଗ କରି ତାଙ୍କ ନିକଟରେ କ୍ଷମାପ୍ରାର୍ଥନା କରିଥିଲେ । ୧୫ ।

ହେ ଭଦ୍ର ! ଆପଣ କଅଣ ବ୍ରାହ୍ମଣ, କ୍ଷତ୍ରିୟ ବା ବୈଶ୍ୟ ଜାତୀୟ କେହି ନିଗୂଢଭାବରେ ବିଚରଣ କରୁଅଛନ୍ତି ? କାରଣ ମୁଁ ଦେଖୁଛି ଯେ ଆପଣ ଦ୍ୱିଜକୁଳର ଚିହ୍ନ ଯଜ୍ଞୋପବୀତ ଧାରଣ କରିଅଛନ୍ତି, ଅଥବା ଆପଣ ଦତ୍ତାତ୍ରେୟାଦି ଅବଧୂତମାନଙ୍କ ମଧ୍ୟରେ କୌଣସି ଜଣେ ଅବଧୂତ ? ଆପଣ କାହାର ସନ୍ତାନ ? କେଉଁ ଦେଶରେ ଜନ୍ମ ? କି କାରଣରୁ ଏସ୍ଥାନକୁ ଆସିଅଛନ୍ତି ? ଯେବେ ମୋର ମଙ୍ଗଳ ସାଧନ ନିମିତ୍ତ ଏଠାକୁ ଆସିଥାନ୍ତି ତେବେ କଅଣ କପିଳ ମୁନି ? । ୧୬ ।

---

ଶ୍ରୀଶୁକ ଉବାଚ—

ଶୁଣ ପରୀକ୍ଷ ନୃପବର
ସେ ଯେ ବ୍ରାହ୍ମଣର କୁମର
ସୁଶୀଳ ସାଧୁ ସମ ଚିତ୍ତ
ବିଶେଷେ ବିଷ୍ଣୁର ଭକତ
ରାଜାର ବାକ୍ୟ ଅନୁସାରେ
ଏମନ୍ତ କହି ସେ ମଧୁରେ
ପ୍ରାରବ୍ଧ କର୍ମ କ୍ଷୟ ପାଇଁ
ପୁଣି ବହନ୍ତି ତୁନି ହୋଇ ।୧୪।

ଏମନ୍ତେ ଶୁଣ ନୃପବର
ବିଷୟ କର୍ମ କରି ଦୂର
ତତ୍ତ୍ୱ ଜିଜ୍ଞାସା ନିମନ୍ତରେ
ରାଜା ଯେ ଥାଏ ଶ୍ରଦ୍ଧାଭରେ
ବିପ୍ର ବଚନେ ତତ୍ତ୍ୱଜ୍ଞାନ
ବିଷୟ ଭ୍ରମ ତା ଖଣ୍ଡନ
ଅମୃତ ପ୍ରାୟ ତାଙ୍କ ବାଣୀ
ମନେ ଚିନ୍ତିଲା ନୃପମଣି
ତକ୍ଷଣେ ଶୀଘ୍ରତର ହୋଇ
ବିମାନୁ ପଡ଼ିଲା ଓହ୍ଲାଇ

ବ୍ରାହ୍ମଣ ପାଦ ଯୁଗଳରେ
ଶିର ସମର୍ପି ଭକ୍ତିଭରେ
କ୍ଷମା ମାଗଇ ଅପରାଧ
ବୋଲଇ ବାକ୍ୟ ଗଦ ଗଦ ।୧୫।
କେ ତୁମ୍ଭେ କହ ସ୍ୱାମି ! ମୋତେ
କରୁଣା କରି ଏ ଭଙ୍ଗରେ
ଗୁପତ ଭାବେ ଭ୍ରମୁ ଥାଅ
ବ୍ରାହ୍ମଣ ଭଳି ତୁମ୍ଭ ଦେହ
କି ଅବା ଅବଧୂତବରେ
କେମନ୍ତେ ମିଳିଲ ଏଠାରେ

ନାହଂ ବିଶଙ୍କେ ସୁରରାଜବଜ୍ରାନ୍ନ ତ୍ର୍ୟକ୍ଷଶୂଳାନ୍ ନ ଯମସ୍ୟ ଦଣ୍ଡାତ୍ ।
ନାଗ୍ନ୍ୟର୍କସୋମାନିଲବିତ୍ତପାସ୍ତ୍ରାଚ୍ଛଙ୍କେ ଭୃଶଂ ବ୍ରହ୍ମକୁଲାବମାନାତ୍ । ୧୭ ।
ତଦ୍ ବ୍ରୂହ୍ୟସଙ୍ଗୋ ଜଡବନ୍ନିଗୂଢ଼ବିଜ୍ଞାନବୀର୍ଯ୍ୟୋ ବିଚରସ୍ୟପାରଃ ।
ବଚାଂସି ଯୋଗଗ୍ରଥିତାନି ସାଧୋ ନ ନଃ କ୍ଷମନ୍ତେ ମନସାପି ଭେତ୍ତୁମ୍ । ୧୮ ।
ଅହଞ୍ଚ ଯୋଗେଶ୍ୱରମାତ୍ମତତ୍ତ୍ୱବିଦାଂ ମୁନୀନାଂ ପ୍ରବରଂ ଗୁରୁଂ ବୈ ।
ପ୍ରଷ୍ଟୁଂ ପ୍ରବୃତ୍ତଃ କିମିହାରଣଂ ଯତ୍ ସାକ୍ଷାଦ୍ଧରିଂ ଜ୍ଞାନକଳାବତୀର୍ଣ୍ଣମ୍ । ୧୯ ।
ସ ବୈ ଭବାନ୍ ଲୋକନିରୀକ୍ଷଣାର୍ଥମବ୍ୟକ୍ତଲିଙ୍ଗୋ ବିଚରତ୍ୟପିସ୍ୱିତ୍ ।
ଯୋଗେଶ୍ୱରାଣାଂ ଗତିମନ୍ଧବୁଦ୍ଧିଃ କଥଂ ବିଚକ୍ଷୀତ ଗୃହାନୁବନ୍ଧଃ । ୨୦ ।

---

ମୁଁ ଇନ୍ଦ୍ରଙ୍କର ବଜ୍ର, ମହାଦେବ ତ୍ରିଲୋଚନଙ୍କ ତ୍ରିଶୂଳ, ଯମଦଣ୍ଡ, ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ବାୟୁ ଓ କୁବେରଙ୍କର ଅସ୍ତ୍ରକୁ ସୁଦ୍ଧା ଭୟ କରେ ନାହିଁ, କେବଳ ବ୍ରାହ୍ମଣକୁଳର ଅସମ୍ମାନକୁ ଭୟକରେ । ୧୭ ।

ହେ ସାଧୋ ! ତୁମ୍ଭେ ତୁମ୍ଭର ପରିଚୟ ଦିଅ । ତୁମ୍ଭେ ବିଷୟାସକ୍ତି ତ୍ୟାଗକରି ବିଜ୍ଞାନ ଓ ବୀର୍ଯ୍ୟ ପ୍ରଚ୍ଛନ୍ନ ରଖି ଜଡ଼ତୁଲ୍ୟ ବ୍ୟବହାର କରୁଅଛ, ମୁଁ ତୁମ୍ଭର ସୀମା ଜାଣିପାରୁନାହିଁ । ତୁମ୍ଭେ ଯେଉଁ ଉତ୍ତର ଦେଇଛ, ସେ ବାକ୍ୟମାନ ଯୋଗଶାସ୍ତ୍ରସମ୍ମତ, ସୁତରାଂ ମନଦ୍ୱାରା ମଧ୍ୟ ମୁଁ ସେହିବାକ୍ୟ ଗୁଡ଼ିକ ଆଲୋଚନା କରି ସଂଶୟ ଦୂରକରି ପାରୁନାହିଁ । ୧୮ ।

ହେ ଯୋଗେଶ୍ୱର, ଆତ୍ମତତ୍ତ୍ୱଜ୍ଞ ମୁନିଶ୍ରେଷ୍ଠ ଯେ ଜ୍ଞାନ ଶକ୍ତିରେ ଅବତୀର୍ଣ୍ଣ ସାକ୍ଷାତ୍ ହରି, ସେହି କପିଳଦେବ ମୋର ଗୁରୁ, ଏ ସଂସାରରେ କାହାର ଆଶ୍ରୟ ଗ୍ରହଣ କରିବା କର୍ତ୍ତବ୍ୟ, ଏହା ଜାଣିବା ଲାଗି ମୁଁ ତାଙ୍କ ନିକଟକୁ ଯାଉଅଛି, ଆପଣ କଅଣ ଲୋକମାନଙ୍କଅବସ୍ଥା ଦେଖି ପ୍ରଚ୍ଛନ୍ନ ବେଶରେ ବିଚରଣ କରୁଅଛନ୍ତି ? ମୁଁ ଗୃହରେ ଆବଦ୍ଧ ଅନ୍ଧବୁଦ୍ଧି, ଯୋଗେଶ୍ୱରମାନଙ୍କ ତତ୍ତ୍ୱ ମୁଁ କାହୁଁ ବୁଝିବି ? । ୧୯,୨୦ ।

---

କାହିଁ ତୁମ୍ଭର ନିଜ ସ୍ଥାନ
କେମନ୍ତେ ବହିଲ ବିମାନ
ଏ ଅପରାଧ ଯେ ମୋହର
କ୍ଷମା ତୁ କର ଦ୍ୱିଜବର !
ଇନ୍ଦ୍ରାଦି ଯେତେ ଦେବ ହର
ପବନ ଅଗ୍ନି ଦିବାକର
ଏହାଙ୍କ କ୍ରୋଧକୁ ମୋହର
ଭୟ ଯେ ନାହିଁ ଦ୍ୱିଜବର !
ବ୍ରାହ୍ମଣ ଅପମାନେ ମୋର
ହୃଦ କମ୍ପଇ ଥରହର

ଏଣୁ ଅପରାଧ ମୋହର
କ୍ଷମା କରିବା ବିପ୍ରବର ।୧୬-୧୭।
ଅଶେଷ ଜ୍ଞାନର କାରଣ
ତୁ ନାଥ ବସ୍ତୁ ପରାୟଣ
ଅଜ୍ଞାନପ୍ରାଣିମାନଙ୍କରେ
ଦେଖାଉ ଏ ଜଡ଼ ଶରୀରେ
ତୋହର ଯେତେ ବାକ୍ୟମାନ
ଗ୍ରନ୍ଥିତ ହୋଇ ଅଛି ଜ୍ଞାନ ।୧୮।
ସକଳ ବର୍ଣ୍ଣ ଗୁରୁ ତୁହି
ହେନାଥ ପ୍ରଶ୍ନ ମୁଁ କରଇ

ଜ୍ଞାନ ସ୍ୱରୂପ ତୋ ଶରୀର
ହେ ନାଥ ! ମୋତେ କୃପାକର ।୧୯
ଅଭୂତ ଜଡ଼ ରୂପ ହୋଇ
ପ୍ରାଣିଙ୍କ ହିତେ ଭ୍ରମୁ ତୁହି
ହେନାଥ ! ବିପ୍ର ଯୋଗେଶ୍ୱର
ମୁଁ ମୂଢ଼ମତି ଯେ ପାମର
କେମନ୍ତେ ତୋତେ ଚିହ୍ନିବଇଁ
ସ୍ୱଭାବେ ମୋହବନ୍ଧେ ଥାଇ ।୨୦।

ଦୃଷ୍ଟଃ ଶ୍ରମଃ କର୍ମତ ଆତ୍ମନୋ ବୈ ଭର୍ତ୍ତୁର୍ଗନ୍ତୁର୍ଭବତଶ୍ଚାନୁମନ୍ୟେ ।
ଯଥାସତୋଦାନୟନାଦ୍ୟଭାବାତ୍ ସମୂଲ ଇଷ୍ଟୋ ବ୍ୟବହାରମାର୍ଗଃ । ୨୧ ।
ସ୍ଥାଲ୍ୟଗ୍ନି ତାପାତ୍ ପୟସୋଽପି ତାପସ୍ତତ୍ତାପତସ୍ତଣ୍ଡୁଲଗର୍ଭରନ୍ଧିଃ ।
ଦେହେନ୍ଦ୍ରିୟାସ୍ୱାଶୟସନ୍ନିକର୍ଷାତ୍ ତତ୍ ସଂସୃତିଃ ପୁରୁଷସ୍ୟାନୁରୋଧାତ୍ ।୨୨।
ଶାସ୍ତାଭିଗୋପ୍ତା ନୃପତିଃ ପ୍ରଜାନାଂ ଯଃ କିଙ୍କରୋ ବୈ ନ ପିନଷ୍ଟି ପିଷ୍ଟମ୍ ।
ସ୍ୱଧର୍ମମାରାଧନମଚ୍ୟୁତସ୍ୟ ଯଦୀହମାନୋ ବିଜହାତ୍ୟଘୌଘମ୍ । ୨୩ ।

---

ଆପଣ କହିଲେ ଆପଣଙ୍କର ଶ୍ରମନାହିଁ, କିନ୍ତୁ ମୁଁ ଯୁଦ୍ଧାଦିକର୍ମ କରି ଶ୍ରମଅନୁଭବ କରେ । ତେଣୁ ମୁଁ ଅନୁମାନ କରେ ଭାରବହନ କରି ଆପଣ ଶ୍ରମ ଅନୁଭବ କରୁଥିବେ । ଆତ୍ମାର ପରମାର୍ଥରୂପେ ଭାର ବହନ, ଗମନ ବା ପରିଶ୍ରମାଦି କିଛି ନ ଥିଲେ ମଧ୍ୟ ତଥାପି ଯେପରି ଅସଦ୍‌ବସ୍ତୁ ଘଟାଦିଦ୍ୱାରା ଜଳ ଆନୟନ ଆଦି ରୂପ ଅର୍ଥ କ୍ରିୟା କାରିତ୍ୱ ସମ୍ଭବ ହୁଏନାହିଁ ବୋଲି ବ୍ୟବହାର କାରିକ ଭାବରେ ତାହାର ସାମଞ୍ଜସ୍ୟ ପ୍ରମାଣ ସିଦ୍ଧ, ସେହିପରି ଆତ୍ମାର ଶ୍ରମାଦିମଧ୍ୟ ବ୍ୟବହାରିକ ଦୃଷ୍ଟିରେ ଅସାମଞ୍ଜସ ନୁହେଁ ( ଅର୍ଥାତ୍ ପ୍ରକୃତ ଘଟରେ ଜଳ ଅଣାଯାଇ ପାରେ, କାଳ୍ପନିକ ଘଟରେ ଜଳ ଆଣିବା ଅସମ୍ଭବ ) । ୨୧ ।

ଆତ୍ମାର ଶାନ୍ତି ଅସମ୍ଭବ ବୋଲି ଆପଣ କହି ଅଛନ୍ତି—ମାତ୍ର ତାହା ଠିକ ନୁହେଁ, କାରଣ ରନ୍ଧନ ପାତ୍ରରେ ଉତ୍ତାପ ଲାଗିଲେ ପାତ୍ର ମଧ୍ୟସ୍ଥିତ ଜଳ ଉତ୍ତପ୍ତ ହୁଏ, ସେ ଉତ୍ତାପ ପ୍ରଥମତଃ ତଣ୍ଡୁଳର ବହିର୍ଭାଗ ଉତ୍ତାପିତ କରେ । ଏଥିରେ ମିଥ୍ୟା କିଛିମାତ୍ର ନାହିଁ, ସେହିପରି ଗ୍ରୀଷ୍ମକାଳରେ ଦେହରେ ଉତ୍ତାପଲାଗିଲେ ଇନ୍ଦ୍ରିୟମାନ ଉତ୍ତପ୍ତ ହୁଅନ୍ତି ତହିଁରୁ ପ୍ରାଣ ଓ ମନଉତ୍ତପ୍ତ ହୁଏ, ତହିଁ ଦ୍ୱାରା ଆତ୍ମାର ସନ୍ତାପ ଘଟେ ।୨୨

ଆପଣ ସ୍ୱାମୀ ଓ ଭୃତ୍ୟଭାବର କଥା ଯାହା କହିଛନ୍ତି ତାହା ମଧ୍ୟ ଠିକ୍ ନୁହେଁ । ସ୍ୱାମୀ ଓ ଭୃତ୍ୟ ଭାବ ପରିବର୍ତ୍ତନଶୀଳ ହେଲେ ମଧ୍ୟ ଯେତେବେଳେ ଯେ ରାଜା ସେତେବେଳେ ସେ ପ୍ରଜାମାନଙ୍କର ଶାସନ କର୍ତ୍ତା ଓ ରକ୍ଷାକର୍ତ୍ତା । ଶିକ୍ଷାଦ୍ୱାରା ଜଡ଼ସ୍ୱଭାବବ୍ୟକ୍ତିର ସ୍ୱଭାବ ପରିବର୍ତ୍ତିତ ହୁଏ ନାହିଁ, ତଥାପି ରାଜା ତାହାଙ୍କୁ ଶିକ୍ଷା ଦାନ କଲେ, ତାହା ନିଷ୍ଫଳ ହୁଏ ନାହିଁ । କାରଣ ରାଜା ଈଶ୍ୱରଙ୍କର ଦାସ । ଈଶ୍ୱରାଦେଶ ପାଳନ କଲେ ତାଙ୍କର କ୍ରିୟା ସଫଳ ହୋଇଥାଏ । କାରଣ ଭଗବତ୍ ଆରାଧନାକରି ଯେ ସ୍ୱଧର୍ମ ପାଳନ କରେ ତା ପକ୍ଷରେ ଅସଙ୍ଗତ କିଛି ନାହିଁ । ୨୩ ।

---

ଏ ଯେ ମୋହର ଅନୁଚର
ଅତ୍ୟନ୍ତ ମୂଢ଼ ଦୁରାତ୍ମାର
ଅଜ୍ଞାନ ରୂପେ ଆଣି ଦେଲା
ଦଇବ ଘଟଣ ହୋଇଲା
ଭାର ବହିଲି ଶ୍ରମ ହୋଇ
ତୁ କିମ୍ପା ବୋଲୁ ଶ୍ରମ ନାହିଁ
ସକଳ ବସ୍ତୁ ଏ ଜଗତେ
ମିଥ୍ୟା ତୁ ବୋଲୁ ବା କେମନ୍ତେ
ଘଟାଦି ମିଥ୍ୟା ଯେବେ ହୋଇ
କେମନ୍ତେ ଜଳ ଆଣି ତହିଁ ।୨୧।

ଆତ୍ମାର ସ୍ଥୂଳ କୃଶ ଭାବ
କେମନ୍ତେ ନୁହଇ ସମ୍ଭବ
ଅଗ୍ନିର ତାପ ପାତ୍ରେ ଯାଇ
ସେ ତାପେ ଜଳ ଉଷ୍ମ ହୋଇ
ତହୁଁ ତଣ୍ଡୁଳ ତାପ ପାଇ
ଅନ୍ନ ରୂପରେ ସିଦ୍ଧ ହୋଇ
ତେସନ ଗ୍ରୀଷ୍ମ ଦେହ ତାପେ
ସେ ତାପ ଇନ୍ଦ୍ରିୟଗଣେ ବ୍ୟାପେ
ଇନ୍ଦ୍ରିୟରୁ ପ୍ରାଣେ ପ୍ରାଣୁ ମନେ
ଜୀବ ତା ଭୁଞ୍ଜଇ ତପନେ

ଉପାଧି ଧର୍ମ ପୁରୁଷର
କେମନ୍ତେବୋଲୁ ନୁହେ ତାର ।୨୨
ତୁ ଯେ ବୋଇଲୁ ଏହା ସତ୍ୟ
କେ ଅବା ପ୍ରଭୁ କେ ବା ଭୃତ୍ୟ
ତଥାପି ରାଜା ପ୍ରଜା ଭାବ
ଅବଶ୍ୟ ସଂସାରେ ରହିବ,
ବିଚାରି କରି ଧର୍ମାଧର୍ମ
କରିବ ଦଣ୍ଡ ଯେ ପାଳନ
କୃଷ୍ଣ ଆଦେଶ ମାନି କଲେ
ପାପ ନ ଲାଗେ ତାକୁ ଭଲେ ।୨୩।

ତନ୍ମେ ଭବାନ୍ ନରଦେବାଭିମାନମଦେନ ତୁଚ୍ଛୀକୃତସତ୍ତମସ୍ୟ ।
କୃଷୀଷ୍ଟ ମୈତ୍ରୀଦୃଶମାର୍ତ୍ତବନ୍ଧୋ ଯୟା ତରେ ସଦବଧ୍ୟାନମଂହଃ । ୨୪ ।
ନ ବିକ୍ରିୟା ବିଶ୍ୱସୁହୃତ୍‌ସଖସ୍ୟ ସାମ୍ୟେନ ବୀତାଭିମତେସ୍ତବାପି ।
ମହଦ୍‌ବିମାନାତ୍ ସ୍ୱକୃତାଦ୍ଧି ମାଦୃଙ୍‌ନଂକ୍ଷ୍ୟତ୍ୟଦୂରାଦପି ଶୂଳପାଣିଃ । ୨୫ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ
ଜଡଭରତଚରିତେ ରହୂଗଣସମ୍ବାଦୋ ନାମ ଦଶମୋଽଧ୍ୟାୟଃ । ୧୦ ।

---

ହେ ଆର୍ତ୍ତଜନ ବନ୍ଧୁ ! ମୁଁ ଅଜ୍ଞାନବଶତଃ ରାଜତ୍ୱର ଅହଙ୍କାର କରି ନିଜକୁ ସର୍ବ ବିଷୟରେ ଶ୍ରେଷ୍ଠ ମନେ କରି ଆପଣଙ୍କପରି ସାଧୁ ଓ ବିଜ୍ଞବ୍ୟକ୍ତିଙ୍କୁ ତୁଚ୍ଛ କରିଥାଏ । ଆପଣ ମୋପ୍ରତି ଏପରି ସ୍ନେହଯୁକ୍ତ ଦୃଷ୍ଟି ଦିଅନ୍ତୁ, ଯଦ୍ୱାରା ଅବଜ୍ଞାଜନିତ ମହାପାତକରୁ ମୁଁ ରକ୍ଷା ପାଇବି । ୨୪ ।

ଆପଣ ବିଶ୍ୱବନ୍ଧୁ ଭଗବାନଙ୍କର ଏକମାତ୍ର ଭକ୍ତ, ଆପଣଙ୍କ ଦେହରେ ଅଭିମାନ ନାହିଁ । ଆପଣ ସମସ୍ତଙ୍କୁ ସମାନ ମନେକରି ଥାନ୍ତି, ମୋର ତିରସ୍କାରରେ ଆପଣଙ୍କର ବିକାର ନ ହେଲେ ମଧ୍ୟ ମହାଦେବଙ୍କ ତୁଲ୍ୟ ପ୍ରଭୁତ୍ୱସମ୍ପନ୍ନ ହୋଇ ମଧ୍ୟ ମୋପରି ବ୍ୟକ୍ତି ନିଜକୃତ ମହତ୍ ଅପମାନ ହେତୁ ଶୀଘ୍ର ବିନାଶ ପ୍ରାପ୍ତ ହେବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ୨୫ ।

---

ମୁଁ ତୋତେ କଲି ଅପମାନ
ଏ ଦୋଷ ମୋହର ନ ଘେନ । ୨୪
ତୋହର ମାନ ଅପମାନ
ତୁଲ୍ୟ ବା ହୋଇବୁ ଏସନ
ତଥାପି ମହତ ଲଙ୍ଘନ
ଦୋଷେ ମୁଁ ନାଶ ଯିବି ଜାଣ

ଏଣୁ ମାଗଇ କ୍ଷମା କର
ଯେଣୁ ତୁ କାତର ବତ୍ସଳ
ଶୁଣ ରାଜନ ସାବଧାନେ
ସେ ବିପ୍ର ନୃପତି ବଚନେ
ଜ୍ଞାନ ବୈରାଗ୍ୟ ଆଦି କରି
ସକଳ ଅଛି ତହିଁ ପୂରି । ୨୫ ।

ଗୋବିନ୍ଦ ପଦ୍ମ ପାଦ-ତଳେ
ମୋ ମନ ରହିବ ନିଶ୍ଚଳେ
ପଞ୍ଚମସ୍କନ୍ଧ ଏହୁ ବାଣି
ଶୁଣି ସଂସାରୁ ତର ପ୍ରାଣି !
କୃଷ୍ଣ ଚରିତ ସୁଧା ରସ
କହଇ ଜଗନ୍ନାଥ ଦାସ ।

---

**ବିଶେଷାର୍ଥ :—**

ଭଦ୍ରକାଳୀ ଜନନୀ ଭରତଙ୍କୁ ରକ୍ଷା କରିବା ନିମିତ୍ତ ଦସ୍ୟୁମାନଙ୍କୁ ବିନାଶ କରି ଅନ୍ତର୍ହିତ ହୋଇଥିଲେ । ଭରତ ନିର୍ଲିପ୍ତ, ସମ୍ପଦ, ବିପଦ, ସୁଖ, ଦୁଃଖ, ଆନନ୍ଦ, ନିରାନନ୍ଦ ଏ ଜ୍ଞାନ ତାଙ୍କର ନ ଥିଲା । ଆସନ୍ନ ବିପଦରୁ ରକ୍ଷାପାଇ ସେ କୌଣସି ପ୍ରକାର ଆନନ୍ଦ ଅନୁଭବ କରି ନ ଥିଲେ । ନିର୍ଲିପ୍ତ ଭାବରେ ସେ ଅରଣ୍ୟ ମଧ୍ୟରେ ଭ୍ରମଣ କରୁଥିଲେ । ସିନ୍ଧୁ ସୌବୀର ଦେଶାଧିପତି ତତ୍ତ୍ୱ ବିଷୟ ଅବଗତ ହେବା ନିମନ୍ତେ କପିଳାଶ୍ରମକୁ ଗମନ କରୁଥିଲେ । ତାହାଙ୍କର ଶିବିକା ବାହକ ଜଣେ ଅଭାବ ହେବାରୁ ତାହାଙ୍କୁ ବାହକ କାର୍ଯ୍ୟରେ ନିଯୁକ୍ତ କରି ଯାଇଥିଲା । ସେ ସର୍ବଦା କର୍ତ୍ତବ୍ୟ ପରାୟଣ, ଯେ ଯେଉଁ କାର୍ଯ୍ୟରେ ଲଗାଇ ଅଛି ସେ ତହିଁରେ ଅବହେଳା କରି ନାହାନ୍ତି । ମହାନୁଭବ ଭରତ କଷ୍ଟ ସହିଷ୍ଣୁ ହେଲେ ମଧ୍ୟ ପୂର୍ବେ କେବେ ଶିବିକା ବହନ କରି ନ ଥିଲେ । ତେଣୁ ବାଟ ଚାଲିଲାବେଳେ ତାଙ୍କର ପଦ କ୍ଷେପ ଦୋଷରୁ

ରାଜାଙ୍କର ଶିବିକା ସୁବିଧା ମତେ ଚାଲୁ ନ ଥିଲା । ଏଥିରେ ରାଜା କ୍ରୁଦ୍ଧ ହୋଇ ଶିବିକାବାହକ ମାନଙ୍କୁ ତିରସ୍କାର କରିଥିଲେ । ଶିବିକାବାହକମାନେ କହିଲେ ମହାରାଜ ! ଆମ୍ଭମାନଙ୍କର କୌଣସି ଦୋଷ ନାହିଁ । ଏହି ନୂଆ ଲୋକଟି ଯୋଗେ ସମସ୍ତ ବ୍ୟତିକ୍ରମ ଘଟୁଅଛି । ରାଜା ଭରତଙ୍କୁ ଜାଣି ନ ଥିଲେ । ସେ ତାହାଙ୍କୁ ସାଧାରଣ ଶିବିକାବାହକ ତୁଲ୍ୟ ଜ୍ଞାନକରି ଶ୍ଳେଷବାକ୍ୟରେ ତିରସ୍କାର କରିଥିଲେ । ରାଜା କପିଳାଶ୍ରମକୁ ତତ୍ତ୍ୱ ଜିଜ୍ଞାସା କରିବାକୁ ଯାଉଥିବାରୁ ଜଣାପଡେ ଯେ ସେ ନିକୃଷ୍ଟ ଚରିତ୍ର ବ୍ୟକ୍ତି ନ ଥିଲେ । ବୃଦ୍ଧ ସେବାରେ ତାହାଙ୍କର ଅନୁରାଗ ଥିଲା । ଅସାଧୁ କାର୍ଯ୍ୟ ପ୍ରତି ତାହାଙ୍କର ଘୃଣାଭାବ ଥିଲା । ତାହା ହେଲେ ମଧ୍ୟ ରଜୋଗୁଣ ପ୍ରଭାବରେ ତାହାଙ୍କ ଅନ୍ତଃକରଣ ସାତ୍ତ୍ୱିକ ନିର୍ମଳତା ଲୋପ ପାଇ ଯାଇଥିଲା । ତା ନ ହେଲେ ସେ ଜଣେ ଅଜ୍ଞାତବ୍ୟକ୍ତିକୁ ଜୋରର ଶିବିକାବାହକ କାର୍ଯ୍ୟରେ ନିଯୁକ୍ତ କରି ନ ଥାନ୍ତେ । ସେହି ରଜୋଗୁଣ ପ୍ରଭାବରୁ ସେ ମହାତ୍ମା ଭରତଙ୍କୁ ମଧ୍ୟ ଚିହ୍ନି ପାରି ନ ଥିଲେ । ଭସ୍ମାଚ୍ଛାଦିତ ବହ୍ନି ତୁଲ୍ୟ ତାହାଙ୍କ ଠାରେ ବ୍ରହ୍ମତେଜ ଲୁକ୍କାୟିତ ଥିଲା । ତିରସ୍କୃତ ହେଲେ ମଧ୍ୟ ଭରତ ପୂର୍ବପରି ଚାଲୁଥିଲେ । ରାଜା ଯେତେବେଳେ ତାଙ୍କ ପ୍ରତି କଠୋର ଦଣ୍ଡ ବିଧାନ କରିବେ ବୋଲି ଭୟ ପ୍ରଦର୍ଶନ କରିଥିଲେ । ଭରତ ଦେଖିଲେ ଏତେବେଳେ ନୀରବ ରହିଲେ ଚଳିବ ନାହିଁ । ସେ ଈଷତ୍ ହାସ୍ୟ କରି ରାଜାଙ୍କର ପ୍ରତ୍ୟେକ ଶ୍ଳେଷବାକ୍ୟର ଉତ୍ତର ଦେଇଥିଲେ ।

ରାଜା କହିଥିଲେ "ଜୀବନ୍ମୃତୋଽସି" ତୁ କଅଣ ଜୀଇଁକରି ମରିଅଛୁ ? ଏହି ବାକ୍ୟ ଦ୍ୱାରା ଜୀବାତ୍ମାର ଜୀବତତ୍ତ୍ୱ ଓ ମୃତତ୍ୱ ଉଭୟ ସୂଚନା କରାଯାଉଅଛି । ତାହା ଅନ୍ୟାଯ୍ୟ ନୁହେଁ ବୋଲି ଭରତ ତାହାଙ୍କର ଉତ୍ତରରେ କହିଥିଲେ । ଜଗତରେ ଯେତେବସ୍ତୁ ଅଛି ତାହା ପ୍ରକୃତିର ବଶରେ ପରିଣତି ପ୍ରାପ୍ତ ହୁଏ । ସମସ୍ତ ବସ୍ତୁର ଉତ୍ପତ୍ତି ଓ ବିନାଶ ଅଛି; ଯେଉଁ ବସ୍ତୁର ଉତ୍ପତ୍ତି ପୂର୍ବେ ବିଦ୍ୟମାନ ଥିଲା, କାରଣ ବିଶେଷ ସମ୍ବନ୍ଧ ବଶତଃ ପରେ ଉତ୍ପନ୍ନ ହେଲା ପୁଣି କାଳକ୍ରମେ ବିନାଶ ହେଲା । ସାଧାରଣ ଦୃଷ୍ଟିରେ ସମସ୍ତ ବସ୍ତୁର ଉତ୍ପତ୍ତି ଓ ବିନାଶ ଘଟୁଥିଲେ ମଧ୍ୟ ଅଲୌକିକ ଦୃଷ୍ଟି ସମ୍ପନ୍ନ ମନୀଷିଗଣ ଏହା ଉପଲବ୍ଧି କରିଥାନ୍ତି । ଜଗତରେ ଏକମାତ୍ର ବ୍ରହ୍ମହିଁ ପରମାର୍ଥ ସତ୍ୟ । ତାର ଉତ୍ପତ୍ତି ବା ବିନାଶ ନାହିଁ । ଜୀବାତ୍ମା ମଧ୍ୟ ଏହି ଜଗତର ଅନ୍ତର୍ଗତ ବୋଲି ତାହାର ଉତ୍ପତ୍ତି ଓ ବିନାଶ ଅଛି । ସୁତରାଂ ଆପଣ ଯେ ଜୀବନ୍ମୃତ ବୋଲି କହିଅଛନ୍ତି ତାହା ଯଥାର୍ଥ

ରାଜା ପୁନଶ୍ଚ ପ୍ରଭୁକର୍ତ୍ତୃକ ଭୃତ୍ୟର ଶାସନ ବିଷୟ ଉଲ୍ଲେଖ କରିଥିଲେ । ଅର୍ଥାତ୍ ସେ ପ୍ରଭୁ ଓ ଭରତ ଭୃତ୍ୟ ଏହା ଉଲ୍ଲେଖ କରିଥିଲେ; ଏଥିର ଉତ୍ତରରେ ଭରତ କହିଲେ ସ୍ୱକୃତ କର୍ମଫଳ ଅନୁସାରେ ଜୀବ ଜନ୍ମଲାଭ କରି କେହି ସ୍ୱାମୀ ବା କେହି ଭୃତ୍ୟ ହୋଇଥାଏ । କେତେବେଳେ ରାଜା ଭୃତ୍ୟ ହୁଏ, କେତେବେଳେ ଭୃତ୍ୟ ରାଜା ହୁଏ, ଏ ଜନ୍ମରେ ନ ହେଲେ ମଧ୍ୟ ଅନ୍ୟ ଜନ୍ମରେ ତାହା ଘଟିଥାଏ । ସୁତରାଂ ପ୍ରଭୁ ଭୃତ୍ୟ ଭାବ ନିର୍ଦ୍ଦେଶ କରିବା ଉଚିତ ନୁହେଁ । ଏହିପରି ପ୍ରତ୍ୟେକ ଶ୍ଳେଷ ବାକ୍ୟର ଉତ୍ତର ଶୁଣି ରାଜା ଭରତଙ୍କର ଯଥାର୍ଥ ପରିଚୟ ଜାଣିବାକୁ ଉତ୍ସୁକ ହୋଇଥିଲେ । ରାଜା ଭରତଙ୍କଠାରେ ବ୍ରାହ୍ମଣ ଚିହ୍ନ ସ୍ୱରୂପ ଯଜ୍ଞୋପବୀତ ଦେଖି କହିଲେ "ମୁଁ ଆପଣଙ୍କର ଯଥାର୍ଥ ପରିଚୟ ଜାଣେ ନାହିଁ, ଆପଣ କଣ କପିଳମୁନି ! ମୁଁ ଆପଣଙ୍କୁ ତିରସ୍କାର କରି ଘୋର ଅପରାଧ କରିଅଛି । ମୁଁ ଇନ୍ଦ୍ରର ବଜ୍ର; ମହାଦେବଙ୍କର ତ୍ରିଶୂଳ, ଯମର ଦଣ୍ଡ, ଅଗ୍ନି, ସୂର୍ଯ୍ୟ, କୁବେର ପ୍ରଭୃତିଙ୍କର ଆୟୁଧକୁ ଭୟ କରେ ନାହିଁ । କିନ୍ତୁ ଭୟ କରେ ବ୍ରାହ୍ମଣର ଅବମାନନାକୁ । ମୁଁ ଆଜି ବ୍ରାହ୍ମଣର ଅବମାନନା କରିଅଛି । ମୋତେ ଆପଣ କ୍ଷମା ଦିଅନ୍ତୁ, ନତେତ୍ ମୋର ମୁକ୍ତି ନାହିଁ" ।

## ଏ କା ଦ ଶ ଅ ଧ୍ୟା ୟ ।

ଏକାଦଶେଽଥ ସଂପୃଷ୍ଟୋ ରହୂଗଣମହୀଭୁଜା ।
ଉପାଦିଶତ୍ ପରଂ ଜ୍ଞାନଂ ସ ଯୋଗୀଶ ଇତୀର୍ଯ୍ୟତେ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀବ୍ରାହ୍ମଣ ଉବାଚ ।

ଅକୋବିଦଃ କୋବିଦବାଦବାଦାନ୍ ବଦସ୍ୟଥୋ ନାତି ବିଦାଂ ବରିଷ୍ଠଃ ।
ନ ସୂରୟୋ ହି ବ୍ୟବହାରମେତଂ ତତ୍ତ୍ୱାବମର୍ଶେନ ସହାମନନ୍ତି । ୧ ।
ତଥୈବ ରାଜନ୍ନୁରୁଗାର୍ହମେଧବିତାନବିଦ୍ୟୋରୁବିଜୃମ୍ଭିତେଷୁ ।
ନ ବେଦବାଦେଷୁ ହି ତତ୍ତ୍ୱବାଦଃ ପ୍ରାୟେଣ ଶୁଦ୍ଧୋ ନୁ ଚକାସ୍ତି ସାଧୁଃ । ୨ ।

---

### ଭରତଙ୍କର ସୌବୀରୀ ଅଧିପତିଙ୍କୁ ତତ୍ତ୍ୱୋପଦେଶ ।

ଏକାଦଶ ଅଧ୍ୟାୟରେ ରାଜା ରହୂଗଣଙ୍କ କର୍ତ୍ତୃକ ପୃଷ୍ଟହୋଇ ଭରତ ରାଜାଙ୍କୁ ଜ୍ଞାନ ଉପଦେଶ ଦେଇଥିଲେ ।୦।

ଶ୍ରୀ ବ୍ରାହ୍ମଣ କହିଲେ :—

" ହେ ରାଜନ୍ ! ତୁମ୍ଭେ ବାସ୍ତବରେ ତତ୍ତ୍ୱ ବିଷୟରେ ବିଶେଷ ଅଭିଜ୍ଞ ନ ହେଲେ ମଧ୍ୟ ଅଭିଜ୍ଞ ପରି କଥା କହୁଅଛ । ମୁଁ ତୁମ୍ଭଙ୍କୁ ବିଦ୍ୱାନମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ବୋଲି କହିପାରୁ ନାହିଁ । ଯେଉଁମାନେ ତତ୍ତ୍ୱଦର୍ଶୀ ପଣ୍ଡିତ, ସେମାନେ ଏହି ସ୍ୱାମୀ ଓ ଭୃତ୍ୟ ବିଷୟକ ତତ୍ତ୍ୱକୁ ବିଚାରକରି ସତ୍ୟନିର୍ଣ୍ଣୟ କରି ପାରନାହାନ୍ତି । ୧ ।

ସେହିପରି କର୍ମକାଣ୍ଡ ବେଦରେ ଯେଉଁ ସମସ୍ତ ଉପଦେଶ ଦିଆଯାଇଅଛି, ତାହା ଗୃହସ୍ଥର ଯଜ୍ଞ-ନୁଷ୍ଠାନ ବିସ୍ତାର ଭିନ୍ନ ଅନ୍ୟ କିଛିନୁହେଁ । ଏହି ସମସ୍ତ କାମ୍ୟ କର୍ମରୁ ଯେ ସ୍ୱର୍ଗାଦି ଫଳ ଉତ୍ପନ୍ନ ହୁଏ, ତାହା ମଧ୍ୟ ମିଥ୍ୟା । ତେବେ ନିଷ୍କାମ କର୍ମର ଫଳ ସତ୍ୟ ହୋଇଥାଏ, ଏଥିରେ ସନ୍ଦେହ ନାହିଁ । ସୁତରାଂ କର୍ମକାଣ୍ଡ ବେଦ ଯେଉଁ ବିଷୟ ଅବଲମ୍ବନ କରି ସମଧିକ ବର୍ଣ୍ଣନା କରିଅଛି ତହିଁରେ ହିଂସା ଓ ରାଗାଦିଶୂନ୍ୟ ତତ୍ତ୍ୱକଥା 'ପ୍ରାୟ' ପ୍ରକାଶିତ ହୋଇନାହିଁ । ୨ ।

---

ରହୂଗଣଙ୍କୁ ଏକାଦଶେ । ଜଡ଼ଭରତ ଜ୍ଞାନ ଦିଅନ୍ତେ ।୦।

ଶ୍ରୀବ୍ରାହ୍ମଣଉବାଚ—

ହେ ନୃପ ଶୁଣ ସାବଧାନେ
ତୁ ଯେ କହିଲୁ ଅନୁମାନେ
ମୂର୍ଖ ପଣ୍ଡିତ ପ୍ରାୟମତ
ଏ କଥା ଅଟଇ ଉଚିତ
ତଥାପି ପଣ୍ଡିତ ତୁ ନୋହୁ
ପଣ୍ଡିତ ପ୍ରାୟେ କଥା କହୁ
କେ କାହା ସ୍ୱାମୀ, କେବା ଭୃତ୍ୟ
ଏମନ୍ତ ଜାଣ ନରନାଥ
ଅଜ୍ଞାନ ବଶୁଁ ଦେଖୁ ଭିନ୍ନ
ତତ୍ତ୍ୱ ବିଚାରେ ସର୍ବ ସମ । ୧ ।
ଅପରେ ଶୁଣ ହେ ରାଜନ !
ଗୃହ କର୍ମରେ ଯେତେ ଜନ
ସ୍ୱକର୍ମ ବିଦ୍ୟାକୁ ଆଚରେ
ତତ୍ତ୍ୱ ଜ୍ଞାନକୁ ମନେ ଧରେ
ପଣ୍ଡିତ ବୋଲିବା ତାହାରେ
ସେ ଶୁଦ୍ଧ ଏ ଘୋର ସଂସାରେ

ନ ତସ୍ୟ ତତ୍ତ୍ୱଗ୍ରହଣାୟ ସାକ୍ଷାଦ୍ ବରୀୟସୀରପି ବାଚଃ ସମାସନ୍ ।
ସ୍ୱପ୍ନେ ନିରୁକ୍ତ୍ୟା ଗୃହମେଧି ସୌଖ୍ୟଂ ନ ଯସ୍ୟ ହେୟାନୁମିତଂ ସ୍ୱୟଂ ସ୍ୟାତ୍ ।୩
ଯାବନ୍ମନୋ ରଜସା ପୁରୁଷସ୍ୟ ସତ୍ତ୍ୱେନ ବା ତମସା ବାନୁରୁଦ୍ଧମ୍ ।
ଚେତୋଭିରାକୂତିଭିରାତନୋତି ନିରଙ୍କୁଶଂ କୁଶଲଞ୍ଚେତରଂ ବା । ୪ ।
ସ ବାସନାତ୍ମା ବିଷୟୋପରକ୍ତୋ ଗୁଣପ୍ରବାହୋ ବିକୃତଃ ଷୋଡ଼ଶାତ୍ମା ।
ବିଭ୍ରତ୍ପୃଥଙ୍ନାମଭିରୂପଭେଦମନ୍ତର୍ବହିଷ୍ଟ୍ୱଞ୍ଚ ପୁରୈସ୍ତନୋତି । ୫ ।
ଦୁଃଖଂ ସୁଖଂ ବ୍ୟତିରିକ୍ତଞ୍ଚ ତୀବ୍ରଂ କାଲୋପପନ୍ନଂ ଫଲମାବ୍ୟନକ୍ତି ।
ଆଲିଙ୍ଗ୍ୟ ମାୟାରଚିତାନ୍ତରାତ୍ମା ସ୍ୱଦେହିନଂ ସଂସୃତିଚକ୍ରକୂଟଃ । ୬ ।

ଯେଉଁ ବ୍ୟକ୍ତି ବେଦାନ୍ତ ଶ୍ରବଣ କରିଅଛନ୍ତି, ସେ ମଧ୍ୟ କର୍ମରେ ପ୍ରବୃତ୍ତ ହେବାର ଦେଖାଯାଏ, ଅତଏବ କର୍ମ ମିଥ୍ୟାନୁହେଁ, ଏପରି କୁହାଯାଇ ନ ପାରେ, କର୍ମୀଗଣଙ୍କର ଯେଉଁ ସୁଖ ତାହା ବୈଷୟିକ; ଓ ନଶ୍ୱର, ସ୍ୱପ୍ନକାଳରେ ଯାହା ଘଟିଥାଏ ତାହା ଅଳ୍ପକାଳ ସ୍ଥାୟୀ, ସୁତରାଂ ସ୍ୱପ୍ନ ମଧ୍ୟ ସ୍ୱଭାବତଃ ବିନାଶୀ ଓ ମିଥ୍ୟା ।୩।

ଯେତେକାଳ ପର୍ଯ୍ୟନ୍ତ ପୁରୁଷର ଚିତ୍ତ ସତ୍ତ୍ୱଗୁଣ, ରଜୋଗୁଣ ବା ତମୋଗୁଣ ସହିତ ସୁସମ୍ବଦ୍ଧଥାଏ, ସେତେକାଳ ପର୍ଯ୍ୟନ୍ତ ଏହା ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟ ଦ୍ୱାରା ଅପ୍ରତିରୁଦ୍ଧଭାବରେ କୁଶଳ ଓ ଅକୁଶଳକୁ ଯଥାଯଥ ଭାବରେ ସୃଷ୍ଟି କରିଥାଏ । ଅର୍ଥାତ୍ ମନ ଯେତେଦିନ ସତ୍ତ୍ୱ ରଜ ବା ତମୋଗୁଣର ବଶୀଭୂତ ଥାଏ । ସେତେଦିନ ତାହା ସ୍ୱଚ୍ଛନ୍ଦରେ ଜ୍ଞାନେନ୍ଦ୍ରିୟ କର୍ମେନ୍ଦ୍ରିୟ ଦ୍ୱାରା ମନୁଷ୍ୟକୁ ଧର୍ମ ଓ ଅଧର୍ମ ଆଚରଣ କରାଏ ।୪

ଏହି ମନମଧ୍ୟରେ ଧର୍ମ ଓ ଅଧର୍ମର ବାସନା ନିହିତ ଅଛି । ତାହା ଆତ୍ମାର ଉପାଧି ଓ ବିଷୟଗ୍ରସ୍ତ ଗୁଣମାନ ଏହି ମନକୁ ଇତସ୍ତତଃ ଚାଳିତ କରିଥାନ୍ତି ଏବଂ କାମାଦି ପରିଣାମ ମଧ୍ୟ ଏଥିରେ ପ୍ରକାଶିତ ହୋଇଥାଏ । ଷୋଡ଼ଶ ବିକାର ଅର୍ଥାତ୍ ପଞ୍ଚଭୂତ, ପଞ୍ଚଜ୍ଞାନେନ୍ଦ୍ରିୟ, ଓ ପଞ୍ଚକର୍ମେନ୍ଦ୍ରିୟ ଏମାନଙ୍କ ମଧ୍ୟରେ ପ୍ରଧାନ, ଏହା ଦେବତିର୍ଯ୍ୟଗାଦି ପୃଥକ ପୃଥକ୍ ନାମ ଓ ସେହି ସେହିରୂପ ଧାରଣ କରି ଏହି ଦେହଦ୍ୱାରା ଉତ୍କୃଷ୍ଟତ୍ୱ ଓ ନିକୃଷ୍ଟତ୍ୱ ପ୍ରକାଶ କରିଥାନ୍ତି । ୫ ।

ସୁଖ ଦୁଃଖ, ଓ ତଦ୍‌ବ୍ୟତିରିକ୍ତ ମୋହରୂପ ଫଳ, ଯାହା କାଳକ୍ରମେ ଉପସ୍ଥିତ ହୁଏ, ତାହାକୁ ଏହି ମନ ସର୍ବତୋଭାବରେ ସୃଷ୍ଟି କରିଥାଏ । ସମସ୍ତ ସଂସାରର ଛଳନାକାରିଣୀ ମାୟା ଏହି ମନକୁ ଅନ୍ତରାତ୍ମାର ଜୀବୋପାଧି ସଂସୃଷ୍ଟ ଆତ୍ମାକୁ ବିଶେଷଭାବରେ ଆଶ୍ରୟ କରିଥାଏ । ୬ ।

ସେ ସାଧୁ ବୋଲି ସଂସାରେ
ଯେ ପ୍ରାଣିଠାରେ ଦୟାକରେ
ଦଣ୍ଡିବା ଶକ୍ତି ଯାର ଥାଇ
ସେ ଯେବେ କ୍ଷମା ଆଚରଇ
ସାଧୁଙ୍କ ଶ୍ରେଷ୍ଠ ସେହି ନର
ସୁଖ ଦୁଃଖରୁ ସେ ବାହାର ।୨,୩
ଅପରେ ଶୁଣ ନୃପବର
ଯାବତ ପ୍ରାଣିମାନଙ୍କର
ସତ୍ତ୍ୱ ରଜ ତମୋଗୁଣରେ
ମନ ମୋହଇ ଦୃଢ଼ତରେ
ତାହାର ଗୁଣ ଅନୁସାରେ
ପ୍ରାଣୀ ଏ କର୍ମ ମାନ କରେ
ଯେ ଗୁଣ ଯାହାର ହୁଅଇ
ସେ ଗୁଣେ ପ୍ରାଣୀ ପ୍ରକାଶଇ
କୁଶଳ ମନ୍ଦ ଭାବ ଦୁଇ
ମଧ୍ୟମ ଭାବକୁ ବହଇ
ଧରଇ ଗୁଣ ଅନୁସାରେ
ରୂପ ନାମ ଦେହ ବେଶରେ
ଯେ ଦୁଃଖ ସୁଖ ଆଦିକରି
ଲଭଇ କର୍ମକୁ ଆବୋରି ।୪-୬।

ତାବାନୟଂ ବ୍ୟବହାରଃ ସଦାବିଃ କ୍ଷେତ୍ରଜ୍ଞସାକ୍ଷ୍ୟୋ ଭବତି ସ୍ଥୂଲସୂକ୍ଷ୍ମଃ ।
ତସ୍ମାନ୍ମନୋ ଲିଙ୍ଗମଦୋ ବଦନ୍ତି ଗୁଣାଗୁଣତ୍ୱସ୍ୟ ପରାବରସ୍ୟ । ୭ ।
ଗୁଣାନୁରକ୍ତଂ ବ୍ୟସନାୟ ଜନ୍ତୋଃ କ୍ଷେମାୟ ନୈର୍ଗୁଣ୍ୟମଥୋ ମନଃ ସ୍ୟାତ୍ ।
ଯଥା ପ୍ରଦୀପୋ ଘୃତବର୍ତ୍ତିମଶ୍ନନ୍ ଶିଖାଃ ସଧୂମା ଭଜତି ହ୍ୟନ୍ୟଦା ସ୍ୱମ୍ ।
ପଦଂ ତଥା ଗୁଣକର୍ମ୍ମାନୁବଦ୍ଧଂ ବୃତ୍ତୀର୍ମନଃ ଶ୍ରୟତେଽନ୍ୟତ୍ର ତତ୍ତ୍ୱମ୍ । ୮ ।
ଏକାଦଶାସନ୍ ମନସୋ ହି ବୃତ୍ତୟ ଆକୂତୟଃ ପଞ୍ଚ ଧିୟୋଽଭିମାନଃ ।
ମାତ୍ରାଣି କର୍ମାଣି ପୁରଞ୍ଚ ତାସାଂ ବଦନ୍ତି ହୈକାଦଶ ବୀର ଭୂମୀଃ । ୯ ।

---

ଯେତେକାଳ ପର୍ଯ୍ୟନ୍ତ ମନର ସତ୍ତା ଥାଏ, ସେ ପର୍ଯ୍ୟନ୍ତ ଏହି ଜାଗ୍ରତସ୍ୱପ୍ନ ସ୍ୱରୂପ ସଂସାର ପ୍ରକାଶିତ ହୋଇ କ୍ଷେତ୍ରଜ୍ଞ ଆତ୍ମାର ଦୃଶ୍ୟତା ଲାଭ କରେ । ସୁତରାଂ ଏହି ମନକୁ ଉତ୍କୃଷ୍ଟ ନିକୃଷ୍ଟ ଗୁଣାଭିମାନ ଓ ଗୁଣାଭିମାନ ରହିତ ହେବାର କାରଣ ସ୍ୱରୂପ ଜ୍ଞାନୀମାନେ ନିର୍ଦ୍ଦେଶ କରିଅଛନ୍ତି । ୭ ।

ମନଗୁଣାନୁରକ୍ତ ହେଲେ ସେ ଜୀବର ବ୍ୟସନ ବା ସାଂସାରିକ ବିପଦ ସୃଷ୍ଟି କରେ, ଗୁଣମୁକ୍ତ ହେଲେ ସେହି ମନ କ୍ଷେମ ବା ମୋକ୍ଷରୂପ ମଙ୍ଗଳ ଉତ୍ପାଦନ କରିଥାଏ, ଯେପରି ଗୋଟିଏ ଘିଅଦୀପରେ ଘୃତବର୍ତ୍ତିକା ଦଗ୍ଧ ହେଲେ ସେଥିରୁ ଧୂମଯୁକ୍ତ ଶିଖା ପ୍ରକାଶିତ ହୁଏ, କିନ୍ତୁ ବର୍ତ୍ତିକାଟି ଶେଷ ହୋଇଗଲେ, ସ୍ୱୀୟ ମହାଭୂତ ରୂପ ପ୍ରାପ୍ତ ହୋଇଥାଏ । ସେହିପରି ମନ, ଗୁଣ ଓ କର୍ମାନୁବଦ୍ଧ ହେଲେ ନାନାପ୍ରକାର ନାନାପ୍ରକାର ବୃତ୍ତି ଅବଲମ୍ବନ କରେ, ମାତ୍ର ଗୁଣ ଓ କର୍ମାସକ୍ତି ପରିତ୍ୟାଗ କଲେ ତାହା ତତ୍ତ୍ୱଜ୍ଞାନର କାରଣ ହୋଇଥାଏ । ୮ ।

ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚଜ୍ଞାନେନ୍ଦ୍ରିୟ ଓ ଅହଙ୍କାର ଏହି ଏଗାରଟି ମନୋବୃତ୍ତି ବୋଲି ପ୍ରସିଦ୍ଧ । ସେହି ବୃତ୍ତି ସମୂହ ପୁଣି ଏଗାରଟି ପଦାର୍ଥର ବିଷୟରୂପେ ନିର୍ଦ୍ଧାରିତ, ମନର ଏକାଦଶ ବୃତ୍ତି ଯଥା— ପଞ୍ଚକ୍ରିୟାକାର ପଞ୍ଚଜ୍ଞାନାକାର ଓ ଏକ ଅଭିମାନାକାର—ପଞ୍ଚପଦାର୍ଥ ଯଥା—ଗନ୍ଧ, ରୂପ, ସ୍ପର୍ଶ, ରସ, ଶବ୍ଦ (ପଞ୍ଚଜ୍ଞାନାକାର) ଏମାନ ଯଥାକ୍ରମେ ଘ୍ରାଣ, ଚକ୍ଷୁ, ତ୍ୱକ, ରସନା, ଶ୍ରବଣ ଏହି ପଞ୍ଚଜ୍ଞାନେନ୍ଦ୍ରିୟର ବିଷୟ । ପଞ୍ଚକ୍ରିୟାକାର ଯଥା :—ବିସର୍ଗ ବା ପୁରୀଷତ୍ୟାଗ, ସମ୍ଭୋଗ, ଗତି ଆଲାପନ ଓ ଗ୍ରହଣ ଏମାନ ଯଥାକ୍ରମେ ପାୟୁ, ଉପସ୍ଥ, ପାଦ, ବାକ୍ ଓ ହସ୍ତ ଏହି କର୍ମେନ୍ଦ୍ରିୟର ବିଷୟ, "ମୋର ଓ ମୁଁ" ଏହି ଅଭିମାନ ଶରୀରର ଅଭିମାନବିଷୟ । କେହି କେହି ଅହଙ୍କାରକୁ ଦ୍ୱାଦଶ ବୃତ୍ତି ବୋଲି ନିର୍ଦ୍ଦେଶ କରନ୍ତି ଏହି ଭୋଗାୟତନ

---

ଦେଖ ଏ ଅନିତ୍ୟ ଶରୀର
ମାୟା ରଚିତ ଆତ୍ମା ସାର
କ୍ଷେତ୍ରଜ୍ଞ ଭାବକୁ ସେ ବହି
ସକଳ ସାକ୍ଷୀ ହୋଇ ରହି
ତେଣୁ କହନ୍ତି ବେଦ ସାର
ଗୁଣ ନିର୍ଗୁଣ ଏ ବିସ୍ତର

ସଗୁଣେ ପ୍ରାଣିମାନଙ୍କର
ନାନା ବ୍ୟସନର ଆଗର
ନିର୍ଗୁଣ ଭାବକୁ ଯେ ଧରେ
ସେ ପ୍ରାଣି ଭବ ଜଳ୍ପି ତରେ
ଘୃତ ପ୍ରଦୀପ ପ୍ରାୟ ହୋଇ
ସଗୁଣେ ସଂସାରେ ଭ୍ରମଇ ।୭,୮।

ଦ୍ରବ୍ୟ ସ୍ୱଭାବ କାଳ କର୍ମ
ଆଶୟ ଆଦ ହେ ସୁଜନ !
ମାୟାର ବଳେ ଏ ସଂସାରେ
ପ୍ରାଣୀର ମନକୁ ସେ ହରେ
କ୍ଷେତ୍ରଜ୍ଞ ଭାବକୁ ଆଚରି
ଶରୀର ରହିଛି ଆବୋରି,

ଗନ୍ଧାକୃତିସ୍ପର୍ଶରସଶ୍ରବାଂସି ବିସର୍ଗରତ୍ୟର୍ତ୍ତ୍ୟଭିଜଲ୍ପଶିଲ୍ପାଃ ।
ଏକାଦଶଂ ସ୍ୱୀକରଣଂ ମମେତି ଶଯ୍ୟାମହଂ ଦ୍ୱାଦଶମେକମାହୁଃ । ୧୦ ।
ଦ୍ରବ୍ୟସ୍ୱଭାବାଶୟକର୍ମକାଳୈରେକାଦଶାମୀ ମନସୋ ବିକାରାଃ ।
ସହସ୍ରଶଃ ଶତଶଃ କୋଟିଶଶ୍ଚ କ୍ଷେତ୍ରଜ୍ଞତୋ ନ ମିଥୋ ନ ସ୍ୱତଃ ସ୍ୟୁଃ । ୧୧ ।
କ୍ଷେତ୍ରଜ୍ଞ ଏତା ମନସୋ ବିଭୂତୀର୍ଜୀବସ୍ୟ ମାୟାରଚିତସ୍ୟ ନିତ୍ୟାଃ ।
ଆବିର୍ହିତାଃ କ୍ୱାପି ତିରୋହିତାଶ୍ଚ ଶୁଦ୍ଧୋ ବିଚଷ୍ଟେ ହ୍ୟବିଶୁଦ୍ଧକର୍ତ୍ତୁଃ ।୧୨।
କ୍ଷେତ୍ରଜ୍ଞ ଆତ୍ମା ପୁରୁଷଃ ପୁରାଣଃ ସାକ୍ଷାତ୍ ସ୍ୱୟଂଜ୍ୟୋତିରଜଃ ପରେଶଃ ।
ନାରାୟଣୋ ଭଗବାନ୍ ବାସୁଦେବଃ ସ୍ୱମାୟୟାତ୍ମନ୍ୟବଧୀୟମାନଃ । ୧୩ ।
ଯଥାନିଲଃ ସ୍ଥାବରଜଙ୍ଗମାନାମାତ୍ମସ୍ୱରୂପେଣ ନିବିଷ୍ଟ ଈଶେତ୍ ।
ଏବଂ ପରୋ ଭଗବାନ୍ ବାସୁଦେବଃ କ୍ଷେତ୍ରଜ୍ଞ ଆତ୍ମେଦମନୁପ୍ରବିଷ୍ଟଃ । ୧୪ ।

ଶରୀର ପୁରୁଷର ଶଯ୍ୟା, ଅର୍ଥାତ୍ ଜୀବ ଦେହମଧ୍ୟରେ ଶୟନ ରହିଅଛି । ଅର୍ଥାତ୍ ଦେହ ତାହାର ଶଯ୍ୟା ସ୍ଥାନୀୟ (ଶରୀର ଗୋଟିଏ ପୁରି, ଏହି ପୁର ମଧ୍ୟରେ ଜୀବ ଶୟନ କରେ ବୋଲି ତାହାକୁ ପୁରୁଷ ବୋଲାଯାଏ ) । ୯-୧୦ ।

ହେ ରାଜନ୍ ! ଏକାଦଶବୃତ୍ତି-ଯାହା ମନର ବିକାର ମାତ୍ର, ସେମାନେ ଦ୍ରବ୍ୟ, ସ୍ୱଭାବ, ସଂସ୍କାର ଅଦୃଷ୍ଟ ଏବଂ କାଳଦ୍ୱାରା ଶତସହସ୍ର କୋଟି କୋଟି ଭେଦ ପ୍ରାପ୍ତ ହୁଅନ୍ତି । କିନ୍ତୁ ଏମାନ ଏପରି କୋଟି କୋଟି ପ୍ରକାର ହେଲେ ମଧ୍ୟ କ୍ଷେତ୍ରଜ୍ଞ ଜନ୍ମିଥାନ୍ତି ଏବଂ ତାହାର ସତ୍ତାରେ ସତ୍ତାଲାଭ କରନ୍ତି । ୧୧ ।

ମାୟା ରଚିତ ଜୀବୋପାଧି ଏବଂ ଅବିଶୁଦ୍ଧ କର୍ତ୍ତା ମନର ଏହି ସମସ୍ତ ପ୍ରବାହ ରୂପେ ଅବିଚ୍ଛିନ୍ନ ବୃତ୍ତି, ଏମାନ ଜାଗ୍ରତ ଓ ସ୍ୱପ୍ନାବସ୍ଥାରେ ଆବିର୍ଭୂତ ହୋଇଥାନ୍ତି ଏବଂ ସୁଷୁପ୍ତାବସ୍ଥାରେ ତିରୋହିତ ହୁଅନ୍ତି, କ୍ଷେତ୍ରଜ୍ଞ ଆତ୍ମା ସାକ୍ଷୀ, ତେଣୁ ସେହି ଆତ୍ମା ସର୍ବାବସ୍ଥାରେ ଏମାନଙ୍କୁ ଦେଖିପାରେ । ୧୨ ।

କ୍ଷେତ୍ରଜ୍ଞ ଭୁବି ପ୍ରକାର, ଯେ କ୍ଷେତ୍ର ବା ଶରୀରରକୁ ସମ୍ପୂର୍ଣ୍ଣରୂପେ ପ୍ରକାଶ କରେ, ସେ ଜଗଦ୍‌ବ୍ୟାପୀ ସମସ୍ତ ଜଗତର ଆଦିକାରଣ, ପୂର୍ଣ୍ଣ, ସାକ୍ଷୀଭୂତ, ସ୍ୱପ୍ରକାଶ, ପ୍ରାକୃତ ଜନ୍ମଶୂନ୍ୟ ଏବଂ ବ୍ରହ୍ମାଦି ଦେବତାମାନଙ୍କର ଈଶ୍ୱର । ସେହି ନାରାୟଣ ଭଗବାନ୍ ବାସୁଦେବ ଷଡ଼୍‌ବିଧ ଐଶ୍ୱର୍ଯ୍ୟ ଶାଳୀ, ସର୍ବଭୂତର ଆଶ୍ରୟ ଏବଂ ଇଚ୍ଛାର ଅଧୀନ ମାୟାଦ୍ୱାରା ଜୀବର ନିୟାମକରୂପେ ଅବସ୍ଥାନ କରନ୍ତି । ୧୩ ।

ବାୟୁ ଯେପରି ପ୍ରାଣବାୟୁରୂପେ ସମସ୍ତ ସ୍ଥାବର ଜଙ୍ଗମାତ୍ମକ ଜଗତରେ ଅନୁପ୍ରବିଷ୍ଟ ହୋଇ ସେମାନଙ୍କୁ ନିୟମିତ କରେ, ସେହିପରି ପରମେଶ୍ୱର ଭଗବାନ୍ ବାସୁଦେବ ଆତ୍ମାରୂପେ ସମଗ୍ର ବିଶ୍ୱରେ ଅନୁପ୍ରବିଷ୍ଟ ହୋଇ ସମସ୍ତ ଜୀବଙ୍କୁ ନିୟନ୍ତ୍ରିତ କରିଥାନ୍ତି । ୧୪ ।

ପ୍ରତ୍ୟକ୍ଷ ଭବେ କେବେ ଥାଇ
କେବେ ବା ପ୍ରାଣୀ ନ ଜାଣଇ
ଶୁଦ୍ଧ ଅଶୁଦ୍ଧ ଏ ଶରୀରେ
ଦେଖଇ ବ୍ରହ୍ମାଣ୍ଡ ବିକାରେ ।୯-୧୨।
ଅପରେ ଶୁଣ ହେ ରାଜନ
କ୍ଷେତ୍ରଜ୍ଞ ପୁରୁଷ ପୁରାଣ

ପରମ ଆତ୍ମା ଜ୍ୟୋତିର୍ମୟ
ଅନାବୃତ ସେ ସର୍ବ ଦେହ
ସେ ନାରାୟଣ ଭଗବାନ
ବାସୁଦେବ ଆଦି କାରଣ
ସ୍ୱକୀୟ ମାୟାରେ ଜଗତେ
କ୍ରୀଡ଼ା କରଇ ଅବିରତେ ।୧୩।

ସ୍ଥାବର ଜଙ୍ଗମଙ୍କ ଠାରେ
ପବନ ଯେସନେ ସଞ୍ଚରେ
କ୍ଷେତ୍ରଜ୍ଞ ରୂପେ ସେ ବିହରେ
ତେମନ୍ତ ହୋଇ ସର୍ବଠାରେ
ଯାବତ କାଳ ପ୍ରାଣିମନ
ମାୟାକୁ ନ କରେ ଖଣ୍ଡନ

ନ ଯାବଦେତାଂସ୍ତନୁଭୃନ୍ନରେନ୍ଦ୍ର ବିଧୂୟ ମାୟାଂ ବୟୁନୋଦୟେନ ।
ବିମୁକ୍ତସଙ୍ଗୋ ଜିତଷଟ୍ସପତ୍ନୋ ବେଦାତ୍ମତତ୍ତ୍ୱଂ ଭ୍ରମତୀହ ତାବତ୍ । ୧୫ ।
ନ ଯାବଦେତନ୍ମନ ଆତ୍ମଲିଙ୍ଗଂ ସଂସାରତାପାବପନଂ ଜନସ୍ୟ ।
ଯଚ୍ଛୋକମୋହାମୟରାଗଲୋଭବୈରାନୁବନ୍ଧଂ ମମତାଂ ବିଧତ୍ତେ । ୧୬ ।
ଭ୍ରାତୃବ୍ୟମେତଂ ତଦଦଭ୍ରବୀର୍ଯ୍ୟମୁପେକ୍ଷୟାଧ୍ୟେଧିତମପ୍ରମତ୍ତଃ ।
ଗୁରୋର୍ହରେଶ୍ଚରଣୋପାସନାସ୍ତ୍ରୋ ଜହି ବ୍ୟଲୀକଂ ସ୍ୱୟମାତ୍ମମୋଷମ୍ । ୧୭ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ
ବ୍ରାହ୍ମଣରହୂଗଣସମ୍ବାଦେ ଏକାଦଶୋଽଧ୍ୟାୟଃ । ୧୧ ।

---

ହେ ମହାରାଜ ! ଦେହଧାରୀ ଜୀବ ଯେ ପର୍ଯ୍ୟନ୍ତ ଜ୍ଞାନୋଦୟ ଦ୍ୱାରା ଏହି ମାୟାକୁ ବିଦୂରିତ କରି ଓ ସଙ୍ଗତ୍ୟାଗୀ ହୋଇ ରିପୁଜୟ କରି ଆତ୍ମତତ୍ତ୍ୱ ଅବଗତ ନ ହୁଏ, ସେ ପର୍ଯ୍ୟନ୍ତ ସେ ସଂସାର ପଥରେ ଭ୍ରମଣ କରୁଥାଏ । ୧୫ ।

ଆତ୍ମାର ଉପାଧି-ଭୂତ ମନ ରୋଗ, ଶୋକ, ମୋହ, ଲୋଭ, ରାଗ, ବୈର ଦ୍ୱାରା ସଂଯୁକ୍ତ ହୋଇ ମମତା ଜନ୍ମାଏ, ଏହି ମନ ସଂସାର ତାପ ଜନ୍ମାଏ, ସେ ଏହି ସମସ୍ତ ତାପର କ୍ଷେତ୍ର । ଜୀବ ଯେ ପର୍ଯ୍ୟନ୍ତ ଆତ୍ମାର ଉପାଧି ଓ ସଂସାର ତାପର କ୍ଷେତ୍ର ବୋଲି ନିଶ୍ଚୟ ନ କରେ, ସେ ପର୍ଯ୍ୟନ୍ତ ତାହାର ସଂସାର ତାପରୁ ନିସ୍ତାର ନାହିଁ । ୧୬ ।

ହେ ରାଜନ୍ ! ଆପଣ ଏହି ମନରୂପ ଶତ୍ରୁକୁ ଉପେକ୍ଷା କରିଅଛନ୍ତି, ତେଣୁ ଏହା ବର୍ଦ୍ଧିତ ହୋଇ ଅତ୍ୟନ୍ତ ବଳବାନ୍ ହୋଇଅଛି । ଏହା ସ୍ୱୟଂ ମିଥ୍ୟା ହେଲେ ମଧ୍ୟ ଆତ୍ମସ୍ୱରୂପକୁ ଅପହରଣ କରିଅଛି । ଅତଏବ ଆପଣ ସାବଧାନ ହୋଇ ଏହାକୁ ନିଗ୍ରହ କରନ୍ତୁ । ହେ ମହାରାଜ ! ଭଗବାନହିଁ ଶ୍ରୀଗୁରୁ, ତାହାଙ୍କର ଚରଣୋପାସନାକୁ ଅସ୍ତ୍ରରୂପେ ଗ୍ରହଣ କରି ଏହି ଶତ୍ରୁକୁ ବିନାଶ କରନ୍ତୁ । ୧୭ ।

---

ଷଡ ଅରି ନ ଜିଣଇ
ସଙ୍ଗରୁ ବିମୁକ୍ତ ନୁହଇ
ପ୍ରଭୁଙ୍କୁ ଏ ରୂପେ ନ ଜାଣେ
ତାବତ ଭ୍ରମେ ଅଜ୍ଞାନେ ।୧୪-୧୫
ସଂସାର ତାପେ ଗ୍ରସ୍ତ ମନ
ସେ ଯେ ଅନାଦି ନାରାୟଣ
ଯାବତ ତାଙ୍କୁ ନ ଚିହ୍ନିବ
ଶୋକ ମୋହରେ ଭ୍ରମୁଥିବ ।୧୬

ଏବେ ହେ ଶୁଣ ନୃପବର
ଏ ଯେ ବ୍ରହ୍ମାଣ୍ଡର ଈଶ୍ୱର
ଅଖିଳ ପ୍ରାଣିଙ୍କର ଗୁରୁ
ଯାର ମହିମା ମହାମେରୁ
ତାହାର ଚରଣାରବିନ୍ଦ
ମନ ନିବେଶି ଅପ୍ରମାଦେ
ମାୟା କପଟ ଏ ସଂସାର
ତୁ ଏହା ଶୀଘ୍ର ପରିହର । ୧୭ ।

କହଇ ବିପ୍ର ଜଗନ୍ନାଥ
ହରି ଚରିତ ଭାଗବତ
ପଞ୍ଚମ ସ୍କନ୍ଧେ ବିପ୍ର-ବାଣୀ
ଶୁଣି ସଂସାରୁ ତର ପ୍ରାଣି
ସେ ପ୍ରଭୁ ପାଦ କମଳରେ
ମନ ମୋ ରହୁ ନିରନ୍ତରେ ।



**ବିଶଦାର୍ଥ :—**

ଭରତ ରାଜାଙ୍କର ବାକ୍ୟ ଶୁଣି ପ୍ରତ୍ୟୁତ୍ତରରେ ତାହାଙ୍କର ଅନ୍ତରର ଅଜ୍ଞତା ପ୍ରତି ଲକ୍ଷକରି ସାମାନ୍ୟ ତିରସ୍କାର କରିଥିଲେ ଏବଂ ଉପଦେଶ ମଧ୍ୟ ଦେଇଥିଲେ । ଭରତ କହିଲେ "ହେ ରାଜନ୍ ଆପଣ ଶାସ୍ତ୍ରବିତ୍ ରୂପେ ନାନାପ୍ରକାର ଯୁକ୍ତିତର୍କ କରୁଛନ୍ତି, ତାହା ଶାସ୍ତ୍ର ବିରୁଦ୍ଧ ନ ହେଲେ ମଧ୍ୟ ତାହା ଶାସ୍ତ୍ରୀୟ ପ୍ରମାଣର ଚରମ ନୁହେଁ । ଆପଣଙ୍କର ନାନାପ୍ରକାର ଭ୍ରାନ୍ତି ରହିଅଛି । ତାହା ଆପଣ ବୁଝିପାରୁ ନାହାନ୍ତି । ଯେଉଁବ୍ୟକ୍ତି ନିଜର ଭ୍ରମ ବୁଝିପାରେ, ସେହି ବ୍ୟକ୍ତିହିଁ ପଣ୍ଡିତ, ଯେ ନିଜର ଭ୍ରମ ନ ବୁଝି ପାରି ନିଜର ମତ ଅଭ୍ରାନ୍ତ ବୋଲି ପ୍ରତିପାଦନ କରିବାକୁ ଚେଷ୍ଟା କରେ, ସେ ମୂର୍ଖ ।

ଶାସ୍ତ୍ରୀୟ ପ୍ରମାଣ ଆଲୋଚନା କଲେ ଜଣାଯାଏ-ପରିଶ୍ରମାଦି ଆତ୍ମାର ଧର୍ମ ନୁହେଁ, ଶରୀରର ଧର୍ମ, ସେହିପରି ରାଜା ଓ ପ୍ରଜାଭାବ ଆତ୍ମାର ଧର୍ମ ନୁହେଁ, ପ୍ରଜାର ଆତ୍ମା ଓ ରାଜାର ଆତ୍ମା ମଧ୍ୟରେ ପାର୍ଥକ୍ୟ ନାହିଁ । ସେହି ଏକାତ୍ମା ରାଜା ଓ ପ୍ରଜା ହୋଇ ପାରେ । ସୁତରାଂ ଏହା ଦେହର ଧର୍ମ ମଧ୍ୟ ନୁହେଁ । ସ୍ୱାମୀ ବା ପ୍ରଭୁତ୍ୱକୁ ସତ୍ୟ ବୋଲି ମନେ କରିବା ଭ୍ରାନ୍ତି, ଏ ସମସ୍ତ ଲୌକିକ ଭାବକୁ ସତ୍ୟବୋଲି ମନେ କରିବା ଉଚିତ ନୁହେଁ । ସେହିପରି ବୈଦିକ କର୍ମଫଳ ମଧ୍ୟ ସତ୍ୟତା ପୂର୍ଣ୍ଣ ନୁହେଁ । ବେଦରେ କର୍ମକାଣ୍ଡ ଓ ଜ୍ଞାନକାଣ୍ଡ ଏହି ଦୁଇଟି ବିଭାଗ ଅଛି । କର୍ମକାଣ୍ଡ ପ୍ରତିପାଦିତ ଅଂଶ ବ୍ୟବହାର ମାର୍ଗରେ ସତ୍ୟତା ପୂର୍ଣ୍ଣ ହୋଇପାରେ ମାତ୍ର ପରମାର୍ଥରୂପେ ସତ୍ୟନୁହେଁ, ଜ୍ଞାନକାଣ୍ଡ ଅଂଶଦ୍ୱାରା ଯେଉଁ ବ୍ରହ୍ମତତ୍ତ୍ୱ ପ୍ରତିପାଦିତ ହୁଏ, ତାହାହିଁ ପରମାର୍ଥତଃ ସତ୍ୟ, ସୁତରାଂ ଆପଣ ଯେଉଁ ଜ୍ଞାନମାର୍ଗ ଛାଡ଼ି ଅସ୍ଥାୟୀ ଫଳପ୍ରଦ କ୍ରିୟାକାଣ୍ଡରେ ରତ ହୋଇ ଅଛନ୍ତି, ତାହା ଆପଣଙ୍କ ପକ୍ଷରେ ହିତକର ନୁହେଁ, ଅଶ୍ୱମେଧାଦି ଯଜ୍ଞାନୁଷ୍ଠାନ ଦ୍ୱାରା ସ୍ୱର୍ଗାଦି ଯେଉଁ ଫଳ ଲାଭ ହୁଏ, ତାହା ମଧ୍ୟ ଅକ୍ଷୟ ନୁହେଁ, ବିଭିନ୍ନ ଯଜ୍ଞର ବିଭିନ୍ନ ଫଳ ଅଛି, କାହାର ଫଳ କ୍ଷୁଦ୍ର, କାହାର ଫଳ ମହତ୍, ସୁତରାଂ ସେହି ଫଳର କ୍ଷୟ ବୃଦ୍ଧି ସଙ୍ଗେ ସଙ୍ଗେ ଦୁଃଖ ବା ସୁଖ ଘଟିଥାଏ ।

"କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟଲୋକଂ ବିଶନ୍ତି" ଏହି ଶାସ୍ତ୍ରବାକ୍ୟ ଦ୍ୱାରା ଯଜ୍ଞଫଳର କ୍ଷୟିଷ୍ଣୁ ସୂଚିତ ହୁଏ, ସୁତରାଂ ବେଦର କେବଳ କ୍ରିୟାକାଣ୍ଡ ନେଇ ଚଳିଲେ ହେବ ନାହିଁ । ତାହାକୁ ଜ୍ଞାନ କାଣ୍ଡର ଦ୍ୱାରରୂପେ ଗ୍ରହଣ କରିବାକୁ ହେବ

ବେଦାନ୍ତତତ୍ତ୍ୱ ଆଲୋଚନାର ଏହା ଏକମାତ୍ର ଉପାୟ, କିନ୍ତୁ ବିଶେଷରେ ଦେଖାଯାଏ ଯେ ଯାହାଙ୍କ ପକ୍ଷରେ ବେଦାନ୍ତ ଶ୍ରବଣ ପରେ ମଧ୍ୟ ଏହି ସଂସାର ସ୍ୱତଃ ହେୟ ବୋଲି ପ୍ରତୀତ ହୁଏ ନାହିଁ, ତାହାଙ୍କ ପକ୍ଷରେ ବେଦାନ୍ତ ବାକ୍ୟ ଶ୍ରବଣର କୌଣସି ସାର୍ଥକତା ନାହିଁ । ପ୍ରଥମତଃ ବେଦାନ୍ତ ଶାସ୍ତ୍ରରୁ ଆତ୍ମାର ଶ୍ରବଣ ଅନ୍ତର ମନନ, ତଦନନ୍ତର ନିଦିଧ୍ୟାସନ ବା ଧ୍ୟାନ, ଅନନ୍ତର ଆତ୍ମତତ୍ତ୍ୱ ଲାଭଦ୍ୱାରା ମୁକ୍ତ ହୁଏ । ଏହିପରି ମୋକ୍ଷରେ ବେଦାନ୍ତ ଶ୍ରବଣ ଉପଯୋଗୀ ହୋଇଥାଏ ।

ମନୁଷ୍ୟର ମନହିଁ ଧର୍ମ ଓ ଅଧର୍ମର ଜାଗତିକ ନାନାବିଧ ବୈଚିତ୍ର୍ୟ ସୃଷ୍ଟି କରିଥାଏ । ଦେବତାଦି ନାନାବିଧ ଦେହ ଏହିନାମ ଓ ରୂପର ଦୃଶ୍ୟମାନ ଚିତ୍ରମାତ୍ର । ଏହିପରି ବିଭିନ୍ନ ପ୍ରକାର ଉପକରଣ ଦ୍ୱାରା ଜଗତରେ ସୁଖ ଦୁଃଖ ଓ ଅନ୍ୟାନ୍ୟ ଭାବ ସମୂହ ସୃଷ୍ଟ ହୋଇ ଥାଏ । ଯେ ପର୍ଯ୍ୟନ୍ତ ମନ ସଗୁଣ ଥାଏ, ସେ ପର୍ଯ୍ୟନ୍ତ ତାହା ଜଗତର ସୃଷ୍ଟି କରେ ଏବଂ ଗୁଣଯୁକ୍ତତା ଆଶ୍ରୟ କରେ, ସେତେବେଳେ ଏହି ମନ ମୋକ୍ଷ ଉତ୍ପାଦନ କରିଥାଏ । ଦୀପ ଘୃତବର୍ତ୍ତି ସହିତ ବର୍ତ୍ତମାନ ଥିଲାବେଳେ ସେହି ପ୍ରଦୀପ ଶିଖାରେ ଘୃତ ଓ ବର୍ତ୍ତି ଉଭୟ ଦଗ୍‌ଧ ହୁଏ ଏବଂ ଶିଖାଟି ଧୂମଯୁକ୍ତ ହୁଏ । ଦୀପସ୍ଥ ଘୃତ ଓ ବର୍ତ୍ତୀ ନିଃଶେଷିତ ହୋଇଗଲେ ଅଗ୍ନି ଧୂମ ନିର୍ଗତ ହୁଏ ନାହିଁ, ସେତେବେଳେ ଅଗ୍ନିର ସ୍ୱାଭାବିକ ଶୁକ୍ଳ ଜ୍ୟୋତିର ରୂପ ପ୍ରତିଭାତ ହୁଏ; ସେହିପରି

ମନ ଗୁଣକର୍ମ ଯୁକ୍ତ ହେଲେ ମନୋବୃତ୍ତି ଆରମ୍ଭ କରେ । ଗୁଣକର୍ମରୁ ବଛିନ୍ନ ହେଲେ ବୃତ୍ତି ଲାଭକରିପାରେ ନାହିଁ । ବୃତ୍ତିଶୂନ୍ୟ ହୋଇ ତତ୍ତ୍ୱଲାଭ ଦ୍ୱାରା ପରିଶୁଦ୍ଧ ହୁଏ । ମନର ବୃତ୍ତି ବହୁପ୍ରକାର, ତାହା ଏହି ଅଧ୍ୟାୟରେ ଆଲୋଚନା କରାଯାଇ ଅଛି, ମନକୁ ନିର୍ମଳ ରଖି ପାରିଲେ ମନୁଷ୍ୟ ପଥଭ୍ରଷ୍ଟ ହୁଏ ନାହିଁ । ମନକୁ ଜୟ କରିବାକୁ ହେଲେ ସାଧାରଣ ଅସ୍ତ୍ରଦ୍ୱାରା ତାହା ସମ୍ଭବ ନୁହେଁ, ଶ୍ରୀହରି ଚରଣାରବିନ୍ଦ ସେବାରୂପ ଖଡ୍ଗଦ୍ୱାରା ତାହା ସମ୍ଭବ ହୋଇ ପାରେ ।

---

## ଦ୍ୱା ଦ ଶ ଅ ଧ୍ୟା ୟ ।

ଦ୍ୱାଦଶେ ପୁନର୍‌ପୃଷ୍ଟଃ ସନ୍ଦେହେନ ମହୀଭୂତା ।
ସ ଯୋଗୀ ସର୍ବସନ୍ଦେହାନୁପାନୁଦଦ୍‌ବତୀର୍ଯ୍ୟତେ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀରହୂଗଣ ଉବାଚ ।

**ନମୋ ନମଃ କାରଣବିଗ୍ରହାୟ ସ୍ୱରୂପତୁଚ୍ଛୀକୃତବିଗ୍ରହାୟ ।**
**ନମୋଽବଧୂତ ଦ୍ୱିଜବନ୍ଧୁଲିଙ୍ଗନିଗୂଢ଼ନିତ୍ୟାନୁଭବାୟ ତୁଭ୍ୟମ୍ । ୧ ।**

---

### ରାଜାଙ୍କର ସନ୍ଦେହ ମୋଚନ ।

ଦ୍ୱାଦଶଅଧ୍ୟାୟରେ ରାଜା ରହୂଗଣ ପୁଣି ସନ୍ଦେହକରି ନାନାବିଧ ପ୍ରଶ୍ନ ପଚାରନ୍ତେ ଯୋଗୀଶ୍ରେଷ୍ଠ ଭରତ ତାଙ୍କର ସନ୍ଦେହ ଦୂରକରି ଯଥାର୍ଥ ଉତ୍ତର ଦେଇଥିଲେ ।୦।

ଶ୍ରୀରହୂଗଣ କହିଲେ :—

ହେ ଯୋଗେଶ୍ୱର ! ଈଶ୍ୱର ଯେପରି ଲୋକପାଳନ ନିମିତ୍ତ ଶରୀରଧାରଣ କରିଥାନ୍ତି, ସେହିପରି ତୁମ୍ଭେ ମଧ୍ୟ ଲୋକରକ୍ଷଣ ନିମିତ୍ତ ଶରୀରଧାରଣ କରିଅଛ । ତୁମ୍ଭେ ବ୍ରହ୍ମସ୍ୱରୂପ ଅନୁଭବକରି ଦେହ ପ୍ରତି ଉଦାସୀନ ହୋଇଅଛ, ଅଥଚ ନିକୃଷ୍ଟ ଜଣେ ବ୍ରାହ୍ମଣର ବେଶାଦି ପରିଗ୍ରହ କରି ତୁମ୍ଭର ନିତ୍ୟ ବ୍ରହ୍ମାନୁଭୂତ ଲୋକରେ ଅଗୋଚର ରହିଅଛି । ଏପରି ମହାନ୍ ତୁମ୍ଭେ, ତୁମ୍ଭଙ୍କୁ ଆମ୍ଭେମାନେ ବାରମ୍ବାର ନମସ୍କାର କରୁଅଛୁଁ । ୧ ।

---

ଦ୍ୱାଦଶେ ରାଜାର ସନ୍ଦେହେ । ପୁଣି ଭରତ ଜ୍ଞାନ କହେ ॥

ଶ୍ରୀରହୂଗଣ ଉବାଚ ।

ନମଇଁ ପ୍ରଭୁ ବିପ୍ରବର !
ପ୍ରାଣୀଙ୍କ ହିତେ ତୋ ଶରୀର
ସ୍ୱଇଚ୍ଛା ବିହାର ତୋହର
ନମସ୍ତେ ଦୟାର ଶରୀର
ବେଶରେ ତୁହି ଅବଧୂତ
ମାୟା ରୂପରେ ତୁ ଯେ ସ୍ଥିତ
ଗୁପତ ଭାବେ ଭ୍ରମୁ ତୁହି
ତୋହର ମାୟା କେ ଜାଣଇ ।୧।

ଜ୍ୱରାମୟାର୍ତ୍ତସ୍ୟ ଯଥାଽଗଦଂ ସ୍ୟାନ୍ନିଦାଘଦଗ୍ଧସ୍ୟ ଯଥା ହିମାମ୍ଭଃ ।
କୁଦେହମାନାହିବିଦଷ୍ଟଦୃଷ୍ଟେର୍ବ୍ରହ୍ମନ୍ ବଚସ୍ତେଽମୃତମୌଷଧଂ ମେ । ୨ ।
ତସ୍ମାଦ୍‌ଭବନ୍ତଂ ମମ ସଂଶୟାର୍ଥଂ ପ୍ରକ୍ଷ୍ୟାମି ପଶ୍ଚାଦଧୁନା ସୁବୋଧମ୍ ।
ଅଧ୍ୟାତ୍ମଯୋଗଗ୍ରଥିତଂ ତବୋକ୍ତମାଖ୍ୟାହି କୌତୂହଳଚେତସୋ ମେ । ୩
ଯଦାହ ଯୋଗେଶ୍ୱର ଦୃଶ୍ୟମାନଂ କ୍ରିୟାଫଳଂ ସଦ୍‌ବ୍ୟବହାରମୂଳମ୍ ।
ନହ୍ୟଞ୍ଜସା ତତ୍ତ୍ୱବିମର୍ଶନାୟ ଭବାନମୁଷ୍ମିନ୍ ଭ୍ରମତେ ମନୋ ମେ । ୪ ।

---

ହେ ବିପ୍ରବର ! ଯେଉଁ ବ୍ୟକ୍ତି ଜ୍ୱରରୋଗରେ ଅବଶନ୍ନ ହୋଇ ପଡ଼େ, ସେ ଯେପରି ଉତ୍ତମ ଔଷଧ ସେବନ କରି ନିରୋଗତା ଲାଭ କରେ, ଗ୍ରୀଷ୍ମାର୍ତ୍ତ ବ୍ୟକ୍ତି ଯେପରି ଶୀତଳ ଜଳ ପାନକରି ଗ୍ରୀଷ୍ମ ଜନିତ କ୍ଳାନ୍ତି ଅପନୋଦନ କରି ଶାନ୍ତି ଅନୁଭବ କରେ, ସେହିପରି ଏହି ନିକୃଷ୍ଟଦେହରେ ଅହଙ୍କାର ବୃତ୍ତି ସ୍ୱରୂପ ସର୍ପଦ୍ୱାରା କ୍ଷତଜ୍ଞାନ ମୋ ପକ୍ଷରେ ତୁମ୍ଭର ଉପଦେଶାବଳି ପରମ ଅମୃତ ତୁଲ୍ୟ ଔଷଧରୂପେ କାର୍ଯ୍ୟକାରୀ ହୋଇଅଛି । ତୁମ୍ଭର ବାକ୍ୟ ଶ୍ରବଣ କରି ମୋର ମୋହ ନଷ୍ଟ ହୋଇଅଛି, ମୁଁ ଜ୍ଞାନଲାଭ କରିଅଛି । ୨ ।

ହେ ବିପ୍ରବର ! ତୁମ୍ଭେ ଏଥିପୂର୍ବେ ମୋ ନିକଟରେ ଯେଉଁ ଅଧ୍ୟାତ୍ମତତ୍ତ୍ୱପୂର୍ଣ୍ଣବାକ୍ୟମାନ ପ୍ରକାଶ କରିଅଛ, ତହିଁର ଅର୍ଥ ଅତ୍ୟନ୍ତ ଦୁରୂହ । ମୁଁ ତାହା ସମ୍ପୂର୍ଣ୍ଣରୂପେ ଅବଧାରଣା କରିପାରୁ ନାହିଁ, ଅତଏବ ତାହା ଜାଣିବା ନିମିତ୍ତ ମୋର ଚିତ୍ତରେ ମହାକୌତୂହଳ ଜନ୍ମିଅଛି । ମୁଁ ତାହା ଯେପରି ସହଜରେ ବୁଝି ପାରେ, ତାହା ମୋତେ ସେହିପରି ଭାବରେ ବୁଝାଇ ଦିଅନ୍ତୁ, ତାହା ବୁଝିଲେ ପରେ ମୁଁ ସନ୍ଦେହସ୍ଥଳ ମାନଙ୍କରେ ପ୍ରଶ୍ନକରି ସନ୍ଦେହ ଦୂର କରିବ । ୩ ।

ହେ ଯୋଗେଶ୍ୱର ! ତୁମ୍ଭେ କହିଅଛ ଯେ ଦୃଶ୍ୟମାନ କ୍ରିୟା ଓ ତତ୍‌ଫଳରେ ପରମାର୍ଥ ସତ୍ତା ନାହିଁ । ତାହାର ସତ୍ତା ବ୍ୟବହାର ମୂଳରେ ହୋଇଥାଏ, ଏବଂ ନିଶ୍ଚୟ ତାହା ତତ୍ତ୍ୱଜ୍ଞାନ ବିଷୟରେ ସମର୍ଥ ନୁହେଁ । ତତ୍ତ୍ୱ ବିଷୟରେ ମୋର ଚିତ୍ତ ସଂଶୟରେ ଭ୍ରାମ୍ୟମାନ ହେଉଅଛି, ନିଶ୍ଚୟ ତା ଲାଭ କରିପାରୁ ନାହିଁ । ୪ ।

---

ବ୍ୟାଧି ପୀଡ଼ିତ ଆର୍ତ୍ତ ଜନ
ତାହାର ଔଷଧି ଯେସନ,
ନିଦାଘ ଆତପେ ପୀଡ଼ିତ
ତାହାଙ୍କୁ ଯେସନେ ଜଳ ଶୀତ
ସଂସାର ଦୁଃଖ ଦାବାନଳ
ତହିଁ ମୁଁ ହୋଇଣ ବ୍ୟାକୁଳ
ପୀୟୂଷରସ ତୁମ୍ଭ ବାଣୀ
ପାଇ ତରିଲି ଦ୍ୱିଜମଣି । ୨ ।

ସଂଶୟ ମନରୁ ମୋହର
ତୁମ୍ଭେ ଛେଦିବ ବିପ୍ରବର
ଅଜ୍ଞାନ ମୂଢ଼ଭାବେ ଥିଲି
ତୁମ୍ଭେ ଛେଦିବ ତାହାଭଲେ
ଅଧ୍ୟାତ୍ମ ଯୋଗ ତୋ ବଚନ
ଶୁଣି ସନ୍ତୋଷ ମୋର ମନ । ୩ ।
ତତ୍ତ୍ୱଜ୍ଞାନରେ ପ୍ରାଣିଙ୍କର
ମନ ନୁହଇ ଦୃଢ଼ତର

କ୍ରିୟା ବା କ୍ରିୟା ଫଳମାନ
କହିଲ ଈଶ୍ୱର ଅଧୀନ
ନୁହଇ ସତ୍ୟ, ଏ ବେଭାର
ପୃଥକ ବୁଦ୍ଧି-ମାନଙ୍କର,
ଏ ଯେ ସଂଶୟ ମନେ ମୋର
ହେ ବିପ୍ର ! ଛେଦନ ତୁ କର ।୪

ଶ୍ରୀବ୍ରାହ୍ମଣ ଉବାଚ ।

ଅୟଂ ଜନୋ ନାମ ଚଲନ୍ ପୃଥିବ୍ୟାଂ ଯଃ ପାର୍ଥିବଃ ପାର୍ଥିବ କସ୍ୟ ହେତୋଃ ।
ତସ୍ୟାପି ଚାଙ୍ଘ୍ର୍ୟୋରଧିଗୁଲ୍‌ଫଜଙ୍ଘାଜାନୂରୁମଧ୍ୟୋରଶିରୋଧରାଂଶାଃ ॥ ୫ ॥
ଅଂସେଽଧି ଦାର୍ବୀ ଶିବିକା ଚ ଯସ୍ୟାଂ ସୌବୀରରାଜେତ୍ୟପଦେଶ ଆସ୍ତେ ।
ଯସ୍ମିନ୍ ଭବାନ୍ ରୂଢ଼ନିଜାଭିମାନୋ ରାଜାସ୍ମି ସିନ୍ଧୁଷ୍ୱିତି ଦୁର୍ମଦାନ୍ଧଃ ॥ ୬ ॥

---

ଶ୍ରୀବ୍ରାହ୍ମଣ କହିଲେ :—

ହେ ପୃଥ୍ୱୀପତି ! ଯାହା ମୃତ୍ତିକାର ବିକାର ଏପରି ଗୋଟିଏ ପଦାର୍ଥ କୌଣସି କାରଣରୁ ପୃଥିବୀର ଉପରିଭାଗରେ ବିଚରଣ କରୁଅଛି ଏବଂ ତାହା ଭାରବାହକ ପ୍ରଭୃତି ନାମରେ ପ୍ରସିଦ୍ଧ । ପାଷାଣାଦି ମଧ୍ୟ ମୃତ୍ତିକାର ବିକାର କିନ୍ତୁ ତାହା ବିଚରଣ କରେ ନାହିଁ, ଏହାହିଁ ପାର୍ଥକ୍ୟ; ତାହା ଜଡ଼ ବୋଲି ତାର ଭାର ବା ଶ୍ରମ ନାହିଁ । କିନ୍ତୁ ଯାହା ବିଚରଣ କରୁଅଛି ତାହାର ଭାର ଓ ଶ୍ରମ ଅଛି; ଏପରି କହି ହେବ ନାହିଁ, କାରଣ ଯାହାର ଶ୍ରମ ହୁଏ, ଏପରି ଗୋଟିଏ ଆତ୍ମା ନିରୂପିତ ହେଉ ନାହିଁ । ୫ ।

ପୂର୍ବେ ଯେଉଁ ବିଚରଣଶୀଳ ମୃତ୍ତିକାବିକାର ଓ ଭାରବାହକାଦି ନାମରେ ପ୍ରସିଦ୍ଧ ପଦାର୍ଥ କଥା କୁହା ଯାଇ ଅଛି, ତାହାର ମଧ୍ୟ ଶ୍ରମ ହୁଏ କାରଣ ପୃଥିବୀଉପରେ ପଦଦ୍ୱୟ ତହିଁ ଉପରେ ଗୁଲ୍‌ଫ, ତହିଁ ଉପରେ ଜାନୁ, ଉରୁ, ମଧ୍ୟଭାଗ ବକ୍ଷସ୍ଥଳ, ଗ୍ରୀବା ମସ୍ତକ ଓ ସ୍କନ୍ଧ ଯଥାକ୍ରମେ ସନ୍ନିବିଷ୍ଟ ହୋଇଅଛି । ଏଗୁଡ଼ିକ କେତେକ ଅବୟବ ମାତ୍ର, କିନ୍ତୁ ଯାହାର ଭାର ବା ଶ୍ରମ ହେବ ଏପରି ଅବୟବୀ କାହିଁ ? ଶିବିକାରେ ମଧ୍ୟ ଅବୟବୀ ନାହିଁ; ଏହା କେତେକ କାଷ୍ଠବିକାର ଦ୍ୱାରା ନିର୍ମିତ ଏବଂ ପୂର୍ବୋକ୍ତ ସ୍କନ୍ଧର ଉପରି ଭାଗରେ ଏହା ରହିଅଛି ମାତ୍ର । ଏହି ଶିବିକାର ଉପରେ ମୃତ୍ତିକାର ବିକାର ଯେଉଁ ପଦାର୍ଥଟି ରହିଅଛି, ତାହା ନାମମାତ୍ର ସୌବୀର ରାଜ ବୋଲି ବିଖ୍ୟାତ, ପାର୍ଥିବ ବିକାରରେ ଅଭିମାନଯୁକ୍ତ ହୋଇ ଦୁରତିକ୍ରମଣୀୟ ମମତାରେ ସେ ଅନ୍ଧ ହୋଇଅଛନ୍ତି । ୬ ।

---

ଶ୍ରୀବାହ୍ମଣ ଉବଚ
ପାର୍ଥିବ ବିକାର ଯେତିକି
ଭାରକୁ ବହଇ ସେତିକି
ଶ୍ରମ ଯେ ହୋଇବ କାହାର
ଏହା ତୁ ବୁଝି ନୃପବର !
ଶରୀରେ ଅଛି ଯେ ଚରଣ
ତହିଁ ଉପରେ ଗୁଲ୍‌ଫ ଜାଣ
ଜାନୁ ଉରୁ ଯେ ମଧ୍ୟଦେଶ
ବକ୍ଷସ୍ଥଳ ଯେ ସ୍କନ୍ଧଦେଶ
ସ୍କନ୍ଧରେ ବିମାନ ଅଛଇ
କେ ତାର ଭାରକୁ ବହଇ ?
ତହିଁରେ ଅବୟବ ବହି
ସୌବୀରରାଜା ବସିଛଇ
ସେ ଅଟେ ପାର୍ଥିବ ବିକାର
ଏହା ତୁ ନୃପ ହେତୁକର
ଏହି ବିକାରେ ଅଭିମାନ
ତୋହର ହୋଇଛି ରାଜନ !
ଏ ଯେ ସଂସାର ପ୍ରାଣିମାନେ
ନୃପ ସେବକ ନାମ ଭିନ୍ନେ
କେହି କାହାକୁ ନମସ୍କାର
କରଇ ଆଦର ବେଭାର
ଏ ଜୀବମାନେ ବସି ତହିଁ
ନାନା କୁକଥାମାନ କହି
ମୁଁ ନୃପବୋଲି ଅହଂକାରେ
ଏ ମୂଢ଼ ଲୋକଙ୍କ ବେଭାରେ

ଶୋଚ୍ୟାନମାଂସ୍ତ୍ୱଂ ହ୍ୟଧିକଷ୍ଟଦୀନାନ୍ ଦଣ୍ଡ୍ୟା ନିଗୃହ୍ଣନ୍ ନିରନୁଗ୍ରହୋଽସି ।
ଜନସ୍ୟ ଗୋପ୍ତାସ୍ମି ବିକତ୍‌ଥମାନୋ ନ ଶୋଭସେ ବୃଦ୍ଧସଭାସୁ ଧୃଷ୍ଟଃ । ୭ ।
ଯଦା କ୍ଷିତାବେବ ଚରାଚରସ୍ୟ ବିଦାମ ନିଷ୍ଠାଂ ପ୍ରଭବଞ୍ଚ ନିତ୍ୟମ୍ ।
ତନ୍ନାମତୋଽନ୍ୟଦ୍‌ବ୍ୟବହାରମୂଳଂ ନିରୂପ୍ୟତାଂ ସତ୍ କ୍ରିୟୟାନୁମେୟମ୍ । ୮ ।
ଏବଂ ନିରୁକ୍ତଂ କ୍ଷିତିଶବ୍ଦବୃତ୍ତମସନ୍ନିଧାନାତ୍ ପରମାଣବୋ ଯେ ।
ଅବିଦ୍ୟୟା ମନସା କଳ୍ପିତାସ୍ତେ ଯେଷାଂ ସମୂହେନ କୃତୋ ବିଶେଷଃ । ୯ ।

---

ଏହି ସମସ୍ତ ଭାର ବାହକ ଶିବିକା ବହନକରି କଷ୍ଟଭୋଗୁ ଅଛନ୍ତି କିନ୍ତୁ ବେତନ ପାଉନାହାନ୍ତି, ସୁତରାଂ ସେମାନେ ଅତ୍ୟନ୍ତ ଦୀନ ଓ ଦୟାର ପାତ୍ର, ଏମାନଙ୍କୁ ନିଗ୍ରହିତ କରି ତୁମ୍ଭେ ଅତ୍ୟନ୍ତ ନିର୍ଦ୍ଦୟ ବୋଲି ପ୍ରତିପନ୍ନ ହେଉଅଛ, ଅଥଚ ମୁଁ ଜନସମାଜର ରକ୍ଷାକର୍ତ୍ତା ବୋଲି ତୁମ୍ଭେ ଆତ୍ମଶ୍ଳାଘା କରୁଅଛ, ମାତ୍ର ତୁମ୍ଭେ ଅତ୍ୟନ୍ତ ନିର୍ଲଜ୍ଜ ଏବଂ ମହାଜନମାନଙ୍କ ସଭାରେ ତୁମ୍ଭେ ଶୋଭା ପାଇବାର ଉପଯୁକ୍ତ ନୁହଁ ।୭।
ହେ ରାଜନ୍ ! ଯଦି ତୁମ୍ଭେ କୁହ ଯେ ଉତ୍ତରୋତ୍ତର ଅବୟବର ଭାର ପୂର୍ବ ପୂର୍ବ ଅବୟବର ଉପରେ ପଡ଼େ, ତାହା ମଧ୍ୟ ଠିକ୍ ନୁହେଁ । କାରଣ ଏହି ସମସ୍ତ ଅବୟବର ସ୍ୱରୂପ ମଧ୍ୟ ନିରୂପିତ ହେଉ ନାହିଁ ଯେଉଁ ସମସ୍ତ ଅବୟବ ବିଷୟ କଥିତ ହୋଇଅଛି, ସେ ସମସ୍ତ ପୃଥିବୀରୁ ଉତ୍ପନ୍ନ, ଓ ପୃଥିବୀରେ ଲୟପ୍ରାପ୍ତ ହୋଇ ଥାନ୍ତି । ଏହା ଆମ୍ଭେମାନେ ଉରକାଳଦେଖୁଅଛୁ । ଚରାଚର ପଦାର୍ଥର ଏହି ଗତି, ଏମାନେ ବିଭିନ୍ନ ନାମରେ ଅଭିହିତ, ଯାହାକିଛି ଆମ୍ଭମାନଙ୍କର ବ୍ୟବହାର କଳ୍ପିତ ହେଉଅଛି ତାହାର ମୂଳ ଏହି ମିଥ୍ୟାନାମ ଭିନ୍ନ ଅନ୍ୟ କିଛି ନୁହେଁ । ଯଦି ଯଥାର୍ଥ କୌଣସି କାରଣ କ୍ରିୟାଦ୍ୱାରା ଅନ୍ୟ ମୂଳ ନିରୂପଣ କରି ପାରନ୍ତି ତାହା ପ୍ରଦର୍ଶନ କରନ୍ତୁ । ୮ ।

ପୃଥିବୀରୁ ବିକାର ସମୂହ ଉତ୍ପନ୍ନ ହୁଏ ବୋଲି ପୃଥିବୀ ଯେ ସତ୍ୟ ତାହା ନୁହେଁ । କାରଣ ପୃଥିବୀ ଏହା ଗୋଟିଏ ଶବ୍ଦମାତ୍ର, ଏଥିରେ ବାଚ୍ୟପଦାର୍ଥ ନିରୂପଣ କରାଯାଇ ପାରୁ ନାହିଁ । ଏହି ପୃଥିବୀ ସୂକ୍ଷ୍ମ ପରମାଣୁ ସମୂହରେ ଲୀନ ହୋଇଥାଏ, ଅତଏବ ପରମାଣୁଭିନ୍ନ ପୃଥିବୀ ବୋଲି ଅନ୍ୟ କୌଣସି ପଦାର୍ଥ ନାହିଁ । ଏହି ପରମାଣୁ ମଧ୍ୟ ମିଥ୍ୟା, ପରମାଣୁ ନ ଥିଲେ ପୃଥିବୀ ଉତ୍ପନ୍ନ ହୋଇ ପାରନ୍ତା ନାହିଁ, ଏହା ପରମାଣୁବାଦୀମାନେ କଳ୍ପନା କରିଥାନ୍ତି, ସେମାନଙ୍କ ମତରେ ପରମାଣୁର ସମଷ୍ଟିରେ ପୃଥିବୀ ଉତ୍ପନ୍ନ ହୋଇଅଛି, ହେ ରାଜନ୍ ! ଏହି ପ୍ରପଞ୍ଚ ମାୟାବିଜୃମ୍ଭିତ ମାତ୍ର, ଏଣୁ ପରମାଣୁ ସମୂହ ଅବିଦ୍ୟା କଳ୍ପିତ ହୋଇ ପାରେ, କିନ୍ତୁ ଯେପରି ଚେହେଉପଚ୍ଛଟକ ତାହା କୌଣସି ପ୍ରକାର ସତ୍ୟ ନୁହେଁ । ୯ ।

---

ପ୍ରାଣିଙ୍କୁ ଦଣ୍ଡ ଦେଉ ତୁହି
ଏମନ୍ତେ ନାନା କଥାକଥା କହି
ପ୍ରମତ୍ତ ଭାବକୁ ଧରିଲୁ
ତେଣୁ ବାହକେ ଶୋକଦେଲୁ ।୫-୭
ଦେଖ ହେ ଅଖିଳ ସଂସାର
ଜନ୍ମଇ ଯେତେ ଚରାଚର
ଯାତନ୍ତି ନାନା; ଯାହାପରେ
ବଡ଼ତି ନାହିଁ ଏ ସଂସାରେ
ପରମ ଅଣୁ ସୂକ୍ଷ୍ମ ସ୍ଥୂଳ
ଏ ଆଦି ଯେତେକ ସକଳ
ତା ବିନୁ ଅନ୍ୟ କେହି ନାହିଁ
ଅଜ୍ଞାନମତି ନ ଜାଣଇ
ବୃହତ କ୍ଷୁଦ୍ର ଆଦି ଯେତେ
ନିର୍ଜୀବ ସଜୀବ ସହିତେ
ଦ୍ରବ୍ୟ ସ୍ୱଭାବ କାଳ କର୍ମ
ପୃଥକ ଭାବ ଯେତେ ନାମ
ଜ୍ଞାନ ବିଶୁଦ୍ଧ ସେ ଅଟଇ
ପରମଆତ୍ମାରୂପ ବହି
ଏକ ଅନେକ ସର୍ବ ସେହି
ପ୍ରଭୁର ବିନୁ ଆନ ନାହିଁ
ସର୍ବଜ୍ଞ ପ୍ରଶାନ୍ତ ଅଚ୍ୟୁତ
ଲୀଳାରେ ଯାହାର ଜଗତ

ଏବଂ କୃଶଂ ସ୍ଥୂଳମଣୁର୍ବୃହଦ୍‌ଯଦସଚ୍ଚ ସଜ୍ଜୀବମଜୀବମନ୍ୟତ୍ ।
ଦ୍ରବ୍ୟସ୍ୱଭାବାଶୟକାଲକର୍ମନାମ୍ନାଜୟାବେହି କୃତଂ ଦ୍ୱିତୀୟମ୍ । ୧୦ ।
ଜ୍ଞାନଂ ବିଶୁଦ୍ଧଂ ପରମାର୍ଥମେକମନନ୍ତରଂତ୍ୱବହିର୍ବ୍ରହ୍ମ ସତ୍ୟମ୍ ।
ପ୍ରତ୍ୟକ୍ ପ୍ରଶାନ୍ତଂ ଭଗବଚ୍ଛବ୍ଦସଞ୍ଜ୍ଞଂ ଯଦ୍‌ବାସୁଦେବଂ କବୟୋ ବଦନ୍ତି । ୧୧ ।
ରହୂଗଣୈତତ୍ ତପସା ନ ଯାତି ନ ଚେଜ୍ୟୟା ନିର୍ବପଣାଦ୍‌ଗୃହାଦ୍‌ବା ।
ନ ଛନ୍ଦସା ନୈବ ଜଲାଗ୍ନି ସୂର୍ଯ୍ୟୈର୍ବିନା ମହତ୍ପାଦରଜୋଽଭିଷେକମ୍ । ୧୨ ।
ଯତ୍ରୋତ୍ତମଃଶ୍ଳୋକଗୁଣାନୁବାଦଃ ପ୍ରସ୍ତୂୟତେ ଗ୍ରାମ୍ୟକଥାବିଘାତଃ ।
ନିଷେବ୍ୟମାଣୋଽନୁଦିନଂ ମୁମୁକ୍ଷୋର୍ମତିଂ ସତୀଂ ଯଚ୍ଛତି ବାସୁଦେବେ । ୧୩ ।

---

ଏହିସବୁ ହ୍ରସ୍ୱ, ଦୀର୍ଘ, ଅଣୁ, ବୃହତ୍, କାରଣ, କାର୍ଯ୍ୟ, ଚେତନ, ଅଚେତନ, ଦ୍ରବ୍ୟ, ସ୍ୱଭାବ, ସଂସ୍କାର, କାଳ, ଅଦୃଷ୍ଟ, ଯାହାକିଛି ଦ୍ୱୈତରୂପେ ବୁଦ୍ଧିଦ୍ୱାରା ପ୍ରତୀତ ହୁଏ, ସେ ସମସ୍ତ ମିଥ୍ୟାନାମ ଦ୍ୱାରା ଉପଲକ୍ଷିତ ମାୟା ଦ୍ୱାରା ରଚିତ ବୋଲି ଜାଣିବ । ତାହା ହେଲେ ସତ୍ୟ କଅଣ, ତାହା କହୁଅଛି ଶ୍ରବଣକର ବିଶୁଦ୍ଧ, ବାହ୍ୟାଭ୍ୟନ୍ତର ଶୂନ୍ୟ, ପରିପୂର୍ଣ୍ଣ, ଅପରିଚ୍ଛିନ୍ନ, ନିର୍ବିକାର ଜ୍ଞାନହିଁ ପରମାର୍ଥ ସତ୍ୟ ଏବଂ ତାହାଙ୍କୁହିଁ ପଣ୍ଡିତମାନେ ବାସୁଦେବ ବୋଲି କହିଥାନ୍ତି । ୧୦,୧୧ ।

ହେ ମହାରାଜ ! ଏହିସବୁ ଜ୍ଞାନପ୍ରାପ୍ତ ମହାଜନମାନଙ୍କ ସେବା ବ୍ୟତୀତ ତପସ୍ୟା ବା ଇତ୍ତର ଏକାଗ୍ରତା, ଇଜ୍ୟା, ଅର୍ଥାତ୍ ବୈଦିକ କର୍ମ, ଏବଂ ଅନ୍ନାଦିର ସଂବିଭାଗ ବା ଗୃହାଶ୍ରମୋଚିତ ପରମୋପକାର କିମ୍ବା ବେଦାଭ୍ୟାସ ଅଥବା ଜଳ, ଅଗ୍ନି ବା ସୂର୍ଯ୍ୟଙ୍କ ଉପାସନା ଦ୍ୱାରା ହୋଇ ନ ପାରେ । ୧୨ ।

ହେ ରାଜେନ୍ଦ୍ର ! ଯେଉଁ ମହଦ୍‌ବ୍ୟକ୍ତି ମାନଙ୍କ ପଦରଜରେ ଆପଣଙ୍କୁ ଅଭିସିକ୍ତ କରିବା ଭିନ୍ନ ଏହି ଜ୍ଞାନ ପ୍ରାପ୍ତିର ଉପାୟାନ୍ତର ନାହିଁ । ଯେଉଁ ସାଧୁବ୍ୟକ୍ତିମାନେ ଉତ୍ତମ ଶ୍ଳୋକ ଭଗବାନଙ୍କର ଗୁଣ କୀର୍ତ୍ତନ କରିଥାନ୍ତି, ସେମାନଙ୍କ ନିକଟରେ ଗ୍ରାମ୍ୟ କଥା ଉଠି ନ ପାରେ, ମୁମୁକ୍ଷୁବ୍ୟକ୍ତି ସେମାନଙ୍କ ନିକଟରେ ଭଗବାନଙ୍କର ଗୁଣାନୁବାଦ ଶ୍ରବଣ କରି କରି ବାସୁଦେବଙ୍କଠାରେ ଶୁଦ୍ଧମତି ହୋଇଥାଏ । ୧୩ ।

---

ସେ ପ୍ରଭୁ ଅଖିଳ କାରଣ
ମୁନି ଏ କରନ୍ତି ଗାୟନ ।୧୦,୧୧।
ହେ ରହୁଗଣ ସାବଧାନେ
ଶୁଣ ତୁ ମୋହର ବଚନେ
ବିବିଧ ତପ ଯଜ୍ଞ କର୍ମ
ଅଥବା ବେଦ ଅଧ୍ୟୟନ

ଏ ଆଦି ଯେତେକ ହେ ରାଜନ !
ସକଳ ଶ୍ରେଷ୍ଠ ଭକ୍ତଜନ
ଯା ପାଦରଜେ ପାପମାନ
ନିଃଶେଷେ ହୁଅନ୍ତି ଖଣ୍ଡନ ।୧୨।
ଉତ୍ତମଶ୍ଳୋକ କଥାସାର
ଯେ ପ୍ରାଣୀ କରନ୍ତି ବିଚାର

ଗ୍ରାମ୍ୟକଥାରେ ତାର ମତି
କେବେହେଁ ନୁହଇ ସଙ୍ଗତି
ଯେବେ ନିଷ୍ଠିଳ ହୁଏ ମନ.
ପ୍ରଭୁଙ୍କର କରଇ ଅର୍ପଣ
ତାହାଙ୍କୁ ପ୍ରଭୁ ସର୍ବାତ୍ମା
ସତ୍ତ୍ୱପ୍ରଧାନ ମତି ଦେଇ ।୧୩।

ଅହଂ ପୁରା ଭରତୋ ନାମ ରାଜା ବିମୁକ୍ତଦୃଷ୍ଟଶ୍ରୁତସଙ୍ଗବନ୍ଧଃ ।
ଆରାଧନଂ ଭଗବତ ଈହମାନୋ ମୃଗୋଽଭବଂ ମୃଗସଙ୍ଗାଦ୍ଧତାର୍ଥଃ । ୧୪ ।
ସା ମାଂ ସ୍ମୃତି ର୍ମୃଗଦେହେଽପି ବୀର କୃଷ୍ଣାର୍ଚ୍ଚନପ୍ରଭବା ନୋ ଜହାତି ।
ଅଥୋ ହ୍ୟହଂ ଜନସଙ୍ଗାଦସଙ୍ଗୋ ବିଶଙ୍କମାନୋଽବିବୃତଶ୍ଚରାମି । ୧୫ ।
ତସ୍ମାନ୍ନରୋଽସଙ୍ଗସୁସଙ୍ଗଜାତଜ୍ଞାନାସିନେହୈବ ବିବୃକ୍ଣମୋହଃ ।
ହରିଂ ତଦୀହାକଥନଶ୍ରୁତାଭ୍ୟାଂ ଲବ୍ଧସ୍ମୃତିର୍ଯାତ୍ୟତିପାରମଧ୍ୱନଃ । ୧୬ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ
ବ୍ରାହ୍ମଣରହୂଗଣସମ୍ବାଦେ ନାମ ଦ୍ୱାଦଶୋଽଧ୍ୟାୟଃ । ୧୨ ।

---

ହେ ରାଜନ୍ ! ମୁଁ ପୂର୍ବ ଜନ୍ମରେ ଭରତ ନାମକ ରାଜା ଥିଲି । ଐହିକ ଓ ପାରତ୍ରିକ ସଙ୍ଗ ବିମୁକ୍ତ ଥିଲି ଏବଂ ଭଗବାନଙ୍କର ଆରାଧନା କରୁଥିଲି, କିନ୍ତୁ ଦୈବକ୍ରମେ ଗୋଟିଏ ମୃଗ ସଙ୍ଗ ଲାଭକରି ମୋର ଉଦ୍ଦେଶ୍ୟ ବିଫଳ ହେଲା । ୧୪ ।

ହେ ବୀର ! କିନ୍ତୁ କୃଷ୍ଣ ସେବା ହେତୁ ମୋର ଯେଉଁ ସ୍ମୃତି ଉତ୍ପନ୍ନ ହୋଇଥିଲା, ମୃଗଦେହ ଲାଭ କଲେ ମଧ୍ୟ ତାହା ମୋତେ ପରିତ୍ୟାଗ କଲା ନାହିଁ । ସୁତରାଂ ମୁଁ ଜନ ସମାଜଭୟରେ ଅସଙ୍ଗ ଅବସ୍ଥାରେ ପ୍ରଚ୍ଛନ୍ନ ଭାବରେ ବିଚରଣ କରୁ ଅଛି । ୧୫ ।

ଏହି ପୃଥିବୀରେ ଅସଙ୍ଗ ମହାଜନମାନଙ୍କ ସଙ୍ଗରୁ ଯେଉଁ ଜ୍ଞାନ ଜନ୍ମେ, ମନୁଷ୍ୟ ସେହି ଜ୍ଞାନରୂପ ଖଡ୍ଗ ଦ୍ୱାରା ମୋହକୁ ଛେଦନକରି ଓ ଶ୍ରୀହରିଲୀଳା କଥନ ଓ ତତ୍ଶ୍ରବଣ ଦ୍ୱାରା ସ୍ମୃତି ଲାଭକରି ସଂସାର ମାର୍ଗର ପରପାରକୁ ଗମନ କରି ଶ୍ରୀହରିଙ୍କୁ ବା ବ୍ରହ୍ମଙ୍କୁ ପ୍ରାପ୍ତ ହୋଇ ପାରେ । ୧୬ ।

---

ଏବେ ହେ ଶୁଣ ନୃପମଣି
ଅମ୍ଭର ପୂର୍ବଜନ୍ମ ବାଣୀ
ଭରତ ନାମେ ରାଜା ମୁହିଁ
ବ୍ରହ୍ମାର ବଂଶେ ଜାତ ହୋଇ
ସର୍ବ ସମ୍ପଦ ଦୂରକଲି
ଇଷ୍ଟକେ ପ୍ରଭୁଙ୍କୁ ଭଜିଲି
ମୋହର ପୂର୍ବ କର୍ମ ଫଳେ
ମୃଗର ସଙ୍ଗେ ମତ୍ତହେଲେ
ଯେଣୁ ଅସାଧୁ ଆଚରିଲି
ମୃଗ ଦେହକୁ ମୁଁ ପାଇଲି ।୧୪।
ପୂର୍ବ ଜନ୍ମର ପୁଣ୍ୟ ଥିଲା
ପ୍ରଭୁର କରୁଣା ହୋଇଲା
ତେଣୁ ପୂର୍ବର କଥାମାନ
ମୋହର ହୋଇଲା ସ୍ମରଣ

ଏବେ ହେ ଶୁଣ ନୃପବର
ଲଭିଲି ଏ ବିପ୍ର ଶରୀର
ଏଣୁ ସଙ୍ଗକୁ ମୁହିଁ ଡରି
ଏ ଜଡ଼ ରୂପକୁ ଆଦରି
ଭ୍ରମଇଁ ଏ ଘୋର ସଂସାରେ
କର୍ମବନ୍ଧନ ଖଣ୍ଡିବାରେ ।୧୫।
ଏକାକୀ ନିବୃତ୍ତି ବେଶରେ
ମନ ରଖେଣି କୃଷ୍ଣଠାରେ
ଶୁଣ ରାଜନ ଏକମନେ
ଏଣୁ ସଂସାରେ ପ୍ରାଣିମାନେ
ଅସତସଙ୍ଗୁ ମୋହ ହୋଏ
ନାନା ଯୋନିରେ ଦେହ ବହେ
ସାଧୁସଙ୍ଗରୁ ଏହାର
ପବିତ୍ର ହୁଅଇ ଶରୀର

ନିଶ୍ଚଳମତି ହୋଏ ତହୁଁ
ସଂସାର ସାଗରୁ ତରଇ
ସାଧୁସଙ୍ଗମ-ପ୍ରଭାବରେ
ପ୍ରଭୁର କୃପା ହୋଏ ତାରେ
ସେ ଯେ ଅନାଦି ଚକ୍ରଧର
ଜଗତବନ୍ଧୁ ଦାମୋଦର ।୧୬।
ସେ ପ୍ରଭୁ ସଦ୍ପ୍ରସାଦ ଚିତେ
ମନ ମୋ ରହିବ ଇଷ୍ଟକେ
ବୋଲଇ ବିପ୍ର ଜଗନ୍ନାଥ
ପଞ୍ଚମସ୍କନ୍ଧେ ଭାଗବତ
ଜଡ଼ଭରତ ଜନ୍ମବାଣୀ
ଶୁଣି ସଂସାରୁ ତର ପ୍ରାଣୀ ।



**ଭାବାର୍ଥ :—**

ରାଜା ରହୁଗଣ ନିଜର ସନ୍ଦେହ ଭରତଙ୍କ ନିକଟରେ ପ୍ରକାଶ କରନ୍ତେ, ସେ ତାଙ୍କର ସନ୍ଦେହ ବିମୋଚନାର୍ଥ କହିଥିଲେ—'ଏହି ନରଦେହ ପାର୍ଥିବ'। ଦେହ ନାନାପ୍ରକାର—ପାର୍ଥିବ, ତୈଜସ, ଜଳୀୟ, ବାୟବୀୟ ଇତ୍ୟାଦି । ମାନବ ଓ ପଶୁ ପକ୍ଷୀ ପ୍ରଭୃତି ଯାହା ଆମ୍ଭମାନଙ୍କର ଦୃଷ୍ଟି ଗୋଚର ହୁଏ, ତାହା ପାର୍ଥିବ ବସ୍ତୁରେ ନିର୍ମିତ । ସୂର୍ଯ୍ୟରେ ପୃଥିବୀ ପରି ଗୋଟିଏ ଲୋକ ମଧ୍ୟ ଅଛି । ତହିଁର ଉପାଦାନ ତେଜ-ଦ୍ୱାରା ଗଠିତ । ବରୁଣଲୋକର ଦେହମାନ ଜଳୀୟ । ବାୟୁଲୋକର ଉପାଦାନ ବା ବାୟବୀୟ ଯଥା—ପିଶାଚାଦି । ଏହି ପାର୍ଥିବ ଦେହ ଗତିଶୀଳ, ପ୍ରାକୃତ କର୍ମବଶରେ ଜୀବ ଏହି ଦେହ ଲାଭ କରିଥାଏ । ଯାହାର ଯେପରି କର୍ମ, ତଦନୁସାରେ ଆତ୍ମା ଶୁଭାଶୁଭମୟ ପଶୁ, ପକ୍ଷୀ, କୀଟ, ପତଙ୍ଗ, ମନୁଷ୍ୟାଦି ଦେହକୁ ଆଶ୍ରୟ କରିଥାଏ । ମନୁଷ୍ୟ ଦେହ ସହିତ ଘଟ, ପଟ, ମୃତ୍ତିକା, ବୃକ୍ଷ, ଲତାର କୌଣସି ପାର୍ଥକ୍ୟ ନାହିଁ । ପାର୍ଥକ୍ୟ କେବଳ ଆକାର ଗତ, ଏହି ଦେହର କିଛିମାତ୍ର ସତ୍ୟ ନୁହେଁ । ଏହା ବିନାଶ ପ୍ରାପ୍ତ ହେଲେ ଏହା ପୁଣି ପୃଥିବୀରେ ପର୍ଯ୍ୟବେସିତ ହେବ । ହେ ରାଜନ୍ ! ଆଜି ଆପଣ ରାଜା, ଲୋକେ ଆପଣଙ୍କର ଆଦେଶ ପାଳନ କରିବାକୁ ରାଜି ରହି ଅଛନ୍ତି । ଆପଣ କାହା ପ୍ରତି ଅନୁଗ୍ରହ, କାହା ପ୍ରତି ନିଗ୍ରହ ପ୍ରକାଶ କରୁଅଛନ୍ତି । କିନ୍ତୁ ଏହାର ମଧ୍ୟ ପରିବର୍ତ୍ତନ ଅଛି । ଯେଉଁମାନେ ଆଜି ଆପଣଙ୍କର ଦାସ, ସେମାନେ ଦିନେ ପ୍ରଭୁ ହୋଇ ପାରନ୍ତି, ଆପଣ ମଧ୍ୟ ଦାସ ହୋଇ ପାରନ୍ତି । କେବଳ ମାତ୍ର ବ୍ରହ୍ମହିଁ ଯଥାର୍ଥ ଜ୍ଞାନମୟ । ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ, ବ୍ରହ୍ମ ଅପେକ୍ଷା ବିଶୁଦ୍ଧ କିଛି ନାହିଁ । ସେହି ବ୍ରହ୍ମହିଁ ସତ୍ୟ, ପଣ୍ଡିତମାନେ ସେହି ବ୍ରହ୍ମଙ୍କୁ ଭଗବାନ୍ ବାସୁଦେବ ବୋଲି ଜ୍ଞାନ କରିଥାନ୍ତି । ହେ ରାଜନ୍ ! ଆପଣ ସ୍ମରଣ ରଖନ୍ତୁ—ଯାଗ ଯଜ୍ଞାଦିଦ୍ୱାରା ସେହି ବ୍ରହ୍ମଲାଭ ହୁଅନ୍ତି ନାହିଁ । ଜ୍ଞାନମୟ ଆତ୍ମାର ଉଦ୍‌ବୋଧନ ଦ୍ୱାରା ସେହି ବ୍ରହ୍ମ ପ୍ରାପ୍ତିହୁଏ । ଆପଣ ଯେ ଯାଗ ଯଜ୍ଞ କରିଅଛନ୍ତି, ଅତିଥି ଭୋଜନ କରାଇ ଅଛନ୍ତି, କିମ୍ବା କର୍ମ ଆଦି କରୁ ଅଛନ୍ତି, ତାହା ରାଜକୀୟ ଐଶ୍ୱର୍ଯ୍ୟର ନିଦର୍ଶନ ସ୍ୱରୂପ । ଏଥିରେ ଭଗବଦ୍ ପ୍ରାପ୍ତିର ଉପାୟ ନାହିଁ । କେବଳ ମାତ୍ର ସାଧୁଜନମାନଙ୍କର ପଦରେଣୁ ଗ୍ରହଣ କରି ଆପଣ ପବିତ୍ର ହେଲେ, ସେମାନଙ୍କର ସଙ୍ଗ ଲାଭରେ ଆତ୍ମାକୁ ପବିତ୍ର କରି ପାରିଲେ, ଆପଣ ବ୍ରହ୍ମପଦ ଲାଭ କରି ପାରନ୍ତି । ସାଧୁମାନଙ୍କଠାରୁ ଭଗବଦ୍ ଗୁଣ ଶ୍ରବଣ ଓ ସ୍ୱୟଂ ଭଗବତ୍ ଗୁଣ କୀର୍ତ୍ତନଦ୍ୱାରା ଭଗବତ୍ ପ୍ରାପ୍ତି ସମ୍ଭବ ହୋଇପାରେ ।

ତଦନନ୍ତର ଜଡ଼ଭରତ ସ୍ୱୀୟ ପୂର୍ବଜନ୍ମ ବୃତ୍ତାନ୍ତ ଓ ଭଗବତ୍ କରୁଣାରୁ ତାଙ୍କର ସ୍ମୃତି ବିନାଶ ଘଟି ନ ଥିବାର ବୃତ୍ତାନ୍ତ ଶୁଣାଇଥିଲେ ।



# ତ୍ରୟୋଦଶ ଅଧ୍ୟାୟ ।

ତ୍ରୟୋଦଶେଽଟବୀରୂପାତ୍ ବୃଥା ତତ୍ତ୍ୱନିରୂପଣମ୍ ।
ଇତି ବୈରାଗ୍ୟଦାର୍ଢ୍ୟାୟ ଭବାଟବ୍ୟପବର୍ଣ୍ଣ୍ୟତେ ।୦। (ଶ୍ରୀଧରସ୍ୱାମୀ)

ଶ୍ରୀବ୍ରାହ୍ମଣ ଉବାଚ ।

ଦୁରତ୍ୟୟେଽଧ୍ୱନ୍ୟଜୟା ନିବେଶିତୋ ରଜସ୍ତମଃସତ୍ତ୍ୱବିଭକ୍ତକର୍ମଦୃକ୍ ।
ସ ଏଷ ସାର୍ଥୋଽର୍ଥପରଃ ପରିଭ୍ରମନ୍ ଭବାଟବୀଂ ଯାତି ନ ଶର୍ମ ବିନ୍ଦତି ।୧।
ଯସ୍ୟାମିମେ ଷଣ୍ନରଦେବ ଦସ୍ୟବଃ ସାର୍ଥଂ ବିଲୁମ୍ପନ୍ତି କୁନାୟକଂ ବଳାତ୍ ।
ଗୋମାୟବୋ ଯତ୍ର ହରନ୍ତି ସାର୍ଥିକଂ ପ୍ରମତ୍ତମାବିଶ୍ୟ ଯଥୋରଣଂ ବୃକାଃ ।୨।

---

## ଶୌରୀର ରାଜାଙ୍କଠାରେ ବୈରାଗ୍ୟ ଉତ୍ପାଦନ ।

ତ୍ରୟୋଦଶ ଅଧ୍ୟାୟରେ ବିଷୟାସକ୍ତଲୋକଙ୍କୁ ତତ୍ତ୍ୱୋପଦେଶ ଦେବା ବୃଥା, ତେଣୁ ଭବାଟବୀର କ୍ଳେଶ ବର୍ଣ୍ଣନା କରି ଯାଇ ଅଛି । ୦ ।

ଶ୍ରୀବ୍ରାହ୍ମଣ କହିଲେ :—

ପ୍ରବୃତ୍ତିମାର୍ଗ ଓ ନିବୃତ୍ତି ମାର୍ଗ—ଏହି ଦୁଇମାର୍ଗ ମଧ୍ୟରୁ ଅବିଦ୍ୟା ଜୀବକୁ ପ୍ରବୃତ୍ତି ମାର୍ଗରେ ପ୍ରବର୍ତ୍ତିତ କରେ । ସାତ୍ତ୍ୱିକ, ରାଜସିକ ଓ ତାମସିକ କର୍ମକୁ ଜୀବ ନିଜର କର୍ତ୍ତବ୍ୟ ବୋଲି ମନେକରେ । ବଣିକମାନେ ଯେପରି ଅର୍ଥୋପାର୍ଜ୍ଜନ ନିମନ୍ତେ ନାନାଦେଶ ବିଦେଶ ଭ୍ରମଣ କରୁ କରୁ କୌଣସି ଦୁଃଖ ବହୁଳ ମହାରଣ୍ୟ ମଧ୍ୟରେ ପ୍ରବେଶକରି ଦୁଃଖ ଭୋଗ କରିଥାନ୍ତି, ସେହିପରି ଜୀବଗଣ ନିଜସୁଖ ସାଧନ ନିମିତ୍ତ ଭ୍ରମଣ କରୁକରୁ ସଂସାରକୁ ଆସି ଶର୍ମ ଅର୍ଥାତ୍ ସୁଖ ବା ମଙ୍ଗଳ ଲାଭ କରନ୍ତି ନାହିଁ । ୧ ।

ଏହି ସଂସାର ଅରଣ୍ୟମଧ୍ୟରେ ଛଅଜଣ ଦସ୍ୟୁ ବାସ କରନ୍ତି । ସେମାନେ କୁନାୟକ କର୍ତ୍ତୃକ ଚାଳିତ ହୋଇ ବଣିକମାନଙ୍କର ଧନ ବଳପୂର୍ବକ ହରଣ କରନ୍ତି । ଯେପରି ବ୍ୟାଘ୍ର ମେଷକୁ ହରଣ କରେ, ସେହିପରି ବନମଧ୍ୟରେ ଶୃଗାଳମାନେ ଅସାବଧାନ ପଥିକକୁ ଇତସ୍ତତଃ ଆକର୍ଷଣ କରି ଘେନି ଯାନ୍ତି । ୨ ।

---

ବୈରାଗ୍ୟ ନାହିଁ ଯା ହୃଦରେ, ବୃଥା କହିବା ତତ୍ତ୍ୱତାରେ । ଏଣୁ ଏଭବାଟବୀକ୍ଳେଶ, ତ୍ରୟୋଦଶରେଉପଦେଶ

ଶ୍ରୀ ବ୍ରାହ୍ମଣ ଉବାଚ—

ଏ ପଥ ଅତ୍ୟନ୍ତ ଦୁର୍ଗମ
ପ୍ରବୃତ୍ତିମାର୍ଗ ଯାର ନାମ
ମାୟାରେ ତହିଁ ପ୍ରବେଶିଣ
ଯେ ଭବ ଗହନ ଅରଣ୍ୟ
ସତ୍ତ୍ୱରଜତମର ମତେ
ପୃଥକଭାବେ କର୍ମ ଯତେ
ସଂସାର ଅରଣ୍ୟେ ଭ୍ରମଇ
ସୁଖର ଲେଶ ତାର ନାହିଁ
ଯେମନ୍ତ ବଣିଜାରମାନେ
ଅର୍ଥ ଅର୍ଜନ ଲୋଭମନେ
ଏ ଯେ ସଂସାର ମହାଘୋର
ଅରଣ୍ୟ ଅତିଭୟଙ୍କର
ଏଥି ନିବେଶେ ମୂଢ ମନ
ନାନା ଯାତନାର ଯେ ସ୍ଥାନ ।୧।
ଯେ ବନେ ଷଡ ଇନ୍ଦ୍ରି ଚୋର
ନାନା ଭୋଗରେ ତତପର
ଦେଖ ସଂସାରେ କୁନାୟକ
ବୁଦ୍ଧି ସାରଥି ଅବିବେକ
ଶଗାଳତୁଲ୍ୟ ଦାର ପୁତ୍ର
ସେ ବନେ ଅଛନ୍ତି ନିରତ
ଯେ ଯାହାମତେ ଆକର୍ଷନ୍ତି
ମେଷକୁ ଯେସନେ ବୃକପନ୍ତି ।୨।

ପ୍ରଭୃତବୀରୁତ୍ତୃଣଗୁଳ୍ମଗହ୍ୱରେ କଠୋରଦଂଶୈର୍ମଶକୈରୁପଦ୍ରୁତଃ ।
କ୍ୱଚିତ୍ତୁ ଗନ୍ଧର୍ବପୁରଂ ପ୍ରପଶ୍ୟତି କ୍ୱଚିତ୍ କ୍ୱଚିଚ୍ଚାଶୁରୟୋଲ୍ମୁକଗ୍ରହମ୍ । ୩ ।
ନିବାସତୋୟଦ୍ରବିଣାତ୍ମବୁଦ୍ଧି ସ୍ତତସ୍ତତୋ ଧାବତି ଭୋ ଅଟବ୍ୟାମ୍ ।
କ୍ୱଚିଚ୍ଚ ବାତ୍ୟୋତ୍ଥିତପାଂଶୁଧୂମ୍ରା ଦିଶୋ ନ ଜାନାତି ରଜସ୍ୱଲାକ୍ଷଃ । ୪ ।
ଅଦୃଶ୍ୟଝିଲ୍ଲୀସ୍ୱନକର୍ଣ୍ଣଶୂଲ ଉଲୂକବାଗ୍ଭିର୍ବ୍ୟଥିତାନ୍ତରାତ୍ମା ।
ଅପୁଣ୍ୟବୃକ୍ଷାନ୍ ଶ୍ରୟତେ କ୍ଷୁଧାର୍ଦ୍ଦିତୋ ମରୀଚିତୋୟାନ୍ୟଭିଧାବତି କ୍ୱଚିତ୍ ।୫।

---

ଏହି ବନମଧ୍ୟରେ ଗୋଟିଏ କ୍ଷେତ୍ରଅଛି, ତହିଁରେ ଲତା, ତୃଣ, ଗୁଳ୍ମ, ଥିବାରୁ ପ୍ରବେଶ କରିବା ଦୁଷ୍କର ହୋଇଅଛି । ଯେଉଁ ବ୍ୟକ୍ତି ଏହି ଅରଣ୍ୟମଧ୍ୟରେ ପ୍ରବେଶ କରେ ସେ ତୀବ୍ର ଦଂଶ (ଡାଂଶ) ମଶକ ପ୍ରଭୃତିଙ୍କ ଦ୍ୱାରା ଉତ୍ପୀଡ଼ିତ ହୁଏ । ବେଳେ ବେଳେ ସେ ଗନ୍ଧର୍ବପୁରୀ ଦର୍ଶନ କରିଥାଏ, ବେଳେ ବେଳେ ବେଗବାନ୍ ଉଲ୍କାକାର ପିଶାଚ ତାହାର ଦୃଷ୍ଟି ଗୋଚର ହୁଏ । ହେ ରାଜନ୍ ! ଏ ବ୍ୟକ୍ତି ବାସସ୍ଥାନ, ଧନ, ଜନ ସଂଗ୍ରହରେ ବୁଦ୍ଧି ନିବେଶକରି ବନମଧ୍ୟରେ ଇତସ୍ତତଃ ଧାବିତ ହୁଏ । ୩ ।

ହେ ରାଜନ୍ ! ନିବାସସ୍ଥଳ, ଜଳ ଓ ଧନରେ ଆତ୍ମବୁଦ୍ଧିସମ୍ପନ୍ନ ବଣିକଦଳ ସେହି ଅରଣ୍ୟମଧ୍ୟରେ ଧାବିତ ହୋଇ କୌଣସିଠାରେ ବାତ୍ୟାଜନିତ ଧୂଳିପଟଳାଚ୍ଛନ୍ନ ଦିଗମାନଙ୍କୁ ରଜୋବ୍ୟାପ୍ତ ନୟନ ହେତୁ ଜାଣି ପାରନ୍ତି ନାହିଁ ଅର୍ଥାତ୍ ସେମାନଙ୍କର ଦିଗଭ୍ରାନ୍ତି ଘଟିଥାଏ । ୪ ।

କୌଣସିସ୍ଥାନରେ ଝିଲ୍ଲୀ ବା ଝିଙ୍କାରି ନାମକ କୀଟର କଠୋର ଶବ୍ଦରେ ସେମାନଙ୍କର କର୍ଣ୍ଣ ପୀଡ଼ିତ ହୋଇଥାଏ ଏବଂ କୌଣସିସ୍ଥାନରେ ପେଚକର କୁତ୍ସିତସ୍ୱର ସେମାନଙ୍କର ଅନ୍ତଃକରଣକୁ ବ୍ୟଥିତ କରିଥାଏ ହେ ରାଜନ୍ ! ଏହି ବଣିକଦଳ ଏହିପରି କ୍ଷୀଣ ହୋଇ କ୍ଷୁଧାର୍ତ୍ତ ହେଲେ ଯେଉଁମାନଙ୍କର ଛାୟା ମଧ୍ୟ ପାପର କାରଣ, ତାଦୃଶ ଅପୁଣ୍ୟ ବୃକ୍ଷମାନଙ୍କୁ ଆଶ୍ରୟ କରନ୍ତି, କୌଣସିଠାରେ ବା ମରୀଚିକା ଦେଖି ସେମାନେ ଜଳପାନାର୍ଥ ଗମନ କରିଥାନ୍ତି । ୫ ।

---

ସେ ବନେ ଲତା ତୃଣ ଗୁଳ୍ମ
ଗହ୍ୱର ପ୍ରାୟ ଜାମ୍ୟ କର୍ମ
ଦୁର୍ଜନ ମଶକାଦି ତେଣେ
ପୀଡ଼ନ୍ତି କଠୋର ଦଂଶନେ
ଗନ୍ଧର୍ବପୁର ପ୍ରାୟ ଦେହେ
ମଣେ ଅସତ୍ୟ ସତ୍ୟ ପ୍ରାୟେ
ନିବାସ ପଶୁ ଯେ ଦ୍ରବିଣ
ତହିଁରେ ହୋଇ ତୃଷ୍ଣମନ

କରଇ ତହିଁ ଆତ୍ମବୁଦ୍ଧି
ଏମନ୍ତେ ସେ ବନେ ଦୁର୍ବୁଦ୍ଧି
ବାତ ଭ୍ରମିତ ରେଣୁଲାଗି
କେତେବେଳେ ଚକ୍ଷୁ ତମଭାଗୀ । ୪ ।
ବିବିଧ ଘୋର ସ୍ୱନ ଲାଗି
କର୍ଣ୍ଣ ହୁଅଇ ଦୁଃଖଭାଗୀ
ଉଲୂକ ଆଦି ଘୋର ବାଣୀ
ଦୁଃଖିତ ଆତ୍ମା ତାହା ଶୁଣି

କ୍ଷୁଧା ତୃଷିତ କେବେ ହୋଇ
ନିଷ୍ଫଳ ବୃକ୍ଷକୁ ଧାମଇଁ
କେବେ ବା ମୃଗତୃଷ୍ଣା ଦେଖି
ଧାମଇଁ ଜଳପ୍ରାୟ ଲକ୍ଷି
ନିର୍ଦ୍ଧନ ହୋଇଣ ତହିଁରେ
ଧାମଇଁ ଶୁଷ୍କ ନଦୀତୀରେ

କ୍ୱଚିଦ୍ବିତତୋୟାଃ ସରିତୋଽଭିଯାତି ପରସ୍ପରଂ ଚାଲଷତେ ନିରନ୍ଧଃ ।
ଆସାଦ୍ୟ ଦାବଂ କ୍ୱଚିଦଗ୍ନିତପ୍ତୋ ନିର୍ବିଦ୍ୟତେ କ୍ୱ ଚ ଯକ୍ଷୈର୍ହୃତାସୁଃ । ୬ ।
ଶୂରୈର୍ହୃତସ୍ୱଃ କ୍ୱ ଚ ନିର୍ବିଣ୍ଣଚେତାଃ ଶୋଚନ୍ବିମୁହ୍ୟନ୍ନୁପଯାତି କଶ୍ମଲମ୍ ।
କ୍ୱଚିଚ୍ଚ ଗନ୍ଧର୍ବପୁରଂ ପ୍ରବିଷ୍ଟଃ ପ୍ରମୋଦତେ ନିର୍ବୃତବନ୍ମୁହୂର୍ତ୍ତମ୍ । ୭ ।
ଚଲନ୍ କ୍ୱଚିତ୍ କଣ୍ଟକଶର୍କରାଙ୍ଘ୍ରିର୍ନଗାରୁରୁକ୍ଷୁର୍ବିମନା ଇବାସ୍ତେ ।
ପଦେ ପଦେଽଭ୍ୟନ୍ତରବହ୍ନିନାର୍ଦ୍ଦିତଃ କୌଟୁମ୍ବିକଃ କ୍ରୁଧ୍ୟତି ବୈ ଜନାୟ । ୮ ।
କ୍ୱଚିନ୍ନିଗୀର୍ଣ୍ଣୋଽଜଗରାହିଣା ଜନୋ ନାବୈତି କିଞ୍ଚିଦ୍ବିପିନେଽପବିଦ୍ଧଃ ।
ଦଷ୍ଟଃ ସ୍ମ ଶେତେ କ୍ୱ ଚ ଦନ୍ଦଶୂକୈରନ୍ଧୋଽନ୍ଧକୂପେ ପତିତସ୍ତମିସ୍ରେ । ୯ ।

---

ଏବଂ ସେମାନେ କେବେ କେବେ ଜଳଶୂନ୍ୟ ନଦୀ ମଧ୍ୟରେ ପ୍ରବେଶ କରୁଥାନ୍ତି ଏବଂ କେବେ କେବେ ନିରନ୍ନ ହୋଇ ପରସ୍ପର ନିକଟରେ ବା ଦାୟାଦମାନଙ୍କ ନିକଟରେ ଅନ୍ନାଦିଭିକ୍ଷା କରୁଥାନ୍ତି; କେତେବେଳେ ଅବା ଦାବାନଳ ମଧ୍ୟରେ ପଡ଼ି ଅଗ୍ନିତପ୍ତ ବଣିକମାନେ ବିପନ୍ନ ହୋଇ ଯକ୍ଷ ରାକ୍ଷସଙ୍କ କର୍ତ୍ତୃକ ପ୍ରାଣୋପମ ଧନ ଅପହୃତ ହେବାରୁ, ସେମାନେ ନିର୍ବେଦ ହୁଅନ୍ତି । ୬ ।

ହେ ରାଜନ୍ ! କେବେ କେବେ ବଳବାନ୍ ଶତ୍ରୁ ସେମାନଙ୍କର ସର୍ବସ୍ୱ ଅପହରଣ କରି ନିଅନ୍ତି, ସେତେବେଳେ ସେମାନେ ବିଷଣ୍ଣ ଚିତ୍ତରେ ଶୋକାଭିଭୂତ ହୋଇ ମୂର୍ଚ୍ଛିତ ହୋଇ ପଡ଼ନ୍ତି, କେତେବେଳେ ଅବା ଗନ୍ଧର୍ବ ପୁରରେ ପ୍ରବିଷ୍ଟ ହୋଇ ମୁହୂର୍ତ୍ତକ ପାଇଁ ନିର୍ବୃତ୍ତ ବା ସୁଖୀ ବ୍ୟକ୍ତି ତୁଲ୍ୟ ଆମୋଦ ପ୍ରମୋଦ କରୁଥାନ୍ତି । ୭ ।

କେବେ କେବେ ପର୍ବତାରୋହଣ କରିବା ଇଚ୍ଛାରେ ଗମନ କରୁ କରୁ ସେମାନଙ୍କର ଚରଣ କଣ୍ଟକ ଓ କଙ୍କର ବିଦ୍ଧ ହୁଏ, ସେତେବେଳେ ସେମାନେ ବିମନା ହୋଇ ଅବସ୍ଥାନ କରନ୍ତି । କେତେବେଳେ ଅବା ପରିଜନବର୍ଗ ଅଗ୍ନିରେ ଦହ୍ୟମାନ ହୋଇ ଏହି ବ୍ୟକ୍ତିପ୍ରତି କ୍ରୁଦ୍ଧ ହୁଅନ୍ତି । ୮ ।

ହେ ରାଜନ୍ ! ଏହି ଅରଣ୍ୟ ମଧ୍ୟରେ କୌଣସି କୌଣସି ସ୍ଥାନରେ କୌଣସି ବ୍ୟକ୍ତିକୁ ଅଜଗର ସର୍ପ ଗ୍ରାସ କରିଥାଏ, ସେ କିଛି ଜାଣିପାରେ ନାହିଁ । କୌଣସିଠାରେ ଅବା କୌଣସିଲୋକ ପରିତ୍ୟକ୍ତ ଶବପରି ପଡ଼ି ରହିଥାଏ, ତାହାକୁ ହିଂସ୍ରଜନ୍ତୁମାନେ ଅର୍ଥାତ୍ ଦୁର୍ଜନମାନେ ଦଂଶନ କରନ୍ତି, କୌଣସିଠାରେ ଅନ୍ଧମାନେ ଅନ୍ଧକୂପରେ ପଡ଼ି ଦୁଃଖରେ ଲୀନ ହୁଅନ୍ତି । ୯ ।

---

ଅନ୍ୟୋନ୍ୟ ଧନକୁ ସେ ବହି
ନିର୍ଧନ ପ୍ରାଣିଙ୍କୁ ମାଗଇ
ଦାରିଦ୍ର ଅଗ୍ନି ତୁଲ୍ୟ ହୋଏ
ତହିଁ କ୍ଷୀଡ଼ରି ମାଯ୍ୱଟମାହେ । ୫,୬
ନାନା ଶୋକ ଦୁଃଖକୁ ପାଇ
କ୍ଷଣକେ ପୁଣି ପାସୋରଇ

ଗନ୍ଧର୍ବପୁରେ ପ୍ରବେଶିଣ
ପ୍ରମୋଦ ଲଭେ ଏକକ୍ଷଣ
କଣ୍ଟକ ପାଷାଣ ଦୁର୍ଗମେ
ନିରତେ ଭ୍ରମେ ପଥଭ୍ରମେ
ଅନ୍ତର ବାହାରେ ପୀଡ଼ିତ
ପ୍ରାଣୀ ହୁଅଇ ଅବିରତ

କୁଟୁମ୍ବପାଇଁ ନାନା ପାପ
କରଇ ପଛେ କରେ କୋପ । ୭,୮
ଦୁଷ୍ଟ ଜନ୍ତୁରେ ଦୁଃଖୀହୋଇ
ବିପିନେ କେବେ ବା ମରଇ
ଅନ୍ଧ ଯେସନେ ଅନ୍ଧକୂପେ
ପଡ଼ଇ କର୍ମର ବିପାକେ । ୯ ।

କହିଁସ୍ମିତର୍ କ୍ଷୁଦ୍ରରସାନ୍ ବିଚିନ୍ୱଂସ୍ତନ୍ମକ୍ଷିକାଭିର୍ବ୍ୟଥିତୋ ବିମାନଃ ।
ତତ୍ରାତିକୃଚ୍ଛ୍ରାଂ ପ୍ରତିଲବ୍ଧମାନୋ ବଳାଦ୍‌ବିଲୁମ୍ପନ୍ତ୍ୟଥ ତାଂସ୍ତତୋଽନ୍ୟେ । ୧୦
କ୍ୱଚିଚ ଶୀତାତପବାତବର୍ଷପ୍ରତିକ୍ରିୟାଂ କର୍ତ୍ତୁମନୀଶ ଆସ୍ତେ ।
କ୍ୱଚିନ୍ମିଥୋ ବିପଣନ୍ ଯଚ କିଞ୍ଚିଦ୍ ବିଦ୍ୱେଷମୃଚ୍ଛତ୍ୟୁତ ବିତ୍ତଶାଠ୍ୟାତ୍ । ୧୧ ।
କ୍ୱଚିତ୍ କ୍ୱଚିତ୍ କ୍ଷୀଣଧନସ୍ତୁ ତସ୍ମିନ୍ ଶଯ୍ୟାସନସ୍ଥାନବିହାରହୀନଃ ।
ଯାଚନ୍ପରାଦପ୍ରତିଲବ୍ଧକାମଃ ପାରକ୍ୟଦୃଷ୍ଟିର୍ଲଭତେଽବମାନମ୍ । ୧୨ ।
ଅନ୍ୟୋଽନ୍ୟବିତ୍ତବ୍ୟତିଷଙ୍ଗବୃଦ୍ଧବୈରାନୁବନ୍ଧୋ ବିବହନ୍ ମିଥଶ୍ଚ ।
ଅଧ୍ୱନ୍ୟମୁଷ୍ମିନ୍ନୁରୁକୃଚ୍ଛ୍ରବିତ୍ତବାଧୋପସର୍ଗୈର୍ବିହରନ୍ ବିପନ୍ନଃ । ୧୩ ।

---

କୌଣସି କୌଣସି ସ୍ଥାନରେ କୌଣସି ବ୍ୟକ୍ତି କ୍ଷୁଦ୍ରରସ ବା ମଧୁ ବା ପରଦାରାଦ ଅନ୍ୱେଷଣ କରୁ କରୁ ମକ୍ଷିକା ମାନଙ୍କ କର୍ତ୍ତୃକ ବା ସ୍ତ୍ରୀର ଭ୍ରାତୃସ୍ୱାମିମାନଙ୍କ କର୍ତ୍ତୃକ ଦଣ୍ଡିତ ବା ଅପମାନିତ ହୋଇଥାଏ । ଯେବେ ଅତି କଷ୍ଟରେ ତାହା ଲାଭ କରନ୍ତି, ତେବେ ଅନ୍ୟଲୋକ ଆସି ବଳ ପୂର୍ବକ ତାହା ନେଇଯାଏ ।୧୦

ଏହି ଅରଣ୍ୟ ମଧ୍ୟରେ କୌଣସିଠାରେ ଶୀତ, କୌଣସିଠାରେ ରୌଦ୍ର, କୌଣସିଠାରେ ଝଞ୍ଜାବାତ ବା ବୃଷ୍ଟିର ପ୍ରତିକାର କରିବାକୁ ଅସମର୍ଥ ହୋଇ ବସି ରହେ । କୌଣସିଠାରେ କୌଣସି ବ୍ୟକ୍ତି ପରସ୍ପର ମଧ୍ୟରେ ଯତ୍‌କିଞ୍ଚିତ୍ ଦ୍ରବ୍ୟ ନିମନ୍ତେ ବିକିକିଣି କରୁ କରୁ ଧନବଞ୍ଚନା ହେତୁ ପରସ୍ପର ମଧ୍ୟରେ ବିଦ୍ୱେଷ ଜାତ ହୁଏ । ୧୧ ।

କୌଣସିଠାରେ କୌଣସି ମାନବ କ୍ଷୀଣଧନ ହୋଇ ଶଯ୍ୟା, ଆସନ, ସ୍ଥାନ, ଏବଂ ବିହାର ହୀନ ହୋଇ ଅନ୍ୟ ନିକଟରୁ ତାହା ଭିକ୍ଷା କରିଥାଏ, କିନ୍ତୁ ଯେତେବେଳେ ତାହାର କାମନା ପୂର୍ଣ୍ଣ ନ ହୁଏ, ସେତେବେଳେ ସେ ପରଦ୍ରବ୍ୟ ଗ୍ରହଣରେ ଅଭିଳାଷୀ ହୁଏ, ସେଥିପାଇଁ ସେ ଅପମାନ ସହ୍ୟ କରେ ।୧୨।

ହେ ରାଜନ୍ ! ଏହାରଣ୍ୟ ପଥରେ କୌଣସି କୌଣସି ବ୍ୟକ୍ତି ଧନ ହେତୁ ବୈରବୁଦ୍ଧି ଆଚରଣ କରିଥାନ୍ତି, କେହି କେହି ଧନଗତ ଆଶାରେ ବନ୍ଧୁତା ସ୍ଥାପନ କରିଥାନ୍ତି । କୌଣସି କୌଣସି ବ୍ୟକ୍ତି ଅତିଶୟ ପରିଶ୍ରମ କରନ୍ତି ଏବଂ ଧନନାଶ ଓ ଅନ୍ୟାନ୍ୟ ଉପସର୍ଗ ଦ୍ୱାରା ଏହି ଅରଣ୍ୟମଧ୍ୟରେ ଭ୍ରମଣ କରୁ କରୁ ବିପନ୍ନ ହୁଅନ୍ତି । ୧୩ ।

---

| | | |
|---|---|---|
| ସେ ଲଭନ୍ତେ କଦାଚିତ | କାହୁଁ ବା ଶୀତ ବର୍ଷା ବାତ | ଲୋଡ଼ଇ ପୁଣି ପରଧନ |
| ପର ଯୋଷିତେ ହୋଇ ରତ | ଗ୍ରୀଷମେ ହୁଅଇ ପୀଡ଼ିତ | ତେଣେ ହୁଅଇ ହୀନମାନ ।୧୧,୧୨ |
| ତା ସ୍ୱାମୀ ଦେଖିଲେ ଦଣ୍ଡଇ | ଧନ ବହୁନେ ସ୍ନେହ ନାହିଁ | ଦୁଃଖେ ଅର୍ଜିତ ଯେତେଧନ |
| ତହିଁରେ ବ୍ୟଥିତ ହୁଅଇ ।୧୦। | ଶଯ୍ୟା ଆସନ ଅବା କାହିଁ | କେହି ବା ହରଇ ବସନ |

ତାଂସ୍ତ୍ୟଜନ୍ ବଣିଜାନ୍ ସ ହ୍ୱ ତତ୍ର ତତ୍ର ବିହାୟ ଜାତଂ ପରିଗୃହ୍ୟ ସାର୍ଥଃ ।
ଆବର୍ତ୍ତତେଽଦ୍ୟାପି ନ କଶ୍ଚିଦତ୍ର ବୀରାଧ୍ୱନଃ ପାରମୁପୈତି ଯୋଗମ୍ । ୧୪ ।
ମନସ୍ୱିନୋ ନିର୍ଜିତଦିଗ୍‌ଗଜେନ୍ଦ୍ରା ମମେତି ସର୍ବେ ଭୁବି ବଦ୍ଧବୈରାଃ ।
ମୃଧେ ଶୟୀରନ୍ ନ ତୁ ତଦ୍‌ବ୍ରଜନ୍ତି ଯନ୍ନ୍ୟସ୍ତଦଣ୍ଡୋ ଗତବୈରୋଽଭିଯାତି ।୧୫।
ପ୍ରସଜ୍ଜତି କ୍ୱାପି ଲତାଭୁଜାଶ୍ରୟସ୍ତଦାଶ୍ରୟାବ୍ୟକ୍ତ ପଦଦ୍ୱିଜସ୍ପୃହଃ ।
କ୍ୱଚିତ୍ କଦାଚିଦ୍ଧରିଚକ୍ରତସ୍ତ୍ରସନ୍ ସଖ୍ୟଂ ବିଧତ୍ତେ ବକକଙ୍କଗୃଧ୍ରୈଃ । ୧୬ ।
ତୈର୍ବଞ୍ଚିତୋ ହଂସକୁଲଂ ସମାବିଶନ୍ନରୋଚୟନ୍ ଶୀଲମୁପୈତି ବାନରାନ୍ ।
ତଜ୍ଜାତିରାସେନ ସୁନିର୍ବୃତେନ୍ଦ୍ରିୟଃ ପରସ୍ପରୋଦ୍‌ବୀକ୍ଷଣବିସ୍ମୃତାବଧିଃ । ୧୭ ।

---

ହେ ବୀର ! ସେହି ବଣିକ ଅର୍ଥାତ୍ ମୃତବ୍ୟକ୍ତିକୁ ସେହି ସ୍ଥାନରେ ପରିତ୍ୟାଗ କରି ଏବଂ ନବଜାତ ମାନଙ୍କୁ ସଙ୍ଗରେ ନେଇ ଯେଉଁ ବଣିକମାନେ ଯାତ୍ରା କରିଥିଲେ, କେହି ସେହି ପଥରେ ଯାଇଁ ଶେଷ ସୀମାରେ ଉପସ୍ଥିତ ହୋଇ ପାରିନାହାନ୍ତି । ୧୪ ।

ହେ ରାଜନ୍ ! ଯେଉଁମାନେ ମନସ୍ୱୀ, ଓ ଦିଗ୍‌ଗଜମାନଙ୍କର ଜୟକାରୀ, ସେମାନେ ମଧ୍ୟ ଏହି ଭବାରଣ୍ୟ ମଧ୍ୟରେ "ମୋର ଏହି ଭୂମି" ବୋଲି ଭୂମିନିମିତ୍ତ ପରସ୍ପର ମଧ୍ୟରେ ଶତ୍ରୁତାଚରଣ କରିଅଛନ୍ତି ଏବଂ ସଂସାର କ୍ଷେତ୍ରରେ ଶୟନ କରିଅଛନ୍ତି କିନ୍ତୁ ହିଂସା ବିରହିତ ସନ୍ନ୍ୟାସୀ ବିଷ୍ଣୁଙ୍କର ଯେଉଁ ପରମପଦ ଲାଭ କରିଅଛନ୍ତି, ତାହା ସେମାନେ ପ୍ରାପ୍ତ ହୋଇ ନାହାନ୍ତି । ୧୫ ।

ହେ ରାଜନ୍ ! ଏହି ଭବାରଣ୍ୟ ମଧ୍ୟରେ କେଉଁ ସ୍ଥାନରେ କେଉଁବ୍ୟକ୍ତି ଲତାର ଶାଖା ଅବଲମ୍ବନ କରି ତହିଁରେ ଆସକ୍ତ ହୋଇ ଏବଂ ତଦାଶ୍ରିତ କଳକୂଜନକାରୀ ବିହଗମାନଙ୍କଠାରେ ମମତା ସ୍ଥାପନ କରିଥାନ୍ତି, କେବେ କେବେ କାଳଚକ୍ର ଭୟରେ ଭୀତ ହୋଇ ବକ, କଙ୍କ, ଗୃଧ୍ରମାନଙ୍କ ସହିତ ମିତ୍ରତା କରିଥାନ୍ତି । ୧୬ ।

କିନ୍ତୁ ସେମାନଙ୍କ ଦ୍ୱାରା ପ୍ରତାରିତ ହୋଇ ହଂସମାନଙ୍କ ସହିତ ମିତ୍ରତାସ୍ଥାପନ କରନ୍ତି ମାତ୍ର ସେମାନଙ୍କର ଆଚାର ବ୍ୟବହାରରେ ତୃପ୍ତି ନ ହୋଇ ବାନରମାନଙ୍କ ନିକଟକୁ ଗମନ କରନ୍ତି ଏବଂ ତଜ୍ଜାତୀୟ କ୍ରୀଡ଼ାଦ୍ୱାରା ନିଜ ନିଜର ଇନ୍ଦ୍ରିୟ ଚରିତାର୍ଥ କରିଥାନ୍ତି ଏବଂ ସେମାନଙ୍କର ମୁଖ ଦର୍ଶନ କରି ମୃତ୍ୟୁକୁ ସୁଦ୍ଧା ଭୁଲି ଯାନ୍ତି । ୧୭ ।

---

ତାହାଙ୍କୁ ତେଜି ଅନ୍ୟେଯାନ୍ତି
ପୁଣି ଲେଉଟି ନ ଆସନ୍ତି ।୧୩,୧୪
ଏ ମୋର ଭୂମି ମୋର ଗୃହ
ସଙ୍ଗ୍ରାମେ କରନ୍ତି କଳହ
ଯେ ସର୍ବ ଶ୍ରୀକୃଷ୍ଣେ ଅର୍ପଇ
ତା ଗତି ପାଇବେ ସେ କାହିଁ ।୧୫

ବାଳକ୍ରୀଡ଼ାରେ ମୋହ ହୋଇ
ଯୋଷିତ ଭୁଜଲତା କେହି
ଆଶ୍ରୟ କରି କାଳ ଡରେ
ପାଷଣ୍ଡସଙ୍ଗେ ବିହରେ
ତହିଁ ବଞ୍ଚିତ ହୋଇ ପୁଣ
ହଂସର ତୁଲ୍ୟ ବିପ୍ରଗଣ

ସଙ୍ଗେ ବିହରେ କିଛିକାଳ
ତାଙ୍କ ଆଚାର କୁଳଶୀଳ
ଦେଖି ନ ମଣେ ତାକୁ ଇଷ୍ଟ
ମର୍କଟସଙ୍ଗେ ହୁଏ ଭ୍ରଷ୍ଟ । ୧୬,୧୭

ଦ୍ରୁମେଷୁ ରଂସ୍ୟନ୍ ସୁତଦାରବତ୍ସଳୋ ବ୍ୟବାୟଦୀନୋ ବିବଶଃ ସ୍ୱବନ୍ଧନେ ।
କ୍ୱଚିତ୍ପ୍ରମାଦାଦ୍ଗିରିକନ୍ଦରେ ପତନ୍ ବଲ୍ଲୀଂ ଗୃହୀତ୍ୱା ଗଜଭୀତ ଆସ୍ଥିତଃ ।୧୮।
ଅତଃ କଥଞ୍ଚିତ୍ ସ ବିମୁକ୍ତ ଆପଦଃ ପୁନଶ୍ଚ ସାର୍ଥଂ ପ୍ରବିଶତ୍ୟରିନ୍ଦମ ।
ଅଧ୍ୱନ୍ୟମୁଷ୍ମିନ୍ନଜୟା ନିବେଶିତୋ ଭ୍ରମନ୍ ଜନୋଽଦ୍ୟାପି ନ ବେଦ କଶ୍ଚନ ।୧୯।
ରହୂଗଣ ତ୍ୱମପି ହ୍ୟଧ୍ୱନୋଽସ୍ୟ ସଂନ୍ନ୍ୟସ୍ତଦଣ୍ଡଃ କୃତଭୂତମୈତ୍ରଃ ।
ଅସଜ୍ଜିତାତ୍ମା ହରିସେବୟା ଶିତଂ ଜ୍ଞାନାସିମାଦାୟ ତରାତିପାରମ୍ । ୨୦ ।

ଶ୍ରୀରାଜୋବାଚ ।

ଅହୋ ନୃଜନ୍ମାଖିଳଜନ୍ମ ଶୋଭନଂ କିଂ ଜନଭିସ୍ତ୍ୱପରୈରପ୍ୟମୁଷ୍ମିନ୍ ।
ନ ଯଦ୍ଧୃଷୀକେଶଯଶଃକୃତାତ୍ମନାଂ ମହାତ୍ମନାଂ ପ୍ରଚୁରଃ ସମାଗମଃ ।୨୧।

---

କୌଣସି କୌଣସି ବ୍ୟକ୍ତି ପୁତ୍ର କଳତ୍ରାଦିଙ୍କ ପ୍ରତି ବାତ୍ସଲ୍ୟ ହେତୁ ବୃକ୍ଷ ମଧ୍ୟରେ ଭ୍ରମଣ କରୁ କରୁ ସମ୍ଭୋଗ ଇଚ୍ଛାରେ ଅତି ଦୀନ ଭାବ ଅବଲମ୍ବନ କରନ୍ତି ଏବଂ ଆପଣାର ବନ୍ଧନରେ ବିବଶ ହୋଇ ପଡ଼ନ୍ତି । କୌଣସିଠାରେ ବା କୌଣସି ବ୍ୟକ୍ତି ଭ୍ରମ ବଶତଃ ଗିରି ଗହ୍ୱରରେ ପ୍ରବେଶ କରି ତତ୍ରସ୍ଥ ହସ୍ତୀ ଭୟରେ ଲତା ଅବଲମ୍ବନରେ ଅବସ୍ଥାନ କରନ୍ତି । ୧୮ ।

ହେ ଅରିନ୍ଦମ ! ( ଶତ୍ରୁବିନାଶକାରୀ ) ଏହି ପୁରୁଷ ଏହିପରି ବିପଦରୁ କଦାଚିତ୍ କୌଣସିପ୍ରକାରେ ମୁକ୍ତ ହୋଇ ପୁନର୍ବାର ସଙ୍ଗୀମାନଙ୍କ ସହିତ ମିଳିତ ହୁଏ ମାତ୍ର ଭବାରଣ୍ୟ ପଥରେ ମାୟାଦ୍ୱାରା ଚାଳିତ ହୋଇ କୌଣସି ଭ୍ରମଣକାରୀ ଅଦ୍ୟାପି ଯଥାର୍ଥ ତତ୍ତ୍ୱ ଅବଗତ ହୋଇ ନାହାନ୍ତି । ୧୯ ।

ହେ ରହୁଗଣ ! ତୁମ୍ଭେ ମାୟାଦ୍ୱାରା ଚାଳିତ ହୋଇ ସଂସାର ରୂପ ଅରଣ୍ୟ ମଧ୍ୟରେ ପ୍ରବେଶ କରିଅଛ । ଅତଏବ ତୁମ୍ଭେ ସର୍ବ ପ୍ରାଣିଙ୍କ ପ୍ରତି ନ୍ୟସ୍ତଦଣ୍ଡ ଅର୍ଥାତ୍ ହିଂସାଶୂନ୍ୟ ହୁଅ ଏବଂ ସର୍ବପ୍ରାଣିଙ୍କ ସହିତ ମିତ୍ରତା ସ୍ଥାପନ କର ଏବଂ ବିଷୟରେ ଅନାସକ୍ତ ହୋଇ ହରି ସେବାଦ୍ୱାରା ଲବ୍ଧ ତୀକ୍ଷ୍ଣ ଜ୍ଞାନଖଡ୍ଗ ଗ୍ରହଣ କରି ଅନାୟାସରେ ଭବାରଣ୍ୟ ପାରହୁଅ । ୨୦ ।

ଶ୍ରୀ ରାଜା କହିଲେ :—

ହେ ବ୍ରହ୍ମନ୍ ! ଅଖିଳ ଜନ୍ମ ମଧ୍ୟରେ ମନୁଷ୍ୟ ଜନ୍ମ ଶ୍ରେଷ୍ଠ । ସ୍ୱର୍ଗରେ ଦେବଜନ୍ମ ଅପେକ୍ଷା ମନୁଷ୍ୟ ଜନ୍ମ ଶ୍ରେଷ୍ଠ, ସୁତରାଂ ଦେବଜନ୍ମର ପ୍ରଯୋଜନୀୟତା କଅଣ ? କାରଣ ସ୍ୱର୍ଗରେ ମର୍ତ୍ତ୍ୟଲୋକର ତୁଲ୍ୟ ସାଧୁ ସମାଗମ ଘଟେ ନାହିଁ । ୨୧ ।

---

କେବେ ବା ପ୍ରମାଦବଶରେ
ପଡ଼ଇ ଗିରି କନ୍ଦରରେ
ପୁଣି ଭ୍ରମଇ ଛାଡ଼ିକରି
କର୍ତ୍ତବ୍ୟ ପଥକୁ ଆଚରି
ତହିଁ ଅତି କଷ୍ଟଭୁଞ୍ଜିକରି
ବାହୁଡ଼ି ଭ୍ରମଇ ଅସାର
ଷଣେ ଆତ୍ମାର ତତ୍ତ୍ୱ ଜାଣି
କ୍ଷଣକେ ପାସୋରଇ ପୁଣି ।୧୮,୧୯।

ମାୟାରଚିତ ଏ ସଂସାର
ଦୁର୍ଗମ ପଥ ଯେ ଏହାର
ସୁଜିତ ଆତ୍ମା ହୋଇ ତହିଁ
ହରି ସେବାରେ ମନ ଦେଇ
ଜ୍ଞାନ ଖଡ଼ଗ ଧରିକରି
ନିଶ୍ଚିନ୍ତେ ଏଥିଁ ହୁଅ ପାରି ।୨୦।

ରହୂଗଣ ଉବାଚ—
ସାଧୁ ମାନବ ଜନ୍ମସାର
ସଂସାରେ କିବା ଜନ୍ମ ଆଉ
ଯେ ଜନ୍ମେ ହୃଷୀକେଶ ଗୁଣ
ବଦନେ କରି ଉଚ୍ଚାରଣ
ଶ୍ରବଣ କରି ଯଶ ଗାଇ
ସୁସାଧୁ-ସଙ୍ଗତେ ବସଇ ।୨୧।

ନ ହ୍ୟଦ୍ଭୁତଂ ତ୍ୱଚ୍ଚରଣାବ୍‌ଜରେଣୁଭିର୍ହତାଂହସୋ ଭକ୍ତିରଧୋକ୍ଷଜେଽମଲା ।
ମୌହୂର୍ତ୍ତିକାଦ୍ୟସ୍ୟ ସମାଗମାଚ୍ଚ ମେ ଦୁସ୍ତର୍କମୂଲୋଽପହତୋଽବିବେକଃ ।୨୨।
ନମୋ ମହଦ୍‌ଭ୍ୟୋଽସ୍ତୁ ନମଃ ଶିଶୁଭ୍ୟୋ ନମୋ ଯୁବଭ୍ୟୋ ନମ ଆବଟୁଭ୍ୟଃ ।
ଯେ ବ୍ରାହ୍ମଣା ଗାମବଧୂତଲିଙ୍ଗାଶ୍ଚରନ୍ତି ତେଭ୍ୟଃ ଶିବମସ୍ତୁ ରାଜ୍ଞାମ୍ । ୨୩ ।

ଶ୍ରୀଶୁକ ଉବାଚ ।

ଇତ୍ୟେବମୁତ୍ତରାମାତଃ ସ ବୈ ବ୍ରହ୍ମର୍ଷିସୁତଃ ସିନ୍ଧୁପତୟ ଆତ୍ମସତତ୍ତ୍ୱଂ ବିଗଣୟତଃ ପରାନୁଭାବଃ ପରମକାରୁଣିକତୟୋପଦିଶ୍ୟ ରହୂଗଣେନ ସକରୁଣମଭିବନ୍ଦିତଚରଣଃ ପୂର୍ଣ୍ଣାର୍ଣ୍ଣବ ଇବ ନିଭୃତକରଣୋର୍ମ୍ୟାଶୟୋ ଧରଣୀମିମାଂ ବିଚଚାର । ୨୪ ।

---

ହେ ଭଗବନ୍ ! ସାଧୁଚରଣ-କମଳରେଣୁ ଦ୍ୱାରା ପାପରାଶି ବିନଷ୍ଟ ହୋଇଥାଏ, ଅଧୋକ୍ଷଜ ଭଗବାନଙ୍କ ଠାରେ ତାହା ହେଲେ ନିର୍ମଳା ଭକ୍ତି ଜନ୍ମେ । ଏହା ବିଚିତ୍ର ନୁହେଁ, କାରଣ ମୁହୂର୍ତ୍ତେ ମାତ୍ର ସାଧୁସଙ୍ଗଦ୍ୱାରା ମନ୍ଦତର୍କ ଦ୍ୱାରା ଦୃଢୀଭୂତ ଅଜ୍ଞାନ ବିନଷ୍ଟ ହୋଇଥାଏ । ୨୨ ।

ବ୍ରହ୍ମବିଦ୍ ମହତ୍ ବ୍ୟକ୍ତିଗଣ କପଟ ଭାବରେ ବେଶ ଧାରଣ କରି ବିଚରଣ କରନ୍ତି ତାହା ସହଜରେ ବୁଝି ହୁଏ ନାହିଁ । ଏଣୁ ମୁଁ କ୍ଷୁଦ୍ରଶିଶୁଠାରୁ ଆରମ୍ଭ କରି ବାଳକ, ଯୁବକ ପ୍ରଭୃତି ନିଖିଳ ମହାତ୍ମାମାନଙ୍କୁ ନମସ୍କାର କରୁଅଛି । ଯେଉଁ ବ୍ରାହ୍ମଣଗଣ ଅବଧୂତ ବେଶରେ ପୃଥିବୀ ପର୍ଯ୍ୟଟନ କରନ୍ତି, ସେମାନଙ୍କ ନିକଟରୁ ରାଜାମାନେ ଯେପରି ଆଶୀର୍ବାଦ ଲାଭ କରନ୍ତି, ଏହାହିଁ ମୋର ପ୍ରାର୍ଥନା । ୨୩ ।

ଶ୍ରୀ ଶୁକଦେବ କହିଲେ :—

ହେ କୁରୁବଂଶନନ୍ଦନ ! ସେହି ବ୍ରହ୍ମର୍ଷି ପୁତ୍ର ବ୍ରହ୍ମଜ୍ଞ, ମହାକାରୁଣିକ ଭରତ ସିନ୍ଧୁପତି ସୌବୀରଙ୍କ ପ୍ରତି ଦୟା ପ୍ରକାଶ କରି ଆତ୍ମତତ୍ତ୍ୱ ଉପଦେଶ ଦେଇଥିଲେ ଏବଂ ରହୂଗଣଙ୍କ କର୍ତ୍ତୃକ ପୂଜିତ ହୋଇ ପୂର୍ଣ୍ଣ ସମୁଦ୍ର ତୁଲ୍ୟ ଅକ୍ଷୁବ୍ଧ ହୃଦୟରେ ପୃଥିବୀରେ ବିଚରଣ କରିଥିଲେ । ୨୪ ।

---

ହେସ୍ୱାମି ! ତୁମ୍ଭ ପାଦରେଣୁ
ମୋ ଦେହେ ଲାଗିଲା ଯେଣୁ
ସର୍ବ ଦୁରିତ କ୍ଷୟ ଗଲା
ମୋ ମନ ନିର୍ମଳ ହୋଇଲା
ଅବିଦ୍ୟା କର୍ମ ଯେ ମୋହର
ହେସ୍ୱାମି ! ସମାଗମେ ତୋର
ଅବିବେକ ଆଦି ପ୍ରମାଦେ
ହତ ହୋଇଲା ତୋ ପ୍ରସାଦେ ।୨୨।
ନମଇଁ ମହତ ଈଶ୍ୱର
ନମସ୍ତେ ଶିଶୁରୂପଧର

ତୁ ନାଥ ଯୁବାରୂପଧର
ତୋତେ ମୋହର ନମସ୍କାର
ଅବଧୂତ ରୂପକୁ ଧରି
ପୃଥିବୀ ପର୍ଯ୍ୟଟନ କରି
ଏମନ୍ତ ରୂପ ଯେ ତୁମ୍ଭର ।
ତୋତେ ମୋହର ନମସ୍କାର ॥
ଏ ରୂପ ଧରି ଯେ ବ୍ରାହ୍ମଣ
ପୃଥିବୀ କରନ୍ତି ଭ୍ରମଣ
ରାଜାଙ୍କ କୁଶଳ ନିମିତ୍ତେ
ସେ ବିପ୍ରେ ହୁଅନ୍ତୁ ନିରତେ ।୨୩

ଶ୍ରୀଶୁକ ଉବାଚ—

ଏମନ୍ତେ ରହୂଗଣ ବାଣୀ
ସାନନ୍ଦେ ଶୁଣି ଦ୍ୱିଜମଣି
ପରମ କରୁଣାକୁ ବହି
ରହୂଗଣକୁ ତତ୍ତ୍ୱ କହି
ହରଷ ହୋଇ ରହୂଗଣ
ବନ୍ଦିଲେ ତାହାଙ୍କ ଚରଣ
ରାଜାର ପୂଜାକୁ ଘେନିଲେ
ଧରଣୀ ଭ୍ରମଣେ ଗମିଲେ ।୨୪।

ସୌବୀରପତିରପି ସୁଜନସମବଗତପରମାତ୍ମସତତ୍ତ୍ୱ ଆତ୍ମନ୍ୟବିଦ୍ୟାଧ୍ୟାରୋପିତାଂ ତ ଦେହାତ୍ମମତିଂ ବିସସର୍ଜ । ଏବଂ ହି ନୃପ ଭଗବଦାଶ୍ରିତାଶ୍ରିତାନୁଭାବଃ । ୨୫ ।

ଶ୍ରୀରାଜୋବାଚ ।

ଯୋ ହ ବା ଇହ ବହୁବିଦା ମହାଭାଗବତ ତ୍ୱୟାଭିହିତଃ ପରୋକ୍ଷେଣ ବଚସା ଜୀବଲୋକଭବାଧ୍ୱା ସ ହ୍ୟାର୍ଯ୍ୟମନୀଷୟା କଳ୍ପିତବିଷୟୋ ନାଞ୍ଜସାବ୍ୟୁତ୍ପନ୍ନଲୋକସମଧି-ଗମଃ । ଅଥ ତଦେବୈତଦ୍ଦୁରଧିଗମଂ ସମବେତାନୁକଳ୍ପେନ ନିର୍ଦ୍ଦିଶ୍ୟତାମିତି । ୨୬ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ

ପଞ୍ଚମସ୍କନ୍ଧେ ତ୍ରୟୋଦଶୋଽଧ୍ୟାୟଃ । ୧୩ ।

---

ସୌବୀର ପତି ମଧ୍ୟ ମହାତ୍ମା ଭରତଙ୍କଠାରୁ ସମ୍ୟକ୍‌ରୂପେ ପରମତତ୍ତ୍ୱ ଅବଗତ ହୋଇ ମୁହୂର୍ତ୍ତକ ମଧ୍ୟରେ ଦେହାତ୍ମଜ୍ଞାନ ପରିତ୍ୟାଗ କରିଥିଲେ । ଅନାଦି କାଳରୁ ଅବିଦ୍ୟା ଦ୍ୱାରା ସେ ଦେହରେ ଆତ୍ମଜ୍ଞାନ ଆରୋପଣ କରିଥିଲେ । ତାହା ତାହାଙ୍କର ନିବୃତ୍ତି ହେଲା । ହେ ରାଜନ୍ ! ଯେ ଶ୍ରୀ ଭଗବାନଙ୍କୁ ଆଶ୍ରୟ କରିଅଛନ୍ତି, ସେହି ଭକ୍ତର ସେବକଙ୍କର ପ୍ରଭାବ ଦର୍ଶନ କର । ୨୫ ।

ଶ୍ରୀରାଜା ପରୀକ୍ଷିତ କହିଲେ :—

ହେ ମହାଭାଗବତ ! ଆପଣ ସର୍ବଜ୍ଞ, ଆପଣ ବଣିକଦଳର ରୂପକଦ୍ୱାରା ଜୀବଲୋକର ଯେଉଁ ସଂସାର ମାର୍ଗ ବିଷୟ ବର୍ଣ୍ଣନା କଲେ ତାହା ସହଜରେ ବୁଦ୍ଧିବଳରେ କଳ୍ପନା କରାଯାଇ ନ ପାରେ, ସାଧାରଣ ଲୋକ ପକ୍ଷରେ ତାହା ବୋଧ ଗମ୍ୟ ନୁହେଁ । ସୁତରାଂ ସେହି କଠିନ ବିଷୟକୁ ଅର୍ଥ ବ୍ୟାଖ୍ୟା ଦ୍ୱାରା ନିର୍ଦ୍ଦେଶ କରିବାକୁ ଆଜ୍ଞା ହେଉ । ୨୬ ।

---

ସେ ନରପତି ରହୂଗଣ
ପରମ ତତ୍ତ୍ୱକୁ ପାଇଣ
ଆତ୍ମା ଅବିଦ୍ୟା ଧ୍ୟାନ ଯେତେ
ଦେହ ଅହଙ୍କାର ସହିତେ
ତକ୍ଷଣେ ଛାଡ଼ିଲା ସକଳ
ଶୁଣ ପରୀକ୍ଷ ମହୀପାଳ
ଭକତପଥ ଆଶ୍ରେ ଜନ
ଏତେକ ପ୍ରଭାବ,ହେ ରାଜନ ।୨୫

ଶ୍ରୀପରୀକ୍ଷିଦୁବାଚ—

ଯେତେ ପ୍ରକାରେ ଏ ସଂସାର
ବର୍ଣ୍ଣିଲେ ବ୍ରାହ୍ମଣ କୁମର
ଯେ ଭାଗବତ ଶ୍ରେଷ୍ଠନର
ଜାଣିବ ତହିଁର ବିସ୍ତର
ଏହାଙ୍କ ବାକ୍ୟ ଅନୁସରି
ଯେ ପ୍ରାଣୀ ହେତୁରେ ନ ଧରି
ତାଙ୍କର କି ଗତି ଅପର
ଏ ଯେ ଦୁରଧିଗମ୍ୟ ମୋର
ତାହାର ସଙ୍ଘଟନ ଯେତେ
ବୁଝାଇ କହ ମୋ ଅଗତେ
ଅନୁକମ୍ପାକୁ କରି କହ
ମୋହର ଫେଡ଼ ତୁ ସନ୍ଦେହ ।୨୬
ଏ ବିପ୍ର ରହୂଗଣ ବାଣୀ
କର୍ଣ୍ଣେ ଶୁଣନ୍ତି ଯେତେ ପ୍ରାଣୀ
ସକଳ ପାପୁଁ ସେ ତରନ୍ତି
ଅନ୍ତେ ସେ କୈବଲ୍ୟ ଲଭନ୍ତି
କହଇ ଦ୍ୱିଜ ଜଗନ୍ନାଥ
ପଞ୍ଚମସ୍କନ୍ଧେ ଭାଗବତ ।



**ଭାବାର୍ଥ :—**

ରାଜା ରହୁଗଣଙ୍କର ସନ୍ଦେହ ସମ୍ପୂର୍ଣ୍ଣ ଦୂରୀଭୂତ ନ ହେବାରୁ ସେ ପୁନଶ୍ଚ ପ୍ରଶ୍ନ କରିଥିଲେ । ତାହାର ଉତ୍ତରରେ ଭରତ ସଂସାରକୁ ଗୋଟିଏ ଅରଣ୍ୟ ସଙ୍ଗେ ତୁଳନା କରି ଏହି ଜଟିଳ ବିଷୟର ମୀମାଂସା କରିଥିଲେ, ସଂସାର ଗୋଟିଏ ଅରଣ୍ୟ, ଏଥିରେ ପ୍ରବୃତ୍ତିମାର୍ଗ ବୋଲି ଗୋଟିଏ ପଥ ଅଛି, ଜୀବ ନିଜ ଅଦୃଷ୍ଟ ବଳରେ ଏହି ପ୍ରବୃତ୍ତିମାର୍ଗରେ ଭ୍ରମଣ କରି ସଂସାର ଅରଣ୍ୟରେ ଯାତାୟାତ କରେ । ପ୍ରବୃତ୍ତି ମାର୍ଗର ପଥିକ ଜୀବକୁ ସେହି ବନପଥର ପଥିକ ବଣିକଦଳ ବୋଲି କଳ୍ପନା କରାଯାଇ ଅଛି, ଜଗତରେ ସମସ୍ତେ ନିଜ ନିଜର ପ୍ରୟୋଜନ ସିଦ୍ଧି ନିମିତ୍ତ ବ୍ୟସ୍ତ ଥାନ୍ତି, କେହି ବିନା ପ୍ରୟୋଜନରେ କୌଣସି କାର୍ଯ୍ୟ କରନ୍ତି ନାହିଁ । ଯେ ଯାହା କହନ୍ତୁ ସଚ୍ଛକେ ପ୍ରତ୍ୟେକ କାର୍ଯ୍ୟର ଗୋଟିଏ ଗୋଟିଏ ଉଦ୍ଦେଶ୍ୟ ଥାଏ, ସେହି ବଣିକ ଅର୍ଥୋପାର୍ଜ୍ଜନ ଉଦ୍ଦେଶ୍ୟରେ ବନମଧ୍ୟରେ ଭ୍ରମଣ କରୁ କରୁ କେହି ଆଶାନୁରୂପ ସୁଖ ବା ମଙ୍ଗଳ ପାଏ ନାହିଁ । ସମସ୍ତେ ସୁଖ କାମନା କରୁଥାନ୍ତି କିନ୍ତୁ କେତେକଙ୍କ ଭାଗ୍ୟରେ ତାହା ଘଟେ, ଯଦିବା କିଞ୍ଚିତ୍ ଘଟିଥାଏ, ତେବେ ତାହା କ୍ଷଣସ୍ଥାୟୀ ଓ ଦୁଃଖ ସଂସୃଷ୍ଟ, ତେଣୁ ବଣିକ୍ ସମୂହ ମଧ୍ୟ ନିଜଅଭିଷ୍ଟାନୁସାରେ ସୁଖ ପାନ୍ତି ନାହିଁ । ପଦେ ପଦେ କଷ୍ଟଭୋଗକରି ଅଶାନ୍ତି ଭୋଗକରୁଥାନ୍ତି । ସେମାନଙ୍କ ନିକଟରେ ବହୁଧନ ଥିବାର ଜାଣିପାରି ଦସ୍ୟୁମାନେ ସେମାନଙ୍କୁ ଅନୁସରଣ କରନ୍ତି ଏବଂ ଅବଶେଷରେ ସେହି ଧନଭଣ୍ଡାର ଲୁଣ୍ଠନ କରନ୍ତି, ଏଠାରେ ଇନ୍ଦ୍ରିୟମାନଙ୍କୁ ଦସ୍ୟୁଦଳ ବୋଲି ଓ ବୁଦ୍ଧିକୁ ସେହି ଦଳର ନାୟକ ବୋଲି କଳ୍ପନା କରାଯାଇଅଛି । ଏହି ବୁଦ୍ଧି ଇନ୍ଦ୍ରିୟମାନଙ୍କୁ କୁମାର୍ଗରେ ପରିଚାଳିତ କରେ, ସଂସାରରେ ସ୍ତ୍ରୀ ପୁତ୍ରାଦି ଶୃଗାଳ ତୁଲ୍ୟ, ସେମାନେ ଏହି ଅରଣ୍ୟ ମଧ୍ୟରେ ଜୀବକୁ ଆକ୍ରମଣ କରିଥାନ୍ତି, ସେମାନେ ଜୀବ ସହିତ ପିତା ମାତା ଭ୍ରାତା ଇତ୍ୟାଦି ସମ୍ପର୍କ ସ୍ଥାପନ କରି ତାହାକୁ ଆକର୍ଷଣ କରିଥାନ୍ତି, ଏହି ସଂସାର ଅରଣ୍ୟ ମଧ୍ୟରେ ଗୋଟିଏ ସ୍ଥାନ ଅଛି, ତାହା ଲତା, ତୃଣ, ଗୁଳ୍ମ ପ୍ରଭୃତି ଦ୍ୱାରା ପୂର୍ଣ୍ଣ । ସେଠାରେ ଅସଂଖ୍ୟ ଉତ୍ପୀଡ଼କ ଦଂଶ (ଡ଼ାଂଶ) ଓ ମଶକ ବିଦ୍ୟମାନ । ସେଠାରେ ମନୁଷ୍ୟ ନିରାପଦରେ ରହିବାର ସ୍ଥାନ ନାହିଁ, ସଂସାରରେ ଯେଉଁ କାର୍ଯ୍ୟକ୍ରମମାନ ଅଛି ତାହାକୁ ଲତା, ତୃଣ, ଗୁଳ୍ମରାଶି ବୋଲି କଳ୍ପନା କରାଯାଇ ଅଛି, ଉତ୍କୃଷ୍ଟ ଧାନ୍ୟାଦି ପକ୍ଷରେ ଯେପରି ଲତା ଗୁଳ୍ମ ଆଦି ଅନିଷ୍ଟକର ଓ କୃଷକମାନେ ତାହାକୁ ଉତ୍ପାଟନ କରନ୍ତି, ସେହିପରି ମନୁଷ୍ୟକୁ ଏହି କାର୍ଯ୍ୟକର୍ମାଦି ଦୂର କରିବାକୁ ହେବ ।

ଜୀବ ସେହି ଅରଣ୍ୟ ମଧ୍ୟରେ ଭ୍ରମଣ କରୁ କରୁ ଗନ୍ଧର୍ବପୁରୀ ତୁଲ୍ୟ କ୍ଷଣଭଙ୍ଗୁର ଦେହ ଗେହାଦିରେ ଆସକ୍ତ ହୁଏ ଏବଂ କ୍ଷଣକାଳ ନିମିତ୍ତ ସେହି ଅସ୍ଥିର ବିଷୟ ଭୋଗ ସୁଖରେ ଚିତ୍ତକୁ ଆନନ୍ଦିତ କରେ, ତାହାର ଫଳରେ ସେ ପୁନଃ ପୁନ ଆକ୍ରମିତ ହୁଏ । ସେଥିରେ ତାର ଏପରି କ୍ଳାନ୍ତି ବୃଦ୍ଧି ହୁଏ ଯେ-ସେତେବେଳେ ସେ ନିଜ ଇଚ୍ଛାରେ କୌଣସି କର୍ମ କରିପାରେ ନାହିଁ, ଏହିପରି ଭାବରେ ଭରତ ରାଜାଙ୍କୁ ମାୟାଛନ୍ନ ଜୀବର ପରିଣାମ ବୁଝାଇଥିଲେ । ତାହାଙ୍କଠାରୁ ଏପରି ଉପଦେଶ ଲାଭ କରି ରାଜା ତାହାଙ୍କର ଶରଣାପନ୍ନ ହୋଇଥିଲେ ଏବଂ ତାହାଙ୍କୁ ସ୍ତବ କରିଥିଲେ ।

## ଚ ତୁ ର୍ଦ୍ଦ ଶ ଅ ଧ୍ୟା ୟ ।

ଚତୁର୍ଦ୍ଦଶେ ଭବାରଣ୍ୟରୂପକବ୍ୟାକୃତିଃ କୃତା ।
ପ୍ରସ୍ତୁତେ ଦସ୍ୟୁଗୋମାୟୁମଶକାଦ୍ୟର୍ଥକଳ୍ପନୈଃ । ୦ । ( ଶ୍ରୀଧରସ୍ୱାମୀ )

ସଉବାଚ ।

ସ ଏଷ ଦେହାତ୍ମମାନିନାଂ ସତ୍ତ୍ୱାଦିଗୁଣବିଶେଷବିକଳ୍ପିତକୁଶଳାକୁଶଳସମବହାର-ବିନିର୍ମିତବିବିଧଦେହାବଳିଭିର୍ବିୟୋଗସଂୟୋଗାଦ୍ୟନାଦିସଂସାରାନୁଭବସ୍ୟ ଦ୍ୱାରଭୂତେନ ଷଡ଼ିନ୍ଦ୍ରିୟବର୍ଗେଣ ତସ୍ମିନ୍ ଦୁର୍ଗାଧ୍ୱବଦସୁଗମେଽଧ୍ୱନ୍ୟାପତିତ ଈଶ୍ୱରସ୍ୟ ଭଗବତୋ ବିଷ୍ଣୋର୍ବଶବର୍ତ୍ତିନ୍ୟା ମାୟୟା ଜୀବଲୋକୋଽୟଂ ଯଥା ବଣିକ୍ସାର୍ଥୋଽର୍ଥପରଃ ସ୍ୱଦେହନିଷ୍ପାଦିତକର୍ମ୍ମାନୁଭବଃ ଶ୍ମଶାନବଦଶିବତମାୟାଂ ସଂସାରାଟବ୍ୟାଂ ଗତୋନାଦ୍ୟାପି ବିଫଳବହୁପ୍ରତିୟୋଗେହସ୍ତତ୍ତାପୋଶମନୀଂ ହରିଗୁରୁଚରଣାରବିନ୍ଦମଧୁକରାନୁପଦ-ବୀମବରୁନ୍ଧେ । ଯାସ୍ୟାମୁହ ବା ଏତେ ଷଡ଼ିନ୍ଦ୍ରିୟନାମାନଃ କର୍ମ୍ମଣା ଦସ୍ୟବ ଏବ ତେ ।୧।

---

### ଭବବୃକ୍ଷର ବ୍ୟାଖ୍ୟା ।

ଚତୁର୍ଦ୍ଦଶ ଅଧ୍ୟାୟରେ ଭବାଟବୀ ରୂପକର ବ୍ୟାଖ୍ୟା କରି ରହୁଗଣଙ୍କର
ସଂଶୟ ଦୂର କରିଥିଲେ । ୦ ।

ଶ୍ରୀଶୁକଦେବ କହିଲେ :—

ହେ ମହାରାଜ ! ମାୟା ସର୍ବନିୟନ୍ତା ଭଗବାନ ବିଷ୍ଣୁଙ୍କର ବଶବର୍ତ୍ତିନୀ । ଏହି ମାୟା ଜୀବଲୋକକୁ ଅତି ଦୁର୍ଗମପଥ ତୁଲ୍ୟ ସଂସାରପଥରେ ପକାଇ ଅଛି, ଷଡ଼ିନ୍ଦ୍ରିୟମାନେ ଏହି କାର୍ଯ୍ୟରେ ସହାୟତା କରୁଅଛନ୍ତି, କାରଣ ସେମାନେ ଦେହଧାରଣ ଓ ଦେହତ୍ୟାଗ ରୂପ ଅନାଦିସଂସାର ବିଷୟ ଅନୁଭବ କରିବାର ଦ୍ୱାର ସ୍ୱରୂପ । ବିବିଧାକାର ଦେହ ଶୁଭ, ଅଶୁଭ ଓ ମିଶ୍ରକର୍ମରୁ ନିର୍ମିତ ହୋଇଥାଏ । ସତ୍ତ୍ୱ, ରଜଃ ଓ ତମୋଗୁଣ ଏହି କର୍ମମାନଙ୍କୁ ପୂର୍ବୋକ୍ତ ଆକାରରେ ବିଭକ୍ତ କରିଦିଏ । ଦେହାତ୍ମମାନୀ ଜୀବଗଣ ଏହି ସଂସାର ମାର୍ଗରେ ପତିତ ହୁଅନ୍ତି, ଯେପରି ବଣିକମାନେ ଅର୍ଥୋପାର୍ଜନ ନିମନ୍ତେ ଅରଣ୍ୟରେ ପ୍ରବେଶ କରନ୍ତି, ସେହିପରି ଏହି ଜୀବଲୋକ ଶ୍ମଶାନ ତୁଲ୍ୟ ଅମଙ୍ଗଳର ଆଶ୍ରୟ ସ୍ଥଳ ଏହି ଭବାରଣ୍ୟ ମଧ୍ୟରେ ପ୍ରବେଶ କରି ନିଜ ନିଜର ଦେହ ଦ୍ୱାରା କୃତକର୍ମର ଫଳ ଅନୁଭବ କରନ୍ତି । କୌଣସି କର୍ମ ଅନୁଷ୍ଠାନ କଲେ କେତେବେଳେ

---

ରୂପକ ଛଳେ ଭବାରଣ୍ୟ, ଭରତଯା କଲେ ବର୍ଣ୍ଣନ । ତାହାର ବ୍ୟାଖ୍ୟା ଚତୁର୍ଦ୍ଦଶେ, ଶୁକ ଯେ କରନ୍ତି ବିଶେଷେ

ଶ୍ରୀ ଶୁକଉବାଚ—
ଏ ଯେଉଁ ସଂସାର ଅରଣ୍ୟ
ତହିଁରେ ଯେତେ ଜୀବଗଣ
ବେପାରି ବଣିଜାର ପ୍ରାୟେ
ସଂସାର ମାର୍ଗେ ଭ୍ରମୁଥାଏ
ଭଗବାନ ପ୍ରଭୁ ଈଶ୍ୱର
ଯେ ବିଷ୍ଣୁ ଅଖିଳ ଠାକୁର
ତାହାମାୟାରେ ମୋହି ହୋଇ
ଏ ଜୀବ କିଛି ନ ଜାଣଇ
ଦେହାତ୍ମମାନୀ ହୋଇ କରି
ସତ୍ତ୍ୱାଦି ଗୁଣେ ତାହାଙ୍କର

ତଦ୍‌ଯଥା ପୁରୁଷସ୍ୟ ଧନଂ ଯତ୍‌ କିଞ୍ଚିଦ୍ଧର୍ମୌପୟିକଂ ବହୁକୃଚ୍ଛ୍ରାଧିଗତଂ ସାକ୍ଷାତ୍‌-ପରମପୁରୁଷାରାଧନଲକ୍ଷଣୋ ଯୋଽସୌ ଧର୍ମ୍ମସ୍ତନ୍ତୁ ସାମ୍ପରାୟ ଉଦାହରନ୍ତି ତଦ୍ଧର୍ମ୍ମ୍ୟଂ ଧନଂ ଦର୍ଶନସ୍ପର୍ଶନଶ୍ରବଣାସ୍ୱାଦନାବଘ୍ରାଣସଂକଳ୍ପସମବସାୟଗୃହଗ୍ରାମ୍ୟୋପଭୋଗେନ କୁନାଥସ୍ୟାଜିତାତ୍ମନୋ ଯଥା ସାର୍ଥସ୍ୟ ତଥା ବିଲୁମ୍ପନ୍ତି । ୨।

ଅଥଚ ଯତ୍ର କୌଟୁମ୍ବିକା ଦାରାପତ୍ୟାଦୟୋ ନାମ୍ନା କର୍ମ୍ମଣା ବୃକଶୃଗାଲା ଏବା-ନିଚ୍ଛତୋଽପ୍ୟକଦର୍ଯ୍ୟସ୍ୟ କୁଟୁମ୍ବିନ ଉରଣକବତ୍‌ ସଂରକ୍ଷ୍ୟମାଣଂ ମିଷତୋଽପହରନ୍ତି ।୩।

---

ତାହା ବିଫଳ ହୁଏ, କେତେବେଳେ ବା ବହୁବିଧ ବିଘ୍ନ ଜାତ ହୁଏ । ହେ ରାଜନ ଶ୍ରୀହରିଙ୍କ ଗୁରୁ, ଭକ୍ତଗଣ ତାହାଙ୍କର ଚରଣାରବିନ୍ଦରେ ମଧୁକର ତୁଲ୍ୟ, ସେମାନେ ଯେଉଁ ମାର୍ଗରେ ବିଚରଣ କରନ୍ତି ତାହା ଭକ୍ତିମାର୍ଗ । ଏହି ଭକ୍ତିମାର୍ଗହିଁ ସଂସାରତାପ ଉପଶମ କରିବାକୁ ସମର୍ଥ, କିନ୍ତୁ ଜୀବଗଣ ଅଦ୍ୟାପି ଏହି ଭକ୍ତିମାର୍ଗ ଜାଣିକରି ନାହାନ୍ତି, ଏହି ସଂସାର କାନନରେ ଏହି ଷଡ଼ିନ୍ଦ୍ରିୟ ଦସ୍ୟୁତୁଲ୍ୟ ଆଚରଣ କରୁଅଛନ୍ତି । ୧ ।

ସାକ୍ଷାତ୍‌ ପରମପୁରୁଷଙ୍କ ଆରାଧନା କରି ଯେଉଁ ଧର୍ମ ଅର୍ଜନ କରାଯାଏ, ତାହାହିଁ ପରଲୋକର କଲ୍ୟାଣକର ସମ୍ବଳ, ଯେପରି ଦସ୍ୟୁମାନେ ମନୁଷ୍ୟର ବହୁକଷ୍ଟ ଉପାର୍ଜିତ ଓ ଧର୍ମସାଧନୋପଯୋଗୀ ଧନ ଅପହରଣ କରିଥାନ୍ତି, ସେହିପରି ଷଡ଼ିନ୍ଦ୍ରିୟଗଣ ଭଗବତ୍‌ ସେବା ଉପଯୋଗୀ ବୈରାଗ୍ୟାଦି ଧର୍ମ ଅପହରଣ କରିଥାନ୍ତି, ଯେଉଁ ବ୍ୟକ୍ତି ମନ୍ଦବୁଦ୍ଧି ଦ୍ୱାରା ପରିଚାଳିତ ହୁଏ ଓ ଯାହାର ମନ ସେହି ଇନ୍ଦ୍ରିୟଗଣଙ୍କର ଅଧୀନ ହୁଏ, ତାହାର ଜ୍ଞାନେନ୍ଦ୍ରିୟମାନେ-ଦର୍ଶନ, ସ୍ପର୍ଶନ, ଶ୍ରବଣ, ଆସ୍ୱାଦନ, ଆଘ୍ରାଣ ଓ ଅନ୍ତଃକରଣ ଏହି ବ୍ୟକ୍ତିର ସଞ୍ଚିତଧନ ଅପହରଣ କରନ୍ତି । ଯେପରି ବଣିକମାନେ ଅସାବଧାନ ହେଲେ, ସହଚର ବଣିକମାନେ ମଧ୍ୟ ତାହାର ଧନ ଅପହରଣ କରିଥାନ୍ତି, ସେହିପରି ଅଜିତେନ୍ଦ୍ରିୟ ବ୍ୟକ୍ତି ଗୃହମଧ୍ୟରେ ଗ୍ରାମ୍ୟବସ୍ତୁ ଉପଭୋଗ ଆସକ୍ତ ହୁଏ, ଭଲମନ୍ଦ ଜାଣି ପାରେ ନାହିଁ । ୨ ।

( ସେଠାରେ ବହୁ ଶୃଗାଳ ଅଛନ୍ତି-ଏହାର ଅର୍ଥ ଏହି ଯେ) ସଂସାର ଅରଣ୍ୟ ମଧ୍ୟରେ ସ୍ତ୍ରୀ, ପୁତ୍ର ପ୍ରଭୃତି ଶୃଗାଳ ଓ ବ୍ୟାଘ୍ର ତୁଲ୍ୟ, ଅତଏବ ଲୁବ୍‌ଧ କୁଟୁମ୍ବୀ ମନୁଷ୍ୟ ମେଷଶାବକ ତୁଲ୍ୟ, ସେ ଯେଉଁ ସମସ୍ତ ବସ୍ତୁ ସଞ୍ଚୟ କରିଥାଏ, ସେମାନେ ତାହାର ଅନିଚ୍ଛା ସତ୍ତ୍ୱେ ତାହା ଅପହରଣ କରନ୍ତି । ୩ ।

---

କୁଶଳ ଅକୁଶଳ ଦୁଇ
ମିଶ୍ରଣେ ନିର୍ମିତ ଯେ ହୋଇ
ବିବିଧ ଦେହମାନ ପାଇ
ସଂଯୋଗ ବିଯୋଗ ସେ ଦୁଇ
ଏଣେ ନିର୍ମିତ ଯେ ସଂସାର
ଇନ୍ଦ୍ରିୟ ଦ୍ୱାରେ ତା ବିହାର
ଦୁର୍ଗମ ମାର୍ଗ ଏ ସଂସାର
ଶ୍ମଶାନ ପ୍ରାୟ ଭୟଙ୍କର
ଏହାକୁ ମୂଢ଼ ନ ଜାଣଇ
କଷ୍ଟମାର୍ଗରେ ମୋହ ହୋଇ
ଘୋର କଦର୍ଯ୍ୟ ଏ ସଂସାର
ଏଥିରେ ରତ ମୂଢ଼ ନର

ବିବିଧ ବିଫଳ ଯେ କର୍ମ
ତେଣେ ହୋଇବ ମତିଭ୍ରମ
ପ୍ରଭୁର ଚରଣାରବିନ୍ଦ
ସ୍ୱାଦୁ ସୁଗନ୍ଧ ମକରନ୍ଦ
ପାପ ନାଶଇ ସୁଖ ଦେଇ
ଏମନ୍ତ ପଦଶ୍ରୀ ସେ ହୋଇ
ଏହା ଯେ ଆଶ୍ରୟକୁ କରି
ଅଛନ୍ତି ସେ ପଦ ଆବୋରି
ସେ ପଥ ଆଶ୍ରୟ ନ କରି
ଭ୍ରମନ୍ତି ମାୟାକୁ ଆବୋରି ।୧,୨
ଏ ଦେହେ ଯେତେ ଇନ୍ଦ୍ରିଗଣ
ତସ୍କର ବୋଲି ତାଙ୍କୁ ଜାଣ

ପରମ ଗୁରୁ ଆରାଧନ
ଏ ଆଦି ଯେତେ ଶୁଭ କର୍ମ
ବହୁ କୃଚ୍ଛ୍ରାଦି ତପ ଫଳ
ବଳେ ହରନ୍ତି ମନ୍ଦପାଳ
ଦୃଷ୍ଟିରେ ବସ୍ତୁରୂପ ଦେଖି
କରେ ସ୍ପର୍ଶଣ ତ୍ୱଚଲକ୍ଷି
ଶବଦ ଶୁଣଇ କର୍ଣ୍ଣରେ
ଆସ୍ୱାଦ କରଇ ଜିହ୍ୱାରେ
ଏ ଆଦି ଯେ ଇନ୍ଦ୍ରିୟ ଗଣ
ନାନା ଉପଭୋଗ-କାରଣ
ଗ୍ରାମ୍ୟଭୋଗରେ ଲୋଳ ହୋଇ
ଅଜିତେନ୍ଦ୍ରିୟ ଯେତେ ଦେହୀ

ଯଥା ହ୍ୟନୁବତ୍ସରଂ କୃଷ୍ୟମାଣମପ୍ୟଦଗ୍ଧବୀଜଂ କ୍ଷେତ୍ରଂ ପୁନରେବାବପନକାଳେ ଗୁଳ୍ମତୃଣବୀରୁଦ୍ଭିର୍ଗହ୍ୱରମିବ ଭବତ୍ୟେବମେବ ଗୃହାଶ୍ରମଃ କର୍ମକ୍ଷେତ୍ରଂ ଯସ୍ମିନ୍ନ ହି କର୍ମାଣ୍ୟୁତ୍ସୀଦନ୍ତି ଯଦୟଂ କାମକରଣ୍ଡ ଏଷ ଆବସଥଃ । ୪ ।

ତତ୍ର ଗତୋ ଦଂଶମଶକ ସମାପସଦୈର୍ମନୁଜୈଃ ଶଲଭଶକୁନ୍ତତସ୍କରମୂଷିକାଦିଭିରୁପରୁଧ୍ୟମାନବହିଃପ୍ରାଣଃ କ୍ୱଚିତ୍ ପରିବର୍ତ୍ତମାନୋଽସ୍ମିନ୍ନଧ୍ୱନ୍ୟବିଦ୍ୟାକାମକର୍ମଭିରୁପରକ୍ତମନସାନୁପପନ୍ନାର୍ଥଂ ନରଲୋକଂ ଗନ୍ଧର୍ବନଗରମୁପପନ୍ନମିତି ମିଥ୍ୟାଦୃଷ୍ଟିରନୁପଶ୍ୟତି । ୫ ।

---

(ଅବାରଣ୍ୟ ମଧ୍ୟରେ ତୃଣ ଗୁଳ୍ମଲତା ପ୍ରଭୃତିକଥା କହୁଅଛନ୍ତି)—ଏହି ଗୃହାଶ୍ରମ ଶସ୍ୟକ୍ଷେତ୍ର ତୁଲ୍ୟ ଯେପରି ପ୍ରତିବର୍ଷ କର୍ଷଣ କଲେ ମଧ୍ୟ ଶସ୍ୟକ୍ଷେତ୍ରରେ ଯେଉଁସବୁ ବାଡ଼ୁଙ୍ଗା ମଞ୍ଜି ଥାଏ ତାହା ଦଗ୍ଧ ହୁଏ ନାହିଁ, ପୁଣି ବୀଜବପନ କଲେ ବୃକ୍ଷ ଉଠିବା ସଙ୍ଗେ ସଙ୍ଗେ ସେ ସବୁ ବାଡ଼ୁଙ୍ଗା ଗଛ ଉଠି ଶସ୍ୟକ୍ଷେତ୍ର ଲୁପ୍ତମାଚ୍ଛନ୍ନ କରେ, ସେହିପରି ଏହି ଗୃହାଶ୍ରମରେ କଦାପି କର୍ମର ନିବୃତ୍ତି ହୁଏ ନାହିଁ, ଏହା ନାନାପ୍ରକାର ଅଭିଳାଷ ବା କାମନାର ପାତ୍ରସ୍ୱରୂପ । ଯେପରି ଯେଉଁ ପାତ୍ରରେ କର୍ପୂର ଥାଏ, କର୍ପୂର ନଷ୍ଟ ହେଲେ ମଧ୍ୟ ତାହାର ବାସନା ନଷ୍ଟ ହୁଏ ନାହିଁ, ସେହିପରି କର୍ମାନୁଷ୍ଠାନପରେ ମଧ୍ୟ ବାସନା ନଷ୍ଟହୁଏ ନାହିଁ । ୪ ।

ମନୁଷ୍ୟ ଗୃହାଶ୍ରମରତ ହୋଇ ଡାଂସ ମଶକ ପ୍ରଭୃତି ତୁଲ୍ୟ ନୀଚ ମନୁଷ୍ୟଗଣଙ୍କ କର୍ତ୍ତୃକ ଏବଂ ପତଙ୍ଗ ପକ୍ଷୀ ଚୌର ମୂଷିକାଦିଙ୍କ ଦ୍ୱାର ପ୍ରପୀଡ଼ିତ ହୁଅନ୍ତି ଏବଂ ସେହି କାରଣରୁ ବହିଃପ୍ରାଣ ହୋଇ ପଡ଼ନ୍ତି, ତଥାପି ଏହି ପ୍ରବୃତ୍ତିମାର୍ଗରେ ଭ୍ରମଣ କରୁ କରୁ ତାହାର ମନ ଅବିଦ୍ୟା, କାମ, ଓ କର୍ମରେ ଅନୁରକ୍ତ ହୁଏ, ସେତେବେଳେ ତାହାର ଦୃଷ୍ଟି ଆଚ୍ଛନ୍ନ ହୋଇଯାଏ, ଯେଉଁ ନରଲୋକ ଗନ୍ଧର୍ବପୁରୀ ତୁଲ୍ୟ ମିଥ୍ୟା, ସେ

---

କରନ୍ତି ଅମୃତପୂର୍ଣ୍ଣ ହୁଦ
ଯେଣୁ ସେ ମୂଢ଼ ନୃପବର । । ୩ ।
ଅଥବା କୁଟୁମ୍ବ ବିଷୟେ
ଅପତ୍ୟ ସ୍ନେହ ମାୟା ମୋହେ
ଉଦର୍ଯ୍ୟ କୁଟୁମ୍ବ ଭରଣେ
ମୋହି ହୁଅନ୍ତି ହୃତଜ୍ଞାନେ
ଦାରା ତନୟ ନାମ ବହି
ବ୍ୟାଘ୍ର ଶୃଗାଳ ପ୍ରାୟ ହୋଇ
ନାଶନ୍ତି ତାର ଧନ ଧର୍ମ
ମେଷ ଶାବକଙ୍କୁ ଯେସନ । ୪ ।
ଯେସନେ କୃଷିକାର୍ଯ୍ୟ ଜନେ
ଅନୁବତ୍ସର କରନ୍ତେଣେ

ଯେ ତୃଣ ଗୁଳ୍ମ ଲତା ଆଦି
ନିଃଶେଷେ ନ ପାରନ୍ତି ଛେଦି
ସେ ବୀଜ କେବେ ନଷ୍ଟ ନୋହେ
ପୁଣି ସେ କ୍ଷେତ୍ରେ ଉଦେ ହୋଏ
ସେରୂପେ ଏ ଯେ ଗୃହାଶ୍ରମ
କର୍ମନାଶନେ ନୋହେ କ୍ଷମ
ଦଂଶ ମଶକ ନୀଚଜନ
ପୀଡ଼ା କରନ୍ତି ହରେ ଧନ
ଶଲଭ ଶକୁନ୍ତ ତସ୍କର
ମୂଷିକ ଆଦି ପୀଡ଼ା ଘୋର
ଅବିଦ୍ୟା କାମ୍ୟକର୍ମେ ମନ
ରଞ୍ଜନ ଥାଇ ଅନୁକ୍ଷଣ

ବାସନା କ୍ଷୀଣ ତାର ନୋହି
ଏ ନରଲୋକେ ଭ୍ରମୁଥାଇ
ଗନ୍ଧର୍ବ ନଗର ପର୍ଯ୍ୟାୟେ
ମିଥ୍ୟାକୁ ସତ୍ୟ ଦେଖେ ଭ୍ରମେ
ଏ ଯେ ଗନ୍ଧର୍ବ ନଗରରେ
ବିଷୟ ମୃଗତୃଷ୍ଣାରୂପରେ
ମଦ୍ୟ ମାଂସ ଯେ ସ୍ତ୍ରୀ ସଙ୍ଗମ
ନିରତେ ଏଣେ ହୋଏ ଭ୍ରମ
ଦାରା ତନୟ ଗୃହେ ଥାଇ
କେବଳ କ୍ଲେଶକୁ ଲଭଇ । ୫ ।

ତତ୍ର କ୍ୱଚିଦାତପୋଦକନିଭାନ୍ ବିଷୟାନୁପଧାବତି ପାନଭୋଜନବ୍ୟବାୟାଦିବ୍ୟ-
ସନଲୋଲୁପଃ । ୬ ।

କ୍ୱଚିଚ୍ଚାଶେଷଦୋଷନିଷଦନଂ ପୁରୀଷବିଶେଷଂ ତଦ୍‌ବର୍ଣ୍ଣଗୁଣନିର୍ମିତମତିଃ
ସୁବର୍ଣ୍ଣମୁପାଦିତ୍‌ସତ୍ୟଗ୍ନିକାମକାତର ଇବୋଲ୍ମୁକପିଶାଚମ୍ । ୭ ।

ଅଥ କଦାଚିନ୍ ନିବାସପାନୀୟଦ୍ରବିଣାଦ୍ୟନେକାତ୍ମୋପଜୀବନାଭିନିବେଶ ଏତସ୍ୟାଂ
ସଂସାରାଟବ୍ୟାମିତସ୍ତତଃ ପରିଧାବତି । ୮ ।

କ୍ୱଚିଚ୍ଚ ବାତ୍ୟୌପମ୍ୟୟା ପ୍ରମଦୟାରୋହମାରୋପିତସ୍ତତ୍କାଳରଜସା ରଜନୀଭୂତ
ଇବାସାଧୁମର୍ଯ୍ୟାଦୋ ରଜସ୍ୱଲାକ୍ଷୋ ଦିଗ୍‌ଦେବତା ଅତିରଜସ୍ୱଲମତିର୍ନ ବିଜାନାତି । ୯ ।

---

ତାହାକୁ ସତ୍ୟ ବୋଲି ମନେ କରେ । କେତେବେଳେ ପାନ, ଭୋଜନ, ମୈଥୁନାଦି ଅମଙ୍ଗଳ ବିଷୟରେ ମୁଗ୍ଧ ହୋଇ ମୃଗତୃଷ୍ଣା ଜଳତୁଲ୍ୟ ବିଷୟମାନଙ୍କ ପଛରେ ପ୍ରଧାବିତ ହୁଏ । ୫-୬ ।

ହେ ରାଜନ୍ ! କାଞ୍ଚନ ଅଶେଷ ଦୋଷର ଆଧାର । ଏହା ଅଗ୍ନିର ବିଷ୍ଠା ବୋଲି ଶାସ୍ତ୍ରରେ କଥିତ ଅଛି । ସୁବର୍ଣ୍ଣ ତୁଲ୍ୟ ରଜୋଗୁଣର ବର୍ଣ୍ଣ ମଧ୍ୟ ଲୋହିତ, ଜୀବର ମନ ରଜୋଗୁଣ ବିଷୟିଣୀ ହେଲେ ସେ ସୁବର୍ଣ୍ଣ ଲାଭର ଅଭିଳାଷୀ ହୁଏ । ଏହି ସୁବର୍ଣ୍ଣକୁ ଉଲ୍ମୁକ ପିଶାଚ ବୋଲି ପୂର୍ବେ କୁହାଯାଇଅଛି, ଯେପରି ବେଳେ ବେଳେ ଅରଣ୍ୟ ମଧ୍ୟରେ ଉଲ୍ମୁକ ପିଶାଚ ଧାବିତ ହେଲେ ତାହାକୁ ଜାଜ୍ୱଲ୍ୟମାନ ଅଗ୍ନି ତୁଲ୍ୟ ଦେଖାଯାଏ, ଅଜ୍ଞ ଅରଣ୍ୟ ବିହାରୀ ମନୁଷ୍ୟ ତାହା ଅଗ୍ନି ବୋଲି ଭାବି ତାହାର ପଶ୍ଚାତ୍ ଧାବିତ ହୁଏ, କିନ୍ତୁ ତାକୁ ପାଏ ନାହିଁ । ପାଇଲେ ମଧ୍ୟ ପିଶାଚ କବଳରେ ପ୍ରାଣ ହରାଏ, ସୁବର୍ଣ୍ଣ କାମୀ ବ୍ୟକ୍ତିର ସେହି ଅବସ୍ଥା ଘଟିଥାଏ, ଅନନ୍ତର ସେ କେତେବେଳେ ଗୃହ, ପାନୀୟ ଓ ଧନାଦି ନାନାପ୍ରକାର ଉପଜୀବ୍ୟ ବିଷୟରେ ଅଭିନିବିଷ୍ଟ ଚିତ୍ତ ହୋଇ ସଂସାର ଅରଣ୍ୟରେ ଇତସ୍ତତଃ ଧାବମାନ ହୁଏ । ୭-୮ ।

ସଂସାର ମଧ୍ୟରେ ବାତ୍ୟା ତୁଲ୍ୟ ନାରୀ କ୍ରୋଡ଼ରେ ଆରୋପିତ ହୋଇ ତହିଁରେ ଅନୁରାଗଜନ୍ମାଏ, ତଦ୍ୱାରା ଧୂଳି ଦୂଷିତ ନେତ୍ର ହୋଇ ମର୍ଯ୍ୟାଦା ଅତିକ୍ରମ କରେ ଏବଂ ତହିଁର ସାକ୍ଷୀସ୍ୱରୂପ ଦିଗ୍‌ଦେବତାମାନଙ୍କୁ ସେ ଜାଣି ପାରେ ନାହିଁ । ୯ ।

---

ଅଶେଷ ଦୋଷଙ୍କର ସ୍ଥାନ
ଅଗ୍ନି ପୁରୀଷ ଯେ ସୁବର୍ଣ୍ଣ
ତେଣେ ସେ ଦେଇଥାଇ ବୁଦ୍ଧି
ସୁବର୍ଣ୍ଣ ଅର୍ଜନେ ଅବଧି
ଯେସନେ ଶୀତାତୁର ଜନେ
ପିଶାଚଅଗ୍ନି ଦେଖି ବନେ
ଅଗ୍ନି ମଣି ତାକୁ ପ୍ରତ୍ୟକ୍ଷେ
ଧାଇଁ ଯୁଟଇ ତାର ପଛେ

ସତ୍ତବେ ଅଗ୍ନି ସେ ନୁହଇ
ତାକୁ ପାଇବ ଅବା କାହିଁ । ୭ ।
କେବେ ବା ଗୃହାଶ୍ରମ କର୍ମେ
ମନ ନିବେଶି ସେ ଯେ ଭ୍ରମେ । ୮ ।
କେବେହେଁ କୁଟୁମ୍ବ ଆବୋରି
ବାତ ଉପମା ସେ ଯେ ନାରୀ
ତାହାଙ୍କ ଅଙ୍କ ଅଭେଦରେ
ଧୂଳି ଉପମା ତା ସ୍ନେହରେ

ତେଣେ ତା ଦୃଷ୍ଟି ଆବରଣେ
ଦିଗ ଦେବତାଙ୍କୁ ନ ଜାଣେ
ପାପ ଆଚରେ ମତିଭ୍ରମେ
ଶାସ୍ତ୍ର ମର୍ଯ୍ୟାଦା ଅତିକ୍ରମେ । ୮ ।
କେବେହେଁ ଦେହ ମିଥ୍ୟାମାନୀ
ଛିନ୍ନଭିନ୍ନମନ ହୋଏ ପ୍ରାଣୀ
ନିଦ୍ରାରେ ସ୍ୱପ୍ନପ୍ରାୟ କରି
ତକ୍ଷଣେ ପୁଣି ତା ପାସୋରି । ୯ ।

କ୍ୱଚିତ୍ ସକୃଦବଗତବିଷୟବୈତଥ୍ୟଃ ସ୍ୱୟଂ ପରାଭିଧ୍ୟାନେନ ବିଭ୍ରଂଶିତସ୍ମୃତିସ୍ତୟୈବ ମରୀଚିତୋୟପ୍ରାୟାଂସ୍ତାନେବାଭିଧାବତି । ୧୦ ।

କ୍ୱଚିଦୁଲୂକଝିଲ୍ଲୀସ୍ୱନବଦତିପରୁଷରଭସାଟୋପଂ ପ୍ରତ୍ୟକ୍ଷଂ ପରୋକ୍ଷଂ ବା ରିପୁରାଜକୁଲନିର୍ଭର୍ତ୍ସିତେନାତିବ୍ୟଥିତକର୍ଣ୍ଣମୂଲହୃଦୟଃ । ୧୧ ।

ସ ଯଦା ଦୁଗ୍ଧପୂର୍ବସୁକୃତସ୍ତଦା କାରସ୍କରକାକତୁଣ୍ଡାଦ୍ୟପୁଣ୍ୟଦ୍ରୁମଲତାବିଷୋଦପାନବଦୁଭୟାର୍ଥଶୂନ୍ୟଦ୍ରବିଣାନ୍ ଜୀବନ୍ମୃତାନ୍ ସ୍ୱୟଂ ଜୀବନ୍ ମ୍ରିୟମାଣ ଉପଧାବତି । ୧୨ ।

ଏକଦାଽସତ୍ପ୍ରସଙ୍ଗାନ୍ନିକୃତମତିର୍ବ୍ୟୁଦକସ୍ରୋତଃସ୍ଖଲନବଦୁଭୟତୋଽପି ଦୁଃଖଦଂ ପାଖଣ୍ଡମଭିୟାତି । ୧୩ ।

---

ସଂସାର ମଧ୍ୟରେ ମାନବ କେତେବେଳେ ବିଷୟ ଭୋଗକୁ ଅନିତ୍ୟ ବୋଲି ସ୍ଥିର କରେ, କିନ୍ତୁ ଦେହାଭିମାନ ବଶତଃ ପୁଣି ତାହା ଭୁଲିଯାଏ, ସେହି ସ୍ମୃତି ଭ୍ରଂଶ ହେତୁ ମୃଗ ତୃଷ୍ଣାକୁ ଜଳଜ୍ଞାନକରି ସେହି ଆଡ଼କୁ ଧାବିତ ହୁଏ । ୧୦ ।

ଯେପରି ଉଲ୍ଲୁକ ଓ ଝିଲ୍ଲୀ ଝଙ୍କାରରେ କର୍ଣ୍ଣମୂଳ ବ୍ୟଥିତ ହୁଏ, ସେହିପରି ଶତ୍ରୁମାନଙ୍କର ଓ ରାଜ ପୁରୁଷଙ୍କର ଅତିକଠୋର ଓ ଭୀଷଣ ପରୋକ୍ଷ ବା ପ୍ରତ୍ୟକ୍ଷ ଭର୍ତ୍ସନା ବାକ୍ୟରେ ସଂସାରୀ ଜୀବର କର୍ଣ୍ଣ ଓ ହୃଦୟ ଅତିଶୟ ବ୍ୟଥିତ ହୁଏ । ୧୧ ।

ଯେତେବେଳେ ମାନବର ପୂର୍ବ ସୁକୃତ ଫଳ ଭୁକ୍ତ ହୋଇଯାଏ, ସେତେବେଳେ ବିଷତୁଲ୍ୟ ପ୍ରସ୍ଫୁଟିତ ପୁଣ୍ୟ ହୀନ ବୃକ୍ଷଲତା ଓ ବିଷଜଳ ତୁଲ୍ୟ ଦୃଷ୍ଟାଦୃଷ୍ଟ ଫଳଶୂନ୍ୟ ଧନ ଉପାର୍ଜ୍ଜନ କରି ସ୍ୱୟଂ ମ୍ରିୟମାଣ ହୋଇ ମଧ୍ୟ ଜୀବନ୍ମୃତ ଲୋକମାନଙ୍କୁ ଧାବମାନ ହୁଏ । ୧୨ ।

କେତେବେଳେ ଅସତ୍‌ସଙ୍ଗରେ ତାହାର ବୁଦ୍ଧି ଭ୍ରଂଶ ହୁଏ, ଜଳବିହୀନ ନଦୀ ଗର୍ଭରେ ପତିତ ହୋଇ ଯେପରି ତାହାର ମସ୍ତକ ଘୂର୍ଣ୍ଣିତ ହୁଏ, ସେହିପରି ଏହି ମୂର୍ଖ ଇହ ଓ ପର ଉଭୟକାଳରେ କଷ୍ଟ ଭୋଗକରେ । ୧୩ ।

---

କେବେ ଉଲ୍ଲୁକ ଅବା ଝିଲ୍ଲି
କର୍କଶ ସ୍ୱରଠାରୁ ବଳି
ରିପୁ ବା ରାଜକୁଳ ଜନ
କରନ୍ତି ଯେ ଅବା ଭର୍ତ୍ସନ
ତେଣେ ବ୍ୟଥିତ ଚିତ୍ତ ହୋଇ
ବଧିର ପ୍ରାୟ ରହିଥାଇ । ୧୦ ।
ଯେତେ ସୁକୃତ କର୍ମଫଳ
ଭୋଗର ଅନ୍ତେ ମହୀପାଳ
ଜୀବନ ମୃତ ଯେତେ ଧନୀ
ତାହାଙ୍କ ଅନୁସରେ ପ୍ରାଣୀ
ପ୍ରାଣୁ ଅଧିକ ସ୍ନେହଭରେ
ସେ ଧନ ରଖେ ଭଣ୍ଡାରରେ
ଦେବ ଅତିଥି ବିପ୍ରଜନ
ନ ଦିଏ ନ କରେ ଭୋଜନ ।୧୧
ଏଣୁ ଅସତ ସଙ୍ଗେ ନର
ଲଭଇ ପାଷଣ୍ଡ ଶରୀର
ଉଭୟ ଲୋକେ ଦୁଃଖ ପାଏ
ଏମନ୍ତ ଜାଣ ନରରାୟ । ।୧୨।
କେବେ ବା କ୍ଷୁଧା ତୃଷାଭରେ
ଅତି ପୀଡ଼ିତ ହୋଇ ନରେ
ପିତା ପୁତ୍ର ଯେ ଅନ୍ୟୋଅନ୍ୟେ
ନାଶନ୍ତି ପୁଣି ଅଳବନେ ।୧୩।

ଯଦା ତୁ କ୍ଷୁତ୍‌ପିପାସାଭ୍ୟାଂ ପରବାଧ୍ୟମାନ ଆତ୍ମନେନୋପନମନ୍ତି ତଦା ହ ପିତୃପୁତ୍ରବର୍ହିଷ୍ମତଃ ପିତୃପୁତ୍ରାନ୍ ବା ସ ଖଳୁ ଭକ୍ଷୟତି । ୧୪ ।

କ୍ୱଚିଦାସାଦ୍ୟ ଗୃହଂ ଦାବବତ୍ ପ୍ରିୟାର୍ଥବିଧୁରମସୁଖୋଦର୍କଂ ଶୋକାଗ୍ନିନା ଦହ୍ୟମାନୋ ଭୃଶଂ ନିର୍ବେଦମୁପଗଚ୍ଛତି । ୧୫ ।

କ୍ୱଚିତ୍ କାଲବିଷମିତରାଜକୁଲରକ୍ଷସାପହୃତପ୍ରିୟତମଧନାସୁର୍ମୃତକ ଇବ ବିଗତଜୀବଲକ୍ଷଣ ଆସ୍ତେ । ୧୬ ।

କଦାଚିନ୍ମନୋରଥୋପଗତପିତୃପିତାମହାଦ୍ୟସତ୍ ସଦିତି ସ୍ୱପ୍ନନିର୍ବୃତିଂ କ୍ଷଣମନୁଭବତି । ୧୭ ।

କ୍ୱଚିଦ୍ ଗୃହାଶ୍ରମକର୍ମଚୋଦନାତିଭରଗିରିମାରୁରୁକ୍ଷମାଣୋ ଲୋକବ୍ୟସନକର୍ଷିତମନାଃ କଣ୍ଟକଶର୍କରାକ୍ଷେତ୍ରଂ ପ୍ରବିଶନ୍ନିବ ସୀଦତି । ୧୮ ।

---

ଯେଉଁ ସମୟରେ ପୁରୁଷ କ୍ଷୁଧା ତୃଷ୍ଣାରେ କାତର ହୁଏ ଏବଂ ପରପୀଡ଼ନ ପ୍ରଦ ଜୀବିକା ଦ୍ୱାରା ଅନ୍ଧ ହୋଇଯାଏ ଏବଂ ତାକୁ ଅନ୍ନଜଳ କୌଣସି ପ୍ରକାର ମିଳେନାହିଁ; ସେତେବେଳେ ପିତା ପୁତ୍ର ପ୍ରଭୃତିଙ୍କଠାରୁ ତୃଣ ମାତ୍ର ସୂକ୍ଷ୍ମ ଭକ୍ଷଣକରେ ଅଥବା ପିତା ପୁତ୍ରାଦିଙ୍କୁ ପୀଡ଼ା ଦାନକରେ । ୧୪ ।

ବେଳେବେଳେ ପ୍ରିୟଅର୍ଥ ଶୂନ୍ୟ ପରିଣାମରେ ସୁଖଲେଶ ହୀନ ସୁତରାଂ ଦାବାନଳ ତୁଲ୍ୟ ଗୃହରେ ମାନବ ଶୋକାକୁଳ ହୋଇ ଅଗ୍ନିରେ ଦଗ୍ଧ ହୋଇ ନିର୍ବେଦ ହୁଏ । ୧୫ ।

ବେଳେ ବେଳେ ରାଜଗଣ କାଳକ୍ରମେ ପ୍ରତିକୂଳ ହୋଇ ରାକ୍ଷସତୁଲ୍ୟ ବ୍ୟବହାର କରନ୍ତି, ସେମାନେ ଯଷଧନ ହରଣ କଲାପରେ ପ୍ରିୟତମ ପ୍ରାଣ ହରଣ କରନ୍ତିଥିଲେ ! ଏଥିରେ ମାନବ ମୃତବ୍ୟକ୍ତି ତୁଲ୍ୟ ହର୍ଷାଦିଶୂନ୍ୟ ହୋଇ ରହେ । ( ଯଷ ଧନ ହରଣ କରିବାର ଅର୍ଥ ଏଠାରେ କୁହାଗଲା ) । ୧୬ ।

(ଗନ୍ଧର୍ବପୁରୀ ପ୍ରବେଶର ଅର୍ଥରେ କୁହା ଯାଉଅଛି):—ବେଳେବେଳେ ପିତୃ ପିତାମହାଦିଙ୍କର ଅସତ୍ ପଦାର୍ଥକୁ ସତ୍‌ରୂପେ ପାଇ ନିଜର ଅଭିଳାଷ ସିଦ୍ଧିକରେ ଏବଂ ତହିଁରୁ କ୍ଷଣିକ ସୁଖ ଅନୁଭବ କରେ ।୧୭।

ବେଳେବେଳେ ଗୃହାଶ୍ରମରେ ରହି ଅଶ୍ୱମେଧଯଜ୍ଞାଦି ବୃହତ୍ କର୍ମ ସ୍ୱରୂପ ପର୍ବତରେ ଆରୋହଣ କରିବାକୁ ଇଚ୍ଛୁକ ହୋଇ ବିବିଧ ବିଘ୍ନ ପ୍ରତିହତ ହୋଇ ବନ୍ଧନ ଭରୁ ହୁଏ । ସେତେବେଳେ କଣ୍ଟକ ଓ କଙ୍କର କ୍ଷେତ୍ରରେ ପ୍ରବିଷ୍ଟ ବ୍ୟକ୍ତି ତୁଲ୍ୟ ସେ ଅବସନ୍ନ ହୋଇ ପଡ଼େ । ୧୮ ।

---

ଗୃହଦ୍ରବଣ ଦାରସୁତ
ଏ ଆଦି ଯେତେକ ପ୍ରିୟ ଅର୍ଥ
ତହିଁ କ୍ଲେଶିତ କେହି ହୋଇ
ବନ ଅନଳେ ଯେସନ୍ତ ଦହି ।୧୫।
କେବେ ବା ରାଜା ହରେ ଧନ
ନାନା କ୍ଳେଶରେ ଦୁଃଖମନ
ଜୀବନମୃତ ପ୍ରାୟେ ହୋଇ
କେବେ ବା କ୍ଷଣେ ସେ ରହଇ ।୧୬

କେବେ ବା ପିତୃ ପିତାମହେ
ଛଳାରେ ଲଭେ ସ୍ୱପ୍ନପ୍ରାୟେ ।୧୭।
କେତେବ ବା ଗୃହାଶ୍ରମ କର୍ମେ
ମନ ଭିବେଣି ମାୟାଭ୍ରମେ
ଲୌକିକ କର୍ମେ କ୍ଳେଶଜାତ
କ୍ଷଣ କ୍ଷଣକେ ଦୁଃଖରତ
କଣ୍ଟକ ଦୁର୍ଗମ ପର୍ବତେ
ଆରୋହେ ନାନା କଷ୍ଟମତେ ।୧୭।

କେବେବା କୁଟୁମ୍ବ ଆବୋର
ବିଷୟବିଷ ପାନ କରି
କ୍ଷୁଧା ଅନଳେ ଦହି ହୋଏ
ତେଣୁ କୁଟୁମ୍ବେ କୋଧ ବହେ ।୧୮

କ୍ୱଚିଚ୍ଚ ଦୁଃସହେନ କାୟାଭ୍ୟନ୍ତରବହ୍ନିନା ଗୃହୀତସାରଃ ସ କୁଟୁମ୍ବାୟ କ୍ରୁଧ୍ୟତି ।୧୯।

ସ ଏବ ପୁନର୍ନିଦ୍ରାଜଗରଗୃହୀତୋଽନ୍ଧେ ତମସି ମଗ୍ନଃ ଶୂନ୍ୟାରଣ୍ୟ ଇବ ଶେତେ ନାନ୍ୟତ୍ କଞ୍ଚନ ବେଦ ଶବ ଇବାପବିଦ୍ଧଃ । ୨୦ ।

କଦାଚିଦ୍ ଭଗ୍ନମାନଦଂଷ୍ଟ୍ରୋ ଦୁର୍ଜ୍ଜନଦନ୍ଦଶୂକୈରଲବ୍ଧନିଦ୍ରାକ୍ଷଣୋ ବ୍ୟଥିତହୃଦୟେନାନୁକ୍ଷୀୟମାଣବିଜ୍ଞାନୋଽନ୍ଧକୂପେଽନ୍ଧବତ୍ ପତତି । ୨୧ ।

କର୍ହିସ୍ମଚିତ୍ କାମମଧୁଲବାନ୍ ବିଚିନ୍ୱନ୍ ଯଦା ପରଦାରପରଦ୍ରବ୍ୟାଣ୍ୟବରୁନ୍ଧାନୋ ରାଜ୍ଞା ସ୍ୱାମିଭିର୍ବା ନିହତଃ ପତତ୍ୟପାରେ ନିରୟେ ।୨୨।

ଅଥ ଚ ତସ୍ମାଦୁଭୟଥାପି ହି କର୍ମାସ୍ମିନ୍ନାତ୍ମନଃ ସଂସାରାବପନମୁଦାହରନ୍ତି । ୨୩ ।

---

କେବେ କେବେ ବହୁ କୁଟୁମ୍ବୀ ଲୋକ ଦେହାଭ୍ୟନ୍ତର ବହ୍ନି ଦୁଃସହ ଜଠରାନଳ ପୀଡ଼ିତ ହୋଇ ଧୈର୍ଯ୍ୟହୀନ ହୁଏ, ପରିଜନଙ୍କ ଉପରେ କ୍ରୋଧ କରେ । ୧୯ ।

ସେହି ବ୍ୟକ୍ତି ପୁନର୍ବାର ନିଦ୍ରାରୂପ ଅଜଗର ସର୍ପର ଅଧୀନ ହୋଇ ଶୂନ୍ୟାରଣ୍ୟ ସଦୃଶ ଗାଢ଼ ଅନ୍ଧକାରରେ ମଗ୍ନ ହୋଇ ଶୟନ କରେ । ସେ କିଛିମାତ୍ର ଜାଣିପାରେ ନାହିଁ, ସ୍ୱଜନ ପରିତ୍ୟକ୍ତ ଶବ ପରି ପଡ଼ିଥାଏ । ୨୦ ।

ଏହି ସଂସାର ଅରଣ୍ୟ ମଧ୍ୟରେ ପୁରୁଷର ଗର୍ବରୂପ ଦନ୍ତ ଭାଙ୍ଗିଯାଏ । ଦୁର୍ଜନରୂପ ସର୍ପମାନେ ତାକୁ ଶୁଆଇ ଦିଅନ୍ତି ନାହିଁ । ସୁତରାଂ ବ୍ୟଥିତ ହୃଦୟରେ ପ୍ରତି ମୁହୂର୍ତ୍ତରେ ତାହାର ଜ୍ଞାନ ନଷ୍ଟ ହୁଏ, ସେ ଅଜ୍ଞାନାନ୍ଧ ହୋଇ ଅନ୍ଧ କୂପରେ ପତିତ ହୁଏ । ୨୧ ।

କେତେବେଳେ ମାନବ ମଧୁକଣା ତୁଲ୍ୟ କ୍ଷୁଦ୍ର କ୍ଷୁଦ୍ର କାର୍ଯ୍ୟ ଅନ୍ୱେଷଣ କରି ପରସ୍ତ୍ରୀ ପରଦ୍ରବ୍ୟାଦି ଗ୍ରହଣ କରେ । ତହିଁ ରାଜା ବା ନାରୀର ସ୍ୱାମୀ ବା ପଦାର୍ଥର ସ୍ୱାମୀ ତାହାକୁ ବଧ କରନ୍ତି ଏବଂ ସେ ନରକରେ ପତିତ ହୁଏ । ୨୨ ।

ଏହି କାରଣରୁ ପଣ୍ଡିତମାନେ ଇହଲୋକ ବା ପରଲୋକରେ ଆପଣାର କର୍ମକୁ ଜନ୍ମକ୍ଷେତ୍ର ବୋଲି ଥାନ୍ତି । ପୁଣ୍ୟ ବା ପାପ ଯେ କୌଣସି କର୍ମ କର, ତଦ୍ଦ୍ୱାରା ପୁନର୍ବାର ସଂସାରରେ ଜନ୍ମିବାକୁ ପଡ଼େ ଏହାହିଁ ପଣ୍ଡିତମାନଙ୍କର ମତ । ୨୩ ।

---

କେବେ ସେ ନିଦ୍ରା ଅଜଗରେ
ଅଜ୍ଞାନତମେ ଶୋଇ ନରେ
ଶ୍ମଶାନ ଶବ ପ୍ରାୟ ହୋଇ
ଏ ଦୁଃଖ ସୁଖ ନ ଜାଣଇ ।୧୯।
ଦୁର୍ଜନ ହିଂସେ ଦୁଃଖ କରି
ନିଦ୍ରା ଭବକୁ ଅପହରି
ବ୍ୟଥିତ ହୃଦୟକୁ ପାଇ
ଅନ୍ଧ ଯେସନେ କଷ୍ଟେ ଥାଇ
ଅଜ୍ଞାନକୂପେ କଷ୍ଟତରେ
ପଡ଼ଇ ଅନ୍ଧତମେ ଅନ୍ତେ ।୨୦।

ସକାମେ ହରି ପରଧନ
କେବେ ତା ନ କରେ ପ୍ରଦାନ
ହରଣେ ପରଦାର ସେବ
ପରକଥାରେ ପରାଭବ
ସ୍ୱାମିରେ ଦ୍ରୋହିହନ୍ତା କରେ
ଦୁର୍ଗମ ନରକ ଆବୋରେ ।୨୧।
ଏମନ୍ତେ ଆତ୍ମା-କର୍ମଫଳେ
ପ୍ରାଣୀ ଭ୍ରମନ୍ତି ଏ ଶରୀରେ
ଜନ୍ମ ବାସନା ଫଳେ ତାର
ପୁଣି ଜନ୍ମଇ ଏ ସଂସାର

ଶୁଣ ରାଜନ ଏକମନେ
ଯେବେ ଏ କର୍ମ ପ୍ରାଣିମାନେ
ଛେଦନ୍ତି ହରି ଆଶ୍ରେକରି
ତେବେ ସଂସାରୁ ପ୍ରାଣୀ ତରି ।୨୨
ଶୀତ ବରଷା ଯେ ତପତ
କ୍ରିଡ଼ାପଡ଼ାପେ ଦୁଃଖମତ
ଏ ଆଦି ନିବାରଣ ସେହି
କେବେହେଁ କରି ନ ପାରଇ

ମୁକ୍ତସ୍ତତୋ ଯଦି ବନ୍ଧାଦ୍ ଦେବଦତ୍ତ ଉପାଚ୍ଛିନତ୍ତି ତସ୍ମାଦପି ବିଷ୍ଣୁମିତ୍ର ଇତ୍ୟନ-
ବସ୍ଥିତିଃ । ୨୪ ।

କ୍ୱଚିଚ୍ଚ ଶୀତବାତାଦ୍ୟନେକାଧିଦୈବିକାଧିଭୌତିକାଧ୍ୟାତ୍ମିକୀୟାନାଂ ଦଶାନାଂ
ପ୍ରତିନିବାରଣେଽକଲ୍ପୋ ଦୁରନ୍ତଚିନ୍ତୟା ବିଷଣ୍ଣ ଆସ୍ତେ । ୨୫ ।

କ୍ୱଚିନ୍ମିଥୋ ବ୍ୟବହରନ୍ ଯତ୍ କିଞ୍ଚିଦ୍ଧନମନ୍ୟେଭ୍ୟୋ ବା କାକିଣିକାମାତ୍ରମପ୍ୟ-
ପହରନ୍ ଯତ୍ କିଞ୍ଚିଦ୍ ବା ବିଦ୍ୱେଷମେତି ବିତ୍ତଶାଠ୍ୟାତ୍ । ୨୬ ।

ଅଧ୍ୱନ୍ୟମୁଷ୍ମିନ୍ନିମ ଉପସର୍ଗାସ୍ତଥା ସୁଖଦୁଃଖରାଗଦ୍ୱେଷଭୟାଭିମାନପ୍ରମାଦୋନ୍ମାଦ-
ଶୋକମୋହଲୋଭମାତ୍ସର୍ଯ୍ୟେର୍ଷ୍ୟାବମାନକ୍ଷୁତ୍ପିପାସାଧିବ୍ୟାଧିଜନ୍ମଜରାମରଣାଦୟଃ।୨୭

---

ଯଦି କୌଣସି ଅର୍ଥାଦି ପ୍ରଦାନ ଦ୍ୱାରା ତତ୍‌ସ୍ୱାମୀ ସେହିବ୍ୟକ୍ତିକୁ ମୁକ୍ତଦିଅନ୍ତି, ବା କିଞ୍ଚିତ୍ ପରିମାଣରେ ଏହି ଦ୍ରବ୍ୟାଦି ଉପଭୋଗରେ ସମର୍ଥ ହୁଏ, ତାହା ଅନ୍ୟବ୍ୟକ୍ତି ତାହା ନିକଟରୁ ଅପହରଣ କରେ । ( ଏହି ବ୍ୟକ୍ତିକୁ ଦେବଦତ୍ତ ନାମ ଦିଆଯାଇ ଅଛି) ତାହା ନିକଟରୁ ବିଷ୍ଣୁମିତ୍ର (ଅନ୍ୟଏକ କାଳ୍ପନିକ ବ୍ୟକ୍ତିର ନାମ) ତାହା ବଳପୂର୍ବକ କାଢ଼ିନିଏ, ଏହିପରି ଧାରାବାହିକ ଭାବରେ ଚାଲିଅଛି । ୨୪ ।

କେତେବେଳେ ଅବା ଶୀତ ବାତାଦି ଅନେକ ପ୍ରକାର ଆଧି ଦୈବିକ, ଆଧି ଭୌତିକ ଓ ଆଧ୍ୟାତ୍ମିକ ଦୁର୍ଦ୍ଦଶା ନିବାରଣ କରିବାକୁ ଅସମର୍ଥ ହୋଇ କଠିନ ଚିନ୍ତାଗ୍ରସ୍ତ ହୁଏ । ୨୫ ।

ଯଦି କୌଣସି ସମୟରେ ନିଜ ବିକ୍ରୟାଦିରେ ଲିପ୍ତ ହୁଅନ୍ତି, ସେଥିରେ ଅନ୍ୟକୁ ବଞ୍ଚନାକରି କିଞ୍ଚିତ୍ ଧନ ସଞ୍ଚୟ କରିବାକୁ ଯାଇ ପରସ୍ପର ମଧ୍ୟରେ ବିଦ୍ୱେଷ ଜନ୍ମାନ୍ତି । ( କାକଣୀକମାତ୍ର ସଂସ୍କୃତରେ ବ୍ୟବହୃତ ହୋଇଅଛି । ବିଂଶତିସଂଖ୍ୟକ ସ୍ୱର୍ଣ୍ଣମୁଦ୍ରା ବା ତଦ୍‌ପେକ୍ଷା ନ୍ୟୁନ )। ୨୬ ।

ହେ ରାଜନ୍ ! ଏହି ସଂସାର ମାର୍ଗରେ ଧନର କଷ୍ଟ ଓ ଅନ୍ୟାନ୍ୟ ଉପସର୍ଗମାନ ନିଶ୍ଚୟ ଅଛି, ତଭିନ୍ନ ସୁଖ, ଦୁଃଖ, ରାଗ, ଦ୍ୱେଷ, ଭୟ ଅଭିମାନ, ପ୍ରମାଦ, ଉନ୍ମାଦ, ଶୋକ, ମୋହ, ଲୋଭ, ମାତ୍ସର୍ଯ୍ୟ, ଈର୍ଷ୍ୟା, ଅବସାଦ, କ୍ଷୁଧା, ପିପାସା, ଆଧି ବ୍ୟାଧି, ଜନ୍ମ, ଜରା, ମରଣ ଇତ୍ୟାଦି ମଧ୍ୟ ସୁମହତ୍ ଉପସର୍ଗମାନ ଅଛି । ୨୭ ।

---

ଦୁରନ୍ତ ଚିନ୍ତାମଗ୍ନ ହୋଇ
ବିଷର୍ଣ୍ଣଭାବରେ ରହଇ।୨୩,୨୪।
ଅନ୍ୟର ଧନ ଅନ୍ୟେ ନେଇ
ସ୍ୱଭାବେ ଦ୍ୱନ୍ଦ୍ୱ ଉପୁଜାଇ
ଏ ଯେ ସଂସାର ଘୋର ପଥ
ନାନା ଉପସର୍ଗ ସହିତ
ଏହା ଆଶ୍ରୟ କରି ପ୍ରାଣୀ
ଏ ସର୍ବ ଅନୁଭବ ଜାଣି
ଶୋକ ଲୋଭ ଯେ ମୋହମାନ
ମାତ୍ସର୍ଯ୍ୟ ଈର୍ଷ୍ୟା ଅଭିମାନ

ସୁଖ ଦୁଃଖ ବା ଅପମାନ
ରାଗଦ୍ୱେଷ ଯେ କ୍ଷୁଧାଜନ୍ମ
ପିପାସା ଆଧି ବ୍ୟାଧି ଯେତେ
ଜରା ମରଣାଦି ସହିତେ ।୨୫,୨୬
ଦେବମାୟାରେ ମୋହ ହୋଇ
ନାରୀର ବଶଭାବ ବହି
ତା ଭୁଜଲତାରେ ବନ୍ଧନ
ତା ସ୍ନେହେ ମନ କରି ଛନ୍ନ
ତା ଅବଲୋକନ ବିହାରେ
ତେଣେ ଅସକ୍ତ ମୁଢ଼ କରେ

ତା ସୁତ ଦୁହିତା ବଚନେ
ଚିତ୍ତ ନିବେଶି ଅନୁକ୍ଷଣେ
ତାହାର କୋମଳ ବଚନ
ଶ୍ରବଣେ ପୀୟୂଷ ଯେସନ
ହୃଦୟେ ହରଷିତ ହୋଇ
ଆଶାକୁ ଚହିଁରେ ବଳାଇ
ଆତ୍ମା ଅହିତ ସେ ଅଟନ୍ତି
ଜାଣିବାକୁ ନରକେ ଯେସନ୍ତି ।୨୭।

କ୍ୱାପି ଦେବମାୟୟା ସ୍ତ୍ରିୟା ଭୁଜଲତୋପଗୂଢ଼ଃ ପ୍ରସ୍କନ୍ନବିବେକବିଜ୍ଞାନସ୍ତଦ୍‌ବିହା-
ରଗୃହାରମ୍ଭାକୁଳହୃଦୟସ୍ତଦାଶ୍ରୟାବସକ୍ତସୁତଦୁହିତୃକଳତ୍ରଭାଷିତାବଲୋକବିଚେଷ୍ଟିତାପ-
ହୃତହୃଦୟ ଆତ୍ମାନମଜିତାତ୍ମାପାରେଽନ୍ଧେ ତମସି ପ୍ରହିଣୋତି । ୨୮ ।

କଦାଚିଦୀଶ୍ୱରସ୍ୟଭଗବତୋ ବିଷ୍ଣୋଶ୍ଚକ୍ରାତ୍ ପରମାଣ୍ୱାଦିଦ୍ୱିପରାର୍ଦ୍ଧାପବର୍ଗ-
କାଲୋପଲକ୍ଷଣାତ୍ ପରିବର୍ତ୍ତିତେନ ବୟସା ରଂହସା ହରତ ଆବ୍ରହ୍ମତୃଣସ୍ତମ୍ବାଦୀନାଂ
ଭୂତାନାମନିମିଷତୋ ମିଷତାଂ ବିତ୍ରସ୍ତହୃଦୟସ୍ତମେବେଶ୍ୱରଂ କାଲଚକ୍ରନିଜାୟୁଧଂ ସାକ୍ଷା-
ଦ୍‌ଭଗବନ୍ତଂ ଯଜ୍ଞପୁରୁଷମନାଦୃତ୍ୟ ପାଷଣ୍ଡଦେବତାଃ କଙ୍କଗୃଧ୍ରବକବଟପ୍ରାୟା ଆର୍ଯ୍ୟ-
ସମୟପରିହୃତାଃ ସାଙ୍କେତ୍ୟେନାଭିଧତ୍ତେ । ୨୯ ।

---

ହେ ରାଜନ୍ ସଂସାରମାର୍ଗରେ କୌଣସିଠାରେ ଦେବମାୟା ସଦୃଶ୍ୟ ସ୍ତ୍ରୀର ଭୁଜଲତାରେ ଆଲିଙ୍ଗିତ ହୋଇ ପୁରୁଷ ବିବେକ ଓ ଜ୍ଞାନହୀନ ହୁଏ, ଏହି ସ୍ତ୍ରୀର ବିହାର ଗୃହାରମ୍ଭରେ ବ୍ୟାକୁଳଚିତ୍ତ ହୋଇଥାଏ, ଏହି ଗୃହସଂଲଗ୍ନ ପୁତ୍ର କନ୍ୟା ସ୍ତ୍ରୀ ପ୍ରଭୃତିଙ୍କର ବାକ୍ୟ ଶ୍ରବଣ ଅବଲୋକନ ଓ ଚେଷ୍ଟାଦ୍ୱାରା ଅପହୃତ ଚିତ୍ତ ହୋଇ ସେହି ଅଜିତେନ୍ଦ୍ରିୟ ବ୍ୟକ୍ତି ନିଜକୁ ଘୋରାନ୍ଧକାର ନରକରେ ନିକ୍ଷେପ କରେ । ୨୮ ।

ବେଳେବେଳେ ତାହାର ଚିତ୍ତ ସର୍ବ ନିୟନ୍ତା ଭଗବାନ ବିଷ୍ଣୁଙ୍କର ଚକ୍ର ଦର୍ଶନ କରି ଭୀତ ହୁଏ, ଏହି ଚକ୍ର ପରମାଣୁଠାରୁ ଆରମ୍ଭକରି ଦ୍ୱିପରାର୍ଦ୍ଧ ପର୍ଯ୍ୟନ୍ତ ବିସ୍ତୃତ, ଏହା ଅତି ବେଗରେ ପରିଭ୍ରମଣ କରୁ କରୁ କ୍ଷୁଦ୍ର ତୃଣ ସ୍ତମ୍ଭଠାରୁ ଆରମ୍ଭକରି ବ୍ରହ୍ମାଦି ଭୂତଗଣଙ୍କର ବାଲ୍ୟାଦି କ୍ରମେ ଆୟୁ ହରଣ କରିଥାଏ । ସେମାନେ ଏହାର କୌଣସି ପ୍ରକାର ପ୍ରତିକାର କରିବାକୁ ଅକ୍ଷମ । କାରଣ ଏହି ଚକ୍ର ସର୍ବତୋ ଭାବରେ ଅପ୍ରମତ୍ତ ଅର୍ଥାତ୍ ଅତ୍ୟନ୍ତ ସତର୍କ ଅତଏବ ପୁରୁଷ କାଳସ୍ୱରୂପ ଏହି ହରି ଚକ୍ରଦ୍ୱାରା ଭୀତ ହୋଇଥାଏ, ସେହି କାଳଚକ୍ର ଯାହାଙ୍କର ନିଜ ଅସ୍ତ୍ର, ସେହି ଈଶ୍ୱର ସାକ୍ଷାତ୍ ଭଗବାନ୍ ଯଜ୍ଞ ପୁରୁଷଙ୍କୁ ଅବଜ୍ଞା କରି ଆର୍ଯ୍ୟଜନ ଆଦର ବର୍ଜିତ ଭାବରେ କେତେ ପାଷଣ୍ଡ ଦେବତା କାକ, ଗୃଧ୍ର, ବକ ଓ ବଟ ପ୍ରଭୃତିଙ୍କୁ ଆଶ୍ରୟ କରିଥାନ୍ତି । ୨୯ ।

---

କେବେ ବା ଅଖିଳ ଈଶ୍ୱର
ବିଷ୍ଣୁ ଭଗବାନ ଠାକୁର
ଯାହାର କାଳଚକ୍ରେ ଜଗ
ସଂସାର ସମୁହ ସଂହାର
ସକଳ ବିଶିଷ୍ଟ ତାହାର
ଏମନ୍ତ ପ୍ରଭୁ ଯେ ଈଶ୍ୱର
ଯାହାର କାଳଚକ୍ର କରେ
ଭ୍ରମଇ ଅଖିଳ ସଂସାରେ

ଯେ ଯଜ୍ଞପୁରୁଷ ଠାକୁର
ତାହାଙ୍କୁ କରି ଅନାଦର
ପାଷଣ୍ଡ ଭାବକୁ ଆଚରି
ନାନା ଦେବତା ସେବାକରି
ସୁଗମ ପଥ ନ ଆଚରି
ବିବିଧ କୁପଥ ଆଦୋରି
ନିଗମ ଅକାରଣ କର୍ମ
କରଇ ହୋଇ ମତିଭ୍ରମ

ପାଷଣ୍ଡ ଭାବରେ ବିହିତ
ଆତ୍ମାକୁ କରଇ ବଞ୍ଚିତ ।୨୮।
ଅଗ୍ନିହୋତ୍ରାଦି ରହିତରେ
ବର୍ତ୍ତିଇ ଶୂଦ୍ର ପରକାରେ
ମିଥୁନ ଭାବେ ଅନୁକ୍ଷଣେ
ଆକୁଳ କୁଟୁମ୍ବ ପୋଷଣେ
ଅଜ୍ଞାନ ପାଷଣ୍ଡ ବେଶରେ
ନିରତେ ଜୀବନେ ବହିରେ

ଯଦା ତୁ ପାଷଣ୍ଡିଭିରାତ୍ମବଞ୍ଚିତୈସ୍ତୈରୁରୁ ବଞ୍ଚିତୋବ୍ରହ୍ମକୁଲଂ ସମାବସଂସ୍ତେଷାଂ ଶୀଲମୁପନୟନାଦଶ୍ରୌତସ୍ମାର୍ତ୍ତକର୍ମ୍ମାନୁଷ୍ଠାନେନ ଭଗବତୋ ଯଜ୍ଞପୁରୁଷସ୍ୟାରାଧନମେବ ତଦରୋଚୟନ୍ ଶୂଦ୍ରକୁଲଂ ଭଜତେ ନିଗମାଚାରେଽଶୁଦ୍ଧିତୋ ଯସ୍ୟ ମିଥୁନୀଭାବଃ କୁଟୁମ୍ବଭରଣଂ ଯଥା ବାନରଜାତେଃ । ୩୦ ।

ତତ୍ରାପି ନିରବରୋଧଃ ସ୍ୱୈରେଣ ବିହରନ୍ନତିକୃପଣବୁଦ୍ଧିରନ୍ୟୋନ୍ୟମୁଖନିରୀକ୍ଷଣାଦିନା ଗ୍ରାମ୍ୟକର୍ମଣୈବ ବିସ୍ମୃତକାଲାବଧିଃ । ୩୧ ।

କ୍ୱଚିଦ୍ଦ୍ରୁମବଦୈହିକାର୍ଥେଷୁ ଗୃହେଷୁ ରଂସ୍ୟନ୍ ଯଥା ବାନରଃ ସୁତଦାରବତ୍ସଲୋ ବ୍ୟବାୟକ୍ଷଣଃ । ୩୨ ।

ଏବମଧ୍ୱନ୍ୟବରୁନ୍ଧାନୋ ମୃତ୍ୟୁଗଜଭୟାତ୍ ତମସି ଗିରିକନ୍ଦରପ୍ରାୟେ । ୩୩ ।

---

ଯେତେବେଳେ ଆତ୍ମ ବିଷୟରେ ବଞ୍ଚିତ ପାଷଣ୍ଡଗଣଙ୍କ କର୍ତ୍ତୃକ ଉଦ୍‌ବଞ୍ଚିତ ହୋଇ ମନୁଷ୍ୟମାନେ ବ୍ରାହ୍ମଣ କୁଳରେ ବାସ କରେ ଏବଂ ସେଠାରେ ବ୍ରାହ୍ମଣମାନଙ୍କର ଆଚାର ବ୍ୟବହାର ଓ ଉପନୟନାଦି ଶ୍ରୌତ ସ୍ମାର୍ତ୍ତ କର୍ମାନୁଷ୍ଠାନ ଦ୍ୱାରା ଭଗବାନ ଯଜ୍ଞ ପୁରୁଷଙ୍କର ଆରାଧନା ରୁଚିକର ନ ହେବାରୁ ନିଗମୋକ୍ତାଚାରରେ ତାହାର ଶୁଦ୍ଧି ନ ଥିବାରୁ ବାନର ଜାତି ତୁଲ୍ୟ କେବଳ ସ୍ତ୍ରୀସଙ୍ଗ ଓ କୁଟୁମ୍ବ ପୋଷଣାଦି କର୍ମକର ଶୂଦ୍ରକୁଳକୁ ପ୍ରାପ୍ତହୁଏ । ସେମାନଙ୍କର କର୍ମହିଁ ହେଲା ସ୍ତ୍ରୀ ସଂସର୍ଗ ଓ କୁଟୁମ୍ବ ପୋଷଣ, ଅଗ୍ନିହୋତ୍ରାଦି ନୁହେଁ । ସେହି ଅବସ୍ଥାରେ ମଧ୍ୟ ପ୍ରତିବନ୍ଧକ ରହିତ ହୋଇ ସେ ସ୍ୱେଚ୍ଛାରେ ବିହାର କରେ । ଅତଏବ ଏହି ଅତିମନ୍ଦ ବୁଦ୍ଧି ପରସ୍ପର ମୁଖକୁ ଚାହିଁବା ଆଦି ଗ୍ରାମ୍ୟ କର୍ମଦ୍ୱାରା ମୃତ୍ୟୁକାଳ ପର୍ଯ୍ୟନ୍ତ ସମୟ ଅତିବାହିତ କରେ । ୩୦,୩୧ ।

କେତେବେଳେ ବାନରମାନେ ଯେପରି ବୃକ୍ଷରେ ରହି କ୍ରୀଡ଼ା କରନ୍ତି, ସେହିପରି ଗୃହାଦି ଐହିକ ବିଷୟାନୁରାଗୀ ହୋଇ ପୁତ୍ର କଳତ୍ରାଦିଙ୍କ ପ୍ରତି ପ୍ରୀତିଯୁକ୍ତ ହୁଅନ୍ତି ଏବଂ ମୈଥୁନ କ୍ରିୟାରେ ପରମ ଉତ୍ସବ ସମ୍ପାଦନ କରନ୍ତି । ୩୨ ।

ପୁରୁଷ ସଂସାରମାର୍ଗରେ ଅବରୁଦ୍ଧ ହେବାରୁ ମୃତ୍ୟୁତୁଲ୍ୟ ହସ୍ତୀ ଭୟରେ ଗିରିଗହ୍ୱର ତୁଲ୍ୟ ଘୋର ଅନ୍ଧକାର ବା ରୋଗ ଶୋକାଦି ଅବସରରେ ପତିତ ହୁଅନ୍ତି । ୩୩ ।

---

ଅତି କୃପଣ ବୁଦ୍ଧିହୋଇ
ଅନ୍ୟୋଽନ୍ୟେ ସ୍ନେହଭାବବହି
ତା ମୁଖ ଚାହିଁ ଅନୁକ୍ଷଣ
ପ୍ରତେଜ୍ଞ ବିତୁ ମାତୃଗଣ
ବିସ୍ମର ମୃତ୍ୟୁକାଳ ତହିଁ
ଅଜ୍ଞାନେ ସ୍ୱଚ୍ଛନ୍ଦେ ଭ୍ରମଇ

ବାନର ପଶୁର ସମାନ
ମୈଥୁନେ ହୁଅଇ ଦିନ
ପରମ ଉତ୍ସବ ମଣଇ
ଦାରା ତନୟ ମଧ୍ୟେ ରହି । ୨୯-୩୧ ।
ମୃତ୍ୟୁ ଅଜଗର ଭୟରେ
ପଶଇ ଗିରି ଯେ କନ୍ଦରେ

ଶୀତ ତପତ ଦୁଃଖମାନ
ଦୈବର ଉଦ୍ଭୂତ ବ୍ୟସନ
ଦୁସ୍ତର ଚିନ୍ତାମଗ୍ନ ହୋଇ
ବିକଳ ଭାବରେ ରହଇ । ୩୨,୩୩

କ୍ୱଚଚ୍ଛୀତବାତାଦ୍ୟନେକଦୈବିକଭୌତିକାତ୍ମୀୟାନାଂ ଦୁଃଖାନାଂ ପ୍ରତିକାରଣେଽ-କଳ୍ପୋ ଦୁରନ୍ତବିଷୟବିଷଣ୍ଣ ଆସ୍ତେ । ୩୪ ।

କ୍ୱଚିନ୍ମିଥୋ ବ୍ୟବହରନ୍ ଯତ୍କିଞ୍ଚିଦ୍ଧନମନ୍ୟେଭ୍ୟୋ ବା କାକିଣୀମାତ୍ରମପ୍ୟପହରନ୍ ଯତ୍କିଞ୍ଚିଦ୍ଧନମୁପଯାତି ବିତ୍ତଶାଠ୍ୟେନ ଦ୍ୱେଷଂ ଗଚ୍ଛତି ।୩୫।

କ୍ୱଚିତ୍ କ୍ୱଚିତ୍ କ୍ଷୀଣଧନଃ ଶଯ୍ୟାସନାଦ୍ୟୁପଭୋଗବିହୀନୋ ଯାବଦପ୍ରତିଲବ୍ଧ-ମନୋରଥୋପଗତାଦାନେଽବସିତମତିସ୍ତତସ୍ତତୋଽବମାନାଦୀନି ଜନାଦଭିଲଭତେ ।୩୬

ଏବଂ ବିତ୍ତବ୍ୟତିଷଙ୍ଗବିବୃଦ୍ଧବୈରାନୁବନ୍ଧୋଽପି ପୂର୍ବବାସନୟା ମିଥ ଉଦ୍ୱହତ୍ୟ-ଥାପବହତି । ୩୭ ।

ଏତସ୍ମିନ୍ ସଂସାରାଧ୍ୱନି ନାନାକ୍ଲେଶୋପସର୍ଗବାଧିତ ଆପନ୍ନବିପନ୍ନୋ ଯତ୍ର ଯସ୍ତମୁହ ବାବେତରସ୍ତତ୍ର ବିସୃଜ୍ୟ ଜାତଂ ଜାତମୁପାଦାୟ ଶୋଚନ୍ ମୁହ୍ୟନ୍ ବିଭ୍ୟଦ୍ବିବଦନ୍ କ୍ରନ୍ଦନ୍ ସଂହୃଷ୍ୟନ୍ ଗାୟନ୍ ନହ୍ୟମାନଃ ସାଧୁବର୍ଜିତୋ ନୈବାବର୍ତ୍ତତେଽଦ୍ୟାପି ଯତ ଆରବ୍ଧ ଏଷ ନରଲୋକସାର୍ଥସ୍ତମଧ୍ୱନଃ ପାରମୁପଦିଶନ୍ତି । ୩୮ ।

ମନୁଷ୍ୟ କେବେ ଅବା ଶୀତବାତାଦି ବହୁବିଧ ଆଧି ଦୈବିକ ଆଧିଭୌତିକ ବା ଆଧ୍ୟାତ୍ମିକ ଦୁଃଖ ନିବାରଣରେ ଅସମର୍ଥ ହୋଇ ଦୁରନ୍ତ ବିଷୟ ବାସନାଦ୍ୱାରା ବିଷଣ୍ଣ ହୋଇ ଅଶେଷ କ୍ଲେଶ ଭୋଗକରେ ।୩୪

ବେଳେ ବେଳେ ପରସ୍ପର ମଧ୍ୟରେ ବ୍ୟବହାର କରୁ କରୁ ପରସ୍ପରକୁ ପ୍ରତାରଣା କରି ଯତ୍‌କିଞ୍ଚିତ୍ ଧନ ସଞ୍ଚିୟ କଲେ ମଧ୍ୟ ତହିଁରେ ସୁଖୀ ନ ହୋଇ ବିଦ୍ୱେଷ ଆଚରଣ କରନ୍ତି । ୩୫ ।

ବେଳେବେଳେ ଧନହୀନ ହେବାରୁ ଶଯ୍ୟା ଆସନ ପ୍ରଭୃତି ଉପଭୋଗରୁ ମଧ୍ୟ ବଞ୍ଚିତ ହୁଏ, ସୁତରାଂ ସଦୁପାୟରେ ମନୋରଥ ସିଦ୍ଧି ନ କରିପାରି ଅସଦୁପାୟ ଅବଲମ୍ବନ କରେ ଏବଂ ସେହି ହେତୁ ଅପମାନିତ ହୁଏ । ୩୬ ।

ପୁଣି ଆଶ୍ଚର୍ଯ୍ୟର ବିଷୟ ଏହି ଯେ ଏହିପରି ଅର୍ଥାସକ୍ତି ହେବାରୁ ପରସ୍ପର ମଧ୍ୟରେ ବୈରଭାବ ବର୍ଦ୍ଧିତ ହୁଏ, ପରସ୍ପରମଧ୍ୟରେ ବିବାହାଦିସମ୍ବନ୍ଧ ସ୍ଥାପନକରନ୍ତି, ପୁଣି ସେହି ସମ୍ବନ୍ଧ ମଧ୍ୟ ବର୍ଜନକରନ୍ତି ।୩୭

ହେ ରାଜନ୍ ! ଏହି ସଂସାରମାର୍ଗରେ ନାନାକ୍ଲେଶ ଓ ନାନାଉପସର୍ଗ ଦ୍ୱାରା ବାଧିତ ହୋଇ ଯେଉଁ ବ୍ୟକ୍ତି ଆପଦଗ୍ରସ୍ତ ବା ମୃତହୁଏ, ଅନ୍ୟମାନେ ସେଠାରେ ତାକୁ ପରିତ୍ୟାଗ କରି ନୂତନ ନୂତନ ଉତ୍ପନ୍ନ ବ୍ୟକ୍ତିଙ୍କୁ ଗ୍ରହଣ କରିଥାନ୍ତି । କେତେବେଳେ ବା ଶୋକ କରନ୍ତି, କେତେବେଳେ ବା ମୂର୍ଚ୍ଛିତ ହୁଅନ୍ତି, କେତେବେଳେ ଭୟପ୍ରାପ୍ତ ହୁଅନ୍ତି, କେତେବେଳେ ଚିତ୍କାର କରନ୍ତି, କେତେବେଳେ ବିବାଦ କରନ୍ତି, କେତେବେଳେ ଆନନ୍ଦିତ ହୁଅନ୍ତି, କେତେବେଳେ ବା ଗାନ କରନ୍ତି, ଏହିପରି କ୍ରମଶଃ ସଂସାର ମଧ୍ୟରେ

କେବେହେଁ ଏକାନ୍ତେ ରମଇ
କେବେହେଁ କ୍ଷୀଣଧନ ହୋଇ
ଦ୍ରବ୍ୟସଞ୍ଚରହେ ଯେ ସ୍ୱଭାବ
ଶଯ୍ୟା ଆସନ ଆଦି ଭୋଗ
ସକଳ ଉପଭୋଗ ତାର
ଦ୍ରବ୍ୟ ବିହୀନେ ହୋଏ ଦୂର

ପୁଣିହିଁ କେବେ ମନୋରଥ
ଦ୍ରବ୍ୟ ଲାଳସେ ଭ୍ରମେଭିତ୍ତ
ପୁଣି କେବେହେଁ ଦ୍ରବ୍ୟପାଇ
ମତ ତାହାର ଦୁଷ୍ଟହୋଇ
ତେଣୁ ବିହାର ଆଦିଯେତେ
ଇଚ୍ଛଇ ସକଳ ସହିତେ

ଏମନ୍ତେ ବିତ୍ତବୃଦ୍ଧି ସଙ୍ଗେ
ବଢ଼ଇ ବଇରାନୁବନ୍ଧେ
ତେଣୁ ସେ ପୂର୍ବ ବାସନାରେ
ବହଇ ବିବିଧ ଶରୀରେ ।୩୪-୩୭
ତେଣୁ ସଂସାରପଥେ ନର
ନାନା କ୍ଲେଶ ବ୍ୟାଧି ଶରୀର

ଯଦ୍ଦଦଂ ଯୋଗାନୁଶାସନଂ ନ ବା ଏତଦବରୁନ୍ଧତେ ଯନ୍ନ୍ୟସ୍ତଦଣ୍ଡା ମୁନୟ ଉପଶମଶୀଳା ଉପରତାତ୍ମାନଃ ସମବଗଚ୍ଛନ୍ତି । ୩୯ ।

ଯଦ୍ୟପି ଦିଗିଭଜୟିନୋ ଯଜ୍ୱିନୋ ଯେ ବୈ ରାଜର୍ଷୟଃ କିନ୍ତୁ ପରଂ ମୃଧେ ଶୟୀରନ୍ ତସ୍ୟାମେବ ମମେୟମିତି କୃତବୈରାନୁବନ୍ଧାୟାଂ ବିସୃଜ୍ୟ ସ୍ୱୟମୁପସଂହୃତାଃ । ୪୦ ।

କର୍ମବଲ୍ଲୀମବଲମ୍ବ୍ୟ ତତ ଆପଦଃ କଥଞ୍ଚିନ୍ନରକାଦ୍‌ବିମୁକ୍ତଃ ପୁନରପ୍ୟେବଂ ସଂସାରାଧ୍ୱନି ବର୍ତ୍ତମାନୋ ନରଲୋକସାର୍ଥମୁପଯାତି ଏବମୁପରି ଗତୋଽପି । ୪୧ ।

ତସ୍ୟେଦମୁପଗାୟନ୍ତି,—ଆର୍ଷଭସ୍ୟେହ ରାଜର୍ଷେର୍ମନସାପି ମହାତ୍ମନଃ ।
ନାନୁବର୍ତ୍ମାର୍ହତି ନୃପୋ ମକ୍ଷିକେବ ଗରୁତ୍ମତଃ । ୪୨ ।

---

ଆବଦ୍ଧ ହୁଅନ୍ତି । ସାଧୁ ପୁରୁଷମାନଙ୍କର ଅନୁଗ୍ରହ ବ୍ୟତୀତ କେହି ଅଦ୍ୟାପି ଏ ସଂସାର ମାର୍ଗରୁ ଉତ୍ତୀର୍ଣ୍ଣ ହୋଇ ପାରନ୍ତି ନାହିଁ । ଯେଉଁ ମାର୍ଗରେ ଏ ନରଲୋକ ଆବଦ୍ଧ, ପଣ୍ଡିତମାନେ ସେହି ପଥ ଅତିକ୍ରମ କରିବା ନିମନ୍ତେ ସର୍ବଦା ସଦୁପଦେଶ ପ୍ରଦାନ କରିଥାନ୍ତି, ଏହିପଥ ଯୋଗାନୁଷ୍ଠାନ ଦ୍ୱାରା ଅବରୁଦ୍ଧ କରି ପାରିଯାଏ ନାହିଁ । ଉପଶମଶୀଳ, ପ୍ରଶସ୍ତାତ୍ମା ମୁନିମାନେ ଅହିଂସ୍ର, ସେମାନେ ମଧ୍ୟ ଏହା ଅବଗତ ଅଛନ୍ତି, ଫଳତଃ ସେମାନଙ୍କ ମଧ୍ୟରୁ ଅନେକେ ଏହି ପଥ ଅବରୋଧ କରିବାକୁ ସମର୍ଥ ହୁଅନ୍ତି । ୩୮,୩୯ ।

ଅନ୍ୟ ଯେଉଁ ରାଜର୍ଷିମାନେ ଦିଗ୍ ବିଜୟୀ ଓ ସର୍ବଦା ଯଜ୍ଞପରାୟଣ, ସେମାନେ ମଧ୍ୟ ଏହି ପଥ ଅବରୋଧ କରିବାକୁ ସମର୍ଥ ହୁଅନ୍ତି ନାହିଁ, କେବଳ ରଣ ଭୂମିରେ ଶୟନ କରନ୍ତି ଓ ଯମ ମନ୍ଦିରର ପଥିକ ହୁଅନ୍ତି । ୪୦ ।

କୌଣସି କୌଣସି ଲୋକ ଆପଣାର କର୍ମସୂତ୍ର ଅବଲମ୍ବନ କରି ନରକ ରୂପ ଆପଦରୁ କଥଞ୍ଚିତ୍ ମୁକ୍ତି ଲାଭକରନ୍ତି, କିନ୍ତୁ ପୁନର୍ବାର ସଂସାର ମାର୍ଗରେ ରହି ପୁଣି ନରଲୋକରେ ଉପସ୍ଥିତ ହୁଅନ୍ତି । ସ୍ୱର୍ଗିତ ଲୋକଙ୍କର ଏହି ଗତି ହୁଏ । ୪୧ ।

ଏ ବିଷୟରେ ପଣ୍ଡିତମାନଙ୍କର ଏହିପରି ମତ, ହେ ମହାରାଜ ! ମକ୍ଷିକା ଯେପରି ଗରୁଡ଼ର ମାର୍ଗ ଅନୁସରଣ କରିବାକୁ ଅସମର୍ଥ ହୁଏ, ସେହିପରି ଅନ୍ୟକୌଣସି ରାଜା ସେହି ଋଷଭତନୟ ରାଜର୍ଷି ଭରତଙ୍କର ଅନୁବର୍ତ୍ତୀ ହେବାକୁ ସମର୍ଥ ହେବେ ନାହିଁ । ୪୨ ।

---

ପୁଣି ଜନ୍ମିଣ ନାଶପାଇ
ନାନା ଆପଦକୁ ଭୁଞ୍ଜଇ
ନାନା ଶୋକ ମୋହ ତାପରେ
ପୀଡ଼ିତ ହୋଏ ତା ଶରୀରେ
ଅସାଧୁ ବନ୍ଧନେ ବନ୍ଧିଇ
ସେ ପଥ ପାର ନ ଦେଖଇ
ଯେ ପଥ ଉପଶମଶୀଳ
ସୁସାଧୁ ପାଳନ୍ତି ନିଶ୍ଚଳ

ଅଗମ୍ୟ ରାଜଋଷିଙ୍କର
ଯେ ପଥ ଅତି ଅଗୋଚର
ମାୟାକୁ ପରିହାରକରି
ଯେ କର୍ମେ ଆୟୁର୍ବଳ ସାରି
ସେ ପଥପାର ନଦେଖନ୍ତି
ଲୋଭଟସଂସାରେ ଭ୍ରମନ୍ତି । ୩୮-୪୧
ଏଣୁ ଋଷିଏ ଛନ୍ଦାଣରେ
ଗାବନ୍ତି ଭରତ ଚରିତେ

ଭରତ ରାଜଋଷିବର
ତା ପଥ ଅତି ଅଗୋଚର
ଏମନ୍ତ କେବା ନରଦେବ
ତା ପଥେ ପଥିକ ହୋଇବ
ଗରୁଡ଼ ପକ୍ଷୀ ଗତି ଯହିଁ
ମକ୍ଷିକାଗତି ତହିଁ କାହିଁ । ୪୨ ।

ଯୋ ଦୁସ୍ତ୍ୟଜାନ୍ ଦାରସୁତାନ୍ ସୁହୃଦ୍ରାଜ୍ୟଂ ହୃଦସ୍ପୃଶଃ ।
ଜହୌ ଯୁବୈବ ମଲବଦୁତ୍ତମଃଶ୍ଳୋକଲାଲସଃ । ୪୩ ।
ଯୋ ଦୁସ୍ତ୍ୟଜାନ୍ କ୍ଷିତିସୁତସ୍ୱଜନାର୍ଥଦାରାନ୍
ପ୍ରାର୍ଥ୍ୟାଂ ଶ୍ରିୟଂ ସୁରବରୈଃ ସଦୟାବଲୋକାମ୍ ।
ନୈଚ୍ଛନ୍ନୃପସ୍ତଦୁଚିତଂ ମହତାଂ ମଧୁଦ୍ୱିଟ୍
ସେବାନୁରକ୍ତମନସାମଭବୋଽପି ଫଲ୍‌ଗୁଃ । ୪୪ ।
ଯଜ୍ଞାୟ ଧର୍ମ୍ମପତୟେ ବିଧିନୈପୁଣାୟ ଯୋଗାୟ ସାଂଖ୍ୟଶିରସେ ପ୍ରକୃତୀଶ୍ୱରାୟ ।
ନାରାୟଣାୟ ହରୟେ ନମ ଇତ୍ୟୁଦାରଂ ହାସ୍ୟନ୍ ମୃଗତ୍ୱମପି ଯଃ ସମୁଦାଜହାର ।୪୫

---

ଯେଉଁ ରାଜା ଭଗବାନ୍ ଉତ୍ତମ ଶ୍ଳୋକଙ୍କର ଚରଣ ପ୍ରାପ୍ତି ନିମିତ୍ତ ଯୌବନ କାଳରେ ସୁଦ୍ଧା ଦୁସ୍ତ୍ୟଜ୍ୟ ମନୋଜ୍ଞସ୍ତ୍ରୀ ପୁତ୍ର, ସୁହୃତ୍ ରାଜ୍ୟ ସମସ୍ତ ମଳତୁଲ୍ୟ ପରିତ୍ୟାଗ କରିଥିଲେ, ଯେଉଁ ରାଜା ଦୁସ୍ତ୍ୟଜ୍ୟ ରାଜ୍ୟ, ପୁତ୍ର, ସ୍ୱଜନ, ଧନ; ସ୍ତ୍ରୀ ଏବଂ ଦେବଗଣଙ୍କ ପ୍ରାର୍ଥନୀୟ ଶ୍ରୀ ଯେ ଭରତଙ୍କ ଦୟାଭାଜନ ହେବା ନିମିତ୍ତ ତାହାଙ୍କ ପ୍ରତି ଧ୍ୟାନଭାବରେ ଅବଲୋକନ କରୁଥିଲେ, ସେ ଏ ସମସ୍ତ ବାଞ୍ଛା ନ କରିବା ତାଙ୍କପକ୍ଷରେ ବିଧେୟ କର୍ମ । ଥିଲ ହେ ମହାଜନଗଣ । ମଧୁସୂଦନଙ୍କ ସେବାନୁରକ୍ତ ବ୍ୟକ୍ତି ପକ୍ଷରେ ପରମପୁରୁଷାର୍ଥ ମୁକ୍ତି ମଧ୍ୟ ତୁଚ୍ଛ । ୪୩-୪୪ ।

ଯେଉଁ ରାଜର୍ଷି ଭରତ ମୃଗଦେହ ତ୍ୟାଗକରିବା ସମୟରେ ଏହି ସ୍ତୋତ୍ର ଉଚ୍ଚୈସ୍ୱରରେ ଉଚ୍ଚାରଣ କରିଥିଲେ "ଯେ ଯଜ୍ଞରୂପ, ଯଜ୍ଞଦଫଳଦାତା ଧର୍ମାନୁଷ୍ଠାତା, ଅଷ୍ଟାଙ୍ଗଯୋଗ ସ୍ୱରୂପ, ଜ୍ଞାନ ଯାହାଙ୍କର ପ୍ରଧାନ ଫଳ ସ୍ୱରୂପ, ଯେ ମାୟାରେ ସର୍ବ ଜୀବର ନିୟନ୍ତ୍ରଣ କରୁଅଛନ୍ତି, ସେହି ଶ୍ରୀହରିଙ୍କୁ ନମସ୍କାର" ସେହି ଭରତଙ୍କ ଚରିତ୍ରର ଅନୁକରଣ କରିବାକୁ କିଏ ସମର୍ଥ ହେବ ? । ୪୫ ।

---

ଦୁସ୍ତ୍ୟଜ୍ୟ ସୁତ ଦାର ଧନ
ସୁହୃଦ ରାଜ୍ୟ ସ୍ୱଜମାନ
ଯେ ଏହା ତୁଚ୍ଛକରି ତେଜି
ଉତ୍ତମ ଶ୍ଳୋକ ପାଦେ ଭଜି ।୪୩।
ଯାହାର ସାମ୍ରାଜ୍ୟ ବିଭବ
ତ୍ରିଦଶମାନଙ୍କୁ ଦୁର୍ଲଭ,

ଏହା ନ ଲେଖି ସାଧୁଚିତରି
ମହତ ଗୁରୁ ପାଦଗତେ
ସେବଣ ମନ ବୁଦ୍ଧି ଦେଇ
ଥିଲେ ଯେ ମନକୁ ବୁଡ଼ାଇ ।୪୪।
"ହେ ଯଜ୍ଞ ଧର୍ମ ତପୋମୟ
ବିଧି ନିପୁଣ ଯୋଗ ଦେହ

ସାଂଖ୍ୟ ଯୋଗରେ ଯେତୁ ସାର
ହେ ପ୍ରଭୁ ପ୍ରକୃତ ଈଶ୍ୱର
ହେ ନାରାୟଣ କୃଷ୍ଣ ହରି"
ଏମନ୍ତ ନାମ ମୁଖେ ଧରି
ଛାଡ଼ିଲେ ମୃଗ କଳେବର
କି ଅବା ଦେବା ପଟାନ୍ତର ।୪୫।

ଯ ଇଦଂ ଭାଗବତସଭାଜିତାବଦାତଗୁଣକର୍ମ୍ମଣୋ ରାଜର୍ଷେର୍ଭରତସ୍ୟାନୁଚରିତଂ ସ୍ୱସ୍ତ୍ୟୟନମାୟୁଷ୍ୟଂ ଧନ୍ୟଂ ଯଶସ୍ୟଂ ସ୍ୱର୍ଗ୍ୟାପବର୍ଗ୍ୟଂ ବାନୁଶୃଣୋତ୍ୟାଖ୍ୟାସ୍ୟତ୍ୟଭିନନ୍ଦତି ଚ ସର୍ବା ଏବାଶିଷ ଆତ୍ମନ ଆଶାସ୍ତେ ନ କାଞ୍ଚନ ପରତ ଇତି । ୪୬ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଭରତୋପାଖ୍ୟାନଂ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ । ୧୪ ।

---

ଭଗବଦ୍ ଭକ୍ତଗଣ ଯାହାଙ୍କର ବିଶୁଦ୍ଧଗୁଣ ଓ କର୍ମର ସ୍ତୁତିବାଦ କରିଥାନ୍ତି । ସେହି ରାଜର୍ଷି ଭରତଙ୍କର ମଙ୍ଗଳକର, ଆୟୁଷ୍କର, ଧନପ୍ରଦ, ଯଶସ୍କର ଏବଂ ସ୍ୱର୍ଗ ମୋକ୍ଷପ୍ରଦ ଚରିତ୍ର ଯେ ଶ୍ରବଣ, କୀର୍ତ୍ତନ ଓ ଅଭିନନ୍ଦନ କରେ ସେ ସ୍ୱତଃ ନିଖିଳ କଲ୍ୟାଣ ପ୍ରାପ୍ତ ହୁଏ, ଅନ୍ୟ କାହାରି ନିକଟରେ ତାହାର ମଙ୍ଗଳ ପ୍ରାର୍ଥୀ ହେବାର ଆବଶ୍ୟକତା ନ ଥାଏ । ୪୬ ।

---

| | | |
|---|---|---|
| ହେ ଭାଗବତ ପରୀକ୍ଷିତ | ଯେ ଏହା ଶୁଣେ ଶୁଦ୍ଧଚିତ୍ତେ, | କହଇ ବିପ୍ର ଜଗନ୍ନାଥ |
| ବିଶୁଦ୍ଧକର୍ମୀ ଯେ ଭରତ | ଭରତ ଉପାଖ୍ୟାନ ଗତେ | ଭରତ ଚରିତ ଅମୃତ |
| ଏହା ଗୁଣ ଚରିତମାନ | ପ୍ରଭୁ ଚରଣେ ଭକ୍ତି ତାର | ପଞ୍ଚମସ୍କନ୍ଧେ ଭାଗବତ |
| ପଢନ୍ତି ଶୁଣନ୍ତି ଯେ ଜନ | ଅନେଶ ପାପୁଁ ହୋଇ ପାର ।୪୬ | ସୁଜନେ ଶୁଣ ଦେଇ ଚିତ୍ତ |
| ଆୟୁଷ ଯଶ ଧର୍ମ ତାର | ପ୍ରଭୁ ପଦାରବିନ୍ଦଗତେ | ଅମୃତ ରସମୟ ବାଣୀ |
| ଲଭଇ ମଙ୍ଗଳ ଅପାର | ମନ ମୋ ରହୁ ଅବିରତେ | ଶୁଣି ସଂସାରୁ ତର ପ୍ରାଣୀ । |

## ବିଶଦାର୍ଥ :—

ମହାରାଜ ପରୀକ୍ଷିତ ଶ୍ରୀ ଶୁକଦେବଙ୍କଠାରୁ ରହୂଗଣଙ୍କ ବୃତ୍ତାନ୍ତ ଶ୍ରବଣ କଲାପରେ ଶ୍ରୀ ଶୁକଦେବ ଏହି ଭବ ବା ସଂସାରକୁ ଗୋଟିଏ ଅରଣ୍ୟ ସହିତ ତୁଳନା କରି ପୂର୍ବ ଅଧ୍ୟାୟ ବର୍ଣ୍ଣିତ ପ୍ରସଙ୍ଗରେ ବ୍ୟାଖ୍ୟା କରିଥିଲେ । ସଂସାର ଅରଣ୍ୟ ଶ୍ମଶାନ ତୁଲ୍ୟ ଅମଙ୍ଗଳମୟ ହେଲେ ମଧ୍ୟ ଜୀବ ତାହାକୁ ପରମ ମଙ୍ଗଳର ଆଶ୍ରୟ ସ୍ଥଳ ବୋଲି ମନେ କରିଥାଏ । ଏହି ଅରଣ୍ୟ ମଧ୍ୟରେ ଯେଉଁ ଦସ୍ୟୁମାନଙ୍କ ପ୍ରସଙ୍ଗ ଉଲ୍ଲେଖ କରା ଯାଇଅଛି ସେମାନେ ଷଡ଼ିନ୍ଦ୍ରିୟ, ଯଥା—ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା, ତ୍ୱକ୍, ଅନ୍ତଃକରଣ, କେହି କେହି ମନକୁ ବା ଅନ୍ତଃକରଣକୁ ଇନ୍ଦ୍ରିୟ ବୋଲି ସ୍ୱୀକାର କରନ୍ତି ନାହିଁ । ସେମାନଙ୍କ ମତରେ ଇନ୍ଦ୍ରିୟ ପାଞ୍ଚଗୋଟି । ଦସ୍ୟୁମାନେ ଯେପରି ଅରଣ୍ୟ ମଧ୍ୟରେ କୌଣସି ପଥିକକୁ ପାଇଲେ ତାହାକୁ ବିପଥ ଗାମୀ କରାଇ ତାହାର ଧନରତ୍ନ ଆଦି ଅପହରଣ କରିଥାନ୍ତି ଏବଂ ଅବଶେଷରେ ତାହାର ଜୀବନ ମଧ୍ୟ ବିନାଶ କରନ୍ତି, ସେହିପରି ସଂସାର ଅରଣ୍ୟ ଭ୍ରମଣକାରୀ ମନୁଷ୍ୟକୁ ଇନ୍ଦ୍ରିୟମାନେ କୁପଥଗାମୀ କରାଇ ତାହାର ଜୀବନୀ ଶକ୍ତି ନଷ୍ଟ କରି ଦିଅନ୍ତି । ଶତ ଚେଷ୍ଟାରେ ସୁଦ୍ଧା ତାହାର ପରିବର୍ତ୍ତନ ଘଟେ ନାହିଁ ।

ଏହି ଅଧ୍ୟାୟରେ ବିଭିନ୍ନ ରୂପକ ମାନଙ୍କର ବ୍ୟାଖ୍ୟା କରାଯାଇଅଛି ସୁତରାଂ ଏଥିର ବିଶଦ ବିବରଣ ନିଷ୍ପ୍ରୟୋଜନ ।

## ପ ଞ୍ଚ ଦ ଶ ଅ ଧ୍ୟା ୟ ।

ଏବମଷ୍ଟଭିରଧ୍ୟାୟୈର୍ଭରତସ୍ୟୋକ୍ତମୀହିତମ୍ ।
ତତଃ ପଞ୍ଚଦଶେ ତସ୍ୟ କୀର୍ତ୍ତ୍ୟନ୍ତେ ବଂଶଜା ନୃପାଃ । ୦ । ( ଶ୍ରୀଧରସ୍ୱାମୀ)

ଶ୍ରୀ ଶୁକ ଉବାଚ ।

ଭରତସ୍ୟାତ୍ମଜଃ ସୁମତିର୍ନାମାଭିହିତୋ ଯମୁହ ବାବ କେଚିତ୍ ପାଷଣ୍ଡିନଃ ଋଷଭ-ପଦବୀମନୁବର୍ତ୍ତମାନଞ୍ଚାନାର୍ଯ୍ୟା ଅବେଦସମାମ୍ନାତାଂ ଦେବତାଂ ସ୍ୱମନୀଷୟା ପାପୀୟସ୍ୟା କଲୌ କଳ୍ପୟିଷ୍ୟନ୍ତି । ୧ ।

ତସ୍ମାଦ୍‌ବୃଦ୍ଧସେନାୟାଂ ଦେବତାଜିନ୍ନାମା ପୁତ୍ରୋଽଭବତ୍ । ୨ ।

ଅଥାସୁର୍ଯ୍ୟାଂ ତତ୍ତନୟୋ ଦେବଦ୍ୟୁମ୍ନସ୍ତତୋ ଧେନୁମତ୍ୟାଂ ସୁତଃ ପରମେଷ୍ଠୀ ତସ୍ୟ ସୁବର୍ଚ୍ଚଳାୟାଂ ପ୍ରତୀହ ଉପଜାତଃ । ୩ ।

---

### ଭରତବଂଶୀୟ ନୃପତିଗଣ ।

ପଞ୍ଚଦଶ ଅଧ୍ୟାୟରେ ଭରତଙ୍କ ବଂଶାନୁଚରିତ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀଶୁକଦେବ କହିଲେ :—

ହେ ରାଜନ୍ ! ଭରତଙ୍କର ପୁତ୍ର ସୁମତି । ସେ ଋଷଭ ଦେବ ଚରିତ୍ର ଅନୁସରଣ କରୁଥିଲେ, କଳିକାଳରେ ଅନାର୍ଯ୍ୟ ପାଷଣ୍ଡମାନେ ତାହାଙ୍କର ସେହି ଜୀବନ୍ମୁକ୍ତ ମାର୍ଗ ବିଷୟ ଶ୍ରବଣକରି ନିଜ ନିଜର ପାପୀୟସୀ କଳ୍ପନା ବଳରେ ତାହାଙ୍କୁ ଦେବତା ବୋଲି କଳ୍ପନା କରିବେ, କିନ୍ତୁ ବେଦ ଶାସ୍ତ୍ରରେ କୌଣସିଠାରେ ଏହି ଦେବତାଙ୍କ ସମ୍ବନ୍ଧେ କୌଣସି ପ୍ରମାଣ ମିଳିବ ନାହିଁ । ୧ ।

ସୁମତିଙ୍କ ଔରସରେ ବୃଦ୍ଧସେନାଙ୍କ ଗର୍ଭରେ ଦେବଜିତ ନାମକ ପୁତ୍ର ଜନ୍ମିଥିଲେ । ୨ ।

ତଦନନ୍ତର ଆସୁରୀଙ୍କ ଗର୍ଭରେ ଦେବଦ୍ୟୁମ୍ନ ନାମକ ପୁତ୍ର ଦେବଜିତଙ୍କଠାରୁ ଜାତ ହୋଇଥିଲେ, ଧେନୁମତୀ ଗର୍ଭରେ ଦେବଦ୍ୟୁମ୍ନଙ୍କ ଔରସରେ ପରମେଷ୍ଠୀ ଜାତ ହେଲେ ଏବଂ ପରମେଷ୍ଠୀଙ୍କଠାରୁ ସୁବର୍ଚ୍ଚଳାଙ୍କ ଗର୍ଭରେ ପ୍ରତୀହ ଜନ୍ମଗ୍ରହଣ କରିଥିଲେ । ୩ ।

---

ଭରତ ବଂଶାନୁ ଚରିତ । ପନ୍ଦର ଅଧ୍ୟାରେ ଉକତ ॥

ଶ୍ରୀ ଶୁକ ଉବାଚ—
ଶୁଣ ପରୀକ୍ଷ ନୃପନାଥ
ଭରତ ବଂଶାନୁ ଚରିତ
ସୁମତି ତାହାର ତନୟେ
ଋଷଭ ପଥେ ସେ ଅଶ୍ରୟେ
ପାଷଣ୍ଡ ଜନେ କଳିଯୁଗେ
ଧର୍ମ କଳ୍ପିବେ ତାଙ୍କମାର୍ଗେ
ସୁମତି ପତ୍ନୀଠାରେ ସୁତ
ହୋଇଲା ନାମ ଦେବଜିତ । ୧ ।
ତାହାର ହୋଇଲା କୁମର
ଦେବଦ୍ୟୁମନ ନାମତାର
ପରମେଷ୍ଠୀ ତାର କୁମର
ଜନ୍ମିଲା ଧେନୁମତୀଠାରୁ
ସୁବର୍ଚ୍ଚଳା ଯେ ପତ୍ନୀତାର
ଜନ୍ମିଲା ପ୍ରତୀହ କୁମର । ୨ ।
ଯେ ଆତ୍ମବିଦ୍ୟାମତେ କରି
ଭଜିଲା ପ୍ରଭୁ ନରହରି । ୩ ।

ସ ଆତ୍ମବିଦ୍ୟାମାଖ୍ୟାୟ ସ୍ୱୟଂ ସଂଶୁଦ୍ଧୋ ମହାପୁରୁଷମନୁସସ୍ମାର ।୪।

ପ୍ରତୀହାତ୍ ସୁବର୍ଚ୍ଚଳାୟାଂ ପ୍ରତିହର୍ତ୍ତ୍ରାଦୟସ୍ତ୍ରୟ ଆସନ୍ନିଜ୍ୟାକୋବିଦାଃ ସୂନବଃ ପ୍ରତିହର୍ତ୍ତୁଃ ସ୍ତୁତ୍ୟାମଜଭୂମାନାବଜନିଷାତାମ୍ ।୫।

ଭୂମ୍ନ ଋଷିକୁଲ୍ୟାୟାମୁଦ୍‌ଗୀଥସ୍ତତଃ ପ୍ରସ୍ତାବୋ ଦେବକୁଲ୍ୟାୟାଂ ପ୍ରସ୍ତାବାନ୍ନିୟୁତ୍ସାୟାଂ ହୃଦୟଜ ଆସୀଦ୍‌ବିଭୁଃ ବିଭୋ ରତ୍ୟାଞ୍ଚ ପୃଥୁଷେଣସ୍ତସ୍ମାନ୍ନକ୍ତ ଆକୂତ୍ୟାଂ ଜଜ୍ଞେ ନକ୍ତାଦ୍ଦ୍ରୁତିପୁତ୍ରୋ ଗୟୋ ରାଜର୍ଷିପ୍ରବର ଉଦାରଶ୍ରବା ଅଜାୟତ ଯଃ ସାକ୍ଷାଦ୍‌ଭଗବତୋ ବିଷ୍ଣୋର୍ଜଗଦ୍ରିରକ୍ଷିଷୟା ଗୃହୀତସତ୍ତ୍ୱସ୍ୟ କଳାତ୍ମବତ୍ତ୍ୱାଦିଲକ୍ଷଣେନ ମହାପୁରୁଷତାଂ ପ୍ରାପ୍ତଃ ।୬।

ସ ବୈ ସ୍ୱଧର୍ମ୍ମେଣ ପ୍ରଜାପାଳନପୋଷଣପ୍ରୀଣନୋପଲାଳନାନୁଶାସନଲକ୍ଷଣେନେଜ୍ୟାଦିନା ଚ ଭଗବତି ମହାପୁରୁଷେ ପରାବରେ ବ୍ରହ୍ମଣି ସର୍ବାତ୍ମନାର୍ପିତପରମାର୍ଥ-

---

ସେ ବହୁବ୍ୟକ୍ତିଙ୍କ ନିକଟରେ ଆତ୍ମବିଦ୍ୟା ବ୍ୟାଖ୍ୟା କରି ତଦ୍ଦ୍ୱାରା ସ୍ୱୟଂ ପବିତ୍ର ହୋଇ ଭଗବାନ୍ ବିଷ୍ଣୁଙ୍କୁ ସ୍ୱୟଂ ପ୍ରତ୍ୟକ୍ଷ କରିଥିଲେ ।୪।

ପ୍ରତୀହଙ୍କଠାରୁ ସୁବର୍ଚ୍ଚଳାଙ୍କ ଗର୍ଭରେ ପ୍ରତିହର୍ତ୍ତା, ପ୍ରତିହୋତା ଓ ଉଦ୍‌ଗାତା ଏହି ତିନିଜଣ ଯଜ୍ଞାନୁଷ୍ଠାନ ବିଷୟରେ ଅତି ନିପୁଣ ପୁତ୍ର ଜାତ ହୋଇଥିଲେ ।୫।

ପ୍ରତିହର୍ତ୍ତାଙ୍କର ସ୍ତୁତି ନାମ୍ନୀ ଭାର୍ଯ୍ୟାଙ୍କଠାରୁ ଅଜ ଓ ଭୂମା ନାମରେ ଦୁଇପୁତ୍ର ଜାତ ହୋଇଥିଲେ, ଭୂମାଙ୍କର ଦୁଇପତ୍ନୀ ଋଷିକୁଲ୍ୟା, ଓ ଦେବକୁଲ୍ୟା, ଋଷିକୁଲ୍ୟାଙ୍କଠାରୁ ଉଦଗୀଥ ଓ ଦେବକୁଲ୍ୟାଙ୍କଠାରୁ ପ୍ରସ୍ତାବ ନାମକ ପୁତ୍ରଦ୍ୱୟ ଜନ୍ମିଥିଲେ । ପ୍ରସ୍ତାବଙ୍କର ଭାର୍ଯ୍ୟା ନିୟୁତ୍ସା । ତାହାଙ୍କର ପୁତ୍ରଙ୍କର ନାମ ବିଭୁ, ବିଭୁଙ୍କର ରତିନାମ୍ନୀ ସ୍ତ୍ରୀଙ୍କ ଗର୍ଭରେ ପୃଥୁସେନ ନାମକ ପୁତ୍ର ଜାତ ହୋଇଥିଲେ । ପୃଥୁସେନଙ୍କର ସ୍ତ୍ରୀ ଆକୂତିଙ୍କଠାରୁ ନକ୍ତ ଓ ନକ୍ତଙ୍କର ସ୍ତ୍ରୀ ଦ୍ରୁତିଙ୍କଠାରୁ ରାଜର୍ଷି ପ୍ରବର ଯଶସ୍ୱୀ ଗୟ ଜାତ ହୋଇଥିଲେ, ସେ ଜଗତର ରକ୍ଷା ନିମିତ୍ତ ଭଗବାନ୍ ବିଷ୍ଣୁଙ୍କ ଅଂଶରେ ଏବଂ ବିବିଧକଳା ଓ ଲକ୍ଷଣରେ ମହାପୁରୁଷତ୍ୱ ପ୍ରାପ୍ତ ହୋଇଥିଲେ ।୬।

ରାଜା ଗୟ ସ୍ୱଧର୍ମାନୁସାରେ ପ୍ରଜାପାଳନ, ପୋଷଣ, ପ୍ରୀତିସମ୍ପାଦନ, ଶାସନାଦି ଲକ୍ଷଣ ଓ ଧର୍ମାନୁଷ୍ଠାନ କରିଥିଲେ ଏବଂ ଭଗବାନ୍ ମହାପୁରୁଷ ପରଂବ୍ରହ୍ମଙ୍କଠାରେ ଅର୍ପିତ ଯଜ୍ଞାଦିଦ୍ୱାରା ଓ ବ୍ରହ୍ମଜ୍ଞ ମାନଙ୍କର ଚରଣ

---

ତାହାର ପ୍ରତିହର୍ତ୍ତା ନାମ
ତନୟ ହୋଇଲା ରାଜନ ।୪।
ପ୍ରତିହର୍ତ୍ତାର ଯେ କୁମର
ବେନି ହୋଇଲେ ନୃପବର
ଭୂମାନ ଅଜ ଯେ କୁମର
ହୋଇଲେ ସ୍ତୁତିଠାରେ ତାର
ଉଦ୍‌ଗୀଥ ଭୂମାର ଯେ ସୁତ
ଋଷିକୁଲ୍ୟାର ଗର୍ଭୁଁ ଜାତ

ଦେବକୁଲ୍ୟାର ଗର୍ଭୁଁ ତାର
ହୋଇଲା ପ୍ରସ୍ତାବ କୁମର ।୫।
ନିୟୁତ୍ସାସ୍ତ୍ରୀର ଗର୍ଭୁଁ ତାର
ଜନ୍ମିଲା ବିଭୁ ଯେ କୁମର
ରତିରଠାରେ ଯେ ବିଭୁର
ପୃଥୁସେନବୋଲି କୁମର
ଆକୂତିଠାରେ ତାର ସୁତ
ନକ୍ତ ନାମରେ ସେ ବିଦିତ

ନକ୍ତ ରାଜାର ଯେ କୁମର
ହୋଇଲା ଗୟ ନୃପବର ।୬।
ସେ ବିଷ୍ଣୁ ଅଂଶକୁ ବହିଇ
ନାନା ଲକ୍ଷଣେ ପୂର୍ଣ୍ଣହୋଇ
ସ୍ୱଧର୍ମେ ପ୍ରଜା ପାଳନରେ
ମନ ତାହାର ନିରନ୍ତରେ
ଯେ ମହାପୁରୁଷ ଈଶ୍ୱର
ଅନାଦି ନାଥ ନିରାକାର

ଲକ୍ଷଣେନ ବ୍ରହ୍ମବଚ୍ଚରଣାନୁସେବୟୋପାଦିତଭଗବଦ୍‌ଭକ୍ତିଯୋଗେନ ଚାଭୀକ୍ଷ୍‌ଣଶଃ ପରଭାବିତାତିଶୁଦ୍ଧମତିରୁପରତାନାତ୍ମ୍ୟ ଆତ୍ମନି ସ୍ୱୟମୁପଲଭ୍ୟମାନ ବ୍ରହ୍ମାତ୍ମାନୁଭବୋଽପି ନିରଭିମାନ ଏବାବନିମଜୁଗୁପତ୍ । ୭ ।

ତସ୍ୟେମା ଗାଥାଃ ପାଣ୍ଡବେୟ ପୁରାବିଦ ଉପଗାୟନ୍ତି । ୮ ।

ଗୟଂ ନୃପଃ କଃ ପ୍ରତିଯାତି କର୍ମଭିର୍ଯଜ୍ୱାଭିମାନୀ ବହୁବିଦ୍ଧର୍ମଗୋପ୍ତା ।
ସମାଗତଶ୍ରୀଃ ସଦସସ୍ପତିଃ ସତାଂ ସତ୍‌ସେବକୋଽନ୍ୟୋ ଭଗବତ୍‌କଳାମୃତେ ।୯।
ଯମଭ୍ୟସିଞ୍ଚନ୍ ପରୟା ମୁଦା ସତୀଃ ସତ୍ୟାଶିଷୋ ଦକ୍ଷକନ୍ୟା ସରିଦ୍‌ଭିଃ ।
ଯସ୍ୟ ପ୍ରଜାନାଂ ଦୁଦୁହେ ଧରାଶିଷୋ ନିରାଶିଷୋ ଗୁଣବତ୍ସସ୍ନୁତୋଧାଃ ।୧୦।
ଛନ୍ଦାଂସ୍ୟକାମସ୍ୟ ଚ ଯସ୍ୟ କାମାନ୍ ଦୁଦୁହୁରାଜହ୍ରୁରଥୋ ବଳିଂ ନୃପାଃ ।
ପ୍ରତ୍ୟଞ୍ଚିତା ଯୁଧି ଧର୍ମେଣ ବିପ୍ରା ଯଦାଶିଷାଂ ଷଷ୍ଠମଂଶଂ ପରେତ୍ୟ । ୧୧ ।

---

ସେବା ହେତୁ ଉତ୍ପନ୍ନ ଭକ୍ତିଯୋଗଦ୍ୱାରା ତାହାଙ୍କର ବୁଦ୍ଧିବୃତ୍ତି ସମସ୍ତ ତ ଓ ବ ଦ୍ଧ ହୋଇଥିଲା ତେଣୁ ତାହାଙ୍କର ଦେହାଦିରେ ଅହଂ ଭାବ ନ ଥିଲା । ତେଣୁ ସେ ସର୍ବଦା ସ୍ୱୟଂ ପ୍ରକାଶମାନ ବ୍ରହ୍ମାନନ୍ଦ ଅନୁଭବ କରୁଥିଲେ, ପରନ୍ତୁ ଏପରି ହୋଇ ମଧ୍ୟ ସେ ନିରଭିମାନରେ ପୃଥିବୀ ପାଳନ କରିଥିଲେ । ୭ ।

ହେ ପାଣ୍ଡବ ବଂଶଧର ! ପୁରାବିଦ୍‌ମାନେ ତାହାଙ୍କ ସମ୍ବନ୍ଧେ ଏହି ଗାଥାମାନ ଗାନ କରିଥାନ୍ତି ।୮।

ଭଗବାନଙ୍କର ଅଂଶବ୍ୟତୀତ ଅନ୍ୟ କେଉଁ ରାଜା କର୍ମ ଦ୍ୱାରା ଗୟଙ୍କର ଅନୁକରଣ କରିବାକୁ ସମର୍ଥ ହୋଇ ପାରନ୍ତି ? ଅନ୍ୟ ନୃପତିମାନେ ଯାଜ୍ଞିକ, ସର୍ବମାନ୍ୟ, ବହୁଜ୍ଞ, ଧର୍ମରକ୍ଷକ, ଲକ୍ଷ୍ମୀବନ୍ତ, ସଜ୍ଜନ ସଭାପତି, ସାଧୁସେବକ ହେଲେ ମଧ୍ୟ ଗୟଙ୍କର ଅନୁକରଣ କରିବାକୁ ସମ୍ପୂର୍ଣ୍ଣ ଅସମର୍ଥ । ୯ ।

ଯେଉଁମାନଙ୍କର ଆଶୀର୍ବାଦ ମିଥ୍ୟା ହୁଏ ନାହିଁ—ସେହି ସତୀ ଦକ୍ଷକନ୍ୟାଗଣ ଅର୍ଥାତ୍ ଶ୍ରଦ୍ଧା, ମୈତ୍ରୀ ଓ ଦୟା ପ୍ରଭୃତି ନଦୀଜଳ ଦ୍ୱାରା ଆନନ୍ଦରେ ଯାହାଙ୍କର ଅଭିଷେକ କରିଥିଲେ ସେ ନିଷ୍କାମ ହେଲେ ମଧ୍ୟ ପୃଥିବୀ ତାହାଙ୍କର ପ୍ରଜାଗଣଙ୍କୁ ଅଭିଳଷିତ ବସ୍ତୁ ଦାନ କରିଥିଲେ । ତାହାଙ୍କୁ ଅନ୍ୟ କୌଣସି ରାଜା ଅନୁସରଣ କରିବାକୁ ସମର୍ଥ ହୋଇ ପାରନ୍ତି ? ଯାହାଙ୍କର ଗୁଣ ସମୂହ ବତ୍ସ ସ୍ୱରୂପ ହୋଇ ଗୋରୂପା ପୃଥିବୀର ସ୍ତନରୁ କାମ୍ୟବସ୍ତୁ ଦୋହନ କରିଥିଲେ । ୧୦ ।

ସେ କଲ୍ୟାଣ ବିଷୟରେ ନିଷ୍କାମ ହେଲେ ମଧ୍ୟ ବେଦ ସମୂହ ଅର୍ଥାତ୍ ବେଦ ବିହିତ କର୍ମମାନ ଯାହାଙ୍କ ନିମିତ୍ତ ସ୍ୱୟଂ ବିବିଧ କାମ ଦୋହନ କରୁଥିଲା ଏବଂ ନୃପତିଗଣ ରଣକ୍ଷେତ୍ରରେ ବାଣଦ୍ୱାରା ଅର୍ଚ୍ଚିତ

---

ସେ ସର୍ବ ଦେବଙ୍କର ପର
ପରମବ୍ରହ୍ମ ଯୋଗେଶ୍ୱର
ତାହାଙ୍କ ଠାରେ ମନ ଦେଇ
ପରମ ଭକ୍ତିଭାବ ବହି
ସତ୍ତ୍ୱ ପ୍ରଧାନ-ମତି ହୋଇ
ପାଳନ୍ତେ ପାଳଇ ସେ ମହୀ

ତାହାଙ୍କ ଗୁଣ ମହିମାକୁ
ଗାୟନ କରନ୍ତି ସକଳେ ।୭,୮
ଗୟର ସମ କେ ସଂସାରେ
ଯଜ୍ଞାଦି କର୍ମ କରିବାରେ
ଯାହାର ଅନୁକରଣ କରି
ବଶ ହୋଇଲେ ନରହରି । ୯ ।

ଯାହାକୁ ଦକ୍ଷ କନ୍ୟା ଯାକ
ସନ୍ତୋଷେ କଲେ ଅଭିଷେକ
ସକଳ ତୀର୍ଥୁଁ ଜଳ ନେଇ
ରାଜଦ୍ରବ୍ୟ ତାକୁ ଦେଇ
ତାହାର ପ୍ରଜା ସୁଖ ପାଇଁ
ବହୁତ ଶସ୍ୟ ଦେଲା ମହୀ ।୧୦,୧୧

ଯସ୍ୟାଧ୍ୱରେ ଭଗବାନଧ୍ୱରାତ୍ମା ମଘୋନି ମାଦ୍ୟତ୍ୟୁରୁସୋମପୀଥେ ।
ଶ୍ରଦ୍ଧାବିଶୁଦ୍ଧାଚଲଭକ୍ତିଯୋଗସମର୍ପିତେଜ୍ୟାଫଲମାଜହାର । ୧୨ ।
ଯତ୍‌ପ୍ରୀଣନାଦ୍‌ବର୍ହିଷି ଦେବ ତିର୍ଯ୍ୟଙ୍‌ମନୁଷ୍ୟବୀରୁତ୍‌ତୃଣମାବିରିଞ୍ଚାତ୍ ।
ପ୍ରୀୟେତ ସଦ୍ୟଃ ସ ହ ବିଶ୍ୱଜୀବଃ ପ୍ରୀତଃ ସ୍ୱୟଂ ପ୍ରୀତିମଗାଦ୍‌ଗୟସ୍ୟ । ୧୩ ।
ଗୟାଦ୍‌ଗାୟନ୍ତ୍ୟାଂ ଚିତ୍ରରଥଃ ସୁଗତିରବରୋଧନ ଇତି ତ୍ରୟଃ ପୁତ୍ରାଃ ବଭୂବୁଃ ।
ଚିତ୍ରରଥାଦୂର୍ଣ୍ଣାୟାଂ ସମ୍ରାଡଜନିଷ୍ଟ । ୧୪ ।
ତତ ଉତ୍‌କଳାୟାଂ ମରୀଚିର୍ମରୀଚେର୍ବିନ୍ଦୁମତ୍ୟାଂ ବିନ୍ଦୁମାନୁଦପଦ୍ୟତ ତସ୍ମାତ୍‌ସରଘାୟାଂ ମଧୁନାମାଭବତ୍ । ମଧୋଃ ସୁମନସି ବୀରବ୍ରତସ୍ତତୋ ଭୋଜାୟାଂ ମନ୍ଥୁ

ହୋଇ ଯାହାଙ୍କୁ କର ପ୍ରଦାନ କରୁଥିଲେ ଏବଂ ବ୍ରାହ୍ମଣଗଣ ଯାଜନ ଓ ଦକ୍ଷିଣାଦ୍ୱାରା ପୂଜିତ ହୋଇ ନିଜ ନିଜର ଧର୍ମଫଳର ଷଷ୍ଠାଂଶ ତାହାଙ୍କପାଇଁ ଆହରଣ କରୁଥିଲେ; ଅନ୍ୟ କେଉଁ ବ୍ୟକ୍ତି ତାଙ୍କ ସଦୃଶ କର୍ମ କରିପାରେ ? । ୧୧ ।

ଯାହାଙ୍କର ଯଜ୍ଞରେ ପ୍ରଚୁର ସୋମରସ ପାନରେ ଇନ୍ଦ୍ର ମତ୍ତ ହେଲେ ମଧ୍ୟ ଭଗବାନ୍ ଯଜ୍ଞପୁରୁଷ ବିଷ୍ଣୁଙ୍କଠାରେ ଯେ ଶ୍ରଦ୍ଧା ଦ୍ୱାରା ବିଶୁଦ୍ଧ ଭକ୍ତିଯୋଗ ଦ୍ୱାରା ଯଜ୍ଞଫଳ ଅର୍ପଣ କରିଥିଲେ ଏବଂ ତାହା ସେ ପ୍ରତ୍ୟକ୍ଷଭାବରେ ଗ୍ରହଣ କରିଥିଲେ ଅନ୍ୟକିଏ ତାହାଙ୍କ ତୁଲ୍ୟ ହୋଇପାରେ ? । ୧୨ ।

ଯେ ଯଜ୍ଞରେ ପ୍ରୀତ ହେଲେ ବ୍ରହ୍ମା ପ୍ରମୁଖ ଦେବ ତିର୍ଯ୍ୟକ ମନୁଷ୍ୟ, ଲତା ଓ ତୃଣ ପ୍ରଭୃତି ସମସ୍ତେ ପ୍ରୀତିଲାଭ କରି ପାରନ୍ତି ସେହି ସର୍ବାନ୍ତର୍ଯ୍ୟାମୀ ଭଗବାନ୍ ଯେ ଗୟଙ୍କର ଯଜ୍ଞରେ ପରିତୃପ୍ତ ହେଲେ ବୋଲି ପ୍ରୀତି ପ୍ରକାଶ କରନ୍ତି; କିଏ ସେହି ଗୟ ନୃପତିଙ୍କୁ ଅନୁକରଣ କରିବାକୁ ସମର୍ଥ ହେବ ? । ୧୩ ।

ଗୟ ରାଜାଙ୍କଠାରୁ ଗୟନ୍ତୀଙ୍କର ଗର୍ଭରେ ଚିତ୍ରରଥ ସୁଗତି ଓ ଅବରୋଧନ ନାମରେ ତିନିପୁତ୍ର ଜାତ ହୋଇଥିଲେ ଏବଂ ଚିତ୍ରରଥଙ୍କଠାରୁ ତାହାଙ୍କର ଭାର୍ଯ୍ୟା ଊର୍ଣ୍ଣାଙ୍କ ଗର୍ଭରେ ସମ୍ରାଟ ନାମକ ପୁତ୍ର ଜାତ ହୋଇଥିଲେ । ୧୪ ।

ସମ୍ରାଟଙ୍କର ଉତ୍କଳା ନାମ୍ନୀ ଭାର୍ଯ୍ୟାଙ୍କଠାରୁ ମରୀଚି ଜାତ ହେଲେ । ମରୀଚିଙ୍କ ଠାରୁ ବିନ୍ଦୁମତୀଙ୍କ ଗର୍ଭରେ ବିନ୍ଦୁମାନ ଜାତହେଲେ ! ବିନ୍ଦୁମାନଙ୍କର ସରଘା ନାମ୍ନୀ ଭାର୍ଯ୍ୟାଙ୍କଠାରୁ ମଧୁନାମକ ରାଜର୍ଷିଜାତହୋଇଥିଲେ ।

ମହୀରେ ଯେତେ ନୃପବରେ
ଖଟନ୍ତି ତାହାର ପଦ୍ମରେ
ସଂଗ୍ରାମେ ଯାହାର ଚରିତ
ସ୍ତୁତି କରନ୍ତି ଶୂରବନ୍ତ
ଯଜ୍ଞମାନଙ୍କରେ ଯାହାର
ସନ୍ତୋଷ ହେଲେ ଦେବବର
ଇନ୍ଦ୍ର ସୂର୍ଯ୍ୟାଦି ଦେବ ଯେତେ
ତୁଷ୍ଟହୋଇଲେସେସମସ୍ତେ ।୧୨,୧୩

ଏ ଅନନ୍ତରେ ପରାପରିତ
ତାହାର ହେଲେ ତିନି ସୁତ
ସୁଗତି ଚିତ୍ରରଥ ନାମ
ତୃତୀୟ ଯେ ଅବରୋଧନ
ଚିତ୍ରରଥର ପତ୍ନୀଠାରେ
ସମ୍ରାଟ ହୋଇଲା କ୍ରମରେ
ଉତ୍କଳା ପତ୍ନୀଠାରେ ତାର
ମରୀଚି ହୋଇଲା କୁମର

ତା ପତ୍ନୀ ବିନ୍ଦୁମତୀଠାରେ
ବିନ୍ଦୁମାନ ହେଲା କ୍ରମରେ
ବିନ୍ଦୁମାନର ଯେ କୁମର
ମଧୁ ହୋଇଲା ନୃପବର । ୧୪ ।
ତାର ବୀରବ୍ରତ କୁମର
ଭୋଜା ନାମରେ ପତ୍ନୀ ତାର
ତାହାର ଚତୁର୍ ବେଢସୁତ
ମନ୍ଥୁ ପ୍ରମନ୍ଥୁ ଯେ ବଦିତ

ପ୍ରମନ୍ୟୁ ଜଜ୍ଞାତେ । ମନ୍ୟୋଃ ସତ୍ୟାୟାଂ ଭୌବନ ସ୍ତତୋ ଭୂଷଣାୟାଂ ତ୍ୱଷ୍ଟାଜନଷ୍ଟ ତ୍ୱଷ୍ଟୁ ର୍ବିରୋଚନାୟାଂ ବୀରଜଃ ବୀରଜସ୍ୟ ଶତଜିତ୍‌ପ୍ରବରଂ ପୁତ୍ରଶତଂ କନ୍ୟା ଚ ବିଷୂଚ୍ୟାଂ କିଲାଜାୟତ । ୧୫ ।

ତତ୍ରାୟଂ ଶ୍ଳୋକଃ :—

ପ୍ରୈୟବ୍ରତଂ ବଂଶମିମଂ ବିରଜଶ୍ଚରମୋଦ୍‌ଭବଃ ।
ଅକରୋଦତ୍ୟଲଂ କୀର୍ତ୍ତ୍ୟା ବିଷ୍ଣୁଃ ସୁରଗଣଂ ଯଥା । ୧୬ ।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ପ୍ରିୟବ୍ରତବଂଶାନୁକୀର୍ତ୍ତନଂ ନାମ ପଞ୍ଚଦଶୋଽଧ୍ୟାୟଃ । ୧୬ ।

---

ମଧୁଙ୍କର ପତ୍ନୀ ଯମୁନାଙ୍କଠାରୁ ବୀରବ୍ରତ ନାମକ ପୁତ୍ର ଜାତ ହୋଇଥିଲେ । ବୀରବ୍ରତଙ୍କର ଭୋଜାନାମ୍ନୀ ପତ୍ନୀଙ୍କଠାରୁ ମନ୍ଥୁ ଓ ପ୍ରମନ୍ଥୁ ନାମକ ଦୁଇପୁତ୍ର ଜାତ ହେଲେ । ମନ୍ଥୁଙ୍କ ଭାର୍ଯ୍ୟା ସତ୍ୟାଙ୍କଠାରୁ ଭୌବନ ଜାତ ହୋଇଥିଲେ । ଭୌବନଙ୍କର ଭୂଷଣାନାମ୍ନୀ ପତ୍ନୀଙ୍କ ଗର୍ଭରେ ତ୍ୱଷ୍ଟା ନାମକ ପୁତ୍ର ଜାତ ହୋଇଥିଲେ, ତ୍ୱଷ୍ଟାଙ୍କର ଭାର୍ଯ୍ୟା ବିରୋଚନା, ତାଙ୍କଠାରୁ ବିରଜା ନାମକ ପୁତ୍ର ଜାତ ହୋଇଥିଲେ, ବିରଜାଙ୍କର ପତ୍ନୀ ବିଷୂଚୀଙ୍କ ଠାରୁ ଶତଜିତ୍ ପ୍ରଭୃତି ଏକଶତ ପୁତ୍ର ଓ ଏକକନ୍ୟା ଜାତ ହୋଇଥିଲେ । ୧୫ ।

ଏ ସମ୍ବନ୍ଧେ ଗୋଟିଏ ଶ୍ଳୋକ ଅଛି ଯଥା :—ପ୍ରିୟବ୍ରତଙ୍କର ବଂଶର ଶେଷ ରାଜା ବିରଜ, ବିଷ୍ଣୁ ଯେପରି ଦେବତା ମାନଙ୍କର କୀର୍ତ୍ତି ବର୍ଦ୍ଧନ କରିଥାନ୍ତି ସେ ସେହିପରି କୀର୍ତ୍ତି ବିସ୍ତାର କରି ନିଜ ବଂଶର ଗୌରବ ବର୍ଦ୍ଧନ କରିଥିଲେ । ୧୬ ।

---

ମନ୍ଥୁ ର ସତ୍ୟାଠାରେ ସୁତ
ଭୌବନ ହୋଇଲେ ବିଦିତ
ଭୂଷଣାପତ୍ନୀଠାରେ ତାର
ତ୍ୱଷ୍ଟା ଯେ ହୋଇଲା କୁମର
ବିରୋଚନାର ତହିଁ ଜାର
ବିରଜ ହୋଇଲା କୁମର
ଶୁଣ ରାଜନ ପରୀକ୍ଷିତ
ବିରଜପୁତ୍ର ହେଲେ ଶତ

ଏହାଙ୍କ ମଧ୍ୟେ ଶ୍ରେଷ୍ଠତର
ଶତଜିତ ପୁତ୍ର ତାହାର
ବିଷୂଚି ପତ୍ନୀଠାରେ ତାର
କନ୍ୟା ଗୋଟିଏ ଯେ ଅପର ।୧୫।
ଶୁଣ ରାଜନ ପରୀକ୍ଷିତ
ଏମନ୍ତେ ଲୋକେ ହୋଇ ଜାତ
ପ୍ରିୟବ୍ରତର ବଂଶମାନ
ବିରଜ ପ୍ରଭୃତି ରାଜନ ।

ବିଷ୍ଣୁ ପ୍ରଭୃତି ଦେବେ ଯେସନେ
ଶୋଭିତ ହୋଇଲେ ତେସନେ ।୧୬
କହଇ ବିପ୍ର ଜଗନ୍ନାଥ
କୃଷ୍ଣଚରିତ ଭାଗବତ
ପ୍ରିୟବ୍ରତର ବଂଶଗଣ
ସୁଜନେ ସାବଧାନେ ଶୁଣ
ଏଣୁ କୃଷ୍ଣର ପାଦତଳେ
ଭକତ ହୋଇବ କାଣ୍ଡୁଳେ ॥



**ଭାଷାର୍ଥ :—**

ଚତୁର୍ଦ୍ଦଶ ଅଧ୍ୟାୟ ପର୍ଯ୍ୟନ୍ତ ଭରତଙ୍କ ବୃତ୍ତାନ୍ତ ବର୍ଣ୍ଣିତ ହେଲା ପରେ ପଞ୍ଚଦଶ ଅଧ୍ୟାୟରେ ଭରତଙ୍କର ବଂଶ ବର୍ଣ୍ଣନା କରାଯାଇଅଛି । ଭରତ ରାଜର୍ଷି, ସେ ଭଗବତ୍‌ ପରାୟଣ ଓ ଭଗବତ୍‌ ପଦାରବିନ୍ଦ ଆଶ୍ରୟକରି ସଂସାର କ୍ଷେତ୍ରରେ ଜୀବନ ଯାତ୍ରା ନିର୍ବାହ କରୁଥିଲେ । ସଂସାରରେ ଆତ୍ମୀୟ ସ୍ୱଜନ ଗଣଙ୍କର ପରିପାଳନ ମନୁଷ୍ୟର ଏକମାତ୍ର କର୍ତ୍ତବ୍ୟ ନ ହେଲେ ମଧ୍ୟ ସେ ଭଗବତ୍‌ ଉଦ୍ଦେଶ୍ୟ ସିଦ୍ଧି ନିମିତ୍ତ ଓ ପ୍ରଜାପାଳନ ନିମିତ୍ତ ଆଦର୍ଶ ନରପତି ରୂପେ ଜୀବନ ଯାତ୍ରା ନିର୍ବାହ କରୁଥିଲେ । ଏହି ପଞ୍ଚଦଶ ଅଧ୍ୟାୟର ଅନୁବାଦରେ ତାହାଙ୍କର ବଂଶର ବିଭିନ୍ନ ବ୍ୟକ୍ତିମାନଙ୍କର ନାମ ଓ କାର୍ଯ୍ୟାବଳୀ ସଂକ୍ଷେପରେ ଉଲ୍ଲେଖ କରାଯାଇଅଛି । ଏଠାରେ ପୁନରାବୃତ୍ତି ନିଷ୍ପ୍ରୟୋଜନ ।

## ଷୋ ଡ଼ ଶ ଅ ଧ୍ୟା ୟ ।

ଷୋଡ଼ଶେଽଧସ୍ତଥାଚୋର୍ଦ୍ଧ୍ୱଂ ପରିତଃସନ୍ନିବେଶତଃ ।
ମେରୋଃ ସ୍ଥିତ ର୍ମହୀକଞ୍ଜ-କର୍ଣ୍ଣିକେବୋପଲକ୍ଷ୍ୟତେ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀରାଜୋବାଚ ।

ଉକ୍ତସ୍ତ୍ୱୟା ଭୂମଣ୍ଡଳାୟାମବିଶେଷୋ ଯାବଦାଦିତ୍ୟସ୍ତପତି ଯତ୍ର ଯତ୍ର ଚାସୌ ଜ୍ୟୋତିଷାଂ ଗଣୈ ଶ୍ଚନ୍ଦ୍ରମା ବା ସହ ଦୃଶ୍ୟତେ । ୧ ।

---

## ଜମ୍ବୁଦ୍ୱୀପ ବୃତ୍ତାନ୍ତ ଓ ମେରୁବର୍ଣ୍ଣନା ।

ଷୋଡ଼ଶ ଅଧ୍ୟାୟରେ ମେରୁର ସ୍ଥିତି ଏବଂ ଅଧ ଊର୍ଦ୍ଧ୍ୱ ଇତ୍ୟାଦି ଭୁବନକୋଷର
ବର୍ଣ୍ଣନା କରାଯାଇ ଅଛି । ୦ ।

**ରାଜା ପରୀକ୍ଷିତ କହିଲେ :—**

ହେ ବ୍ରହ୍ମନ୍ ଯେଉଁ ପର୍ଯ୍ୟନ୍ତ ସୂର୍ଯ୍ୟଙ୍କର କିରଣ ପ୍ରକାଶିତ ହୁଏ ଏବଂ ଯେଉଁ ଯେଉଁ ସ୍ଥାନରେ ନକ୍ଷତ୍ରମାନଙ୍କ ସହ ଚନ୍ଦ୍ର ଦୃଶ୍ୟମାନ ହୁଅନ୍ତି, ସେହି ସେହି ସ୍ଥାନମାନଙ୍କର ବିସ୍ତାର ସବିଶେଷ ବର୍ଣ୍ଣନା କରିଅଛନ୍ତି । ୧ ।

---

ଭୁବନ କୋଷର ବର୍ଣ୍ଣନ । ଷୋଡ଼ଶ ଅଧ୍ୟାରେ ବଖାଣ

ଶ୍ରୀ ରାଜୋବାଚ—
ଭୂମିମଣ୍ଡଳର ବିସ୍ତାର
ତୁମ୍ଭେ କହିଲ ମୁନିବର ।

ଯାବତ ସୂର୍ଯ୍ୟର ପ୍ରକାଶ
ନକ୍ଷତ୍ର ଚନ୍ଦ୍ର ଯହିଁ ବାସ
ପ୍ରିୟବ୍ରତ ରଥଚରଣ
ଯାବତ କରିଛି ଭ୍ରମଣ

ତହିଁ ଯେ ଗର୍ତ୍ତ ଉପୁଜିଲା
ସପତ ସିନ୍ଧୁ ସେ ହୋଇଲା
ଏହା କହିଲ ବିପରୀତ
ଅପରେ ଜ ଜ ଦ୍ୱୀପ ସାତ

ତତ୍ରାପି ପ୍ରିୟବ୍ରତରଥଚରଣପରିଖାତୈଃ ସପ୍ତଭିଃ ସପ୍ତ ସିନ୍ଧବ ଉପକ୍ଲୃପ୍ତାଃ ଯତ ଏତସ୍ୟାଃ ସପ୍ତଦ୍ୱୀପବିଶେଷବିକଳ୍ପସ୍ତ୍ୱୟା ଭଗବନ୍ ଖଲୁ ସୂଚିତଃ, ଏତଦେବାଖିଲମହଂ ମାନତୋ ଲକ୍ଷଣତଶ୍ଚ ସର୍ବଂ ବିଜିଜ୍ଞାସାମି । ୨ ।

ଭଗବତୋ ଗୁଣମୟେ ସ୍ଥୂଳରୂପ ଆବେଶିତଂ ମନୋ ହ୍ୟଗୁଣେଽପି ସୂକ୍ଷ୍ମତମ ଆତ୍ମଜ୍ୟୋତିଷି ପରେ ବ୍ରହ୍ମଣି ଭଗବତି ବାସୁଦେବାଖ୍ୟେ କ୍ଷମମାବେଶିତୁଂ ତଦୁହୈତଦ୍ ଗୁରୋଽର୍ହସ୍ୟନୁବର୍ଣ୍ଣୟିତୁମିତି । ୩ ।

ଶ୍ରୀଋଷିରୁବାଚ ।

ନ ବୈ ମହାରାଜ ଭଗବତୋ ମାୟାଗୁଣବିଭୂତେଃ ସ୍ଥାନବିଶେଷାଣାଂ ନାମରୂପତଃ କାଷ୍ଠାଂ ବଚସା ମନସା ବାଧିଗନ୍ତୁମଲଂ ବିବୁଧାୟୁଷାପି ପୁରୁଷସ୍ତସ୍ମାତ୍ ପ୍ରାଧାନ୍ୟେନୈବ ଭୂଗୋଳକବିଶେଷଂ ନାମରୂପମାନଲକ୍ଷଣତୋ ବ୍ୟାଖ୍ୟାସ୍ୟାମଃ । ୪ ।

---

ସେହି ଭୂମଣ୍ଡଳ ମଧ୍ୟରେ ପ୍ରିୟବ୍ରତ ରାଜାଙ୍କର ରଥ ଚକ୍ରର ସାତଗୋଟି ଗର୍ତ୍ତଦ୍ୱାରା ସପ୍ତସାଗର କଳ୍ପିତ ହୋଇଅଛି । ସେହି ସମୁଦ୍ରରୁ ପୃଥିବୀର ସପ୍ତଦ୍ୱୀପ ଭେଦ ଆପଣ ସୂଚନା କରିଅଛନ୍ତି । ଏହି ଦ୍ୱୀପମାନଙ୍କର ପରିମାଣ ଓ ବୃତ୍ତାନ୍ତ ଓ ଲକ୍ଷଣ ମୁଁ ବିଶେଷରୂପେ ଜାଣିବାକୁ ଇଚ୍ଛା କରେଁ । ୨ ।

ଏ ବିଷୟ ପ୍ରଶ୍ନ କରିବାର କାରଣ ଏହି ଯେ ଭଗବାନଙ୍କର ଗୁଣମୟ ସ୍ଥୂଳରୂପରେ ନିବେଶିତ ହେଲେ ମନ ତାହାଙ୍କର ସୂକ୍ଷ୍ମତମ ଜ୍ୟୋତିର୍ମୟ ପରଂବ୍ରହ୍ମ, ପରମ ପୁରୁଷ ବାସୁଦେବଙ୍କ ଠାରେ ମଧ୍ୟ ନିବେଶିତ ହୋଇ ପାରେ, ହେ ଗୁରୁ ! ଆପଣ ଅନୁଗ୍ରହ ପୂର୍ବକ ସେହି ସ୍ଥୂଳ ରୂପ ବର୍ଣ୍ଣନା କରନ୍ତୁ ।୩।

ଶ୍ରୀଋଷି କହିଲେ :—

ହେ ମହାରାଜ ! ଭଗବାନଙ୍କର ମାୟା ଓ ବିଭୂତି ମଧ୍ୟରେ ଯେଉଁ ବିଶିଷ୍ଟ ସ୍ଥାନମାନ ରହିଅଛି ସେମାନଙ୍କର ନାମ ରୂପ, ଅନ୍ତ ସନ୍ନିବେଶ ଓ ଲକ୍ଷଣ ନିର୍ଦ୍ଦେଶ କରିବା କାହାର ଶକ୍ତିଅଛି, ମନୁଷ୍ୟମାନେ ଦେବତାଙ୍କ ତୁଲ୍ୟ ଆୟୁ ପ୍ରାପ୍ତ ହେଲେ ମଧ୍ୟ ତାହା ବାକ୍ୟ ଓ ମନଦ୍ୱାରା ଧାରଣା କରିବାକୁ ସମର୍ଥ ହେବେ ନାହିଁ । ସୁତରାଂ ପ୍ରଧାନ ପ୍ରଧାନ ଦ୍ୱୀପ ସମୂହର ନାମ, ରୂପ ପରିମାଣ ଏବଂ ଲକ୍ଷଣ ବ୍ୟାଖ୍ୟା କରୁଅଛୁ । ୪ ।

---

ଏହାର କେତେ ପରିମାଣ
ଅପରେ ଯେତେକ ଲକ୍ଷଣ
ଏ ସର୍ବ କହ ମୁନିବର
ଶୁଣିବା ପାଇଁ ଶ୍ରଦ୍ଧା ମୋର ।୧,୨।
ଅଖିଳ ସଂସାର କାରଣ
ଅନନ୍ତ ଅଛି ଯାର ଗୁଣ
ତା ସ୍ଥୂଳରୂପେ ଗଲେ ମନ
ଯେ ଜ୍ୟୋତିରୂପ ସୂକ୍ଷ୍ମ ବ୍ରହ୍ମ
ପରମ ପରଙ୍କର ପର
ଯେ ବାସୁଦେବ ଚକ୍ରଧର
ତାହାର ଚରଣାର ବିନ୍ଦେ
ମନ ପଶିବ ଅପ୍ରମାଦେ
ଯେଣୁ ଏ ଭୂମି ଅଗୋଚର
ନାହିଁ ଏ ବ୍ରହ୍ମାଣ୍ଡ ମଧ୍ୟର
ଏଣୁ ଏ ମୋହର ସନ୍ଦେହ
ହେ ମୁନି ବିସ୍ତାରିଣ କହ । ୩ ।

ଶ୍ରୀ ଶୁକଉବାଚ—

ଶୁଣ ପରୀକ୍ଷ ନୃପବର
ମାୟାରେ ପ୍ରଭୁର ଶରୀର
ସଂସାର ତାହାର ଭିଆଣ
ଅଶେଷ ଅଛି ତାର ସ୍ଥାନ
ତାହାର ରୂପ ଗୁଣ ନାମ
ଏହା କେ କରିବ ବର୍ଣ୍ଣନ
ନର ଅମର ଯେବେ ହୋଇ
ତେବେ ସେ ବର୍ଣ୍ଣି ନ ପାରଇ
ତଥାପି ଶ୍ରେଷ୍ଠ ଶ୍ରେଷ୍ଠ କରି
କହିବା ଶୁଣ ଦଣ୍ଡଧାରି । ୪ ।

ଯୋ ବା ଅୟଂ ଦ୍ୱୀପଃ କୁବଲୟକମଲକୋଶାଭ୍ୟନ୍ତରକୋଶୋ ନିୟୁତଯୋଜନବିଶାଲଃ ସମବର୍ତ୍ତୁଲୋ ଯଥା ପୁଷ୍କରପତ୍ରମ୍ । ୫ ।

ଯସ୍ମିନ୍ ନବ ବର୍ଷାଣି ନବଯୋଜନସହସ୍ରାୟାମାନ୍ୟଷ୍ଟଭି ର୍ମର୍ଯ୍ୟାଦା ଗିରିଭିଃ ସୁବିଭକ୍ତାନି ଭବନ୍ତି । ୬ ।

ଏଷାଂ ମଧ୍ୟେ ଇଲାବୃତଂ ନାମାଭ୍ୟନ୍ତରବର୍ଷଂ ଯସ୍ୟ ନାଭ୍ୟାମବସ୍ଥିତଃ ସର୍ବତଃ ସୌବର୍ଣ୍ଣଃ କୁଲଗିରିରାଜୋ ମେରୁର୍ଦ୍ୱୀପାୟାମସମୁନ୍ନାହଃକର୍ଣ୍ଣିକାଭୂତଃ କୁବଲୟକମଲସ୍ୟ ମୂର୍ଦ୍ଧନି ଦ୍ୱାତ୍ରିଂଶତ୍‌ସହସ୍ରଯୋଜନବିତତୋ ମୂଲେ ଷୋଡଶସହସ୍ରଂ ତାବତାନ୍ତର୍ଭୂମ୍ୟାଂ ପ୍ରବିଷ୍ଟଃ । ୭ ।

ଉତ୍ତରୋତ୍ତରେଣେଲାବୃତଂ ନୀଲଃ ଶ୍ୱେତଃ ଶୃଙ୍ଗବାନିତି ତ୍ରୟୋ ରମ୍ୟକହିରଣ୍ମୟକୁରୂଣାଂ ବର୍ଷାଣାଂ ମର୍ଯ୍ୟାଦାଗିରୟଃ ପ୍ରାଗାୟତା ଉଭୟତଃ କ୍ଷାରୋଦାବଧୟୋ

---

ହେ ମହାରାଜ ! ଭୂମଣ୍ଡଳରୂପୀ ପଦ୍ମର ସପ୍ତ କୋଶର ଅଭ୍ୟନ୍ତର ବର୍ତ୍ତୀ କୋଶର ନାମ ଜମ୍ବୁଦ୍ୱୀପ ଏହା ନିୟୁତ ଯୋଜନ ଦୀର୍ଘ ଏବଂ ବିସ୍ତାରରେ ଲକ୍ଷଯୋଜନ । ଏହି ଜମ୍ବୁଦ୍ୱୀପ ପଦ୍ମପତ୍ର ତୁଲ୍ୟ ବର୍ତ୍ତୁଳାକାର ।୫

ଏହି ଦ୍ୱୀପରେ ୯ଟି ବର୍ଷଅଛି ଏମାନଙ୍କର ବିସ୍ତାର ୯ ସହସ୍ର ଯୋଜନ ଏବଂ ଏହି ୯ ବର୍ଷର ସୀମାନ୍ତରେ ୮ଟି ପର୍ବତ ରହିଅଛି ଏବଂ ସେମାନେ ପରସ୍ପରଠାରୁ ସୁନ୍ଦର ଭାବରେ ବିଭକ୍ତ । ୬ ।

ଏହି ନବବର୍ଷ ମଧ୍ୟରେ ଇଳାବୃତ ନାମକ ବର୍ଷର ଅଭ୍ୟନ୍ତରରେ ଅର୍ଥାତ୍ ମଧ୍ୟଦେଶରେ ବା ନାଭି ଦେଶରେ ଚତୁର୍ଦ୍ଦିଗରେ ସୁବର୍ଣ୍ଣମୟ ପର୍ବତ ଅବସ୍ଥିତ, ତାହା ମେରୁ ପର୍ବତ । ଏହି ପର୍ବତର ଉଚ୍ଚତା ସେହି ଦ୍ୱୀପର ବିସ୍ତାର ତୁଲ୍ୟ ଲକ୍ଷ ଯୋଜନ, ଏହାର ମସ୍ତକ ଦ୍ୱାତ୍ରିଂଶ ସହସ୍ର ଯୋଜନ ବିସ୍ତୀର୍ଣ୍ଣ । ଏହି ପର୍ବତ ଭୂମଣ୍ଡଳ ସ୍ୱରୂପ ପଦ୍ମର କର୍ଣ୍ଣିକା ସଦୃଶ ଏବଂ ଭୂମି ମଧ୍ୟ ଭାଗରେ ଷୋଡ଼ଶ ସହସ୍ର ଯୋଜନ ପ୍ରବିଷ୍ଟ ହୋଇଅଛି । ୭ ।

ହେ ରାଜନ୍ ! ଇଳାବୃତ ପର୍ବତର ଉତ୍ତର ଦିଗରେ ଉତ୍ତରୋତ୍ତର କ୍ରମେ ନୀଳ, ଶ୍ୱେତ, ଓ ଶୃଙ୍ଗବାନ୍ ନାମକ ତିନୋଟି ପର୍ବତ ଯଥାକ୍ରମେ ରମ୍ୟକ, ହିରଣ୍ମୟ ଓ କୁରୁବର୍ଷ ସୀମା ପର୍ବତ ରହିଅଛି । ଏହି ପର୍ବତ ତିନୋଟି ପୂର୍ବଦିଗରେ ଅମୃତ ଏବଂ ପର୍ବତତ୍ରୟର ପୂର୍ବ ଓ ପଶ୍ଚିମ ଏହି ଉଭୟ ଦିଗରେ

---

ଭୂଗୋଳଚକ୍ରର ବର୍ଣ୍ଣନ
ରାଜନ ଶୁଅ ସାବଧାନ
ଏ ଜମ୍ବୁଦ୍ୱୀପ ନୃପବର
ବିକାଶ କମଳଆକାର
ଅତି ଅଦ୍ଭୁତ ଏହୁ ସ୍ଥଳ
ଲକ୍ଷେକ ଯୋଜନ ବିସ୍ତାର । ୫ ।
ଏ ମଧ୍ୟେ ନବ ଯେ ବରଷ
ସହସ୍ର ଯୋଜନ ପ୍ରକାଶ

ମହତ ନବ ପର୍ବତରେ
ବିଭାଗ ହୋଇ ଯେଉଁଠାରେ ।୬
ଏ ନବ ବରଷ ମଧ୍ୟରେ
ଯେ ଇଳାବୃତର ନାମରେ
ଯାହାର ନାଭିଦେଶ ତହିଁ
ପର୍ବତ ରାଜ ବିରାଜଇ
ସୁବର୍ଣ୍ଣମୟ ବିରାଜିତ
ଅତିସୁନ୍ଦର ଅଦଭୁତ

ଯାହାର ମସ୍ତକ ପ୍ରମାଣ
ବତ୍ରିଶ ସହସ୍ର ଯୋଜନ
ମୂଳର ଯାହାର ପ୍ରମାଣ
ଷୋଳ ସହସ୍ର ଯେ ଯୋଜନ
ସୁବର୍ଣ୍ଣ ତନ ଶୃଙ୍ଗ ତାର
ପୃଥ୍ୱୀର ସ୍ତମ୍ଭର ଆକାର । ୭ ।
ପୂର୍ବଭାଗରେ ତିନ ଗିରି
ନୀଳ ଧବଳ ରୂପଧରି

ଦ୍ୱିସହସ୍ରଯୋଜନପୃଥବ ଏକୈକଶଃ ପୂର୍ବସ୍ମାତ୍ ପୂର୍ବସ୍ମାଦୁତ୍ତର ଉତ୍ତରୋ ଦଶାଂଶାଧିକାଂଶେନ ଦୈର୍ଘ୍ୟ ଏବ ହ୍ରସନ୍ତି । ୮ ।

ଏବଂ ଦକ୍ଷିଣେନେଳାବୃତଂ ନିଷଧୋ ହେମକୂଟୋ ହିମାଳୟ ଇତି ପ୍ରାଗାୟତା ଯଥା ନୀଲାଦୟୋଽୟୁତଯୋଜନୋତ୍ସେଧା ହରିବର୍ଷ କିଂପୁରୁଷଭାରତାନାଂ ଯଥାସଂଖ୍ୟମ୍ । ୯ ।

ତଥୈବେଳାବୃତମପରେଣ ପୂର୍ବେଣ ଚ ମାଲ୍ୟବଦ୍‌ଗନ୍ଧମାଦନାବାନୀଲନିଷଧାୟତୌ ଦ୍ୱିସହସ୍ରଂ ପପ୍ରଥତୁଃ କେତୁମାଲଭଦ୍ରାଶ୍ୱୟୋଃ ସୀମାନଂ ବିଦଧାତେ । ୧୦ ।

ମନ୍ଦରୋ ମେରୁମନ୍ଦରଃ ସୁପାର୍ଶ୍ୱଃ କୁମୁଦ ଇତ୍ୟୟୁତଯୋଜନବିସ୍ତାରୋନ୍ନାହା ମେରୋଶ୍ଚତୁର୍ଦିଶମବଷ୍ଟମ୍ଭଗିରୟ ଉପକ୍ଳୃପ୍ତାଃ । ୧୧ ।

ଚତୁର୍ଷ୍ୱେତେଷୁ ଚୂତଜମ୍ବୂକଦମ୍ବନ୍ୟଗ୍ରୋଧାଶ୍ଚତ୍ୱାରଃ ପାଦପପ୍ରବରାଃ ପର୍ବତକେତବ ଇବାଧିସହସ୍ରଯୋଜନୋନ୍ନାହାସ୍ତାବଦ୍‌ବିଟପବିତତୟଃ ଶତଯୋଜନପରିଣାହାଃ । ୧୨ ।

---

ଲବଣ ସମୁଦ୍ର ପର୍ଯ୍ୟନ୍ତ ସୀମାବଦ୍ଧ, ଏମାନଙ୍କର ବିସ୍ତାର ଦ୍ୱିସହସ୍ରଯୋଜନ । କିନ୍ତୁ ଗୋଟିକ ପୂର୍ବାପେକ୍ଷା ଉତ୍ତରୋତ୍ତର ଦଶାଂଶର ଅଧିକାଂଶ ଅର୍ଥାତ୍ ଏକ ଦଶାଂଶ, ଏକାଦଶାଂଶ ଦୈର୍ଘ୍ୟ ପରିମାଣରେ ହ୍ରସ୍ୱ । ୮।

ଇଳାବୃତ ବର୍ଷର ଦକ୍ଷିଣ ଦିଗରେ ନୀଳାଦ୍ରି ପର୍ବତ ତୁଲ୍ୟ ନିଷଧ, ହେମକୂଟ ଓ ହିମାଳୟ ନାମକ ପର୍ବତ ପୂର୍ବଦିଗରେ ବିସ୍ତାରିତ, ଏମାନ ଅୟୁତଯୋଜନ ଉନ୍ନତ । ଏ ତିନୋଟି ପର୍ବତ ହରିବର୍ଷ କିମ୍ପୁରୁଷ ବର୍ଷ ଓ ଭାରତବର୍ଷର ସୀମାରେ ଯଥାକ୍ରମେ ରହିଅଛି । ୯ ।

ସେହିପରି ଇଳାବୃତ ବର୍ଷର ପଶ୍ଚିମଦିଗରେ ଓ ପୂର୍ବଦିଗରେ ମାଲ୍ୟବାନ ଓ ଗନ୍ଧମାଦନ ନାମକ ଦୁଇଟି ପର୍ବତ ରହିଅଛି । ଏହି ପର୍ବତ ଦ୍ୱୟର ଉତ୍ତରରେ ନୀଳ ଓ ଦକ୍ଷିଣରେ ନିଷଧ ପର୍ବତ ପର୍ଯ୍ୟନ୍ତ ଦ୍ୱିସହସ୍ର ଯୋଜନ ବିସ୍ତୀର୍ଣ୍ଣ, ଏହି ପର୍ବତ ଦ୍ୱୟ କେତୁମାଳ ଓ ଭଦ୍ରାଶ୍ୱ ବର୍ଷର ସୀମା ପର୍ବତ । ୧୦ ।

ସୁମେରୁ ପର୍ବତର ଚତୁର୍ଦ୍ଦିଗରେ ମନ୍ଦର, ମେରୁମନ୍ଦର, ସୁପାର୍ଶ୍ୱ ଓ କୁମୁଦ ନାମକ ଗୋଟିଏ ଅୟୁତ ଯୋଜନ ଉନ୍ନତ ଓ ବିସ୍ତୃତ ଅବଷ୍ଟମ୍ଭ ବା ଆଶ୍ରୟ ପର୍ବତ ରହିଅଛି । ୧୧ ।

ସେହି ଗୋଟିଏ ପର୍ବତରେ ଯଥାକ୍ରମେ ଆମ୍ର, ଜମ୍ବୁ, କଦମ୍ବ, ଓ ବଟ ଏହି ଗୋଟିଏ ଶ୍ରେଷ୍ଠ ବୃକ୍ଷ, ଉକ୍ତ ଗୋଟିଏ ପର୍ବତରେ ଧ୍ୱଜାରୂପେ ବିଦ୍ୟମାନ, ସେମାନଙ୍କର ଉଚ୍ଚତା ଏଗାରଶତ ଯୋଜନ ଏବଂ ତତ୍ପରିମାଣରେ ଶାଖାମାନ ଏବଂ ବିସ୍ତାର ଏକଶତ ଯୋଜନ । ୧୨ ।

---

ଲବଣ ସିନ୍ଧୁ ନିକଟରେ
ବେନି ସହସ୍ର ସେ ବିସ୍ତାରେ ।୮।
ନିଷଧ ହେମକୂଟ ଆଦି
ଦକ୍ଷିଣେ ଏହାଙ୍କ ପ୍ରସିଦ୍ଧି
ଏହା ଦକ୍ଷିଣେ ଗିରିବର
ହିମାଳୟ ନାମ ତାହାର । ୯ ।
ପୂର୍ବଙ୍କୁ ଯଥାକ୍ରମେ ଚାର
ଅୟୁତ ଯୋଜନ ବିସ୍ତାର

ପୂର୍ବେ ପଶ୍ଚିମେ ମାଲ୍ୟବାନ
ବଶାଳ ଯେ ଗନ୍ଧମାଦନ
ଦ୍ୱି ସସ୍ର ଯୋଜନ ବିସ୍ତାର
ଅଛଇ ଜଗତେ ପ୍ରଖର
ଭଦ୍ରାଶ୍ୱ କେତୁମାଳ ଆଦି
ଏହାଙ୍କ ସୀମା ସେ ପ୍ରସିଦ୍ଧି ।୧୦।
ମନ୍ଦର ଯେ ମେରୁମନ୍ଦର
ସୁପାର୍ଶ୍ୱ ଆଦି ଗିରିବର

ସ୍ୱର୍ଣ୍ଣଗିରି ଚତୁର୍ଦ୍ଦିଗରେ
ଅଛନ୍ତି ବେଷ୍ଟିତ ଆକାରେ ।୧୧।
ବୃକ୍ଷ ନ୍ୟଗ୍ରୋଧ ଆମ୍ର ସାର
ଜମ୍ବୁ କଦମ୍ବ ଏ ଚତ୍ୱାର
ପର୍ବତ ପରେ ଉଚ୍ଚତର
ଯୋଜନ ସହସ୍ର ବିସ୍ତାର ।୧୨।

ହ୍ରଦାଶ୍ଚତ୍ୱାରଃ ପୟୋମଧ୍ୱିକ୍ଷୁରସମୃଷ୍ଟଜଲାଃ ଯଦୁପସ୍ପର୍ଶିନ ଉପଦେବଗଣା ଯୋଗୈଶ୍ୱର୍ଯ୍ୟାଣି ସ୍ୱାଭାବିକାନି ଭରତର୍ଷଭ ଧାରୟନ୍ତି । ୧୩ ।

ଦେବୋଦ୍ୟାନାନି ଚ ଭବନ୍ତି ଚତ୍ୱାରି ନନ୍ଦନଂ ଚୈତ୍ରରଥଂ ବୈଭ୍ରାଜକଂ ସର୍ବତୋଭଦ୍ରମିତି । ୧୪ ।

ଯେଷ୍ୱମରପରିବୃଢ଼ାଃ ସହ ସୁରଲଲନାଲଲାମଯୂଥପତୟ ଉପଦେବଗଣୈରୁପଗୀୟମାନମହିମାନଃ କିଲ ବିହରନ୍ତି । ୧୫ ।

ମନ୍ଦରୋତ୍ସଙ୍ଗ ଏକାଦଶଶତଯୋଜନୋତ୍ତୁଙ୍ଗଦେବଚୂତଶିରସୋ ଗିରିଶିଖରସ୍ଥୂଲାନି ଫଲାନ୍ୟମୃତକଳ୍ପାନି ନିପତନ୍ତି । ୧୬ ।

ତେଷାଂ ବିଶୀର୍ଯ୍ୟମାଣାନାମତିମଧୁରସୁରଭିସୁଗନ୍ଧିବହୁଲାରୁଣରସୋଦେନାରୁଣୋଦା ନାମ ନଦୀ ମନ୍ଦରଗିରିଶିଖରାନ୍ନିପତନ୍ତୀ ପୂର୍ବେଣେଳାବୃତମୁପପ୍ଲାବୟତି ।୧୭।

---

ହେ ଭରତଶ୍ରେଷ୍ଠ ! ଉପରୋକ୍ତ ଶ୍ରେଷ୍ଠ ପର୍ବତରେ ଶ୍ରେଷ୍ଠ ହ୍ରଦ ରହିଅଛି । ସେମାନେ ଯଥାକ୍ରମେ ଦୁଗ୍ଧ, ମଧୁ, ଇକ୍ଷୁରସ ଓ ଶୁଦ୍ଧଜଳରେ ପରିପୂର୍ଣ୍ଣ ଏବଂ ଉପଦେବତାଗଣ ତାହା ପାନକରି ସ୍ୱାଭାବିକ ଅଣିମାଦି ଯୋଗୈଶ୍ୱର୍ଯ୍ୟମାନ ଧାରଣ କରିଥାନ୍ତି । ୧୩ ।

ଏହି ଶ୍ରେଷ୍ଠ ପର୍ବତରେ ଶ୍ରେଷ୍ଠ ଦେବୋଦ୍ୟାନ ମଧ୍ୟ ରହିଅଛି; ଯଥା :—ନନ୍ଦନ, ଚୈତ୍ରରଥ, ବୈଭ୍ରାଜକ ଓ ସର୍ବତୋଭଦ୍ର । ୧୪ ।

ସେହି ଉଦ୍ୟାନ ମାନଙ୍କରେ ସୁରନାରୀଗଣ ଭୂଷଣ ସ୍ୱରୂପା ହୋଇ ସେମାନଙ୍କର ପତି ଦେବଶ୍ରେଷ୍ଠମାନଙ୍କ ସହିତ ମିଳିତ ହୋଇ ଏହି ଉଦ୍ୟାନରେ ବିହାର କରିଥାନ୍ତି ଏବଂ ସେତେବେଳେ ଉପଦେବତାମାନେ ସେମାନଙ୍କର ମହିମା ଗାନ କରିଥାନ୍ତି । ୧୫ ।

ମନ୍ଦର ପର୍ବତର କ୍ରୋଡ଼ଦେଶରେ ଏଗାରଶତ ଯୋଜନ ଉନ୍ନତ ଦେବଭୋଗ୍ୟ ଆମ୍ରବୃକ୍ଷ ବିଦ୍ୟମାନ । ତାହାର ମସ୍ତକରୁ ପର୍ବତର ଶିଖର ଦେଶରେ ସ୍ଥୂଳ, ଅମୃତ କଳ୍ପ ଫଳ ମାନ ନିପତିତ ହୁଏ, ଉଚ୍ଚସ୍ଥାନରୁ ପତନ ହେତୁ ଏହି ଫଳମାନ ଫାଟିଯାଏ, ସେତେବେଳେ ତହିଁରୁ ଅତି ମଧୁର ଓ ପ୍ରଚୁର ଅରୁଣବର୍ଣ୍ଣ ରସ ନିର୍ଗତ ହୁଏ । ସେହି ରସରେ ପୂର୍ଣ୍ଣ ହୋଇ ଅରୁଣୋଦା ନାମ୍ନୀ ନଦୀ ମନ୍ଦର ପର୍ବତର ଶିଖର ଦେଶରୁ ନିପତିତ ହୋଇ ପୂର୍ବଭାଗରେ ଇଳାବୃତ ବର୍ଷ ପ୍ଲାବିତ କରୁଅଛି । ୧୬,୧୭ ।

---

ଚତ୍ୱାର ସନ୍ଧ୍ୟା ତା ନିକଟେ
ବିରାଜେ ନାନା ଶୁଭ୍ରତଟେ
ମଧୁକ୍ଷୀର ଯେ ଇକ୍ଷୁଜଳ
ଯହିଁ ସକଳ ଦେବ ମେଳ
ଯେ ଯାହାମତେ କରି ଧ୍ୟାନ
ପ୍ରଭୁଙ୍କୁ କରନ୍ତି ଭଜନ । ୧୩ ।
ଭଦ୍ର ଚୈତ୍ରରଥ ନନ୍ଦନ
ବୈଭ୍ରାଜ ଚାରି ଉପବନ । ୧୪ ।

ଯହିଁ ଅମର ବୃନ୍ଦମାନ
କ୍ରୀଡ଼ା କରନ୍ତି ଅନୁକ୍ଷଣ
କାମିନୀ ସଙ୍ଗତେ ଘେନିଣ
ଯହିଁ ଅନଙ୍ଗ ମୂର୍ତ୍ତିମାନ । ୧୫ ।
ଏକାଦଶ ଶତ ଯୋଜନ
ମନ୍ଦର ଗିରି କ୍ରୋଡ଼ ଜାଣ
ଅଚ୍ୟୁତ ତୁଙ୍ଗ ବୃକ୍ଷବର
ସୁରଙ୍ଗ ଦଳ ଫଳଚାର

ସୁଗନ୍ଧ ଅମୃତ ସ୍ୱାଦ
ରସ ଗଳଇ ବିଶାରଦ । ୧୬ ।
ସେ ଅରୁଣୋଦା ନଦୀ ସାର
ମନ୍ଦରୁ ହୋଇଛି ବାହାର
ମେରୁମନ୍ଦରୁ ଜମ୍ବୁ ଫଳ
ପାଉ ପଡ଼ଇ ମହୀତଳ
ହସ୍ତି ପ୍ରମାଣେ ଫଳ ତାର
ରସ ଯେ ଗଳଇ ଅପାର

ମଧୁପକୋଷଣାଦ୍ଭବାନ୍ୟା ଅନୁଚରୀଣାଂ ପୁଣ୍ୟଜନବଧୂନାମବୟବସ୍ପର୍ଶସୁଗନ୍ଧ-ବାତୋ ଦଶଯୋଜନଂ ସମନ୍ତାଦନୁବାସୟତି । ୧୮ ।

ଏବଂ ଜମ୍ବୂଫଳାନାମତ୍ୟୁଚ୍ଚନିପାତବିଶୀର୍ଣ୍ଣାନାମନସ୍ଥିପ୍ରାୟାଣାମିଭକାୟନିଭାନାଂ ରସେନ ଜମ୍ବୂ ନଦୀ ନାମ ନଦୀ ମେରୁମନ୍ଦରଶିଖରାଦୟୁତଯୋଜନାଦବନିତଲେ ନିପ-ତନ୍ତୀ ଦକ୍ଷିଣେନାତ୍ମାନଂ ଯାବଦିଲାବୃତମୁପସ୍ୟନ୍ଦତି । ୧୯ ।

ତାବଦୁଭୟୋରପି ରୋଧସୋର୍ଯା ମୃତ୍ତିକା ତଦ୍ରସେନାନୁବିଧ୍ୟମାନା ବାୟ୍ୱର୍କ-ସଂଯୋଗବିପାକେନ ସଦାମରଲୋକାଭରଣଂ ଜାମ୍ବୂନଦଂ ନାମ ସୁବର୍ଣ୍ଣଂ ଭବତି ।୨୦।

ଯଦୁହ ବାବ ବିବୁଧାଦୟଃ ସହ ଯୁବତିଭିର୍ମୁକୁଟକଟକକଟିସୂତ୍ରାଦ୍ୟାଭରଣରୂପେଣ ଖଲୁ ଧାରୟନ୍ତି । ୨୧ ।

ଯସ୍ତୁ ମହାକଦମ୍ବଃ ସୁପାର୍ଶ୍ୱପାର୍ଶ୍ୱାନିରୂଢ଼ସ୍ତସ୍ୟ କୋଟରେଭ୍ୟୋ ବିନିଃସୃତା ପଞ୍ଚାୟାମ-ପରିଣାହାଃ ପଞ୍ଚ ମଧୁଧାରାଃ ସୁପାର୍ଶ୍ୱଶିଖରାତ୍ ପତନ୍ତ୍ୟୋଽପରେଣାତ୍ମାନମିଲାବୃତମନୁ-ମୋଦୟନ୍ତି । ୨୨ ।

ଯା ହ୍ୟୁପଯୁଞ୍ଜାନାନାଂ ମୁଖନିର୍ବାସିତୋ ବାୟୁଃ ସମନ୍ତାଚ୍ଛତଯୋଜନମନୁବାସୟତି ।୨୩।

---

ତଦ୍‌ବାଳାଙ୍କର ଅନୁଚରୀ ଯକ୍ଷବଧୂମାନେ ଏହି ରସପାନ କରନ୍ତି ବୋଲି ସେମାନଙ୍କ ଅଙ୍ଗ ସ୍ପର୍ଶରେ ବାୟୁ ସୁଗନ୍ଧିଯୁକ୍ତ ହୋଇ ଦଶଯୋଜନ ପର୍ଯ୍ୟନ୍ତ ଆମୋଦିତ କରିଥାଏ । ୧୮ ।

ଏହିପରି ଜମ୍ବୁଫଳମାନ ମଧ୍ୟ ଅତ୍ୟୁଚ୍ଚ ସ୍ଥାନରୁ ନିପତିତ ହୋଇ ଭଗ୍ନ ହୋଇଯାଏ । ଏହି ଫଳ ମାନଙ୍କର ବୀଜ ଅତି ସୂକ୍ଷ୍ମ ମାତ୍ର ତହିଁର ପରିମାଣ ହସ୍ତି ଦେହ ତୁଲ୍ୟ । ଏହି ସମସ୍ତ ଫଳର ରସରୁ ଜମ୍ବୁନଦୀ ଉତ୍ପନ୍ନ ହୋଇ ଅଯୁତ ଯୋଜନ ଉଚ୍ଚ ମେରୁ ମନ୍ଦର ଶିଖରରୁ ଭୂତଳରେ ପତିତ ହୋଇ ଇଳାବୃତ ବର୍ଷର ଦକ୍ଷିଣରେ ତାକୁ ବ୍ୟାପିରହିଅଛି । ୧୯ ।

ଏହି ନଦୀର ଉଭୟତୀରସ୍ଥ ମୃତ୍ତିକା ଜମ୍ବୁରସରେ ଆର୍ଦ୍ର ହୋଇ ବାୟୁ ଓ ସୂର୍ଯ୍ୟାତପର ସଂସ୍ପର୍ଶରେ ଏକ ପ୍ରକାର ପାକ ପ୍ରାପ୍ତ ହୋଇ ସୁଗନ୍ଧରେ ପରିଣତ ହୁଏ ଏବଂ ଅମର ଲୋକଙ୍କର ଭୂଷଣ ଜମ୍ବୁନଦ ସୁବର୍ଣ୍ଣରେ ପରିଣତ ହୁଏ । ୨୦ ।

ହେ ରାଜନ୍ ! ଏହି ସ୍ୱର୍ଣ୍ଣଦ୍ୱାରା ଦେବ ଲଳନାମାନଙ୍କର ସୁବର୍ଣ୍ଣ ମୁକୁଟ, ବଳୟ, କଟି ସୂତ୍ରାଦି ନିର୍ମିତ ହୋଇଥାଏ । ୨୧ ।

ସୁପାର୍ଶ୍ୱ ପର୍ବତର ପାର୍ଶ୍ୱଦେଶରେ ଅବସ୍ଥିତ ମହାକଦମ୍ବ ବୃକ୍ଷ କୋଟରରୁ ବିନିସୃତ ପଞ୍ଚବ୍ୟାସ ପରିମିତ ପାଞ୍ଚୋଟି ମଧୁଧାରା ସୁପାର୍ଶ୍ୱ ପର୍ବତର ଶିଖର ଦେଶରୁ ନିପତିତ ହୋଇ ନିଜର ପଶ୍ଚିମଦିଗରେ ଇଳାବୃତ ବର୍ଷକୁ ସ୍ୱୀୟ ସୁଗନ୍ଧଦ୍ୱାରା ଆମୋଦିତ କରୁଅଛି । ୨୨ ।

---

| | | |
|---|---|---|
| ତହୁଁ ଜାମ୍ବୁନଦର ଜାତ | ମହା କଦମ୍ବ ତରୁବର | ଇଳାବୃତକୁ ବେଢ଼ି କରି |
| ଶୁଣ ରାଜନ ପରୀକ୍ଷିତ | ତହିଁର ମଧ୍ୟରେ କୋଟର | ସୁଗନ୍ଧ ଆମୋଦ ପ୍ରସରି |
| ତାହାର ଜଳ ସଂଯୋଗରେ | ପରମ ଧାରରୂପ ହୋଇ | ତାର ସ୍ପରଶୁଁ ଯେ ପବନ |
| ସୁବର୍ଣ୍ଣ ହୋଇଛି କ୍ଷିତିରେ ।୧୭-୨୧ | ତହୁଁ ଯେ ମଧୁ ସ୍ରବୁଛଇ | ସୁବାସ ସତେକ ଯୋଜନ ।୨୨,୨୩ |

ଏବଂ କୁମୁଦନିରୂଢ଼ୋ ଯଃ ଶତବଲଶୋ ନାମ ବଟସ୍ତସ୍ୟ ସ୍କନ୍ଧେଭ୍ୟୋ ନୀଚୀନାଃ ପୟୋଦଧିମଧୁଘୃତଗୁଡ଼ାନ୍ନାଦ୍ୟମ୍ବରଶଯ୍ୟାସନାଭରଣାଦୟଃ ସର୍ବ ଏବ କାମଦୁଘା ନଦାଃ କୁମୁଦାଗ୍ରାତ୍ ପତନ୍ତସ୍ତମୁତ୍ତରେଣେଲାବୃତମୁପଯୋଜୟନ୍ତି ।୨୪।

ଯାନୁପଯୁଞ୍ଜାନାନାଂ ନ କଦାଚିଦପି ପ୍ରଜାନାଂ ବଲୀପଲିତକ୍ଲମସ୍ୱେଦଦୌର୍ଗନ୍ଧ୍ୟ-ଜରାମୟାପମୃତ୍ୟୁଶୀତୋଷ୍ଣବୈବର୍ଣ୍ୟୋପସର୍ଗାଦୟସ୍ତାପବିଶେଷା ଭବନ୍ତି ଯାବଜ୍ଜୀବଂ ସୁଖଂ ନିରତିଶୟମେବ ।୨୫।

କୁରଙ୍ଗକୁରରକୁସୁମ୍ଭବୈକଙ୍କତ୍ରିକୂଟଶିଶିରପତଙ୍ଗରୁଚକନିଷଧଶିନୀବାସକପିଳ-ଶଙ୍ଖବୈଦୂର୍ଯ୍ୟଜାରୁଧିହଂସର୍ଷଭନାଗକାଳଞ୍ଜରନାରଦାଦୟୋ ବିଂଶତିଗିରୟୋ ମେରୋଃ କର୍ଣ୍ଣିକାୟା ଇବ କେଶରଭୂତା ମୂଲଦେଶେ ପରିତ ଉପକ୍ଳୃପ୍ତାଃ ।୨୬।

---

ଯେଉଁମାନେ ଏହି ପର୍ବତର ମଧୁଧାର ସେବନ କରନ୍ତି ସେମାନଙ୍କର ମୁଖନିଃସୃତ ବାୟୁଦ୍ୱାରା ଚତୁର୍ଦ୍ଦିଗ ଶତଯୋଜନ ପର୍ଯ୍ୟନ୍ତ ସୁବାସିତ ହୁଏ ।୨୩।

ଏହାପରେ କୁମୁଦ ପର୍ବତରେ ଜାତ ବଟବୃକ୍ଷର ନାମ ଶତବଲ୍‌ଶ ବା ଶତସ୍କନ୍ଧ, ଏହାର ସ୍କନ୍ଧଦେଶରୁ ଦୁଗ୍ଧ, ଦଧି, ମଧୁ, ଘୃତ, ଗୁଡ଼, ଅନ୍ନାଦି, ବସନ, ଶଯ୍ୟା, ଆସନ, ଆଭରଣାଦି ପ୍ରବାହରେ ପ୍ରବାହିତ କାମଦୁଘ ନଦମାନ ନିଃସୃତ ହୋଇ କୁମୁଦ ପର୍ବତର ଅଗ୍ରଭାଗରୁ ନିମ୍ନରେ ପତିତ ହୋଇ ଉତ୍ତର ଦିଗରେ ଇଳାବୃତ ବର୍ଷକୁ ପ୍ଲାବିତ କରୁଅଛି ।୨୪।

ଏହି ସମସ୍ତ ଦ୍ରବ୍ୟ ଉପଭୋଗ କରି ତତ୍ରତ୍ୟ ଜନ ସମାଜ କଦାପି ବଳୀ ବା ଲୋଳଚର୍ମ, ପଳିତ ବା ପକ୍ୱକେଶ, କ୍ଳାନ୍ତ, ଘର୍ମାକ୍ତ, ଦୁର୍ବଳ, ଜରାଗ୍ରସ୍ତ, ରୋଗୀ, ଅପମୃତ୍ୟୁଗ୍ରସ୍ତ ଏବଂ ଶୀତ ଉଷ୍ଣହେତୁ ବୈବର୍ଣ୍ଣ ଓ ଅନ୍ୟାନ୍ୟ ଉପସର୍ଗାଦି ସନ୍ତାପ ଭୋଗ କରନ୍ତି ନାହିଁ ଏବଂ ଯାବଜ୍ଜୀବନ ନିରବଚ୍ଛିନ୍ନ ସୁଖ ସମ୍ଭୋଗରେ କାଳାତିପାତ କରନ୍ତି ।୨୫।

ହେ ରାଜନ୍ ! କୁରଙ୍ଗ, କୁରର, କୁସୁମ୍ଭ, ବୈକଙ୍କ, ତ୍ରିକୂଟ, ଶିଶିର, ପତଙ୍ଗ, ରୁଚକ, ନିଷଧ, ଶିନୀବାସ, କପିଳ, ଶଙ୍ଖ, ବୈଦୂର୍ଯ୍ୟ, ଜାରୁଧୀ, ହଂସ, ଋଷଭ, ନାଗ, କାଳଞ୍ଜର ଏବଂ ନାରଦ ପ୍ରଭୃତି ପର୍ବତମାନ ମେରୁ ପର୍ବତର କର୍ଣ୍ଣିକାର କେଶର ତୁଲ୍ୟ । ଏହି ପର୍ବତର ମୂଳ ଦେଶରେ ବେଷ୍ଟିତ ହୋଇ ରହିଅଛନ୍ତି ।୨୬।

---

କୁମୁଦଗିରି ତଟଦେଶେ
ବିଶାଳ ବଟ ଯେ ପ୍ରକାଶେ
ତାହାର କନ୍ଦରୁ ବାହାର
ବିଶାଳ ପୟୋରାଶି ଧାର
ଇଳାବୃତର ଯେ ଉତ୍ତରେ
ପ୍ରକାଏ ସୁଖ ଯାର ନୀରେ

ଯାବତ ଜୀବ ସୁଖୀ ହୋଇ
ଅଛନ୍ତି ଯାର ଜଳ ଖାଇ
କୁରଙ୍ଗ କୁସୁମ୍ଭ କୁରର
ବୈକଙ୍କ ତ୍ରିକୂଟ ଶିଶିର
ବୈଦୂର୍ଯ୍ୟ ନିଷଧ ରୁଚକ
କପିଳ ଶିନୀବାସ ଶଙ୍ଖ

ଋଷଭ ଜାରୁଧି ପତଙ୍ଗ
କାଳଞ୍ଜର ଯେ ହଂସ ନାଗ
ନାରଦ ଆଦି ଯେ ପର୍ବତ
ଏମନ୍ତ ବିଂଶ ଯେ ପର୍ବତ
ମେରୁ କର୍ଣ୍ଣିକା ଚଉପାଶେ
ବିରାଜେ କେଶରସଦୃଶେ ।୨୪-୨୬

ଜଠରଦେବକୂଟୌ ମେରୁଂ ପୂର୍ବେଣାଷ୍ଟାଦଶଯୋଜନସହସ୍ରମୁଦଗାୟତୌ ଦ୍ୱିସହସ୍ରଂ ପୃଥୁତୁଙ୍ଗୌ ଭବତଃ ଏବମପରେଣ ପବନପାରିଯାତ୍ରୌ ଦକ୍ଷିଣେନ କୈଲାସକରବୀରୌ ପ୍ରାଗାୟତୌ ଏବମୁତ୍ତରତସ୍ତ୍ରିଶୃଙ୍ଗମକରୌ । ଅଷ୍ଟାଭିରେତୈଃ ପରିବୃତୋଽଗ୍ନିରିବ ପରିତଶ୍ଚକାସ୍ତି କାଞ୍ଚନଗିରିଃ । ୨୭ ।

ମେରୋର୍ମୂର୍ଦ୍ଧନି ଭଗବତ ଆତ୍ମଯୋନେର୍ମଧ୍ୟତ ଉପକ୍ଲୃପ୍ତାଂ ପୁରୀମୟୁତଯୋଜନସାହସ୍ରୀଂ ସମଚତୁରସ୍ରାଂ ଶାତକୌମ୍ଭୀଂ ବଦନ୍ତି । ୨୮ ।

ତାମନୁପରିତୋ ଲୋକପାଲାନାମଷ୍ଟାନାଂ ଯଥାଦିଶଂ ଯଥାରୂପଂ ତୁରୀୟମାନେନ ପୁରୋଽଷ୍ଟାବୁପକ୍ଲୃପ୍ତାଃ । ୨୯ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ
ଭୁବନକୋଶବର୍ଣ୍ଣନେ ନାମ ଷୋଡ଼ଶୋଽଧ୍ୟାୟଃ । ୧୬ ।

---

ସୁମେରୁ ପର୍ବତର ମୂଳଦେଶରୁ ଚତୁର୍ଦ୍ଦିଗରେ ଏକସହସ୍ର ଯୋଜନ ଅନ୍ତରରେ କେତେଗୁଡ଼ିଏ ପର୍ବତ ରହିଅଛି । ସେମାନଙ୍କର ପରିମାଣାଦି କହୁଅଛୁ ଶ୍ରବଣ କର । ସୁମେରୁ ପର୍ବତର ପୂର୍ବ ଦିଗରେ ଜଠର ଦେବକୂଟ ନାମକ ପର୍ବତ ଦ୍ୱୟ ଏବଂ ପଶ୍ଚିମ ଦିଗରେ ପବନ ଓ ପାରିଜାତ ନାମକ ଦୁଇଟି ପର୍ବତ ରହିଅଛି । ଏହି ପର୍ବତମାନ ଉତ୍ତର ଦକ୍ଷିଣରେ ଅଷ୍ଟାଦଶ ସହସ୍ରଯୋଜନ ଦୀର୍ଘ, ଏମାନଙ୍କର ବିସ୍ତାର ଓ ଉଚ୍ଚତା ଦୁଇ ସହସ୍ର ଯୋଜନ, ସେହିପରି ଦକ୍ଷିଣରେ କୈଳାସ ଓ କରବୀର ଏବଂ ଉତ୍ତରରେ ତ୍ରିଶୃଙ୍ଗ ଓ ମକର ନାମରେ ସୁପ୍ରସିଦ୍ଧ ପର୍ବତ ମେରୁର ମୂଳଦେଶରୁ ସହସ୍ରଯୋଜନ ପରିତ୍ୟାଗ କରି ଅଗ୍ନିର ପରିଧି ତୁଲ୍ୟ ଆଠଟି ପର୍ବତ ବେଷ୍ଟିତ ହୋଇ ରହିଅଛି, କାଞ୍ଚନଗିରି ଅର୍ଥାତ୍ ସୁମେରୁ ପର୍ବତ ଶୋଭା ପାଉଅଛି । ଇତିବୃତ୍ତ ବେତ୍ତା ପଣ୍ଡିତ ଗଣ କହିଥାନ୍ତି ଯେ, ସୁମେରୁର ଶିରୋଦେଶରେ, ମଧ୍ୟସ୍ଥଳରେ ଭଗବାନ୍ ବ୍ରହ୍ମାଙ୍କ ମନୋଗତ ନାମ୍ନୀ ସୁବର୍ଣ୍ଣପୁରୀ ବିରାଜିତ, ଏହାର ବିସ୍ତାର ଅୟୁତ ଯୋଜନ ଏବଂ ସମ ଚତୁଷ୍କୋଣ ବିଶିଷ୍ଟ । ୨୭,୨୮

ଏହି ବ୍ରହ୍ମପୁରୀର ଚତୁର୍ଦ୍ଦିଗରେ ପୂର୍ବଦିଗରୁ ଆରମ୍ଭକରି ଅଷ୍ଟଦିକ୍ପାଳ ଗଣଙ୍କର ଆଠଗୋଟି ପୁରୀ ନିର୍ମିତ ହୋଇଅଛି ଏବଂ ଏହି ପୁରୀମାନ ଏହି ଲୋକପାଳ ଗଣଙ୍କର ବର୍ଣ୍ଣର ଅନୁରୂପ ଏବଂ ପ୍ରତ୍ୟେକର ପରିମାଣ ବ୍ରହ୍ମପୁରୀର ପରିମାଣର ଚତୁର୍ଥାଂଶ ଅର୍ଥାତ୍ ସାର୍ଦ୍ଧ ଦ୍ୱିସହସ୍ର ଯୋଜନ । ୨୯ ।

---

ଜଠର ଦେବକୂଟ ଦୁଇ
ମେରୁର ପୂର୍ବଭାଗେ ରହି
ଦୈର୍ଘ ସହସ୍ର ଉଚ୍ଚ ତାର
ଅଠର ଯୋଜନ ବିସ୍ତାର
ପବନ ପାରିଜାତ ଦୁଇ
ତାହାର ପଶ୍ଚିମେ ଶୋଭଇ
କୈଳାସ କରବୀର ଦୁଇ
ଦକ୍ଷିଣ ପାଶେ ବିରାଜଇ

ଉତ୍ତରେ ତ୍ରିଶୃଙ୍ଗ ମକର
ଅଛନ୍ତି ଦୈର୍ଘ ଗିରିବର
ଏ ଅଷ୍ଟଗିରି ମଧ୍ୟ ଦେଶେ
ସୁବର୍ଣ୍ଣଗିରି ଯେ ପ୍ରକାଶେ । ୨୭ ।
ସୁବର୍ଣ୍ଣଗିରି ଅଗ୍ରଦେଶେ
ବ୍ରହ୍ମାର ପୁର ଯେ ପ୍ରକାଶେ
ଅୟୁତ ଯୋଜନ ସେ ହୋଇ
ନାନା କୁସୁମେ ସୁବାସଇ

ହେମ କଳସ ଭୃଙ୍ଗସାର
ଅଥବା ଦେବା ପଟାନ୍ତର । ୨୮ ।
ସ୍ମର ଦିଗରେ ଯେ ତାହାର
ଇନ୍ଦ୍ରାଦି ଲୋକପାଳଙ୍କର
ଯଥାକ୍ରମରେ ଯେଝାମତେ
ନିର୍ମିତ ପୁର ଯଥୋଚିତେ
ଯଥା ଅନୁକ୍ରମରେ ନିତ୍ୟେ
ବିହାର କରନ୍ତି ସମସ୍ତେ

( ଅଷ୍ଟଦିକ୍ପାଳମାନଙ୍କର ପୁରର ନାମ ପୂର୍ବଦିଗରେ ଇନ୍ଦ୍ରଙ୍କପୁରୀ ଅମରାବତୀ, ଅଗ୍ନିକୋଣରେ ଅଗ୍ନିଙ୍କର ପୁରୀ ତେଜୋବତୀ, ଦକ୍ଷିଣ ଦିଗରେ ଯମପୁରୀ ସଂଯମନୀ, ନୈର୍ଋତ କୋଣରେ ନୀର୍ଋତିଙ୍କର ପୁରୀ କୃଷ୍ଣାଙ୍ଗନା, ପଶ୍ଚିମଦିଗରେ ବରୁଣ ପୁରୀ ଶ୍ରଦ୍ଧାବତୀ, ବାୟୁକୋଣରେ ବାୟୁପୁରୀ ଗନ୍ଧବତୀ, ଉତ୍ତର ଦିଗରେ କୁବେର ପୁରୀ ମହୋଦୟା ଏବଂ ଈଶାନ କୋଣରେ ଈଶାନ ପୁରୀ ଯଶୋବତୀ )

ଅଷ୍ଟ ଦିଗପାଳଙ୍କ ପୁର
ସୁପର୍ଶି ଅତି ମନୋହର ।୨୧।
ପଞ୍ଚମସ୍କନ୍ଧ ଏହୁ ବାଣୀ
ଶୁଣି ସଂସାରୁ ତର ପ୍ରାଣୀ

କହଇ ଦାସ ଜଗନ୍ନାଥ
କୃଷ୍ଣଚରିତ ଭାଗବତ
ପ୍ରଭୁ ପଦାରବିନ୍ଦ ତଳେ
ମନ ମୋ ରହିବ କୌତୁକେ ।



**ଭାବାର୍ଥ:—**

ରାଜା ପରୀକ୍ଷିତ ଶ୍ରୀ ଶୁକଦେବଙ୍କଠାରୁ ଭାଗବତ ବିଷୟ ଯେତେ ଶ୍ରବଣ କରୁଥିଲେ ତାହାଙ୍କର କୌତୁହଳ ସେତିକି ଉଦ୍ଦୀପ୍ତ ହେଉଥିଲା ସେ ପୁନଶ୍ଚ ଶ୍ରୀ ଶୁକଦେବଙ୍କୁ ପ୍ରଶ୍ନ କଲେ । ସେହି ପ୍ରଶ୍ନର ଉତ୍ତରରେ ଶୁକ ଦେବ, ଯାହା କହିଥିଲେ ତାହା ନଦ, ନଦୀ, ସମୁଦ୍ର, ଗ୍ରହ,ନକ୍ଷତ୍ର ପ୍ରଭୃତିଙ୍କର ବିବରଣ, ଶ୍ରୀଶୁକଦେବ କହିଲେ, ହେ ରାଜନ୍ ! ତୁମ୍ଭେ ଜଗତର ସମସ୍ତ ଭୌଗଳିକ ବିବରଣ ସର୍ବତୋଭାବରେ ବିଦିତ ହେବାକୁ ଇଚ୍ଛା କରୁଅଛ କିନ୍ତୁ ମାନବର ସମସ୍ତ ଆୟୁଷ୍କାଳ ମଧ୍ୟରେ ସେ ବର୍ଣ୍ଣନା ଶେଷ କରାଯାଇ ନ ପାରେ । ତଥାପି ତୁମ୍ଭଙ୍କୁ ଠିକ ଠିକେ ମୁଁ ସେ ପ୍ରସଙ୍ଗ କହୁଅଛି । ଏହା କହି ଶ୍ରୀ ଶୁକଦେବ ମେରୁ ପର୍ବତଠାରୁ ଆରମ୍ଭ କରି ବିଭିନ୍ନ ପ୍ରଧାନ ପର୍ବତ, ସମୁଦ୍ର, ନଦ, ନଦୀ, ଦ୍ୱୀପ ଇତ୍ୟାଦିର ବିବରଣ ପ୍ରକାଶ କରିଥିଲେ । ତାହାହିଁ ଷୋଡ଼ଶ ଅଧ୍ୟାୟବର୍ଣ୍ଣିତ ପ୍ରସଙ୍ଗ, ଏହି ପ୍ରସଙ୍ଗରେ ବ୍ରହ୍ମାଙ୍କ ପୁରୀ, ଅଷ୍ଟ-ଲୋକପାଳଗଣଙ୍କ ପୁରୀ ଓ ଆକାଶ ଗଙ୍ଗା ପ୍ରଭୃତି ପ୍ରସଙ୍ଗ ମଧ୍ୟ ଉଲ୍ଲେଖ କରିଥିଲେ ।

## ସପ୍ତଦଶ ଅଧ୍ୟାୟ ।

ତତଃ ସପ୍ତଦଶେ ଗଙ୍ଗାଗମନଂ ତଚ୍ଚତୁର୍ଦ୍ଦିଶମ୍ ।
ଇଲାବୃତେ ଚ ରୁଦ୍ରେଣ ସଂକର୍ଷଣନିଷେବଣମ୍ । ୦ । ( ଶ୍ରୀଧରସ୍ୱାମୀ )

### ଗଙ୍ଗାଙ୍କର ଆଗମନ ଏବଂ ରୁଦ୍ରଙ୍କ କର୍ତ୍ତୃକ ସଂକର୍ଷଣ ସ୍ତବ ।

ସପ୍ତଦଶ ଅଧ୍ୟାୟରେ ଗଙ୍ଗାଦେବୀଙ୍କର ମର୍ତ୍ତ୍ୟପୁରକୁ ଆଗମନ ଏବଂ ଇଳାବୃତ ବର୍ଷରେ ଶିବଙ୍କ କର୍ତ୍ତୃକ ସଂକର୍ଷଣଙ୍କର ସ୍ତବ ବର୍ଣ୍ଣନା କରା ହୋଇଅଛି ।

ସପ୍ତଦଶ ଅଧ୍ୟାୟରେ, ଗଙ୍ଗା ଆଗମ ମର୍ତ୍ତ୍ୟପୁରେ । ଇଳାବୃତରେ ରୁଦ୍ରଦେବ, କରନ୍ତି ସଂକର୍ଷଣ ସ୍ତବ ॥

ଶ୍ରୀଶୁକ ଉବାଚ ।

ତତ୍ର ହ ଭଗବତଃ ସାକ୍ଷାଦ୍ୟଜ୍ଞଲିଙ୍ଗସ୍ୟ ବିଷ୍ଣୋର୍ବିକ୍ରମତୋ ବାମପାଦାଙ୍ଗୁଷ୍ଠନଖ-
ନିର୍ଭିନ୍ନୋର୍ଦ୍ଧାଣ୍ଡକଟାହବିବରେଣାନ୍ତଃପ୍ରବିଷ୍ଟା ଯା ବାହ୍ୟଜଲଧାରା ତଚ୍ଚରଣପଙ୍କଜାବନେ-
ଜନାରୁଣକିଞ୍ଜଲ୍କୋପରଞ୍ଜିତାଖିଲଜଗଦଘମଲାପହୋପସ୍ପର୍ଶନାମଲା ସାକ୍ଷାଦ୍ଭଗବତ୍ପ-
ଦୀତ୍ୟନୁପଲକ୍ଷିତବଚୋଽଭିଧୀୟମାନାତିମହତା କାଲେନ ଯୁଗସହସ୍ରୋପଲକ୍ଷଣେନ
ଦିବୋ ମୂର୍ଦ୍ଧନ୍ୟବତତାର ଯତ୍ ତଦ୍ବିଷ୍ଣୁପଦମାହୁଃ । ୧ ।

ଯତ୍ର ହ ବାବ ବୀରବ୍ରତ ଔତ୍ତାନପାଦିଃ ପରମଭାଗବତୋଽସ୍ମତ୍କୁଲଦେବତା-
ଚରଣାରବିନ୍ଦୋଦକମିତି ଯାମନୁସବନମୁତ୍କୃଷ୍ୟମାଣଭଗବଦ୍ଭକ୍ତିଯୋଗେନ ଦୃଢଂ
କ୍ଲିଦ୍ୟମାନାନ୍ତର୍ହୃଦୟ ଔତ୍କଣ୍ଠ୍ୟବିବଶାମୀଲିତଲୋଚନଯୁଗଲକୁଡ୍ମଲବିଗଲିତାମଲବାଷ୍ପ-
କଲୟାଭିବ୍ୟଜ୍ୟମାନରୋମପୁଲକକୁଲକୋଽଧୁନାପି ପରମାଦରେଣ ଶିରସା ବିଭର୍ତ୍ତି ।୨।

ଶ୍ରୀ ଶୁକଦେବ କହିଲେ ହେ ରାଜନ୍ ! ଭଗବାନ ଯଜ୍ଞପୁରୁଷ ତ୍ରିବିକ୍ରମ ମୂର୍ତ୍ତିରେ ଯେଉଁତେବେଳେ ପଦ ନିକ୍ଷେପ କରନ୍ତି ସେତେବେଳେ ଦକ୍ଷିଣ ପଦରେ ଭୂଲୋକ ଆକ୍ରାନ୍ତ କରି ବାମପଦ ଊର୍ଦ୍ଧ୍ୱକୁ ଉତ୍ତୋଳନ କରନ୍ତି ସେଥିରେ ବାମପଦାଙ୍ଗୁଷ୍ଠର ନଖାଘାତରେ ବ୍ରହ୍ମକଟାହର ଊର୍ଦ୍ଧ୍ୱଭାଗ ନିର୍ଭିନ୍ନ ହୋଇ ଯେଉଁ ଛିଦ୍ର ହେଲା ସେହି ଛିଦ୍ର ପଥରେ ବ୍ରହ୍ମ କଟାହର ବାହାରେ ଯେଉଁ ଜଳଧାରା ଅଭ୍ୟନ୍ତରରେ ପ୍ରବିଷ୍ଟ ହେଲା ଏବଂ ଭଗବାନଙ୍କର ପାଦପଦ୍ମ ପ୍ରକ୍ଷାଳନ କରି ଅରୁଣବର୍ଣ୍ଣ କିଞ୍ଜଳ୍କ ତୁଲ୍ୟ ଶୋଭିତ ହେଲା । ସେହି ନିର୍ମଳା ଜଗତର ଅଶେଷ ପାପ କ୍ଷୟକାରିଣୀ ଭଗବତ୍ ପାଦ ପଦ୍ମୋଦ୍ଭବା ଗଙ୍ଗା ଭାଗୀରଥି ଇତ୍ୟାଦି ନାମ ଦ୍ୱାରା ଅଭିହିତ ହୋଇଥାନ୍ତି; ସେ ଅତି ଦୀର୍ଘକାଳ ଅର୍ଥାତ୍ ସହସ୍ରଯୁଗରେ ସ୍ୱର୍ଗର ମସ୍ତକରେ ପତିତ ହୋଇଥାନ୍ତି । ପଣ୍ଡିତମାନେ ବିଷ୍ଣୁପାଦକୁ ସ୍ୱର୍ଗର ମସ୍ତକ ବୋଲି କଳ୍ପନା କରନ୍ତି । ୧ ।

ହେ ରାଜନ୍ ! ଦୃଢ଼ବ୍ରତ ପରମଭାଗବତ ଉତ୍ତାନପାଦ ତନୟ ଧ୍ରୁବ ସେହି ବିଷ୍ଣୁପଦରେ ଅବସ୍ଥାନ କରୁଅଛନ୍ତି । ଧ୍ରୁବ ଅଦ୍ୟାପି ମଧ୍ୟ ସେହି ଜଳଧାରାକୁ ପରମ ଆଦରରେ ସ୍ୱୀୟ ମସ୍ତକରେ ଧାରଣ କରିଥାନ୍ତି, କାରଣ ସେ ମନେ କରନ୍ତି ଏହା ମୋହର କୁଳଦେବତା ଶ୍ରୀହରିଙ୍କର ଚରଣାରବିନ୍ଦ ପ୍ରକ୍ଷାଳନ କରୁଅଛି । ସେତେବେଳେ ତାହାଙ୍କର ଅନ୍ତଃକରଣ ପ୍ରତିକ୍ଷଣରେ ବର୍ଦ୍ଧିତ ଏବଂ ଭକ୍ତିଯୋଗରେ ଅତ୍ୟନ୍ତ ଆର୍ଦ୍ର ହୋଇଯାଏ । ଏଣୁ ଉତ୍କଣ୍ଠା ହେତୁ ତାହାଙ୍କର ନୟନଯୁଗଳ ବିବଶ ଓ ଈଷତ୍ ମୁଦ୍ରିତ ହୋଇ ଅର୍ଦ୍ଧ ଉନ୍ମୀଳିତ ପଦ୍ମତୁଲ୍ୟ ହୋଇ ଉଠେ ଏବଂ ବାଷ୍ପକଣାରେ ତାହାଙ୍କର ଶରୀର ରୋମାଞ୍ଚ ପ୍ରାପ୍ତ ହୁଏ । ୨ ।

ଶ୍ରୀ ଶୁକଉବାଚ—
ଶୁଣ ରାଜନ ପରୀକ୍ଷିତ
ସେ ଯଜ୍ଞ ପୁରୁଷ ଅଚ୍ୟୁତ
ମାୟା ବାମନ ଅବତାର
ତାହାଙ୍କ ଯେ ବାମ ପୟର
ତହୁଁ କନିଷ୍ଠ ଅଙ୍ଗୁଳିରେ
ବ୍ରହ୍ମାଣ୍ଡ ବାଜିଲା ନିର୍ଭରେ
ତହୁଁ ଅଦ୍ଭୁତ ଜଳଧାର
କି ଅବା ଦେବା ପଟାନ୍ତର
ଦୁରିତ ନାଶଇ ସ୍ମରଣେ
ପ୍ରାଣୀ ତରନ୍ତି ସ୍ନାନ ପାନେ
ତହୁଁ ଚଳିଲା ଅତି ଖରେ
ପଡ଼ିଲା ଭୃଙ୍ଗ ପର୍ବତରେ । ୧,୨ ।

ତତଃ ସପ୍ତର୍ଷୟସ୍ତତ୍ ପ୍ରଭାବାଭିଜ୍ଞା ଇୟଂ ନନୁ ତପସ ଆତ୍ୟନ୍ତିକୀ ସିଦ୍ଧିରେତା-ବତୀତି ଭଗବତି ସର୍ବାତ୍ମନି ବାସୁଦେବେଽନୁପରତଭକ୍ତିଯୋଗଲାଭେନୈବୋପେକ୍ଷିତା-ନ୍ୟର୍ଥାତ୍ମଗତୟୋ ମୁକ୍ତିମିବାଗତାଂ ମୁମୁକ୍ଷବ ଇବ ସବହୁମାନମଦ୍ୟାପି ଜଟାଜୂଟୈରୁଦ୍-ବହନ୍ତି । ୩ ।

ତତୋଽନେକସହସ୍ରକୋଟିବିମାନାନୀକସଙ୍କୁଳଦେବଯାନେନାବତରନ୍ତୀନ୍ଦୁମଣ୍ଡ-ଳମାବାର୍ଯ୍ୟ ବ୍ରହ୍ମସଦନେ ନିପତତି । ୪ ।

ତତ୍ର ଚତୁର୍ଦ୍ଧା ଭିଦ୍ୟମାନା ଚତୁର୍ଭିର୍ନାମଭିଶ୍ଚତୁର୍ଦ୍ଦିଶମଭିସ୍ୟନ୍ଦନ୍ତୀ ନଦନଦୀପତି-ମେବାଭିନିବିଶତି । ସୀତାଲକନନ୍ଦା ଚକ୍ଷୁର୍ଭଦ୍ରେତି । ୫ ।

---

ହେ ରାଜନ ! ତଦନନ୍ତର ଗଙ୍ଗାଦେବୀ ସପ୍ତର୍ଷିମଣ୍ଡଳରେ ଅବତୀର୍ଣ୍ଣ ହେଲେ । ସପ୍ତର୍ଷିଗଣ ଅଦ୍ୟାପି ତାହାଙ୍କୁ ଜଟାଜୂଟରେ ବହନ କରୁଅଛନ୍ତି, ଯେପରି ମୁକ୍ତି ମୁମୁକ୍ଷୁ ବ୍ୟକ୍ତିର ସନ୍ନିହିତା ହେଲେ ସେ ତାହାଙ୍କ ସାଦରରେ ଗ୍ରହଣ କରିଥାଏ, ସେହିପରି ସେମାନେ ମଧ୍ୟ ଗଙ୍ଗାଦେବୀଙ୍କୁ ସାଦରରେ ବହନ କରୁଅଛନ୍ତି କାରଣ ସେମାନେ ଗଙ୍ଗାଦେବୀଙ୍କର ମହାତ୍ମ୍ୟ ସମ୍ୟକ୍‌ରୂପେ ବିଦିତ ହୋଇଥିବାରୁ ଭାବନ୍ତି ଯେ-ଏହି ଗଙ୍ଗା ହିଁ ତପସ୍ୟାର ଆତ୍ୟନ୍ତିକ ସିଦ୍ଧି । ଏହାଙ୍କ ଅପେକ୍ଷା ଅଧିକ ଆଉ କିଛି ନାହିଁ କାରଣ ସର୍ବାତ୍ମା ସ୍ୱରୂପ ଭଗବାନ୍ ବାସୁଦେବଙ୍କଠାରେ ଅବିଚ୍ଛିନ୍ନ ଭକ୍ତିଯୋଗ ଲାଭହେତୁ ଅନ୍ୟାନ୍ୟ ପୁରୁଷାର୍ଥ ବା ଆତ୍ମଜ୍ଞାନ ସେମାନଙ୍କ ନିକଟରେ ତୁଚ୍ଛ । ୩ ।

ଏହି ସପ୍ତର୍ଷିମଣ୍ଡଳର ନିମ୍ନଦେଶରେ ଆକାଶମାର୍ଗରେ ସହସ୍ର ସହସ୍ର କୋଟି ବିମାନ ବିରାଜିତ ( କାରଣ କର୍ମୀମାନେ ପ୍ରାୟ ଏ ନିମ୍ନଦେଶରେ ଗତାଗତ କରିଥାନ୍ତି ) । ୪ ।

ମେରୁ ମସ୍ତକରେ ପତିତ ଜଳଧାରା ଚାରିଭାଗରେ ବିଭକ୍ତହୋଇ ଚାରିଦିଗରେ ପ୍ରବାହିତ ହୋଇ ନଦ ନଦୀର ପତି ସମୁଦ୍ରରେ ପ୍ରବେଶ କରିଅଛି । ଏହି ଚାରିଧାରର ନାମ ସୀତା, ଅଳକ ନନ୍ଦା, ଚକ୍ଷୁ ଓ ଭଦ୍ରା । ୫ ।

---

ଧ୍ରୁବ ପରମ ଭାଗବତ
ଜାଣିଲି ବିଷ୍ଣୁପାଦୋଦକ
ଭକ୍ତିଯୋଗରେ ବଶ ହୋଇ
ଆନନ୍ଦେ ପ୍ରେମ ପୁଲକାଇ
ମାର୍ଜନ କରିବା ନିମନ୍ତେ
ଶିରରେ ବହିଲ ଭରତେ । ୩ ।
ତେଣୁ ସପତ ମୁନିଗଣ
ପ୍ରଭାବ ଜାଣି ତତକ୍ଷଣ
ସକଳଆତ୍ମା ଭଗବାନେ
ତପ ସମାଧି ଯୋଗ ଧ୍ୟାନେ
ମୋକ୍ଷକାରଣେ ସେ ଭଜନ୍ତି
ପ୍ରଭୁର ମହିମା ଜାଣନ୍ତି
ସେ ଜଳପାଇ ତୁଷ୍ଟହୋଇ
ଜଟାରେ ଥୋଇଲେ ସେ ନେଇ । ୪ ।
ତହୁଁ ସେ ବହୁତ ପ୍ରକାରେ
ଇନ୍ଦୁମଣ୍ଡଳ ଯେ ଶୂନ୍ୟରେ
ତାହାକୁ ଲକ୍ଷ କରି ଗଲ
ବ୍ରହ୍ମସଦନେ ସେ ପଡ଼ିଲ
ତହୁଁ ସେ ଚାରିଧାର ହୋଇ
ଚତୁର୍ଦ୍ଧା ରୂପକୁ ଯେ ବହି
ଶୁଣ ସମ୍ପକ୍ଷ ନୃପବର
ଏ ନାମ ଚହାର ତାହାର
ସୀତା ଅଳକନନ୍ଦା ଦୁଇ
ଚକ୍ଷୁ ଭଦ୍ରା ନାମକୁ ବହି
ଚାରିଦିଗରେ ଏ ଭ୍ରମିଲ
ସିନ୍ଧୁରେ ପ୍ରବେଶ ହୁଅଇ । ୫ ।

ସୀତା ତୁ ବ୍ରହ୍ମସଦନାତ୍ କେଶରାଚଳାଦିଶିଖରେଭ୍ୟୋଽଧୋଽଧଃ ପ୍ରସ୍ରବନ୍ତୀ ଗନ୍ଧମାଦନମୂର୍ଦ୍ଧସୁ ପତିତ୍ୱାନ୍ତରେଣ ଭଦ୍ରାଶ୍ୱଂ ବର୍ଷଂ ପ୍ରାଚ୍ୟାଂ ଦିଶି କ୍ଷାରସମୁଦ୍ରମଭିପ୍ରବିଶତି । ୬ ।

ଏବଂ ମାଲ୍ୟବଚ୍ଛିଖରାନ୍ନିଷ୍ପତନ୍ତୀ ତତ ଉପରତବେଗା କେତୁମାଲମଭି ଚକ୍ଷୁଃ ପ୍ରତୀଚ୍ୟାଂ ଦିଶି ସରିତ୍ପତିଃ ପ୍ରବିଶତି । ୭ ।

ଭଦ୍ରା ଚୋତ୍ତରତୋ ମେରୁଶିରସୋ ନିପତିତଗିରିଶିଖରାଦ୍ଗିରିଶିଖରମତିହାୟ ଶୃଙ୍ଗବତଃ ଶୃଙ୍ଗାଦବସ୍ୟନ୍ଦମାନା ଉତ୍ତରାଂସ୍ତୁ କୁରୂନଭିତ ଉଦୀଚ୍ୟାଂ ଦିଶି ଲବଣାର୍ଣ୍ଣବମଭି ପ୍ରବିଶତି । ୮ ।

ତଥୈବାଳକନନ୍ଦା ଦକ୍ଷିଣେନ ବ୍ରହ୍ମସଦନାଦ୍ ବହୂନି ଗିରିକୂଟାନ୍ୟତି କ୍ରମ୍ୟ ହେମକୂଟହୈମକୂଟାନ୍ୟତିରଭସତରରଂହସା ଲୁଠନ୍ତୀ ଭାରତମଭିବର୍ଷଂ ଦକ୍ଷିଣସ୍ୟାଂ ଦିଶି ଲବଣଜଳଧିମଭିପ୍ରବିଶତି । ( ଯସ୍ୟାଂ ସ୍ନାନାର୍ଥଞ୍ଚାଗଚ୍ଛତଃ ପୁଂସଃ ପଦେ ପଦେଽଶ୍ୱମେଧରାଜସୂୟାଦୀନାଂ ଫଳଂ ନ ଦୁର୍ଲ୍ଲଭମିତି ) । ୯ ।

---

ସୀତା ବ୍ରହ୍ମପୁରୀ ମେରୁ ପର୍ବତରୁ କେଶରାଦି ପର୍ବତଶୃଙ୍ଗରେ ଏବଂ ସେଠାରୁ କ୍ରମଶଃ ଅଧଃଭାଗରେ ପତିତ ହୋଇ ଗନ୍ଧମାଦନକୁ ଯାଇ ଭଦ୍ରାଶ୍ୱବର୍ଷ ମଧ୍ୟଭାଗରେ ପୂର୍ବଦିଗରେ ଲବଣ ସମୁଦ୍ରରେ ପତିତ ହୋଇଅଛି । ୬ ।

ସେହିପରି ଚକ୍ଷୁନାମ୍ନୀ ନଦୀ ମାଲ୍ୟବାନ୍ ପର୍ବତର ଶିଖରରୁ କେତୁ ମାଳାଭିମୁଖରେ ନିର୍ଗତହୋଇ ଏବଂ ସେଠାରୁ ପ୍ରଶମିତ ବେଗ ହୋଇ ପଶ୍ଚିମଦିଗରେ ସମୁଦ୍ରରେ ପ୍ରବେଶ କରିଅଛି । ୭ ।

ଭଦ୍ରା ନଦୀ ଉତ୍ତରଦିଗରେ ସୁମେରୁ ଶିଖରରୁ ନିପତିତା ହୋଇ ଗୋଟିଏ ଗୋଟିଏ ଗିରିଶିଖରରୁ ଅନ୍ୟ ଗିରିଶିଖର ଅତିକ୍ରମ କରି ଶୃଙ୍ଗବାନ୍ ପର୍ବତଶୃଙ୍ଗରୁ ଅଧୋଭାଗରେ ଉତ୍ତର କୁରୁବର୍ଷ ମଧ୍ୟଦେଇ ଉତ୍ତର ଦିଗରେ ଲବଣ ସମୁଦ୍ରରେ ପ୍ରବେଶ କରିଅଛି । ୮ ।

ସେହିପରି ଅଳକ ନନ୍ଦା ମଧ୍ୟ ସୁମେରୁ ପର୍ବତରୁ ଦକ୍ଷିଣ ଦିଗରେ ନିପତିତା ଓ ବହୁ ପର୍ବତଶୃଙ୍ଗ ଅତିକ୍ରମ କରି ଅତ୍ୟନ୍ତ ତୀବ୍ରବେଗ ହେମକୂଟ ଓ ହିମକୂଟ ମଧ୍ୟ ଦେଇ ଭାରତବର୍ଷ ମଧ୍ୟରେ ପତିତହୋଇ ଦକ୍ଷିଣଦିଗରେ ଲବଣ ସାଗରେ ପ୍ରବେଶ କରିଅଛି । ୯ ।

---

ବ୍ରହ୍ମସଦନୁ ସୀତା ଯାଇ
କେଶରାଚଳେ ସେ ଭ୍ରମଇ
ଅଧ ଅଧରେ ଭ୍ରମିଯାଇ
ଗନ୍ଧମାଦନେ ସେ ପଡ଼ଇ
ତାହାର ସଙ୍ଗରେ ବହଇ
ଭଦ୍ରାଶ୍ୱ ବର୍ଷ ଶୁଦ୍ଧ କରି
କ୍ଷାରସିନ୍ଧୁର ପୂର୍ବଭାଗ
ପ୍ରବେଶ ହୋଇଅଛି ବେଗ । ୬ ।

ବ୍ରହ୍ମାସଦନୁ ଚକ୍ଷୁ ଯାଇ
ମାଲ୍ୟବନ୍ତଶିଖେ ପଡ଼ଇ
କେତୁମାଳର ମଧ୍ୟଦେଇ
ପଶ୍ଚିମ ସମୁଦ୍ରେ ମିଶଇ । ୭ ।
ମେରୁ ଶିଖରେ ଭଦ୍ରା ଯାଇ
ଉତ୍ତରଦିଗରେ ଭ୍ରମଇ
ଉତ୍ତରକୁରୁ ବେଢ଼ି ଖରେ
ସମୁଦ୍ରେ ମିଶଇ ଉତ୍ତରେ । ୮ ।

ଅଳକାନନ୍ଦା ନାମ ହୋଇ
ବହୁତ ଗିରି ସେ ଭ୍ରମଇ
ସୁବର୍ଣ୍ଣ ଗିରି ହିମାଳୟ
ତାହାକୁ କରି ସେ ଆଶ୍ରୟ
ଅତି ପ୍ରଖର ବେଗ ବଳେ
ପଡ଼ଇ ଭାରତବରଷେ
ତହୁଁ ଦକ୍ଷିଣ ସିନ୍ଧୁଜଳେ
ପ୍ରବେଶ ହୋଏ ସେ ଉଲ୍ଲସେ । ୯

ଅନ୍ୟେ ଚ ନଦା ନଦ୍ୟଶ୍ଚ ବର୍ଷେ ବର୍ଷେ ସନ୍ତି ବହୁଶୋ ମେର୍ବାଦିଗିରିଦୁହିତରଃ ଶତଶଃ । ୧୦ ।

ତତ୍ରାପି ଭାରତମେବ ବର୍ଷଂ କର୍ମକ୍ଷେତ୍ରମନ୍ୟାନ୍ୟଷ୍ଟବର୍ଷାଣି ସ୍ୱର୍ଗିଣାଂ ପୁଣ୍ୟଶେଷୋପଭୋଗସ୍ଥାନାନି ଭୌମସ୍ୱର୍ଗପଦାନି ବ୍ୟପଦିଶନ୍ତି । ୧୧ ।

ଏଷୁ ପୁରୁଷାଣାମୟୁତପୁରୁଷାୟୁର୍ବର୍ଷାଣାଂ ଦେବକଳ୍ପାନାଂ ନାଗାୟୁତପ୍ରାଣାନାଂ ବଜ୍ରସଂହନନବଲବୟୋମୋଦପ୍ରମୁଦିତମହାସୌରତମିଥୁନବ୍ୟବାୟାପବର୍ଗବର୍ଷଧୃତୈକଗର୍ଭକଳତ୍ରାଣାଂ ତ୍ରେତାଯୁଗସମଃ କାଲୋ ବର୍ତ୍ତତେ । ୧୨ ।

ଯତ୍ର ହ ଦେବପତୟଃ ସ୍ୱୈଃସ୍ୱୈର୍ଗଣନାୟକୈର୍ବିହିତମହାର୍ହଣାଃ ସର୍ବର୍ତ୍ତୁକୁସୁମସ୍ତବକଫଲକିସଲୟଶ୍ରିୟା ଆନମ୍ୟମାନବିଟପଲତାବିଟପିଭିରୁପଶୁମ୍ଭମାନରୁଚିରକାନନାଶ୍ରମାୟତନବର୍ଷଗିରିଦ୍ରୋଣୀଷୁ ତଥା ଚାମଲଜଲାଶୟେଷୁ ବିକଚବିବିଧନବବନରୁହାମୋ-

---

ହେ ରାଜନ୍ ! ଅନ୍ୟ ବହୁ ନଦ ନଦୀ ପ୍ରତି ବର୍ଷ ମଧ୍ୟରେ ଅଛି । ଏହି ନଦ ନଦୀମାନ ମେରୁପ୍ରଭୃତି ପର୍ବତରୁ ଉତ୍ପନ୍ନ, ଏହି ନବବର୍ଷ ମଧ୍ୟରେ ଭାରତବର୍ଷକୁ ପଣ୍ଡିତମାନେ କର୍ମକ୍ଷେତ୍ର ବୋଲି କହିଥାନ୍ତି ।୧୦।

ଆହୁରି ଆଠୋଟି ବର୍ଷ ଅଛି । ଯେଉଁମାନେ ପୁଣ୍ୟାର୍ଜ୍ଜନ କରି ସ୍ୱର୍ଗଗାମୀ ହୁଅନ୍ତି ସେମାନଙ୍କର ସ୍ୱର୍ଗ ଭୋଗର ଅବସାନରେ ଅବଶିଷ୍ଟ ପୁଣ୍ୟଭୋଗ କରିବା ନିମନ୍ତେ ଅନ୍ୟାନ୍ୟ ଆଠୋଟି ବର୍ଷରେ ଜନ୍ମଗ୍ରହଣ କରିବାକୁ ହୁଏ । ଏହାକୁ ଭୌମ ସ୍ୱର୍ଗ ବୋଲିଯାଏ ।୧୧।

ଏହି ଅଷ୍ଟବର୍ଷରେ ଯେଉଁମାନେ ବାସ କରନ୍ତି ସେମାନଙ୍କର ଅୟୁତ ବର୍ଷ ପରମାୟୁ, ଅୟୁତ ହସ୍ତୀ ତୁଲ୍ୟ ବଳ ଏବଂ ବଜ୍ର ତୁଲ୍ୟ ସୁଦୃଢ ଶରୀର । ବଳ ଓ ଦୀର୍ଘାୟୁ ହର୍ଷ ପ୍ରମୋଦିତ ମହା ସୌରଭଯୁକ୍ତ ସ୍ତ୍ରୀ ପୁରୁଷଗଣ ଏଠାରେ ଅଛନ୍ତି ପରମାୟୁ ଏକବର୍ଷ ମାତ୍ର ଅବଶିଷ୍ଟ ଥିଲାବେଳେ ସେମାନଙ୍କର ସମ୍ଭୋଗ ଫଳରେ ସ୍ତ୍ରୀମାନେ ଥରେ ମାତ୍ର ଗର୍ଭଧାରଣ କରନ୍ତି । ଏହିପରି ତ୍ରେତାଯୁଗ ତୁଲ୍ୟ ସେମାନେ କାଳାତିପାତ କରିଥାନ୍ତି । ୧୨ ।

ଏହି ବର୍ଷମାନଙ୍କରେ ଦେବପତିମାନେ ନିଜ ନିଜର ମୁଖ୍ୟ ସେବକମାନଙ୍କ ଠାରୁ ମହତ୍ ଉପସ୍ଥିତ ପୂଜା ପାଇଥାନ୍ତି । ସେଠାରେ ଦେବେନ୍ଦ୍ରମାନଙ୍କର ମନ ଓ ଦୃଷ୍ଟି ସୁରସୁନ୍ଦରୀମାନଙ୍କର କାମସୂଚିତ ବିଳାସ ହାସ ଓ ଲୀଳାବଲୋକନ ଦ୍ୱାରା ଆକୃଷ୍ଟ ହୋଇଥାଏ । ସେମାନେ ଏହି ସୁରଲଳନାମାନଙ୍କ ସହିତ ଆଶ୍ରମ ସ୍ଥଳରେ ବର୍ଷ ପର୍ବତମାନଙ୍କର କନ୍ଦର ଓ ଅମଳ ଜଳାଶୟରେ ଜଳକ୍ରୀଡ଼ାଦି ବିବିଧ ବିନୋଦରେ ସ୍ୱଚ୍ଛନ୍ଦରେ ବିହାର କରିଥାନ୍ତି । ଏହି ଆଶ୍ରମ କାନନ ଶୋଭିତ କାନନ ସମୂହ ବୃକ୍ଷ ଶ୍ରେଣୀର

---

ଅନ୍ୟ ଯେ ନଦ ନଦୀ ଯେତେ
ଶତ ସହସ୍ର ଯେତିକି ମତେ
ନାନାଗିରିରୁ ଜାତ ହୋଇ
ସିନ୍ଧୁରେ ପଡ଼ନ୍ତି ସେ ଯାଇ
ଭାରତବରଷ ରାଜନ
ଏ କର୍ମକ୍ଷେତ୍ର ବୋଲି ଜାଣ ।୧୦।

ଅପରେ ଅଷ୍ଟ ଯେ ବରଷ
ସ୍ୱର୍ଗ ଲୋକଙ୍କର ଏ ବାସ
ତହିଁ ପୁରୁଷଙ୍କ ଆୟୁଷ
ଦଶସହସ୍ର ଯେ ବରଷ
ଦେବତା ତୁଲ୍ୟ ପରାକ୍ରମ
ନିତ୍ୟେ ସେ ହୁଅନ୍ତି ନବୀନ

ପରମ ଆନନ୍ଦେ ସେ ନିତ୍ୟେ
ବିହାର ଯୁବତୀ ସଙ୍ଗତେ
ସ୍ୱର୍ଗଭୋଗ ଶେଷଭୋଗରେ
ଦେବେ ରହନ୍ତି ସେହି ପୁରେ
ତହିଁରେ ଦେବଶ୍ରେଷ୍ଠମାନେ
ଆନନ୍ଦେ ହରଷିତ ମନେ

ଦପ୍ରମୁଦିତରାଜହଂସକଲହଂସଜଲକୁକ୍କୁଟକାରଣ୍ଡବସାରସଚକ୍ରବାକାଦିଭିର୍ମଧୁକରନିକ-ରାକୃତିଭିରୁପକୂଜିତେଷୁ ଜଲକ୍ରୀଡ଼ାଦିଭିର୍ବିଚିତ୍ରବିନୋଦୈଃସୁଲଳିତସୁରସୁନ୍ଦରୀଣାଂ କାମକଲିଲବିଲାସହାସଲୀଲାବଲୋକାକୃଷ୍ଟମନୋଦୃଷ୍ଟୟଃ ସ୍ୱୈରଂ ବିହରନ୍ତି । ୧୩ ।

ନବସ୍ୱପି ବର୍ଷେଷୁ ଭଗବାନ୍ ନାରାୟଣୋ ମହାପୁରୁଷଃ ପୁରୁଷାଣାଂ ତଦନୁ-ଗ୍ରହାୟାତ୍ମତତ୍ତ୍ୱବ୍ୟୂହେନାତ୍ମନାଦ୍ୟାପି ସନ୍ନିଧୀୟତେ । ୧୪ ।

ଇଳାବୃତେ ତୁ ଭଗବାନ୍ ଭବ ଏକ ଏବ ପୁମାନ୍ ନ ହ୍ୟନ୍ୟସ୍ତତ୍ରାପରୋ ନିର୍ବିଶତି ଭବାନ୍ୟାଃ ଶାପନିମିତ୍ତଜ୍ଞଃ । ଯତ୍ ପ୍ରବେକ୍ଷ୍ୟତଃ ସ୍ତ୍ରୀଭାବସ୍ତତ୍ ପଶ୍ଚାଦ୍ୱକ୍ଷ୍ୟାମଃ । ୧୫ ।

---

ସମାବେଶରେ ଅତୀବ ମନୋହର, ବୃକ୍ଷମାନଙ୍କର ଶାଖା ଓ ତଦବଲମ୍ବିନୀ ଲତା ସମୂହ କୁସୁମସ୍ତବକ ଫଳ ଓ କିଶଳୟରେ ସମୃଦ୍ଧ ହୋଇ ଭାରାକ୍ରାନ୍ତ ହୋଇ ରହିଥାଏ । ସେଠାରେ ଷଡ଼୍ ଋତୁ ସୁଲଭ କୁସୁମରାଜି ଫଳ ଓ କିଶଳୟମାନ ସତତ ବିରାଜମାନ ରହିଥାଏ, ଜଳାଶୟମାନଙ୍କରେ ରାଜହଂସ, କଳହଂସ, ଜଳ କୁକ୍କୁଟ, କାରଣ୍ଡବ, ସାରସ, ଚକ୍ରବାକାଦି ବିହଙ୍ଗମ ଓ ବିବିଧ ନବୀନ ପ୍ରଫୁଲ୍ଲ କମଳର ଆମୋଦରେ ପ୍ରମୁଦିତ ହୋଇ କୂଜନ ଓ ଗୁଞ୍ଜନ କରିଥାନ୍ତି । ୧୩ ।

ଏହି ନବବର୍ଷରେ ମହାପୁରୁଷ ଭଗବାନ୍ ନାରାୟଣ ତତ୍ରତ୍ୟ ଅଧିବାସୀ ମାନଙ୍କ ପ୍ରତି ଅନୁଗ୍ରହ ପ୍ରକାଶ କରିବା ନିମନ୍ତେ ନିଜର ବିଭିନ୍ନ ମୂର୍ତ୍ତିରେ ଅଦ୍ୟାପି ବିରାଜିତ ରହିଅଛନ୍ତି । ୧୪ ।

ଅନ୍ୟ ଇଳାବୃତବର୍ଷରେ ଭଗବାନ୍ ଭବ ହିଁ ଏକମାତ୍ର ପୁରୁଷ, ଭବାନୀଙ୍କର ଅଭିଶାପରେ ସେଠାରେ ଅନ୍ୟକୌଣସି ପୁରୁଷ ପ୍ରବେଶ କରିନପାରେ ଦୈବାତ୍ପ୍ରବେଶ କଲେ ସେ ସ୍ତ୍ରୀତ୍ୱ ପ୍ରାପ୍ତହୁଏ ।୧୫।

( ଏଥିର ବିଶେଷ ବିବରଣ ନବମସ୍କନ୍ଧରେ କଥିତ ହୋଇଅଛି )

---

ସୁର ସୁନ୍ଦରୀ ବୃନ୍ଦମେଳେ
ବିହାର କରନ୍ତି କୌତୁକେ
ଷଡ଼ଋତୁ ଏକ ସମୟେ
ଯହିଁ ଅଛନ୍ତି ଏକାଠାଏ
ନାନା କୁସୁମ ନାନା ଫଳେ
ସୁଗନ୍ଧ ସମୀର ଶୀତଳେ
ବିକାଶ ନାନା ପୁଷ୍ପକରେ
ଲତାଏ ବେଷ୍ଟିତ ଉପରେ
ସଦନ ଆକାରେ ଆଚ୍ଛାଦି
ବୃକ୍ଷକୁ ଲତା' ଛନ୍ତି ଛନ୍ଦି
ଅତିମଞ୍ଜୁଳ ମନୋରମ
ବିବିଧ ବିହାର ସଦନ

ପର୍ବତ ଦ୍ରୋଣି ସୁଶୀତଳେ
ନିର୍ମଳ ନାନା ଶୀତଜଳେ
ତୁଷାର ପଙ୍କଜ ସୁନ୍ଦର
ସୁଗନ୍ଧି ବହୁ ମନୋହର
ଜଳରେ ରାଜହଂସମାନେ
କ୍ରୀଡ଼ନ୍ତି ହରଷିତ ମନେ
ଜଳକୁକ୍କୁଟ ରାଜହଂସ
ଚକ୍ର କାରଣ୍ଡବ ସାରସ
ମଧୁର ନାନା ଧ୍ୱନିକରି
ଜଳେ ସେ ଭ୍ରମନ୍ତି ବିହରି
ଏମନ୍ତେ ନାନା ସୁଖ ସ୍ଥଳେ
ସୁର ସୁନ୍ଦରୀ-ବୃନ୍ଦମେଳେ

ଅମରବୃନ୍ଦ ବିଲାସରତ
ତପ କରନ୍ତି ଯେଉଁମତେ
ତପର ଫଳ ତାହାଙ୍କର
କରୁଣା କରନ୍ତି ଶ୍ରୀଧର
ନବ ବରଷେ ହେ ରାଜନ
ସେ ଯେ ଅନାଦି ନାରାୟଣ
ଲୋକର ନିସ୍ତାର କାରଣେ
ଅଛନ୍ତି ପ୍ରଭୁ ଅନୁକ୍ଷଣେ ।୧୧-୧୪
ଯେ ପୁଣ ଇଳାବୃତ ବର୍ଷ
ଭବ ଯେ ଏକଇ ପୁରୁଷ
ଭବାନୀ ଶାପ ଯୋଗୁ ତହିଁ
ଅନ୍ୟପୁରୁଷ ବାସ ନାହିଁ

ଭବାନୀନାଥୈଃ ସ୍ତ୍ରୀଗଣାର୍ବୁଦସହସ୍ରୈରବରୁଧ୍ୟମାନୋ ଭଗବତଶ୍ଚତୁର୍ମୂର୍ତ୍ତେ-
ର୍ମହାପୁରୁଷସ୍ୟ ତୁରୀୟାଂ ତାମସୀଂ ମୂର୍ତ୍ତିଂ ପ୍ରକୃତିମାତ୍ମନଃ ସଙ୍କର୍ଷଣସଂଜ୍ଞାମାତ୍ମସମାଧି-
ରୂପେଣ ସନ୍ନିଧାପ୍ୟୈତଦଭିଗୃଣନ୍ ଭବ ଉପଧାବତି । ୧୬ ।

ଶ୍ରୀଭଗବାନ୍ ରୁଦ୍ର ଉବାଚ ।

ଓଁ ନମୋ ଭଗବତେ ମହାପୁରୁଷାୟ ସର୍ବଗୁଣସଂଖ୍ୟାନାୟାନନ୍ତାୟାବ୍ୟକ୍ତାୟ
ନମ ଇତି । ୧୭ ।

ଭଜେ ଭଜନ୍ୟାରଣପାଦପଙ୍କଜଂ ଭଗସ୍ୟ କୃତ୍ସ୍ନସ୍ୟ ପରଂ ପରାୟଣମ୍ ।
ଭକ୍ତେଷ୍ୱଲଂଭାବିତଭୂତଭାବନଂ ଭବାପହଂ ତ୍ୱା ଭବଭାବମୀଶ୍ୱରମ୍ । ୧୮ ।
ନ ଯସ୍ୟ ମାୟାଗୁଣଚିତ୍ତବୃତ୍ତିଭିର୍ନିରୀକ୍ଷତୋ ହ୍ୟଣ୍ୱପି ଦୃଷ୍ଟିରଜ୍ୟତେ ।
ଈଶେ ଯଥା ନୋଽଜିତମନ୍ୟୁରଂହସାଂ କସ୍ତଂ ନ ମନ୍ୟେତ ଜିଗୀଷୁରାତ୍ମନଃ ।୧୯।

---

ଏହି ଇଳାବୃତ ବର୍ଷରେ ଭଗବାନ୍ ଭବ, ଭବାନୀ ଓ ତାଙ୍କର ଅଧୀନ ସହସ୍ରାର୍ବୁଦ ସଂଖ୍ୟକ ସ୍ତ୍ରୀଗଣଙ୍କ କର୍ତ୍ତୃକ ସର୍ବତୋଭାବରେ ସେବ୍ୟମାନ ହୋଇଥାନ୍ତି ଏବଂ ଚତୁର୍ମୂର୍ତ୍ତି ମହାପୁରୁଷଙ୍କର ଚତୁର୍ଥୀନାମ୍ନୀ ତାମସୀ ମୂର୍ତ୍ତି, ତାହାଙ୍କର ନାମ ସଙ୍କର୍ଷଣ ଏବଂ ତାହାଙ୍କର ନିଜର ପ୍ରକୃତିକୁ ସେ ଆତ୍ମସମାଧିରୂପେ ସ୍ଥାପନ କରି ଉକ୍ତୋକ୍ତ ମନ୍ତ୍ର ଜପ କରୁ କରୁ ଧାବମାନ ହୁଅନ୍ତି । ୧୬ ।

ଶ୍ରୀ ଭଗବାନ୍ ଭବ ( ଶିବ ) କହିଲେ;—

ସକାମଗୁଣମାନଙ୍କର ଆଶ୍ରୟ ଅନନ୍ତ, ଅବ୍ୟକ୍ତ ଭଗବାନ ମହାପୁରୁଷଙ୍କୁ ମୁଁ ପୁନଃପୁନଃନମସ୍କାର କରୁଅଛି ୧୭

ହେ ଭଜନୀୟ ଦେବ ! ମୁଁ ତୁମ୍ଭର ଭଜନା କରୁଅଛି । ତୁମ୍ଭେ ଈଶ୍ୱର, ତୁମ୍ଭର ପାଦପଦ୍ମ ସର୍ବ ପ୍ରାଣୀରକ୍ଷକ ଏବଂ ଆପଣ ନିଖିଳ ଷଡ଼୍‌ଗୁଣୈଶ୍ୱର୍ଯ୍ୟର ପରମ ଆଶ୍ରୟ ସ୍ଥଳ । ଭକ୍ତମାନଙ୍କପ୍ରତି ଦୟାପରବଶ ହୋଇ ଆପଣ ନିଜର ସ୍ୱରୂପ ପ୍ରକାଶ କରିଥାନ୍ତି ଏବଂ ଆପଣ ସେହି ଭକ୍ତଜନମାନଙ୍କର ସଂସାର କ୍ଳେଶ ହରଣ କରିଥାନ୍ତି ଏବଂ ଅଭକ୍ତମାନଙ୍କୁ କର୍ମବେଗ ନିମିତ୍ତ ସଂସାରକୁ ପ୍ରେରଣ କରନ୍ତି । ମୁଁ ଆପଣଙ୍କୁ ଭଜନା କରେ । ୧୮ ।

କ୍ରୋଧର ଶକ୍ତି ଜୟକରିବାକୁ ଅସମର୍ଥ ଆମ୍ଭମାନଙ୍କର ଦୃଷ୍ଟି ଭଗବାନଙ୍କର ଈଶ୍ୱରତ୍ୱରେ ଲିପ୍ତ ହୁଏ ନାହିଁ, ସେହିପରି ଯେ ନିରୀକ୍ଷଣ କଲେ ମଧ୍ୟ ଯାହାର ଦୃଷ୍ଟି ମାୟାର ସତ୍ତ୍ୱ, ରଜ, ତମ ଓ ଅନ୍ତଃକରଣ ବୃତ୍ତିଦ୍ୱାରା ଅଣୁମାତ୍ର ଲିପ୍ତ ହୁଏନାହିଁ; ଇନ୍ଦ୍ରିୟଜୟାଭିଳାଷୀ ଏବଂ ମୁକ୍ତିକାମୀ କେଉଁବ୍ୟକ୍ତି ତାହାଙ୍କୁ ସମାଦର ନ କରିବ ? । ୧୯ ।

---

ତାହାଙ୍କ ଶାପର କାରଣ
ସତେ କହିବା ହେ ରାଜନ
ତହିଁ ସ୍ତୁବନ୍ତି ଶିବ ଧ୍ୟାନେ
ତାମସୀ ମୂର୍ତ୍ତି ସଙ୍କର୍ଷଣେ ।୧୫,୧୬
ଶ୍ରୀ ରୁଦ୍ରଉବାଚ—
ନମସ୍ତେ ପୁରାଣ ପୁରୁଷ
ଅଶେଷ ଗୁଣ ଯହିଁ ବାସ

ଅବ୍ୟକ୍ତ ଅନନ୍ତ କାରଣ
ଭଜଇଁ ତୋହର ଚରଣ । ୧୭ ।
ବ୍ରହ୍ମା ଶିବର ପର ତୁହି
ପ୍ରକୃତି ଥାଇ ତୋର ତହିଁ
ଜଗତପାବନ ତୋର ନାମ
ତୋ ନାମେ ଏ ଭବ ଖଣ୍ଡନ

ଯାହାର ନାମ ଗୁଣ କର୍ମ
ମନ ବଚନେ ନୋହେ ଗମ୍ୟ
ଅପରେ ମାୟାଗୁଣେ ଛନ୍ନ
ସଂସାର କରୁଅଛୁ ବନ୍ଧି । ୧୮,୧୯

ଅସଦ୍‌ଦୃଶୋ ଯଃ ପ୍ରତିଭାତି ମାୟୟା କ୍ଷୀବେବ ମଧ୍ୱାସବତାମ୍ରଲୋଚନଃ ।
ନ ନାଗବଧ୍ୱୋଽର୍ହଣ ଈଶିରେ ହ୍ରିୟା ଯତ୍‌ପାଦୟୋ ସ୍ପର୍ଶନଧର୍ଷିତେନ୍ଦ୍ରିୟାଃ ।୨୦।
ଯମାହୁରସ୍ୟ ସ୍ଥିତିଜନ୍ମସଂଯମଂ ତ୍ରିଭିର୍ବିହୀନଂ ଯମନନ୍ତମୃଷୟଃ ।
ନ ବେଦ ସିଦ୍ଧାର୍ଥମିବ କ୍ୱଚିତ୍ ସ୍ଥିତଂ ଭୂମଣ୍ଡଳଂ ମୂର୍ଦ୍ଧସହସ୍ରଧାମସୁ । ୨୧ ।
ଯସ୍ୟାଦ୍ୟ ଆସୀଦ୍ ଗୁଣବିଗ୍ରହୋ ମହାନ୍ ବିଜ୍ଞାନଧିଷ୍ଣ୍ୟୋ ଭଗବାନଜଃ କିଲ ।
ଯତ୍‌ସମ୍ଭବୋଽହଂ ତ୍ରିବୃତା ସ୍ୱତେଜସା ବୈକାରିକଂ ତାମସମୈନ୍ଦ୍ରିୟଂ ସୃଜେ ।୨୨।
ଏତେ ବୟଂ ଯସ୍ୟ ବଶେ ମହାତ୍ମନଃ ସ୍ଥିତାଃ ଶକୁନ୍ତା ଇବ ସୂତ୍ରୟନ୍ତ୍ରିତାଃ ।
ମହାନହଂବୈକୃତତାମସେନ୍ଦ୍ରିୟାଃ ସୃଜାମ ସର୍ବେ ଯଦନୁଗ୍ରହାଦିଦମ୍ । ୨୩ ।

---

ଅସଦ୍ ଦୃଷ୍ଟି ସମ୍ପନ୍ନ ବ୍ୟକ୍ତିମାନଙ୍କ ନିକଟରେ ଯେ ନିଜର ମାୟାଦ୍ୱାରା ମତ୍ତବ୍ୟକ୍ତି ତୁଲ୍ୟ ମଧୁ ଓ ଆସବ ସେବନରେ ଆରକ୍ତନୟନରୂପେ ପ୍ରତିଭାତ ହୁଅନ୍ତି ଏବଂ ନାଗପତ୍ନୀଗଣ ପୂଜା କାଳରେ ଯାହାଙ୍କର ପାଦସ୍ପର୍ଶରେ ବିକଳେନ୍ଦ୍ରିୟ ହେବାରୁ ଲଜ୍ଜାରେ ପୂଜାଦି ଦ୍ୱାରା ଅର୍ଚ୍ଚନା କରିବାକୁ ସମର୍ଥହୋଇ ନ ଥିଲେ, କେଉଁବ୍ୟକ୍ତି ତାହାଙ୍କର ସମାଦର ନ କରିବ ? । ୨୦ ।

ଋଷିମାନେ ଜନ୍ମ, ସ୍ଥିତି, ଲୟ ବର୍ଜ୍ଜିତ ଯେଉଁ ଅନନ୍ତଙ୍କୁ ଏହି ବିଶ୍ୱର ସୃଷ୍ଟି ସ୍ଥିତିର କାରଣ ବୋଲି ଗ୍ରହଣ କରିଥାନ୍ତି ଏବଂ ଯେ ସହସ୍ର ମସ୍ତକ ସ୍ୱରୂପ ଗୃହ ମଧ୍ୟରେ କୌଣସି ଗୋଟିଏ ସ୍ଥାନରେ ସର୍ଷପ ତୁଲ୍ୟ ଭୂମଣ୍ଡଳ କେଉଁସ୍ଥାନରେ ଅବସ୍ଥିତ ତାହାର ଅନୁସନ୍ଧାନ ମଧ୍ୟ କରନ୍ତି ନାହିଁ । ୨୧ ।

ଯାହା ମହତ୍ତତ୍ତ୍ୱ ନାମରେ କଥିତ ତାହା ତୁମ୍ଭର ଆଦ୍ୟ ଗୁଣମୟ ବିଗ୍ରହ । ସତ୍ତ୍ୱଗୁଣ, ସତ୍ତ୍ୱଗୁଣ ତାହାଙ୍କର ଆଶ୍ରୟ, ସେ ଭଗବାନ୍ ବ୍ରହ୍ମା, ମୁଁ ରୁଦ୍ର ସେହି ବ୍ରହ୍ମାଙ୍କଠାରୁ ଉତ୍ପନ୍ନ, ମୁଁ ତ୍ରିଗୁଣାତ୍ମକ ସ୍ୱୀୟ ବଳଦ୍ୱାରା ଅର୍ଥାତ୍ ଅହଙ୍କାର ଦ୍ୱାରା ସାତ୍ତ୍ୱିକ ଦେବତାଗଣ ତାମସ ଭୂତଗଣ ଓ ଇନ୍ଦ୍ରିୟଗଣଙ୍କୁ ସୃଷ୍ଟି କରିଥାଏ । ୨୨ ।

ବ୍ରହ୍ମା, ମୁଁ, ଦେବଗଣ, ଇନ୍ଦ୍ରିୟଗଣ ଓ ଭୂତଗଣ ଯେଉଁ ମହାପୁରୁଷଙ୍କର ଚିନ୍ମୟ ଶକ୍ତିଦ୍ୱାରା ନିୟନ୍ତ୍ରିତ ହୋଇ ସୂତ୍ରବଦ୍ଧ ପକ୍ଷୀଗଣ ତୁଲ୍ୟ ଅବସ୍ଥାନ କରୁଅଛୁ ଏବଂ ତାଙ୍କର ଅନୁଗ୍ରହରେ ଆମ୍ଭେମାନେ ଏହି ଜଗତ ସୃଷ୍ଟି କରୁଅଛୁଁ । ୨୩ ।

---

ମଧୁଆସବେ ତାମ୍ରବର୍ଣ୍ଣ
ଶୋଭଇ ଯାହାର ଲୋଚନ
ଦିଶଇ ଅତି ଭୟଙ୍କର
ନାଗବଧୂଙ୍କ ମନୋହର
ଯାହାର ସଦୃଶ ଅପରେ
ନାହିଁ ଏ ବ୍ରହ୍ମାଣ୍ଡ ଭିତରେ ।୨୦।
ଉତ୍ପତ୍ତି ପ୍ରଳୟ ପାଳନ
ଏ ସବୁ ଯାହାର ଭିଆଣ

ଯାହାର ଆଦି ଅନ୍ତ ନାହିଁ
ଅନନ୍ତ ନାମ ସେ ବୋଲାଇ
ଯାର ଅସଂଖ୍ୟ ଶିରେ ମହୀ
ସର୍ଷପ ପ୍ରାୟେ ବିରାଜଇ ।୨୧।
ଯାହାର ଚକ୍ଷୁ ଜନ୍ମହୋଇ
ଅଜ ଏ ସଂସାର କରଇ
ବ୍ରହ୍ମାଦି ଆମ୍ଭେ ଯେ ସକଳେ
ସେବୁଛୁଁ ଯାର ପାଦତଳେ

ରଜ୍ଜୁ ବନ୍ଧନ ପ୍ରାୟ ହୋଇ
ଯନ୍ତ୍ରିତ ହୋଇ ଅଛୁଁ ରହି
ଅନୁଗ୍ରହରୁ ଯାହାର
ଭିଆଣ କରୁ ଏ ସଂସାର
ତ୍ରିଗୁଣ ସଙ୍ଗତେ ବନ୍ଧନ
ଯାର ମାୟାରେ ପ୍ରାଣିମାନ
ତ୍ରିଗୁଣ ବଶେ ମୋହ ହୋଇ
ତାହାର ତତ୍ତ୍ୱ ନ ଜାଣଇ

ଯନ୍ନିର୍ମିତାଂ କର୍ହ୍ୟପି କର୍ମ୍ମପର୍ବଣୀଂ ମାୟାଂ ଜନୋଽୟଂ ଗୁଣସର୍ଗମୋହିତଃ ।
ନ ବେଦ ନିସ୍ତାରଣଯୋଗମଞ୍ଜସା ତସ୍ମୈ ନମସ୍ତେ ବିଲୟୋଦୟାତ୍ମନେ । ୨୪ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ
ଭୁବନକୋଶେ ସଙ୍କର୍ଷଣସ୍ତୋତ୍ରଂ ନାମ ସପ୍ତଦଶୋଽଧ୍ୟାୟଃ । ୧୭ ।

---

ଏହି ମାୟା ଭୂମି ଉଡତ, କର୍ମମାନ ତାହାର ଗଣ୍ଠି । ଗୁଣସୃଷ୍ଟ ବସ୍ତୁମାନଙ୍କରେ ମୋହିତ ହୋଇ ଲୋକମାନେ କଦାପି ଭୂମିର ଏହି ମାୟାକୁ ଅନାୟାସରେ ଜାଣି ପାରନ୍ତି ନାହିଁ ଏବଂ ଏହି ବିଶ୍ୱର ବିଲୟ ଓ ଉତ୍ପତ୍ତି ଯାହାଙ୍କଠାରୁ, ସେହି ଭଗବାନ୍ ସଙ୍କର୍ଷଣଙ୍କୁ ମୁଁ ନମସ୍କାର କରୁଅଛି । ୨୪ ।

---

ତେସନ ମାୟାକୁ ବିସ୍ତାରି
ଯେ ପ୍ରଭୁ ଜଗତେ ବିହରି
ତାହାଙ୍କୁ ମୋର ନମସ୍କାର
ଯେ ପ୍ରଭୁ ଜଗତଠାକୁର ।୨୨-୨୪

ଶୁକଦେବ ଶୁଣ ଏହୁ ବାଣୀ
ପଞ୍ଚମସ୍କନ୍ଧେ ସରିମାଣି
ସେ ପ୍ରଭୁ ଚରଣାରବିନ୍ଦେ
ମନ ଜନ୍ମେଣି ଅପ୍ରମାଦେ

କହଇ ବିପ୍ର ଜଗନ୍ନାଥ
ସୁକଜନେ ଶୁଣ ଏକଚିତ୍ତ
ମୁହିଁ ପାମର ଦୁରାଚାର
ହେନାଥ ମୋତେ କୃପାକର ।



**ବିଶଦାର୍ଥ :—**

ଏହି ଅଧ୍ୟାୟରେ ଆକାଶ ଗଙ୍ଗାଙ୍କର ବିଶଦ ବିବରଣ ବର୍ଣ୍ଣିତ ହୋଇଅଛି । ବଳି ନାମକ ଅସୁର ନିଜ ପ୍ରଭାବରେ ଦେବଗଣଙ୍କୁ ପରାଜିତ କରି ସ୍ୱର୍ଗରେ ଇନ୍ଦ୍ରପଦ ଲାଭ କରିବାକୁ ବାଞ୍ଛା କରନ୍ତେ ଦେବହିତକାମୀ ଭଗବାନ୍ ନାରାୟଣ କଶ୍ୟପ ଋଷିଙ୍କ ଗୃହରେ ମାନବ ରୂପରେ ଜନ୍ମଗ୍ରହଣ କରିଥିଲେ । ସେହି ବଳୀର ପ୍ରଭାବ ଖର୍ବ କରିବା ନିମନ୍ତେ ଭଗବାନ୍ ବାମନ ରୂପରେ ଅବତୀର୍ଣ୍ଣ ହୋଇଥିଲେ । ବଳି ତାହାଙ୍କର ମାୟା ଭେଦ କରି ନ ପାରି ମାୟା ମୁଗ୍ଧ ହୋଇ ତ୍ରିପାଦ ଭୂମିଦାନ କରିବାକୁ ସ୍ୱୀକାର କରିଥିଲେ । ଏହି ସମୟରେ ଗଙ୍ଗା ବିଷ୍ଣୁଙ୍କର ନଖ କୋଣରେ ଅବସ୍ଥାନ କରୁଥିଲେ । ସେହି ଗଙ୍ଗାତୀରରେ ଅବସ୍ଥାନ କରି ରାଜା ପରୀକ୍ଷିତ ଇହଲୋକରୁ ମୁକ୍ତିଲାଭ କରିବେ ବୋଲି ଭଗବତ୍ ଚରିତ ଶ୍ରବଣ କରୁଥିବାର ଶ୍ରୀ ଶୁକଦେବ ସ୍ମରଣ କରାଇ ଦେଇଥିଲେ ।



# ଅ ଷ୍ଟା ଦ ଶ ଅ ଧ୍ୟା ୟ ।

ଅଷ୍ଟାଦଶେ ତତୋ ମେରୋଃ ପୂର୍ବାଦିକ୍ରମତସ୍ତିଷୁ ।
ତ୍ରିଷୁ ଚୋତ୍ତରବର୍ଷେଷୁ ସେବ୍ୟସେବକବର୍ଣ୍ଣନମ୍ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀ ଶୁକ ଉବାଚ ।

ତଥା ଚ ଭଦ୍ରଶ୍ରବା ନାମ ଧର୍ମସୁତସ୍ତତ୍କୁଲପତୟଃ ପୁରୁଷା ଭଦ୍ରାଶ୍ୱବର୍ଷେ ସାକ୍ଷାଦ୍‌ଭଗବତୋ ବାସୁଦେବସ୍ୟ ପ୍ରିୟାଂ ତନୁଂ ଧର୍ମମୟୀଂ ହୟଶୀର୍ଷାଭିଧାନାଂ ପରମେଣ ସମାଧିନା ସନ୍ନିଧାପ୍ୟେଦମଭିଗୃଣନ୍ତ ଉପଧାବନ୍ତି । ୧ ।

ଶ୍ରୀଭଦ୍ରଶ୍ରବସ ଊଚୁଃ ।

ଓଁ ନମୋ ଭଗବତେ ଧର୍ମାୟାତ୍ମବିଶୋଧନାୟ ନମ ଇତି । ୨ ।

---

## ବର୍ଷ ପରିବର୍ତ୍ତନ ।

ଅଷ୍ଟାଦଶ ଅଧ୍ୟାୟରେ ମେରୁପର୍ବତର ପୂର୍ବାଦି କ୍ରମରେ ଚତୁଷ୍ପାର୍ଶ୍ୱସ୍ଥ ବର୍ଷମାନଙ୍କର ବିଷୟ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀଶୁକଦେବ କହିଲେ :—

ହେ ରାଜନ୍ ! ଭଦ୍ରାଶ୍ୱବର୍ଷରେ ଭଦ୍ରଶ୍ରବା ନାମକ ବର୍ଷପତି ଅବସ୍ଥାନ କରନ୍ତି, ତାହାଙ୍କର ମୁଖ୍ୟ ସେବକଗଣ ସାକ୍ଷାତ୍ ଭଗବାନ୍ ବାସୁଦେବଙ୍କର ହୟଶୀର୍ଷ ନାମ୍ନୀ ପ୍ରିୟ ଧର୍ମମୟୀ ମୂର୍ତ୍ତିକୁ ପରମସମାଧିରେ ଆବିର୍ଭାବିତ କରାଇ ବକ୍ଷ୍ୟମାଣ ମନ୍ତ୍ରଦ୍ୱାରା ଉପାସନା କରିଥାନ୍ତି । ଭଦ୍ରଶ୍ରବା ପ୍ରଭୃତି କହିଥାନ୍ତି— ଆତ୍ମମାନେ ଆତ୍ମ ବିଶୋଧନକାରୀ ଭଗବାନ୍ ଧର୍ମଙ୍କୁ ନମସ୍କାର କରୁଅଛୁ । ୧,୨ ।

---

ମେରୁର ଚାରିପାଶ ବର୍ଷ— ଚରିତ ବୋଲେ ଅଷ୍ଟାଦଶ ॥

ଶ୍ରୀ ଶୁକ ଉବାଚ—

ଭଦ୍ରାଶ୍ୱ ବରଷ ବିଧାନ
ରାଜନ ଶୁଣ ସାବଧାନ
ଭଦ୍ରଶ୍ରବା ନାମ ତାଙ୍କର
ସାକ୍ଷାତେ ଧର୍ମର କୁମର
ତାହାର କୁଳେ ହୋଇ ଜାତ
ଯେତେକ ପୁରୁଷ ବିଦିତ
ଅଖିଳ ବ୍ରହ୍ମାଣ୍ଡ କାରଣ
ଅନନ୍ତ ପ୍ରଭୁ ନାରାୟଣ
ତାହାଙ୍କ ସନ୍ତୋଷ କାରଣ
ପରମ ସମାଧି ବିଧାନ
ପ୍ରଭୁ ଯେ ଧର୍ମରୂପ ହୋଇ
ଅଛନ୍ତି ପ୍ରାଣିହିତ ପାଇଁ
ତାହାଙ୍କ ସେବା ଅବିରତେ
କରନ୍ତି ଯେ ଯାହାର ମତେ
ପରମ ପ୍ରିୟରୂପ ଧରି
ଏହି ସ୍ତୁତିରେ ସ୍ତୁତି କରି । ୧ ।
ଭଦ୍ରଶ୍ରବସ ପ୍ରିୟତନୁ
ତାଙ୍କ ମହିମା କେବା ଜାଣୁ

ଭଦ୍ରଶ୍ରବସ ଉଚୁଃ—

ନମଇଁ ଧର୍ମ ଅବତାର
ଆତ୍ମା ଶୋଧନ ପ୍ରାଣିଙ୍କର । ୨ ।

ଅହୋ ବିଚିତ୍ରଂ ଭଗବଦ୍ବିଚେଷ୍ଟିତଂ ଘ୍ନନ୍ତଂ ଜନୋଽୟଂ ହି ମିଷନ୍ ନ ପଶ୍ୟତି ।
ଧ୍ୟାୟନ୍ନସଦ୍ୟର୍ହି ବିକର୍ମ ସେବିତୁଂ ନିର୍ହୃତ୍ୟ ପୁତ୍ରଂ ପିତରଂ ଜିଜୀବିଷତି । ୩ ।
ବଦନ୍ତି ବିଶ୍ୱଂ କବୟଃ ସ୍ମ ନଶ୍ୱରଂ ପଶ୍ୟନ୍ତି ଚାଧ୍ୟାତ୍ମବିଦୋ ବିପଶ୍ଚିତଃ ।
ତଥାପି ମୁହ୍ୟନ୍ତି ତବାଜ ମାୟୟା ସୁବିସ୍ମିତଂ କୃତ୍ୟମଜଂ ନତୋଽସ୍ମି ତମ୍ । ୪ ।
ବିଶ୍ୱୋଦ୍ଭବସ୍ଥାନନିରୋଧକର୍ମ ତେ ହ୍ୟକର୍ତୁରଙ୍ଗୀକୃତମପ୍ୟପାବୃତଃ ।
ଯୁକ୍ତଂ ନ ଚିତ୍ରଂ ତ୍ୱୟି କାର୍ଯ୍ୟକାରଣେ ସର୍ବାତ୍ମନି ବ୍ୟତିରିକ୍ତେ ଚ ବସ୍ତୁନି ।୫।

---

ଭଗବାନଙ୍କର ଲୀଳା କି ବିଚିତ୍ର ? ମୃତ୍ୟୁ ମନୁଷ୍ୟମାନଙ୍କୁ ପ୍ରତି ମୁହୂର୍ତ୍ତରେ ବିନାଶ କରୁଅଛି, ତଥାପି ସେମାନେ ତାହା ଦେଖି ସୁଦ୍ଧା ଦେଖୁନାହାନ୍ତି । ଏହି ମନୁଷ୍ୟମାନେ ପ୍ରତିମୁହୂର୍ତ୍ତରେ ହଂସାହାସି ମୃତ୍ୟୁକୁ ଦେଖିସୁଦ୍ଧା ସେ ବିଷୟରେ ଚିନ୍ତା କରନ୍ତି ନାହିଁ, ଲୋକେ ଶିଶୁସନ୍ତାନ ଓ ବୃଦ୍ଧ ପିତାଙ୍କୁ ଦଗ୍‌ଧ କରି ଆସିବାର ପରମୁହୂର୍ତ୍ତରେ ଅତି ତୁଚ୍ଛ ବିଷୟ ସୁଖଭୋଗ ନିମନ୍ତେ ପାପବିଷୟ ଚିନ୍ତା କରିଥାନ୍ତି ଏବଂ ପୁତ୍ର ବା ପୁତ୍ରର ତ୍ୟକ୍ତ ସମ୍ପତ୍ତିରେ ସୁଖରେ ବଞ୍ଚିରହିବାକୁ ଚେଷ୍ଟାକରନ୍ତି; ଏପରି ଘଟଣା ଅତିବିଚିତ୍ର । ୩ ।

ହେ ଭଗବାନ୍ ! ବେଦଜ୍ଞପଣ୍ଡିତମାନେ ଏହି ବିଶ୍ୱକୁ ନଶ୍ୱର ବୋଲି ଜ୍ଞାନକରିଥାନ୍ତି ଏବଂ ଅଧ୍ୟାତ୍ମ ତତ୍ତ୍ୱଜ୍ଞ ପଣ୍ଡିତମାନେ ସମାଧି ଦ୍ୱାରା ଏହି ବିଶ୍ୱର ନଶ୍ୱରତା ପ୍ରତ୍ୟକ୍ଷ କରିଥାନ୍ତି । ହେ ଅନନ୍ତ ! ତୁମ୍ଭର ମାୟାରେ ସେମାନେ ମୁଗ୍‌ଧ ହୁଅନ୍ତି, ଆପଣଙ୍କର ଏ କାର୍ଯ୍ୟ ଅତି ବିଚିତ୍ର, ସେହି ବିସ୍ମୟାତିଶାୟୀ ଆପଣଙ୍କୁ ମୁଁ ନମସ୍କାର କରୁଅଛି । ୪ ।

ହେ ଭଗବନ୍ ! ବେଦରେ ଉକ୍ତ ହୋଇଅଛି ଯେ ତୁମ୍ଭେ ଅକର୍ତ୍ତା ଓ ମାୟାବରଣ ରହିତ ହେଲେ ମଧ୍ୟ ଏହି ବିଶ୍ୱର ସୃଷ୍ଟି, ସ୍ଥିତି, ପ୍ରଳୟ କାର୍ଯ୍ୟ କରିଥାଅ, ଏହା ତୁମ୍ଭର ଗୋଟିଏ ବିଚିତ୍ର ଲୀଳା ବୋଲି ଲୋକ ଚକ୍ଷୁରେ ପ୍ରତୀୟମାନ ହେଲେ ମଧ୍ୟ ତୁମ୍ଭଠାରେ ବିଚିତ୍ରତା କିଛି ମାତ୍ର ନାହିଁ । କାରଣ ତୁମ୍ଭେ ମାୟା ଅବଲମ୍ବନ କରି ସୃଷ୍ଟି ଆଦି କର୍ମ କରିଥାଅ, ସୁତରାଂ ତୁମ୍ଭେ ବିଶ୍ୱର କାରଣ, ସମସ୍ତଙ୍କର ଅଗୋଚର ନିରୁପାଧୀଶ୍ୱର ତୁମ୍ଭେ ବିରାଜମାନ ରହିଅଛ ଓ ମାୟାବରଣ ବିରହିତ ତୁମ୍ଭେ କେବଳ ତୁମ୍ଭରଠାରେ ଏହି ବିରୁଦ୍ଧଭାବ ସମ୍ଭବ ହୋଇ ପାରେ । ୫ ।

---

ଏତ ଏ ଆଶ୍ଚର୍ଯ୍ୟ ମହତ
ପ୍ରଭୁର ଯେତେକ ବିଚେଷ୍ଟିତ
ଶରୀର ମାତ୍ରେ ଯେ ଅଛଇ
ତଥାପି ପ୍ରାଣୀ ନ ଜାଣଇ
ଯାର ମାୟାରେ ମୋହ ହୋଇ
ମୃତ୍ୟୁକୁ ଦେଖି ନ ଦେଖଇ
ବୃଦ୍ଧ ପିତା ବା ପୁତ୍ର ବାଳେ
ମରନ୍ତେ ଦହଣ ଅନଳେ
ଆପଣେ ମଣି ଚିରଞ୍ଜୀବ
ପାପ ଆଚରେ ମୂଢ଼ ଜୀବ । ୩ ।
ମିଥ୍ୟା ସଂସାର ମୂର୍ଖ ଜନେ
ସତ୍ୟ କରନ୍ତି ଅନୁକ୍ଷଣେ
ପଣ୍ଡିତ ଯେ ଏହା ନ ଶୁଣି
ମିଥ୍ୟା ଏ ମନେ ପରମାଣି
ତଥାପି ଯାହାର ମାୟାରେ
ପଣ୍ଡିତେ ଭ୍ରମନ୍ତି ସଂସାରେ
ସେ ଅଜ ବ୍ରହ୍ମାଣ୍ଡଠାକୁର
ତାହାଙ୍କୁ କରୁଁ ନମସ୍କାର । ୪ ।
ସକଳ ଆବରଣ ହୋଇ
ଯାହାର ଆବରଣ ନାହିଁ
ଏ କଥା ଉଚିତ ତୋହର
କାର୍ଯ୍ୟ କାରଣ ତୁ ଠାକୁର
ନାନା ଶରୀରବନ୍ତ ହୋଇ
ସର୍ବ ଭୋଗକୁ ଭୁଞ୍ଜ, ତୁହି । ୫ ।

ବେଦାନ୍ ଯୁଗାନ୍ତେ ତମସା ତିରସ୍କୃତାନ୍ ରସାତଳାଦ୍‌ଯୋ ନୃତୁରଙ୍ଗବିଗ୍ରହଃ ।
ପ୍ରତ୍ୟାଦଦେ ବୈ କବୟେଽଭିଯାଚତେ ତସ୍ମୈ ନମସ୍ତେଽବିତଥେହିତାୟ ଇତି ।୬।

ହରିବର୍ଷେ ଚାପି ଭଗବାନ୍ ନରହରିରୂପେଣାସ୍ତେ ତଦ୍ରୂପଗ୍ରହଣନିମିତ୍ତମୁତ୍ତରତ୍ରାଭିଧାସ୍ୟେ ତଦ୍ଦୟିତଂ ରୂପଂ ମହାପୁରୁଷଗୁଣଭାଜନୋ ମହାଭାଗବତୋ ଦୈତ୍ୟଦାନବକୁଳତୀର୍ଥୀକରଣଶୀଳାଚରିତଃ ପ୍ରହ୍ଲାଦୋଽବ୍ୟବଧାନାନନ୍ୟଭକ୍ତିଯୋଗେନ ସହ ତଦ୍‌ବର୍ଷପୁରୁଷୈରୁପାସ୍ତେ ଇଦଞ୍ଚୋଦାହରତି । ୭ ।

ଓଁ ନମୋ ଭଗବତେ ଶ୍ରୀନରସିଂହାୟ ନମସ୍ତେ ଜସ୍ତେଜସେ ଆବିରାବିର୍ଭବ ବଜ୍ରନଖ ବଜ୍ରଦଂଷ୍ଟ୍ର କର୍ମାଶୟାନ୍ ରନ୍ଧୟ ରନ୍ଧୟ ତମୋ ଗ୍ରସ ଗ୍ରସ ଓଁ ସ୍ୱାହା ଅଭୟମଭୟମାତ୍ମନି ଭୂୟିଷ୍ଠାଃ ଓଁ କ୍ଷ୍ରୌମ୍ ଇତି । ୮ ।

---

ଯୁଗାନ୍ତ କାଳରେ ତମୋଗୁଣର ଆଧାର ଅସୁରଗଣ ଯେତେବେଳେ ବେଦ ବିନାଶ କଲେ ଅଥବା ପୃଥିବୀ ଅଜ୍ଞାନ ଅନ୍ଧକାରରେ ଆଚ୍ଛନ୍ନ ହୋଇଥିଲା । ସେତେବେଳେ ତୁମ୍ଭେ ହୟଶୀର୍ଷ ଶରୀର ଗ୍ରହଣକରି ରସାତଳରୁ ବେଦକୁ ଉଦ୍ଧାର କରିଥିଲ ଏବଂ ବ୍ରହ୍ମାଙ୍କର ପ୍ରାର୍ଥନା ପୂରଣ କରି ତାହା ତାଙ୍କୁ ଦାନ କରିଥିଲ ମୁଁ ସେହି ସତ୍ୟସଙ୍କଳ୍ପ ଭଗବାନ୍ ହୟଶୀର୍ଷଙ୍କୁ ନମସ୍କାର କରୁଅଛି । ୬ ।

ହରି ବର୍ଷରେ ଭଗବାନ ନୃସିଂହରୂପେ ବିରାଜମାନ କରୁଅଛନ୍ତି, ପରେ ସପ୍ତମ ସ୍କନ୍ଧରେ ଏହି ଅବତାର ଗ୍ରହଣର ଉଦ୍ଦେଶ୍ୟ ବର୍ଣ୍ଣିତ ହେବ, ମହାପୁରୁଷଗଣଙ୍କର ଯେଉଁସବୁ ଗୁଣଥାଏ, ପ୍ରହ୍ଲାଦ ସେହି ସବୁ ଗୁଣର ଆଶ୍ରୟ ଓ ପରମ ଭାଗବତ । ତାହାଙ୍କର ଚରିତ୍ର ଓ ଆଚରଣ ଦାନବ କୁଳକୁ ପବିତ୍ର କରିଥିଲା, ଦୈତ୍ୟ ଦାନବ କୁଳର ତୀର୍ଥ ସ୍ୱରୂପ ସେ ଏହି ବର୍ଷ ପୁରୁଷମାନଙ୍କ ସହିତ ନିରବଚ୍ଛିନ୍ନ ଭାବରେ ଅନନ୍ୟଭକ୍ତି ଯୋଗରେ ଏହି ଦଇତାରୂପଧାରୀଙ୍କର ଉପାସନା କରିଥିଲେ ଏବଂ ସେ ଏହିକଥା କହିଥିଲେ :— । ୭ ।

ମୁଁ ତେଜର ତେଜସ୍ୱରୂପ ସେହି ଭଗବାନ୍ ନୃସିଂହଙ୍କୁ ନମସ୍କାର କରେ । ହେ ବଜ୍ରନଖ । ହେ ବଜ୍ରଦଂଷ୍ଟ୍ର ! ଆପଣ ଆବିର୍ଭୂତ ହୁଅନ୍ତୁ, ଆମ୍ଭମାନଙ୍କ କର୍ମବାସନା ଦଗ୍ଧ କରନ୍ତୁ, ଅନ୍ଧକାରକୁ ଗ୍ରାସ କରନ୍ତୁ, ହେ ଭଗବନ୍ ! ଆମ୍ଭମାନଙ୍କ ମନରେ ଅଭୟ ଦାନ କରନ୍ତୁ, ମୁଁ ଆପଣଙ୍କୁ ନମସ୍କାର କରେ ।୮।

---

ଦୈତ୍ୟ ଯେ ବେଦକୁ ହରିଲେ
ନେଇ ସମୁଦ୍ରେ ମାଡ଼ିଦେଲେ
ପ୍ରଳୟ ଅବସାନେ ତୁହି
ହୟଗ୍ରୀବ ମୂର୍ତ୍ତିକି ବହି
ରସାତଳରୁ ଉଦ୍ଧରିଲୁ
ବ୍ରହ୍ମା ମାଗନ୍ତେ ତାଙ୍କୁ ଦେଲୁ
ତୋତେ ଆମ୍ଭର ନମସ୍କାରି
ତୁ ନାଥ ସକଳ ଈଶ୍ୱର
ଏମନ୍ତେ ନାନାସ୍ତୁତି ମତେ
ସେବନ୍ତି ତାଙ୍କ ପାଦଗତେ ।୬।

ନୃସିଂହ ନାମେ ଯେ ଠାକୁର
ଅଛନ୍ତି ହରିବରଷର
ତାହାଙ୍କ ରୂପର କାରଣ
ପଛେ କହିବା ହେ ରାଜନ
ପରମ ଭାଗବତ ଜନ
ମହାପୁରୁଷ ହେ ରାଜନ
ଦୈତ୍ୟ ଦାନବ-କୁଳମଣି
ସୁଶୀଳ ସାଧୁ ସତ୍ୟବାଣୀ
ପ୍ରହ୍ଲାଦ ନାମ ବହିଲ
ପ୍ରଭୁର ପ୍ରିୟ ସେ ଅଟଇ

ଇନ୍ଦ୍ରିୟଗଣଙ୍କୁ ଜିଣିବ
ଚରିତ୍ର ମନ ସ୍ଥିରକରି
ସେ ସ୍ଥଳଲୋକଙ୍କ ସହିତେ
ପ୍ରଭୁଙ୍କୁ ଭଜନ୍ତି ଅବିରତେ
ଏହି ସ୍ତୁତିରେ ସ୍ତୁତିକରି
ସେବନ୍ତି ପ୍ରଭୁ ନରହରି ।୭।
ନମସ୍ତେ ପ୍ରଭୁ ଦଇତାରି
ଯାହାର ତେଜେ ଜଗ ପୂରି
ନଖଙ୍କ ତେଜ ଖରଶାଣ
ରିପୁକୁଳ କରେ ନାଶ

ସ୍ୱସ୍ତ୍ୟସ୍ତୁ ବିଶ୍ୱସ୍ୟ ଖଳଃ ପ୍ରସୀଦତାଂ ଧ୍ୟାୟନ୍ତୁ ଭୂତାନି ଶିବଂ ମିଥୋ ଧିୟା ।
ମନଶ୍ଚ ଭଦ୍ରଂ ଭଜତାଦଧୋକ୍ଷଜେ ଆବେଶ୍ୟତାଂ ନୋ ମତିରପ୍ୟହୈତୁକୀ ।୯।
ମାଗାରଦାରାତ୍ମଜବିତ୍ତବନ୍ଧୁଷୁ ସଙ୍ଗୋ ଯଦି ସ୍ୟାଦ୍‌ଭଗବତ୍‌ ପ୍ରିୟେଷୁ ନଃ ।
ଯଃ ପ୍ରାଣବୃତ୍ତ୍ୟା ପରିତୁଷ୍ଟ ଆତ୍ମବାନ୍‌ ସିଦ୍ଧ୍ୟତ୍ୟଦୂରାନ୍ନ ତଥେନ୍ଦ୍ରିୟପ୍ରିୟଃ । ୧୦ ।
ଯତ୍‌ସଙ୍ଗଲବ୍‌ଧଂ ନିଜବୀର୍ଯ୍ୟବୈଭବଂ ତୀର୍ଥଂ ମୁହୁଃ ସଂସ୍ପୃଶତାଂ ହି ମାନସମ୍‌ ।
ହରତ୍ୟଜୋଽନ୍ତଃ ଶ୍ରୁତିଭିର୍ଗତୋଽଙ୍ଗଜଂ କୋ ବୈ ନ ସେବେତ ମୁକୁନ୍ଦବିକ୍ରମମ୍‌ ।୧୧।
ଯସ୍ୟାସ୍ତି ଭକ୍ତିର୍ଭଗବତ୍ୟକିଞ୍ଚନା ସର୍ବୈର୍ଗୁଣୈସ୍ତତ୍ର ସମାସତେ ସୁରାଃ ।
ହରାବଭକ୍ତସ୍ୟ କୁତୋ ମହଦ୍‌ଗୁଣାଃ ମନୋରଥେନାସତି ଧାବତୋ ବହିଃ ।୧୨।

ହେ ଈଶ ! ବିଶ୍ୱର ମଙ୍ଗଳ ହେଉ, ଖଳବ୍ୟକ୍ତି ପ୍ରସନ୍ନ ହେଉନ୍ତୁ, ଅର୍ଥାତ୍‌ କ୍ରୂରତା ପରିତ୍ୟାଗ କରନ୍ତୁ, ପ୍ରାଣୀମାନେ ପରସ୍ପରର ମଙ୍ଗଳ ଚିନ୍ତା କରନ୍ତୁ ଏବଂ ସେମାନଙ୍କର ମନ ଉପଶମାଦି ପ୍ରାପ୍ତହେଉ ଆମ୍ଭେମାନେ ଅତ୍ୟନ୍ତ ନିଷ୍କାମ ହୋଇ ଭଗବାନ୍‌ ଅଧୋକ୍ଷଜଙ୍କ ଠାରେ ପ୍ରବିଷ୍ଟ ହେଉ । ୯ ।

ହେ ପ୍ରଭୋ ! ଯେପରି ଆମ୍ଭମାନଙ୍କର କୌଣସିଠାରେ ଆସକ୍ତି ନ ଜନ୍ମେ, ଯଦି ଆସକ୍ତି ଜନ୍ମେ ତେବେ ଯେପରି ଗୃହ, ସ୍ତ୍ରୀ, ପୁତ୍ର, ବିତ୍ତ, ଓ ବନ୍ଧୁମାନଙ୍କ ପ୍ରତି ଆସକ୍ତ ନ ହୋଇ ଭଗବଦ୍‌ଭକ୍ତମାନଙ୍କର ସଙ୍ଗ ଲାଭ କରୁ, ଯେ ପ୍ରାଣଧାରଣୋପଯୋଗୀ, ଆହାର ଦ୍ୱାରା ପରିତୁଷ୍ଟ ଥାଆନ୍ତି ଓ ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରନ୍ତି ସେ ଯେତେଶୀଘ୍ର ସିଦ୍ଧିଲାଭ କରନ୍ତି, ଗୃହାଦିପ୍ରତି ଆସକ୍ତ ବ୍ୟକ୍ତି ସେପରି ସିଦ୍ଧିଲାଭ କରି ପାରେ ନାହିଁ, ଯେ ଭଗବତ୍‌ ପ୍ରିୟଜନ ସଙ୍ଗଲବ୍ଧ ଭଗବଦ୍‌ ବୀର୍ଯ୍ୟ ବୈଭବ ଅର୍ଥାତ୍‌ ଗୋବର୍ଦ୍ଧନଧାରଣାଦି ପ୍ରଭାବୋତ୍କର୍ଷ ଯାହା ସତ୍ତ୍ୱଶୋଧକ ବୋଲି ତୀର୍ଥସ୍ୱରୂପ, ଏହା ଯେଉଁମାନେ ଶ୍ରବଣଦ୍ୱାରା ମନଯୋଗ ସହକାରେ ଶୁଣିଥାଆନ୍ତି ସେମାନଙ୍କ ମାନସ ଅଙ୍ଗଜ କାମନା ବାସନା ପ୍ରଭୃତି ମଳ, ଭଗବାନ୍‌ ଅଜ ବିଷ୍ଣୁ ଶ୍ରବଣପଥରେ ଅନ୍ତର ମଧ୍ୟରେ ପ୍ରବେଶ କରି ଦୂରୀଭୂତ କରନ୍ତି, ସେହି ମୁକୁନ୍ଦଙ୍କରବିକ୍ରମ ସେବା କେଉଁ ବ୍ୟକ୍ତି ନକରିବ ଏବଂ ତାଙ୍କର ପ୍ରଭାବ ଆଦି ଶ୍ରବଣ ନ କରିବ ? । ୧୦-୧୧ ।

ଯାହାଙ୍କର ଚିତ୍ତରେ ଭଗବାନ୍‌ଙ୍କ ପ୍ରତି ନିଷ୍କାମଭକ୍ତି ଜାତ ହୁଏ, ସୁରଗଣ ଧର୍ମଜ୍ଞାନ ଆଦି ସର୍ବଗୁଣ ସହିତ, ସେହି ବିଶୁଦ୍ଧ ଚିତ୍ତମଧ୍ୟରେ ବାସ କରିଥାନ୍ତି କିନ୍ତୁ ଯାହାଙ୍କର ଶ୍ରୀହରି ପାଦପଦ୍ମରେ ଭକ୍ତି ନାହିଁ, ଯାହାଙ୍କର ଚିତ୍ତ କାମନା ବଶୀଭୂତ ହୋଇ ବିଷୟସୁଖ ନିମିତ୍ତ ବହିର୍ମୁଖ ହୋଇ ଧାବିତ ହୋଇଥାଏ, ସେହି ଅଭକ୍ତମାନଙ୍କର ଚିତ୍ତରେ ମହାଜନମାନଙ୍କର ଜ୍ଞାନ ଓ ବୈରାଗ୍ୟ ଆଦି କିପରି ଉଦୟ ହୋଇପାରେ ? ।୧୨

କରାଳଦଂଷ୍ଟ୍ର ସେ ବଦନ
ଅଗ୍ନିର ପ୍ରାୟ ସେ ଲୋଚନ
ଯାହାର ନାମେ ଦୁଷ୍ଟ ଡରେ
ନମଇଁ ତାହାଙ୍କ ପୟରେ । ୮ ।
ହେନାଥ ତୋହର ପ୍ରସାଦେ
ପ୍ରାଣୀ ରହନ୍ତୁ ଅପ୍ରମାଦେ
ତୁମ୍ଭର ଅଭୟ ଚରଣେ
ମନ ମୋ ରହୁ ଅନୁକ୍ଷଣେ । ୯ ।

ଦାରାତନୟ ଗୃହେ ମୋର
ଏଣେ ମୋ ମନ ବିଘ୍ନକର
ତୁମ୍ଭର ଭକ୍ତଜନ ସଙ୍ଗେ
ସୁଖେ ବଞ୍ଚିବି ନାନାରଙ୍ଗେ
ଆମ୍ଭଙ୍କୁ ପ୍ରିୟ ଯେ ଅପରେ
ନାହିଁ ଏ ଅଖିଳ ସଂସାରେ
ସକଳ ଆତ୍ମା ତୁ ଠାକୁର
ଏଣୁ ତୁ ପ୍ରିୟ ପ୍ର...

ତୁମ୍ଭର ନାମର ସ୍ମରଣ
ଅଶେଷ ପରମ କାରଣ
ଏମନ୍ତ ଯାହାର ପ୍ରଭାବ
ତାହାଙ୍କୁ କେବାନସେବିବ ।୧୦,୧୧
ତୋହର ଚହିଁ ଭକ୍ତି ଯାର
ପୂଜ୍ୟ ସେ ଦେବମାନଙ୍କର
ସକଳଗୁଣ ତାଙ୍କଠାରେ
ଆଶ୍ରୟ କରନ୍ତି ଗର୍ବରେ ।୧୨।

ହରିର୍ହି ସାକ୍ଷାଦ୍‌ଭଗବାଞ୍ଛରୀରିଣାମାତ୍ମା ଝଷାଣାମିବ ତୋୟମୀପ୍‌ସିତମ୍ ।
ହିତ୍ୱା ମହାଂସ୍ତଂ ଯଦି ସଜ୍ଜତେ ଗୃହେ ତଦା ମହତ୍ତ୍ୱଂ ବୟସା ଦମ୍ପତୀନାମ୍ ।୧୩।
ତସ୍ମାଦ୍ରଜୋରାଗବିଷାଦମନ୍ୟୁମାନସ୍ପୃହାଭୟଦୈନ୍ୟାଦିମୂଳମ୍ ।
ହିତ୍ୱା ଗୃହଂ ସଂସୃତିଚକ୍ରବାଳଂ ନୃସିଂହପାଦଂ ଭଜତାକୁତୋଭୟମ୍ ଇତି ।୧୪।

କେତୁମାଲେଽପି ଭଗବାନ୍ କାମଦେବସ୍ୱରୂପେଣ ଲକ୍ଷ୍ମ୍ୟାଃ ପ୍ରିୟଚିକୀର୍ଷୟା ପ୍ରଜାପତେର୍ଦୁହିତୃଣାଂ ପୁତ୍ରାଣାଞ୍ଚ ତଦ୍‌ବର୍ଷପତୀନାଂ ପୁରୁଷାୟୁଷାହୋରାତ୍ରପରିସଂଖ୍ୟାନାନାଂ ଯାସାଂ ଗର୍ଭା ମହାପୁରୁଷମହାସ୍ତ୍ରତେଜସୋଦ୍‌ବେଜିତମନସାଂ ବିଧ୍ୱସ୍ତା ବ୍ୟସବଃ ସମ୍ବତ୍ସରାନ୍ତେ ବିନିପତନ୍ତି ।୧୫।

ମନୁଷ୍ୟମାନଙ୍କର ଆତ୍ମା ଜଳ ଓ ଜଳଜନ୍ତୁ ଇପ୍ସିତ, ସେହିପରି ପ୍ରାଣୀମାତ୍ରଙ୍କର ହରିଙ୍କର ସାକ୍ଷାତ ଆତ୍ମା ଓ ପ୍ରିୟ, ମହତ୍‌ବ୍ୟକ୍ତି ଯଦି ତାହାଙ୍କୁ ପରିତ୍ୟାଗ କରି ଗୃହରେ ଆସକ୍ତ ହୁଏ, ତାହାହେଲେ ସେ ଶୂଦ୍ରାଦି ତୁଲ୍ୟ କେବଳ ବୟସରେ ମହାନ୍ ହୋଇପାରେ ମାତ୍ର ଜ୍ଞାନାଦିଦ୍ୱାରା ମହାନ୍ ହୋଇ ନ ପାରେ । ଯେପରି ସାଧାରଣତଃ ସ୍ତ୍ରୀଲୋକମାନଙ୍କଠାରୁ ପୁରୁଷଙ୍କୁ ମହତ୍ତର କୁହାଯାଏ, କମ୍ବା ଅଳ୍ପ ବୟସ୍କ ଦମ୍ପତି ଅପେକ୍ଷା ବୃଦ୍ଧ ଦମ୍ପତିଙ୍କୁ ମହତ୍ତର ବୋଲି କୁହାଯାଇଥାଏ, ଏମାନେ ସେହିପରି ମହତ୍ ହୋଇପାରନ୍ତି ।୧୩

ସୁତରାଂ ହେ ଅସୁରଗଣ ! ଯାହା ତୃଷ୍ଣା ଅଭିଳାଷବଶ, କ୍ରୋଧ ବିଷାଦ, ମାନ, ସ୍ପୃହା, ଭୟ, ଓ ଦାରିଦ୍ର୍ୟର ମୂଳକାରଣ ଏବଂ ଯାହାଠାରୁ ଏହି ଜନ୍ମ ମରଣ ଅବ ସଂସାର ଅବିଚ୍ଛିନ୍ନ ଭାବରେ ଚଳୁଅଛି; ସେହି ଗୃହତ୍ୟାଗ କରି ଅଭୟ ସ୍ଥାନ ଶ୍ରୀ ନୃସିଂହଙ୍କ ପାଦପଦ୍ମ ଭଜନା କର । ୧୪ ।

କେତୁମାଳବର୍ଷରେ ଭଗବାନ୍ କାମଦେବ ସ୍ୱରୂପରେ ବାସ କରୁଅଛନ୍ତି, ସେଠାରେ ଲକ୍ଷ୍ମୀଦେବୀ ମଧ୍ୟ ବିରାଜିତା ଅଛନ୍ତି, ସମ୍ବତ୍ସର ନାମକ ପ୍ରଜାପତିଙ୍କର ପୁତ୍ର କନ୍ୟାଗଣ ଏହି ବର୍ଷର ଅଧିପତି, ଦିବସାଭିମାନିନୀ ଦେବଗଣ ପୁତ୍ର ଓ ରାତ୍ରାଭିମାନିନୀ ଦେବତାଗଣ କନ୍ୟା, ମନୁଷ୍ୟର ପରମାୟୁ ଶତବର୍ଷ ସୁତରାଂ ଏହି ପୁତ୍ର କନ୍ୟାଗଣଙ୍କ ସଂଖ୍ୟା ୩୬୦୦୦, ଭଗବାନ୍ ଲକ୍ଷ୍ମୀ ଦେବୀଙ୍କର ଓ ଏହିବର୍ଷ ପ୍ରତି ପୁତ୍ର କନ୍ୟାମାନଙ୍କର ପ୍ରିୟସାଧନ ନିମିତ୍ତ ଏହି ବର୍ଷରେ ବାସ କରୁଅଛନ୍ତି । ମହାପୁରୁଷ ଭଗବାନଙ୍କର କାଳଚକ୍ର ତେଜରେ ମନ ଉଦ୍‌ବେଗ ହୋଇଥାଏ, ତେଣୁ ମୂହୂର୍ତ୍ତ, ଲବ ପ୍ରଭୃତି ସେମାନଙ୍କର ଗର୍ଭ ସମ୍ବତ୍ସର ଶେଷରେ ମୃତ ଓ ବିଧ୍ୱସ୍ତ ହୋଇ ପତିତ ହୋଇଥାଏ । ୧୫ ।

ଘୋର ଅଜ୍ଞ ପ୍ରାଣିମାନେ
ସଂସାର ବନ୍ଧନ କାରଣେ
ଯେସନେ ସକଳ ମୀନଗଣ
ଜଳରେ କରନ୍ତି ଭ୍ରମଣ
ତେସନେ ଯେତେ ଦେହିଗଣ
ତୋ ମଧ୍ୟେ କରେ ବିଚରଣ
ଏହା ଜାଣିଣ ଯେତୁ ନର
ଭଜନ୍ତି ନୃସିଂହ ପୟର

ଅଶେଷ ଭୟରୁ ତରଇ
କର୍ମବନ୍ଧନ ତାର ନାହିଁ ।୧୩,୧୪
ଶୁଣ ରାଜନ ! ମନଦେଇ
କେତୁମାଳ ନାମେ ବରଷେ
ଅଖିଳ ବ୍ରହ୍ମାଣ୍ଡ କାରଣ
କାମଦେବରୂପ ଧରିଣ
ଲକ୍ଷ୍ମୀର ସନ୍ତୋଷ କାରଣେ
ବିହାର କରନ୍ତି ଆପଣେ

ସେ ସ୍ଥାନ ଲୋକ ପୁଣ୍ୟଫଳେ
ନାନା ବିହାର ସୁଖଲୀଳେ
ଅତୁଲନୀୟ ଗତି ତାର
ବିଳାସ ନାନା ମନୋହର
ଲୁଣ୍ଠରହାସ ଲୀଳାମାନ
କଟାକ୍ଷେ ଯେ ଅବଲୋକନ
ବିକଚ ବଦନାରବିନ୍ଦ
ଛନ୍ଦଲି ଦୃଷ୍ଟିମାର ସ୍କନ୍ଦ

ଅତୀବସୁଲଳିତଗତିବିଳାସବିଳସିତରୁଚିରହାସଲେଶାବଲୋକଲୀଳୟା କିଞ୍ଚିଦୁତ୍ତମ୍ଭିତସୁନ୍ଦରଭ୍ରୂମଣ୍ଡଳସୁଭଗବଦନାରବିନ୍ଦଶ୍ରିୟା ରମାଂ ରମୟନ୍ନିନ୍ଦ୍ରିୟାଣି ରମୟତେ ।୧୬।

ତଦ୍ଭଗବତୋ ମାୟାମୟଂ ରୂପଂ ପରମସମାଧିଯୋଗେନ ରମାଦେବୀ ସଂବତ୍ସରସ୍ୟ ରାତ୍ରିଷୁ ପ୍ରଜାପତେର୍ଦୁହିତୃଭିରୁପେତାହଃସୁ ଚ ତଦ୍ଭର୍ତୃଭିରୁପାସ୍ତେ ଇଦଞ୍ଚୋଦାହରତି ।୧୭।

ଓଁ ହ୍ରାଂ ହ୍ରୀଂ ହ୍ରୂଂ ଓଁ ନମୋ ଭଗବତେ ହୃଷୀକେଶାୟ ସର୍ବଗୁଣବିଶେଷୈର୍ବିଲକ୍ଷିତାତ୍ମନେ ଆକୂତୀନାଂ ଚିତ୍ତୀନାଂ ଚେତସାଂ ବିଶେଷାଣାଞ୍ଚାଧିପତୟେ ଷୋଡ଼ଶକଳାୟ ଛନ୍ଦୋମୟାୟାନ୍ନମୟାୟାମୃତମୟାୟ ସର୍ବମୟାୟ ସହସେ ଓଜସେ ବଳାୟ କାନ୍ତାୟ କାମାୟ ନମସ୍ତେ ଉଭୟତ୍ର ଭୂୟାଦିତି ।୧୮।

ସ୍ତ୍ରିୟୋ ବ୍ରତୈସ୍ତ୍ୱା ହୃଷୀକେଶ୍ୱରଂ ସ୍ୱତୋ ହ୍ୟାରାଧ୍ୟ ଲୋକେ ପତିମାଶାସତେଽନ୍ୟମ୍ ।
ତାସାଂ ନ ତେ ବୈ ପରିପାନ୍ତ୍ୟପତ୍ୟଂ ପ୍ରିୟଂ ଧନାୟୂଂଷି ଯତୋଽସ୍ୱତନ୍ତ୍ରାଃ ।୧୯।

---

ଏହି ବର୍ଷରେ ଭଗବାନ୍ କାମଦେବ ସୁଲଳିତ ଗତି ବିଳାସଯୁକ୍ତ ମଧୁର ହାସ୍ୟ ଓ ଅବଲୋକନ ଲୀଳା ଦ୍ୱାରା କିଞ୍ଚିତ୍ ଉନ୍ନତ ଭ୍ରୂମଣ୍ଡଳ ଦ୍ୱାରା ସୁନ୍ଦର ଚରଣାରବିନ୍ଦ ଶୋଭାରେ ରମାଙ୍କୁ ଆନନ୍ଦିତ କରାଇ ନିଜର ଇନ୍ଦ୍ରିୟଗଣଙ୍କୁ ପରିତୃପ୍ତ କରିଥାଆନ୍ତି ।୧୬।

ରମା ଦେବୀ ମଧ୍ୟ ସମ୍ବତ୍ସର ପ୍ରଜାପତିଙ୍କର କନ୍ୟାମାନଙ୍କ ସହିତ ରାତ୍ରି କାଳରେ ଏବଂ ତାହାଙ୍କ ପୁତ୍ରମାନଙ୍କ ସହିତ ଦିବା ଭାଗରେ ସେହି ମାୟାମୟରୂପର ଉପାସନା କରି ଏହି ବାକ୍ୟ ଉଚ୍ଚାରଣ କରନ୍ତି ।୧୭

ହେ ଭଗବାନ୍ ହୃଷୀକେଶ ! ତୁମ୍ଭଙ୍କୁ ମୋର ନମସ୍କାର, ସର୍ବପ୍ରକାର ଗୁଣ ବିଶିଷ୍ଟ ଶ୍ରେଷ୍ଠ ଦ୍ରବ୍ୟରେ ତୁମ୍ଭର ଆତ୍ମା ପରିଲକ୍ଷିତ ହୋଇଥାଏ, ଅର୍ଥାତ୍ ଯାହାର ଯେଉଁ ଶ୍ରେଷ୍ଠତା ବା ସୌନ୍ଦର୍ଯ୍ୟ ଅଛି, ତୁମ୍ଭେହିଁ ତାହାର ଆଧାର, ତୁମ୍ଭେ ଜ୍ଞାନ, କ୍ରିୟା, ସଂକଳ୍ପ ଆଦିର ଅଧିପତି, ଯେ ଷୋଡ଼ଶ କଳା ଅର୍ଥାତ୍ ଏକାଦଶେନ୍ଦ୍ରିୟ ଓ ପଞ୍ଚ ବିଷୟର ଅଂଶ ସ୍ୱରୂପ ଯେ ବେଦମୟ, ଅନ୍ନମୟ ଅମୃତମୟ ଓ ସର୍ବମୟ ଏବଂ ଯେ ସାହସ, ସାମର୍ଥ୍ୟ ଓ ବଳ ସମୂହର କାରଣ ସ୍ୱରୂପ ସେହି କାନ୍ତ କାମଦେବଙ୍କୁ ମୋର ନମସ୍କାର, ସେ ଉଭୟ ଲୋକରେ ଅନୁକୂଳ ହୋଇନ୍ତୁ ।୧୮।

ହେ ଭଗବନ୍ ! ଯେଉଁ ସ୍ତ୍ରୀମାନେ ବିବିଧବ୍ରତ ଦ୍ୱାରା ଆପଣଙ୍କୁ ଆରାଧନା କରି ଅନ୍ୟପତି କାମନା କରନ୍ତି ସେମାନଙ୍କର ସେହି ପତିମାନେ ପ୍ରିୟସନ୍ତାନ ଧନ ଓ ଆୟୁ ପ୍ରଭୃତି ସେମାନଙ୍କୁ ରକ୍ଷା କରିବାକୁ ସମର୍ଥ ହୁଅନ୍ତି ନାହିଁ, କାରଣ ସେମାନଙ୍କର ପତିଗଣ ସ୍ୱତନ୍ତ୍ର ନୁହନ୍ତି ସେମାନେ ଏହି ନାରୀଗଣଙ୍କର ପ୍ରିୟ ଅପତ୍ୟ ଧନ ଓ ଆୟୁ ରକ୍ଷା କରିବାକୁ ଅସମର୍ଥ ।୧୯।

---

ଲଳିତ ହାସ ସୁଖହେଳେ
ଲକ୍ଷ୍ମୀ ସଙ୍ଗତେ କୁତୂହଳେ
କ୍ରୀଡ଼ାକରନ୍ତି ସୁଖମନେ
ଇନ୍ଦ୍ରିୟ ଭୋଗ ଅନୁମାନେ
ପ୍ରକାଶିତ ଦୁହିତାସଙ୍ଗେ
ତହିଁ ଯେ ଲକ୍ଷ୍ମୀଦେବୀ ଅଙ୍ଗେ

ପରମ ସମାଧି ଯୋଗରେ
ସ୍ତୁତିକରନ୍ତି ବିଷ୍ଣୁ-ଠାରେ ।୧୬-୧୭
ନମଇଁ ପ୍ରଭୁ ହୃଷୀକେଶ
ସକଳଗୁଣେ ସେ ପ୍ରକାଶ
ଷୋଡ଼ଶ କଳାବନ୍ତ ତୁହି
ବେଦ ତୋହର ନିଜ ଦେହି

ସକଳ ଆତ୍ମା ତୁ ଈଶ୍ୱର
ଅମୃତମୟ ତୋ ଶରୀର
ତୁମ୍ଭେ ପରମ ମନୋହର,
ତୁ ନାଥ ଶୁଭଙ୍କ ଈଶ୍ୱର
ଅତିସୁଶୀଳ ଶାନ୍ତ ତୁହି
ତୋ ବିନୁ ଅନ୍ୟ କେହି ନାହିଁ

ସ ବୈ ପତିଃ ସ୍ୟାଦକୁତୋଭୟଃ ସ୍ୱୟଂ ସମନ୍ତତଃ ପାତି ଭୟାତୁରଂ ଜନମ୍ ।
ସ ଏକ ଏବେତରଥା ମିଥୋ ଭୟଂ ନୈବାତ୍ମଲାଭାଦଧି ମନ୍ୟତେ ପରମ୍ । ୨୦ ।
ଯା ତସ୍ୟ ତେ ପାଦସରୋରୁହାର୍ହଣଂ ନିକାମୟେତ୍ ସାଖିଲକାମଲମ୍ପଟା ।
ତଦେବ ରାସୀପ୍ସିତମୀପ୍ସିତୋଽର୍ଚ୍ଚିତୋ ଯଦ୍ଭଗ୍ନଯାଚ୍ଞା ଭଗବନ୍ ପ୍ରତପ୍ୟତେ ।୨୧।
ମତ୍ପ୍ରାପ୍ତୟେଽଜେଶସୁରାସୁରାଦୟସ୍ତପ୍ୟନ୍ତ ଉଗ୍ରଂ ତପ ଐନ୍ଦ୍ରିୟେଧିୟଃ ।
ଋତେ ଭବତ୍ପାଦପରାୟଣାନ୍ନ ମାଂ ବିନ୍ଦନ୍ତ୍ୟହଂ ତ୍ୱଦ୍ଧୃଦୟା ଯତୋଽଜିତ । ୨୨ ।
ସ ତ୍ୱଂ ମମାପ୍ୟଚ୍ୟୁତ ଶୀର୍ଷ୍ଣି ବନ୍ଦିତଂ କରାମ୍ବୁଜଂ ଯତ୍ ତ୍ୱଦଧାୟି ସାତ୍ୱତାମ୍ ।
ବିଭର୍ଷି ମାଂ ଲକ୍ଷ୍ମ ବରେଣ୍ୟ ମାୟୟା କ ଈଶ୍ୱରସ୍ୟେହିତମୂହିତୁଂ ବିଭୁଃ ଇତି ।୨୩।

---

ହେ ଭଗବନ୍ ! ଯେ ସ୍ୱୟଂ ଅକୁତୋଭୟ ଅର୍ଥାତ୍ କୌଣସି ବ୍ୟକ୍ତି ବା ବସ୍ତୁଦ୍ୱାରା ଭୀତ ନହୁଅନ୍ତି ଏବଂ ଭୟାତୁର ଲୋକଙ୍କୁ ସର୍ବଦା ରକ୍ଷାକରନ୍ତି, ସେ ଯଥାର୍ଥରେ ପତି, ତୁମ୍ଭେହିଁ ଯଥାର୍ଥରେ ସେହି ପତି, ତୁମ୍ଭେ ଆତ୍ମଲାଭ ପରମାନନ୍ଦ ସ୍ୱରୂପ ବିରାଜମାନ କରୁଅଛ ବୋଲି ଅନ୍ୟ କାହାରିକୁ ତୁମ୍ଭ ଅପେକ୍ଷା ଶ୍ରେଷ୍ଠ ବୋଲି ମନେ କରେ ନାହିଁ । ୨୦ ।

ଯେଉଁ ନାରୀ ନିଷ୍କାମଭାବରେ ତୁମ୍ଭର ପାଦପଦ୍ମ ଅର୍ଚ୍ଚନା କରେ, ସେ ସମସ୍ତ କାମ୍ୟ ବସ୍ତୁ ପ୍ରାପ୍ତ ହୋଇଥାଏ, କିନ୍ତୁ ଯେ କୌଣସି ଫଳ କାମନା କରି ତୁମ୍ଭର ଆରାଧନା କରେ ତୁମ୍ଭେ ତାହାକୁ ସେହି ଫଳ ମାତ୍ର ପ୍ରଦାନ କରିଥାଅ । ଭୋଗାନ୍ତେ ପ୍ରାର୍ଥିତ ଫଳ ନଷ୍ଟ ହୋଇଗଲେ ସେ ପରିତପ୍ତ ହୁଏ । ୨୧ ।

ହେ ଅଜିତ ! ତୁମ୍ଭଙ୍କୁ ପାଇବା ଲାଗି ବ୍ରହ୍ମା, ଶିବ, ଓ ଅନ୍ୟାନ୍ୟ ଦେବତାଗଣ ଇନ୍ଦ୍ରିୟ ଓ ସୁଖ ପ୍ରାପ୍ତି ଆଶାରେ ଅତି କଠୋର ତପସ୍ୟା କରିଥାଆନ୍ତି, କିନ୍ତୁ ତୁମ୍ଭର ଚରଣାଶ୍ରିତ ବ୍ୟକ୍ତିଭିନ୍ନ ଅନ୍ୟ କେହି ତୁମ୍ଭଙ୍କୁ ଲାଭ କରି ନ ପାରନ୍ତି, ମୁଁ ତୁମ୍ଭର ଅଧୀନା, ସୁତରାଂ ମୁଁ ସ୍ୱତନ୍ତ୍ରା ନୁହେଁ । ତେଣୁ ମୁଁ ତୁମ୍ଭର ଅଧୀନ ବ୍ୟକ୍ତିଙ୍କୁ କୃପାଦୃଷ୍ଟିରେ ଅବଲୋକନ କରିଥାଏ । ୨୨ ।

ହେ ଅଚ୍ୟୁତ ! ଭକ୍ତମାନଙ୍କ ମସ୍ତକରେ ସର୍ବକାମବର୍ଷୀ ଆପଣଙ୍କର ହସ୍ତ ପଦ୍ମ ଆପଣ ଅର୍ପଣ କରିଥାଆନ୍ତି, ସେହି ଅଭୟ ହସ୍ତ ମୋ ମସ୍ତକରେ ଅର୍ପଣ କରନ୍ତୁ; ହେ ବରେଣ୍ୟ ମୋ ପ୍ରତି ଆପଣ ଅନୁଗ୍ରହୀ ନୁହନ୍ତି ଏହା କୁହାଯାଇ ନ ପାରେ କାରଣ ଆପଣ ଶ୍ରୀବତ୍ସ ଚିହ୍ନସ୍ୱରୂପ ମୋତେ ବକ୍ଷସ୍ଥଳରେ ଧାରଣ କରି ଅଛନ୍ତି, କିନ୍ତୁ ମୋ ପ୍ରତି ଆଦର ଭକ୍ତଜନମାନଙ୍କ ପ୍ରତି ଅନୁଗ୍ରହ ଏ ସମସ୍ତ ଆପଣଙ୍କ ମାୟାର ପ୍ରକାଶ, ତାହା କିଏ ବୁଝିବାକୁ ସମର୍ଥ ହେବ । ୨୩ ।

---

ହେ ନାଥ ତୋ ପାଦକମଳ
ସେବି ଲଭନ୍ତି ନାନାଫଳ
ତୋହର ଜନ ଯେବା ହୋଇ
ତାଙ୍କୁ ସଙ୍କଟୁ ତାରୁ ତୁହି
ତୋ ପାଦସରୋରୁହ ତୁଇ
ଭଜନ୍ତି ଯେମନ୍ତେ ସେବଇ

ଏମନ୍ତ ଆଜ୍ଞା ମୋତେ କର
ହେ ନାଥ କରୁଣାସାଗର
ତୋତେ ଯେଭାବେ ଆରାଧଇ
ସକଳ ମନୋରଥ ଦେଇ
ତୋହର ପରସାଦୁ ତାର
ସକଳ ହୁଅଇ ସୁଫଳ

ଯେଣୁ ତୁ ସକଳ ଈଶ୍ୱର
ଦ୍ୱିତୀୟ ନାହିଁ ପରାତ୍ପର
ହେ ନାଥ ତୁମ୍ଭେ ନାନା ଦେହ
ସାଧୁଙ୍କ ନିସ୍ତାରଣେ ବହ
ତୁମ୍ଭର ଚେଷ୍ଟା ଯେ ସଂସାରେ
ବ୍ରହ୍ମାଦିକେ ବା ଜାଣିପାରେ ।୧୮-୨୩

ରମ୍ୟକେ ଚ ଭଗବତଃ ପ୍ରିୟତମଂ ମାତ୍ସ୍ୟମବତାରରୂପଂ ତଦ୍‌ବର୍ଷପୁରୁଷସ୍ୟ ମନୋଃ ପ୍ରାକ୍ ପ୍ରଦର୍ଶିତମ୍ ।

ସ ଇଦାନୀମପି ମହାଭକ୍ତିଯୋଗେନାରାଧୟତୀଦଞ୍ଚୋଦାହରତି । ୨୪ ।

ଓଁ ନମୋ ଭଗବତେ ମୁଖ୍ୟତମାୟ ନମଃ ସତ୍ତ୍ୱାୟ ପ୍ରାଣାୟୌଜସେ ସହସେ ବଳାୟ ମହାମତ୍ସ୍ୟାୟ ନମ ଇତି । ୨୫ ।

ଅନ୍ତର୍ବହିଶ୍ଚାଖିଲଲୋକପାଲକୈରଦୃଷ୍ଟରୂପୋ ବିଚରସ୍ୟୁରୁସ୍ୱନଃ ।
ସ ଈଶ୍ୱରସ୍ତ୍ୱଂ ଯ ଇଦଂ ବଶେଽନୟନ୍ନାମ୍ନା ଯଥା ଦାରୁମୟୀଂ ନରଃ ସ୍ତ୍ରିୟମ୍ ।୨୬।
ଯଂ ଲୋକପାଲାଃ କିଲମତ୍ସରଜ୍ୱରା ହିତ୍ୱା ଯତନ୍ତୋଽପି ପୃଥକ୍ ସମେତ୍ୟ ଚ ।
ପାତୁଂ ନ ଶେକୁର୍ଦ୍ୱିପଦଶ୍ଚତୁଷ୍ପଦଃ ସରୀସୃପଂ ସ୍ଥାଣୁ ଯଦତ୍ର ଦୃଶ୍ୟତେ । ୨୭ ।

---

ରମ୍ୟକ ବର୍ଷରେ ଭଗବାନ୍ ଶ୍ରୀହରି ନିଜର ପ୍ରିୟତମ ମତ୍ସ୍ୟାବତାର ରୂପରେ ଅବସ୍ଥାନ କରୁଅଛନ୍ତି । ସେହି ବର୍ଷ ପୁରୁଷ ମନୁଙ୍କୁ ପୂର୍ବେ ଏହି ରୂପରେ ଦେଖା ଦେଇଥିଲେ । ସେହି ମନୁ ବର୍ତ୍ତମାନ ସୁଦ୍ଧା ମହାଭକ୍ତି ଯୋଗଦ୍ୱାରା ସେହି ମତ୍ସ୍ୟ ରୂପକୁ ଆରାଧନା କରିଥାଆନ୍ତି । ସେହି ମତ୍ସ୍ୟରୂପୀ ଭଗବାନଙ୍କୁ ନମସ୍କାର । ଯେ ସତ୍ତ୍ୱ ପ୍ରଧାନ ଏବଂ ସୂକ୍ଷ୍ମତମ ପ୍ରାଣ ଓ ସାହସ ବଳ ଓ ସାମର୍ଥ୍ୟ ଇତ୍ୟାଦିର ସ୍ୱରୂପ ତାହାଙ୍କୁ ନମସ୍କାର କରୁଅଛୁ । ୨୪,୨୫ ।

ହେ ଭଗବନ୍ ! ବେଦଧ୍ୱନି ଯୁକ୍ତ ଆପଣ ସର୍ବପ୍ରାଣୀଙ୍କର ଅନ୍ତରରେ ଓ ବାହାରେ ବିଚରଣ କରୁଅଛନ୍ତି ମାତ୍ର ଲୋକପାଳଗଣ ସୁଦ୍ଧା ଆପଣଙ୍କର ସ୍ୱରୂପ ଦର୍ଶନ କରି ପାରୁନାହାନ୍ତି । ହେ ଭଗବନ୍ ! ମାନବଗଣ ଯେପରି କାଷ୍ଠ ନିର୍ମିତ ସ୍ତ୍ରୀକୁ ଆପଣାର ବଶୀଭୂତ କରନ୍ତି, ସେହିପରି ଯେ ଏହି ଜଗତକୁ ବିଧିନିଷେଧାବଲମ୍ବନ ପୂର୍ବକ ବଶୀଭୂତ କରିଅଛନ୍ତି ଆପଣ ସେହି ଈଶ୍ୱର । ୨୬ ।

ଇନ୍ଦ୍ରାଦି ଲୋକପାଳଗଣ ତୁମ୍ଭଙ୍କୁ ପରିତ୍ୟାଗ କରି ପରସ୍ପର ପ୍ରତି ଈର୍ଷା ଭାବରେ ପୃଥକ୍ ହୋଇ କିମ୍ବା ମିଳିତ ହୋଇ କୌଣସି ପ୍ରକାର ଚେଷ୍ଟାଦ୍ୱାରା ଏହି ସ୍ଥାବର ଜଙ୍ଗମ ସୃଷ୍ଟିର ଦ୍ୱିପଦ ଓ ଚତୁଷ୍ପଦ ଜୀବମାନଙ୍କୁ ରକ୍ଷା କରିଥାଆନ୍ତି, ଅତଏବ ତୁମ୍ଭେହିଁ ଈଶ୍ୱର । ୨୭ ।

---

ରମ୍ୟକ ବରଷ ଚରିତ
ଶୁଣ ରାଜନ ସଗ୍ରହିତ
ପ୍ରଭୁର ମତ୍ସ୍ୟ ଅବତାର
ଦେବ ମାନବେ ଅଗୋଚର
ଅତି ସୁନ୍ଦର ରୂପବର୍ଣ୍ଣ
ମନୁରବର୍ଣ୍ଣ ତହିଁ ବସି

ସେ ରୂପ ଆରାଧନା ପାଇଁ
ଏମନ୍ତ ସ୍ତୁତି ଯେ କରଇ । ୨୪ ।
ନମଇ ପରମ ଈଶ୍ୱର
ଯାହାର ଯଶ ଅଗୋଚର
ବିସ୍ତାର ମତ୍ସ୍ୟ ତୋ ଶରୀର
ତୁ ପ୍ରଭୁ ସର୍ବ ପ୍ରାଣୀଙ୍କର

ଥାଉ ତୁ ଅନ୍ତର ବାହାରେ
ସେ ମାୟା କେ ବା ଜାଣିପାରେ
ଏ ତୋର ମାୟା ମୀନଦେହୀ
ଦେବ ମାନବେ ଦେଖାନାହିଁ
ସଂସାର ସାଗରେ ତୋ ଜନ୍ମ
ମାୟା ତରଙ୍ଗ ଯହିଁ ଭ୍ରମ

ଭବାନ୍ ଯୁଗାନ୍ତାର୍ଣ୍ଣବ ଊର୍ମିମାଳିନି କ୍ଷୌଣୀମିମାମୋଷଧିବୀରୁଧାଂ ନିଧିମ୍ ।
ମୟା ସହୋରୁ କ୍ରମତେଽଜ ଓଜସା ତସ୍ମୈ ଜଗତ୍‌ପ୍ରାଣଗଣାତ୍ମନେ ନମଃ ଇତି ।୨୮

ହିରଣ୍ମୟେଽପି ଭଗବାନ୍ ନିବସତି କୂର୍ମତନୁଂ ବିଭ୍ରାଣସ୍ତସ୍ୟ ତତ୍ପ୍ରିୟତମାଂ ତନୁ
ମର୍ଯ୍ୟମା ସହ ବର୍ଷପୁରୁଷୈଃ ପିତୃଗଣାଧିପତିରୁପଧାବତି । ମନ୍ତ୍ରମିମଞ୍ଚାନୁଜପତି । ୨୯ ।

ଓଁ ନମୋ ଭଗବତେ ଅକୂପାରାୟ ସର୍ବସତ୍ତ୍ୱଗୁଣବିଶେଷଣାୟ ନମୋଽନୁପଲକ୍ଷିତ-
ସ୍ଥାନାୟ ନମୋ ବର୍ଷ୍ମଣେ ନମୋ ଭୂମ୍ନେ ନମୋଽବସ୍ଥାନାୟ ନମସ୍ତେ ଇତି । ୩୦ ।

ଯଦ୍ରୂପମେତନ୍ନିଜମାୟୟାର୍ପିତମର୍ଥସ୍ୱରୂପଂ ବହୁରୂପରୂପିତମ୍ ।
ସଂଖ୍ୟା ନ ଯସ୍ୟାସ୍ତ୍ୟଯଥୋପଲମ୍ଭନାତ୍ ତସ୍ମୈ ନମସ୍ତେଽବ୍ୟପଦେଶରୂପିଣେ ।୩୧।

---

ହେ ଭଗବନ୍ ! ଯୁଗାନ୍ତକାଳରେ ତୁମ୍ଭେ ତରଙ୍ଗମାଳା ସଂଯୁକ୍ତ, ପ୍ରଳୟ ସମୁଦ୍ରରେ ଔଷଧି ଓ ଲତାମାନଙ୍କର ଆଶ୍ରୟଭୂତା ଏହି ପୃଥିବୀକୁ ଧାରଣକରି ମହା ବେଗରେ ବିଚରଣ କରୁଥିଲ, ତୁମ୍ଭେ ଏହି ଜଗତର ପ୍ରାଣ ସମୂହର ନିୟନ୍ତା, ତୁମ୍ଭଙ୍କୁ ମୋର ନମସ୍କାର । ୨୮ ।

ହିରଣ୍ମୟ ବର୍ଷରେ ମଧ୍ୟ ଭଗବାନ କୂର୍ମ ଶରୀର ଧାରଣ କରି ଅବସ୍ଥାନ କରୁଅଛନ୍ତି । ଭଗବାନଙ୍କର ସେହି ପ୍ରିୟ ଶରୀରକୁ ସେହି ବର୍ଷବାସୀ ପୁରୁଷମାନଙ୍କ ସହିତ ପିତୃଗଣାଧିପତି ଅର୍ଯ୍ୟମା ସର୍ବଦା ଆରାଧନା କରୁଅଛନ୍ତି ଏବଂ ଏହି ମନ୍ତ୍ର ଉଚ୍ଚାରଣ କରୁଅଛନ୍ତି । ୨୯ ।

ଭଗବାନ୍ କୂର୍ମଦେବଙ୍କୁ ନମସ୍କାର । ସର୍ବ ସତ୍ତ୍ୱଗୁଣ ଯାହାଙ୍କର ବିଶେଷଣ ବା ଆକାର ତାହାଙ୍କୁ ନମସ୍କାର, ଯାହାଙ୍କର ଜଳ ଚରତ୍ୱ ହେତୁ ଅବସ୍ଥାନର ସ୍ଥାନ ଲକ୍ଷ କରିଯାଏ ନାହିଁ ସେହି ଭଗବାନଙ୍କୁ ନମସ୍କାର, ବୃଦ୍ଧତମ ଆପଣଙ୍କୁ ନମସ୍କାର, ବିରାଟରୂପୀ ଆପଣଙ୍କୁ ନମସ୍କାର, ସମସ୍ତଙ୍କ ଆଧାର ଆପଣଙ୍କୁ ନମସ୍କାର । ୩୦ ।

ହେ ଭଗବନ୍ ! ଏହି ଯେ ପୃଥିବୀ ପ୍ରଭୃତି ଦୃଶ୍ୟମାନ ହେଉଅଛି ତାହା ତୁମ୍ଭର ରୂପ ମାତ୍ର, ତୁମ୍ଭଠାରୁ ପୃଥକ୍ ହୋଇ ତାହାର ଅସ୍ତିତ୍ୱର ସମ୍ଭାବନା ନାହିଁ । ତୁମ୍ଭେ ନିଜ ମାୟାରେ ଏପରି ପ୍ରକାଶ କରିଅଛ, ମନୁଷ୍ୟ ଗୋ ପକ୍ଷୀ ପ୍ରଭୃତି ନାନା ଭାବରେ ଏହା ବିଭକ୍ତ, ଏହା ମାୟାମୟ ବୋଲି ଏହାର ସଂଖ୍ୟା କରିଯାଇ ନ ପାରେ । ଯେପରି ମରୀଚିକା ଜଳର ପରିମାଣ ନିର୍ଦ୍ଦେଶ କରିବା ହାସ୍ୟାସ୍ପଦ ସେହିପରି ଏହି ରୂପର ସଂଖ୍ୟା କରିବା ମଧ୍ୟ ହାସ୍ୟାସ୍ପଦ ଅଟେ, ତୁମ୍ଭର ଏହି ପ୍ରପଞ୍ଚ ରୂପ ତର୍କର ଅଗୋଚର ତୁମ୍ଭଙ୍କୁ ମୁଁ ନମସ୍କାର କରେ ।୩୧।

---

ପରମ ମହାବଳୀ ହୋଇ
ସଂସାରେ ନାନା ଦେହ ବହି
ଜଗତ ପ୍ରାଣ ତୁ ଠାକୁର
ତୋପାଦେପ୍ରଣାମମୋହର।୨୬-୨୮
ହିରଣ୍ମୟବରଷ ବାଣୀ
ରାଜନ ! ଶୁଣ ସରମାଣି
ଅଖିଳ ବ୍ରହ୍ମାଣ୍ଡ ଠାକୁର
ଧରିଣ କୂର୍ମର ଶରୀର

ଅର୍ଯ୍ୟମା ଭୂତଳ ପିତୃଗଣେ
ଯେତେ ଅଛନ୍ତି ସେହିସ୍ଥାନେ
ତାହାଙ୍କୁ ଘେନି ପିତୃପତି
ପ୍ରଭୁଙ୍କୁ ଆନନ୍ଦେ ସେବନ୍ତି
ଏମନ୍ତେ ନାନା ସ୍ତୁତମତେ
ସେବନ୍ତି ପ୍ରଭୁ ପାଦଗତେ ।୨୯।
ନମଇଁ ସର୍ବ ସତ୍ତ୍ୱଗୁଣ
ଲକ୍ଷି ନୁହଇ ଯାର ସ୍ଥାନ

ଅଶେଷ ସ୍ଥାନର ତୁ ସ୍ଥାନ
ନମଇ ପ୍ରଭୁ ଭଗବାନ ! ।୩୦।
ନିଜ ମାୟାରେ ରୂପ ଧରି
ଅଶେଷ ଦେହକୁ ଆବୋରି
ନାନା ଜନ୍ମର ଏ ପ୍ରସିଦ୍ଧି
ତା ପଦ୍ମପାଦେ ମୋର ବୁଦ୍ଧି ।୩୧।

ଜରାୟୁଜଂ ସ୍ୱେଦଜମଣ୍ଡଜୋଦ୍‌ଭିଦଂ ଚରାଚରଂ ଦେବର୍ଷିପିତୃଭୂତମୈନ୍ଦ୍ରିୟମ୍ ।
ଦ୍ୟୌଃ ଖଂ କ୍ଷିତିଃ ଶୈଳସରିତ୍‌ସମୁଦ୍ରଦ୍ୱୀପଗ୍ରହର୍କ୍ଷେତ୍ୟଭିଧେୟ ଏକଃ । ୩୨ ।
ଯସ୍ମିନ୍ନସଂଖ୍ୟେୟବିଶେଷନାମରୂପାକୃତୌ କବିଭିଃ କଳ୍ପିତେୟମ୍ ।
ସଂଖ୍ୟା ଯୟା ତତ୍ତ୍ୱଦୃଶାପନୀୟତେ ତସ୍ମୈ ନମଃ ସାଂଖ୍ୟନିଦର୍ଶନାୟ ତେ ଇତି ।୩୩।

ଉତ୍ତରେଷୁ ଚ କୁରୁଷୁ ଭଗବାନ୍ ଯଜ୍ଞପୁରୁଷଃ କୃତବରାହରୂପ ଆସ୍ତେ । ତନ୍ତୁ ଦେବୀ ହୈଷା ଭୂଃ ସହକୁରୁଭିରସ୍ଖଳିତଭକ୍ତିଯୋଗେନୋପଧାବତି । ଇମାଂଞ୍ଚ ପରମାମୁପନିଷଦମାବର୍ତ୍ତୟତି । ୩୪ ।

ଓଁ ନମୋ ଭଗବତେ ମନ୍ତ୍ରତତ୍ତ୍ୱଲିଙ୍ଗାୟ ଯଜ୍ଞକ୍ରତବେ ମହାଧ୍ୱରାବୟବାୟ ମହାପୁରୁଷାୟ ନମଃ କର୍ମ୍ମଶୁକ୍ଲାୟ ତ୍ରିଯୁଗାୟ ନମସ୍ତେ ଇତି । ୩୫ ।

---

ହେ ଦେବ ! ଜରାୟୁଜ, ଅଣ୍ଡଜ, ସ୍ୱେଦଜ, ଉଦ୍‌ଭିଜ୍ଜ, ସ୍ଥାବର, ଜଙ୍ଗମ, ଦେବତା, ଋଷି, ପିତୃ, ଭୂତ, ଇନ୍ଦ୍ରିୟ, ସ୍ୱର୍ଗ, ଆକାଶ, ପୃଥିବୀ, ପର୍ବତ, ନଦୀ, ସମୁଦ୍ର, ଦ୍ୱୀପ, ଗ୍ରହ, ନକ୍ଷତ୍ର, ଏମାନ ଆପଣଙ୍କର ନାମ ମାତ୍ର ଆପଣ ଏକ । ୩୨ ।

ହେ ଭଗବନ୍ ! ଅସଂଖ୍ୟ ନାମରୂପୀ ରୂପ ବିଶିଷ୍ଟ ଆପଣଙ୍କଠାରେ କପିଳାଦି ବେଦବିଦ୍‌ଗଣ ଚତୁର୍ବିଂଶତି ସଂଖ୍ୟା କଳ୍ପନା କରିଅଛନ୍ତି, ଏହି ସଂଖ୍ୟା ତତ୍ତ୍ୱଜ୍ଞାନଦ୍ୱାରା ଅପନୀତ ହୁଏ, ଏହି ସଂଖ୍ୟା ସିଦ୍ଧାନ୍ତରୂପୀ ଅଥବା ପରମାର୍ଥ ଜ୍ଞାନରୂପୀ ଆପଣଙ୍କୁ ନମସ୍କାର । ୩୩ ।

ଉତ୍ତର କୁରୁବର୍ଷରେ ଭଗବାନ୍ ଯଜ୍ଞ ପୁରୁଷ ବରାହରୂପେ ଅବସ୍ଥାନ କରୁଅଛନ୍ତି । ଏହି ପୃଥିବୀଦେବୀ କୁରୁବର୍ଷବାସୀ ପୁରୁଷମାନଙ୍କ ସହିତ ଅସ୍ଖଳିତ ଭକ୍ତି ଯୋଗଦ୍ୱାରା ତାହାଙ୍କର ସେବା କରି ଶ୍ରେଷ୍ଠ ଉପନିଷଦ ଆବୃତ୍ତି କରୁଅଛନ୍ତି । ୩୪ ।

ହେ ଭଗବନ୍ ! ମନ୍ତ୍ରଦ୍ୱାରା ଯଥାର୍ଥରୂପେ ଆପଣ ପ୍ରକାଶିତ ହୋଇଥାଆନ୍ତି, ଆପଣ ଅଯୂପଯଜ୍ଞ ସ୍ୱରୂପ ଓ ସଯୂପ କ୍ରତୁ ସ୍ୱରୂପ, ମହାଯଜ୍ଞମାନ ଆପଣଙ୍କ ଅବୟବ, ଯେ ଯଜ୍ଞାନୁଷ୍ଠାତା ବା ଯଜ୍ଞକର୍ମଦ୍ୱାରା ପବିତ୍ରତା ଲାଭ କରନ୍ତି, ସେ ଆପଣଙ୍କର ରୂପ ସ୍ୱରୂପ, ସତ୍ୟଯୁଗରେ ଯଜ୍ଞାନୁଷ୍ଠାନ ନାହିଁ ବୋଲି ତୁମ୍ଭେ ତ୍ରିଯୁଗ ସ୍ୱରୂପ କଥିତ ହୋଇଥାଅ, ହେ ମହାପୁରୁଷ ତୁମ୍ଭଙ୍କୁ ନମସ୍କାର । ୩୫ ।

---

ଚର ଅଚର ପିତୃ ଭୂତ
ଇନ୍ଦ୍ରିୟ ଆଦି ଯେ ସମସ୍ତ
ଆକାଶ ଗ୍ରହ ମହୀସ୍ଥଳ
ଗିରି କାନନ ନାନା ଜଳ
ଦ୍ୱୀପ ନକ୍ଷତ୍ର ଯେ ସାଗର
ଏ ସର୍ବ ନାମଟି ତୋହର ।୩୨।

ବ୍ରହ୍ମାଣ୍ଡେ ଯେତେକ ଅଛନ୍ତି
କବିଏ ଯେତେ ବିଚାରନ୍ତି
ସେ ସର୍ବରୂପେ ତୁ ଠାକୁର
ନମଇଁ ତୋହର ପୟର । ୩୩ ।
ଉତ୍ତରବରଷେ ଗ୍ରାଜନ
ବରାହରୂପୀ ଭଗବାନ

କୁରୁ ସହିତେ ପୃଥ୍ୱୀ ତହିଁ
ଆନନ୍ଦ ସ୍ତୁତି ସେ କରଇ ।୩୪।
ନମଇଁ ଅନାଦି ଅବ୍ୟୟ
ସକଳ ଯଜ୍ଞ ତୋର ଦେହ
ତ୍ରିଗୁଣ ଯୁଗ ରୂପ ଧରି
ନମଇଁ ତୋହର ପୟରି ।୩୫।

ଯସ୍ୟ ସ୍ୱରୂପଂ କବୟୋ ବିପଶ୍ଚିତୋ ଗୁଣେଷୁ ଦାରୁଷ୍ୱିବ ଜାତବେଦସମ୍ ।
ମଥ୍ନନ୍ତି ମଥ୍ନା ମନସା ଦିଦୃକ୍ଷବୋ ଗୂଢ଼ଂ କ୍ରିୟାର୍ଥୈର୍ନମ ଈରିତାତ୍ମନେ । ୩୫ ।
ଦ୍ରବ୍ୟକ୍ରିୟାହେତ୍ୱୟନେଶକର୍ତ୍ତୃଭିର୍ମାୟାଗୁଣୈର୍ବସ୍ତୁନିରୀକ୍ଷିତାତ୍ମନେ ।
ଅନ୍ୱୀକ୍ଷୟାଙ୍ଗାତିଶୟାତ୍ମବୁଦ୍ଧିଭିର୍ନିରସ୍ତମାୟାକୃତୟେ ନମୋ ନମଃ । ୩୬ ।
କରୋତି ବିଶ୍ୱସ୍ଥିତିସଂଯମୋଦୟଂ ଯସ୍ୟେପ୍ସିତଂ ନେପ୍‌ସିତମୀକ୍ଷିତୁର୍ଗୁଣୈଃ ।
ମାୟା ଯଥାୟୋ ଭ୍ରମତେ ତଦାଶ୍ରୟଂ ଗ୍ରାବ୍‌ଣୋ ନମସ୍ତେ ଗୁଣକର୍ମ୍ମସାକ୍ଷିଣେ ।୩୮।
ପ୍ରମଥ୍ୟ ଦୈତ୍ୟଂ ପ୍ରତିବାରଣଂ ମୃଧେ ଯୋ ମାଂ ରସାୟା ଜଗଦାଦିଶୂକରଃ ।
କୃତ୍ୱାଗ୍ରଦଂଷ୍ଟ୍ରେ ନିରଗାଦୁଦନ୍ୱତଃ କ୍ରୀଡ଼ନ୍ନିବେଭଃ ପ୍ରଣତାସ୍ମି ତଂ ବିଭୁମ୍ ଇତି ।୩୯

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ
ଭୁବନକୋଶେ ବର୍ଷଦେବସ୍ତୁତି ନାମ ଅଷ୍ଟାଦଶୋଽଧ୍ୟାୟଃ । ୧୮ ।

---

ହେ ଭଗବନ୍ ! ଯେପରି କାଷ୍ଠ ମଧ୍ୟରେ ଅଗ୍ନି ପ୍ରଚ୍ଛନ୍ନଭାବରେ ଅବସ୍ଥାନ କରିଥାଏ ସେହିପରି ଦେହ ଇନ୍ଦ୍ରିୟ ମଧ୍ୟରେ ତୁମ୍ଭେ ଗୋପନଭାବରେ ଅବସ୍ଥାନ କରିଅଛ । କର୍ମ ଓ କର୍ମଫଳମାନ ତୁମ୍ଭଙ୍କୁ ଅପ୍ରକାଶ କରି ରଖିଅଛି, ନିପୁଣ ଜ୍ଞାନୀଗଣ ତୁମ୍ଭଙ୍କୁ ଦର୍ଶନ କରିବା ଅଭିଳାଷରେ ବିବେକରୂପି ମନ୍ଥନଦଣ୍ଡ ଦ୍ୱାରା ଦେହ ଓ ଇନ୍ଦ୍ରିୟାଦି ମଧ୍ୟରେ ତୁମ୍ଭଙ୍କୁ ଅନ୍ୱେଷଣ କରୁଅଛନ୍ତି । ତୁମ୍ଭଙ୍କୁ ନମସ୍କାର । ୩୬ ।

ରୂପ ରସାଦି ବିଷୟ ଦର୍ଶନାଦି ଇନ୍ଦ୍ରିୟ ବ୍ୟାପାର ଦେବତା, ଦେହ, କାଳ, ଅହଙ୍କାର, ଏମାନ ମାୟାର କାର୍ଯ୍ୟ ଏହି ସମସ୍ତ ଅବସ୍ତୁ ମଧ୍ୟରେ ତୁମ୍ଭେ ଆତ୍ମା, ତୁମ୍ଭେହିଁ ବସ୍ତୁରୂପେ ପରିଦୃଶ୍ୟମାନ ହୁଅ, ଯେଉଁମାନଙ୍କ ବିଶୁଦ୍ଧଶକ୍ତି, ଯମ ନିୟମାଦି ସାଧନ ଓ ନିଷ୍ଠାୟୁକ୍ତ ବୁଦ୍ଧିଅଛି ସେମାନେ ତୁମ୍ଭର ଏହି ମାୟିକ ଆକୃତି, ନିରସ୍ତକରି ତୁମ୍ଭର ସ୍ୱରୂପ ଦର୍ଶନ କରିଥାଆନ୍ତି, ସେହି ତୁମ୍ଭଙ୍କୁ ବାରମ୍ବାର ନମସ୍କାର । ୩୭ ।

ତୁମ୍ଭେ ଏ ସୃଷ୍ଟି ପ୍ରାକ୍‌କାଳରେ ମାୟାକୁ ଦର୍ଶନ କରିଥାଅ । ଯେପରି ଅୟସ୍କାନ୍ତ ମଣି ଲୌହ ନିକଟରେ ସ୍ଥାପିତ ହେଲେ ଯେ ଲୌହମଣି ଆଡ଼କୁ ଗତି କରେ ସେହିପରି ମାୟା ତୁମ୍ଭ ନିକଟରେ ଜଡ଼ହୋଇ ତୁମ୍ଭ ଆଡ଼କୁ ଗତି କରିଥାଏ, ଏହି ମାୟା ସ୍ୱୀୟଗୁଣଦ୍ୱାରା ଏହି ବିଶ୍ୱର ସୃଷ୍ଟି ସ୍ଥିତି ପ୍ରଳୟ କରେ ଏହି ଗୁଣ କର୍ମ, ଜୀବାଦୃଷ୍ଟର ସାକ୍ଷୀସ୍ୱରୂପ ତୁମ୍ଭଙ୍କୁ ନମସ୍କାର । ୩୮ ।

ଜଗତର କାରଣ ସ୍ୱରୂପ ହସ୍ତି ତୁଲ୍ୟ ଯେଉଁ ବରାହ ମୂର୍ତ୍ତି ରଣକ୍ଷେତ୍ରରେ ପ୍ରତିଦ୍ୱନ୍ଦ୍ୱ ଗଜତୁଲ୍ୟ ଦୈତ୍ୟପୁତ୍ରଙ୍କୁ (ହିରଣ୍ୟାକ୍ଷ) ଙ୍କୁ ବଧକରି ମୋତେ ଦଂଷ୍ଟ୍ରାଗ୍ରରେ ରଖି ରସାତଳାବଧି ପ୍ରଳୟାର୍ଣ୍ଣବରୁ କ୍ରୀଡ଼ା କନ୍ଦୁକ ତୁଲ୍ୟ ଉଦ୍ଧାର କରିଥିଲେ, ସେହି ଭଗବାନଙ୍କୁ ନମସ୍କାର । ୩୯ ।

---

ନିବୃତ୍ତିତୃଷ୍ଣା ଜ୍ଞାନୀ ଜନ
ମାୟାକୁ ଯା ନାମେ ଖଣ୍ଡନ
ସୃଷ୍ଟିଉଦୟ ସ୍ଥିତି ଲୟ
ଯେ ଧରେ ପୁଣ ତିନି ଦେହ
ସେ ତୋର ମାୟାରେ ଭ୍ରମନ୍ତି
ତୋ ମାୟା କେହି ନ ଜାଣନ୍ତି

ସର୍ବ କର୍ମରେ ତୁ ଈଶ୍ୱର
ହେ ନାଥ ତୋତେ ନମସ୍କାର
ସଂଗ୍ରାମେ ନାଶୁ ଦୁଷ୍ଟଗଣ
ମାୟାଶୂକର ରୂପେ ଜନ୍ମ
ଉଚ୍ଚ ଦନ୍ତରେ ମୋର ତ୍ରାଣ
ହେ ନାଥ କଲ ନାରାୟଣ

ତୁମ୍ଭର ପଦ୍ମପାଦ ଦୁଇ
ଆନନ୍ଦେମୁହିଁ ଯେ ନମଇଁ ।୩୬-୩୯
କହିଲ ବିପ୍ର ଜଗନ୍ନାଥ
ହରିଚରିତ ଭାଗବତ
ବରାହ ଧରଣୀର ବାଣୀ
ଶୁଣି ସଂସାରୁ ତର ପ୍ରାଣୀ ।

**ବିଶଦାର୍ଥ :—**

ଏହି ଅଧ୍ୟାୟରେ ବିଭିନ୍ନରୂପରେ ଭଗବାନ ଶ୍ରୀହରି କିପରି ପୃଥିବୀର ବିଭିନ୍ନ ବର୍ଷ ବା ଅଂଶରେ ଅବସ୍ଥାନ କରୁଅଛନ୍ତି ଓ କିପରି ତତ୍ରତ୍ୟ ଅଧିବାସୀଗଣ ଓ ସେମାନଙ୍କର ଦେବତାମାନେ କିପରି ସେହି ଶ୍ରୀହରିଙ୍କର ଆରାଧନା ଓ ସ୍ତୁତି କରୁଅଛନ୍ତି ତହିଁର ବିବରଣ ପ୍ରଦତ୍ତ ହୋଇଅଛି ।

(୧)—ଭଦ୍ରାଶ୍ୱବର୍ଷରେ ଭଗବାନ୍ ହୟଶୀର୍ଷ ମୂର୍ତ୍ତିରେ ଅବସ୍ଥିତ ।

(୨)—ହରିବର୍ଷରେ ହିରଣ୍ୟକଶ୍ୟପୁ ସୁତ ପ୍ରହଲ୍ଲାଦଙ୍କର ପ୍ରାର୍ଥନା ପୂରଣକରି ନୃସିଂହ ରୂପରେ ଅବସ୍ଥାନ କରୁ ଅଛନ୍ତି ।

(୩)—କେତୁମାଳ ବର୍ଷରେ ଲକ୍ଷ୍ମୀପ୍ରଭୃତିଙ୍କର ସନ୍ତୋଷ ନିମନ୍ତେ ଭଗବାନ୍ କାମ ଦେବ ରୂପରେ ଅବସ୍ଥିତ

(୪)—ରମ୍ୟକ ବର୍ଷରେ ମନୁଙ୍କ କର୍ତ୍ତୃକ ଆରାଧିତ ମତ୍ସ୍ୟ ରୂପରେ ଅବସ୍ଥିତ ।

(୫)—ହିରଣ୍ମୟ ବର୍ଷରେ ଭଗବାନ୍ କୂର୍ମରୂପରେ ଅର୍ଯ୍ୟମା ପ୍ରମୁଖ ପିତୃଗଣଙ୍କ ଦ୍ୱାରା ଆରାଧିତ ।

(୬)—ଉତ୍ତର କୁରୁ ବର୍ଷରେ ବରାହ ମୂର୍ତ୍ତିରେ ପୃଥିବୀ ଉତ୍ତୋଳନ କରୁଅଛନ୍ତି, ପରବର୍ତ୍ତୀ ଅଧ୍ୟାୟରେ ଭଗବାନଙ୍କର ଅନ୍ୟାନ୍ୟ ଅବତାର ଓ ଅବସ୍ଥିତ କ୍ଷେତ୍ର ବର୍ଣ୍ଣନା କରାଯାଇ ଅଛି ।

---

## ଊ ନ ବିଂ ଶ ଅ ଧ୍ୟା ୟ ।

ଊନବିଂଶେ କିଂ ପୁରୁଷେ ହରଣେ ଶ୍ଚୋପବର୍ଣ୍ଣ୍ୟତେ ।
ସେବ୍ୟସେବକଭାବଶ୍ଚ ଭାରତଶ୍ରେଷ୍ଠ୍ୟମେବ ଚ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀଶୁକ ଉବାଚ ।

କିଂ ପୁରୁଷେ ବର୍ଷେ ଭଗବନ୍ତମାଦିପୁରୁଷଂ ଲକ୍ଷ୍ମଣାଗ୍ରଜଂ ସୀତାଭିରାମଂ ରାମଂ ତଚ୍ଚରଣସନ୍ନିକର୍ଷାଭିରତଃ ପରମଭାଗବତୋ ହନୂମାନ୍ ସହ କିଂପୁରୁଷୈରବିରତଭକ୍ତି-ରୁପାସ୍ତେ । ୧ ।

---

### କିଂପୁରୁଷବର୍ଷ ଓ ଭାରତବର୍ଷର ବର୍ଣ୍ଣନା ।

ଊନବିଂଶ ଅଧ୍ୟାୟରେ କିଂପୁରୁଷ ବର୍ଷ ଓ ଭାରତବର୍ଷର ସେବ୍ୟ ସେବକଭାବ ବର୍ଣ୍ଣନା ହୋଇଅଛି ।୦।

ଶ୍ରୀଶୁକଦେବ କହିଲେ :—

କିଂପୁରୁଷ ବର୍ଷରେ ଭଗବାନ୍ ଆଦି ପୁରୁଷ ଲକ୍ଷ୍ମଣାଗ୍ରଜ ସୀତାଭିରାମ ଶ୍ରୀରାମଚନ୍ଦ୍ରଙ୍କୁ ରାମଶ୍ରୀଚରଣ ସେବକ ପରମଭାଗବତ ନିଗୂଢ଼ ଭକ୍ତିମାନ ହନୂମାନ କିଂପୁରୁଷମାନଙ୍କ ସହିତ ଉପାସନା କରୁଅଛନ୍ତି,

---

ଭାରତ କିଂପୁରୁଷ ବର୍ଷ । ଚରିତ ବର୍ଣ୍ଣେ ଊନବିଂଶ ॥

ଶ୍ରୀ ଶୁକଉବାଚ—

କିଂପୁରୁଷ ବରଷ ବାଣୀ
ରାଜନ ଶୁଣ ପରମାଣି
ସୀତାରମଣ ପ୍ରଭୁ ରାମ
ଯାହାର କନିଷ୍ଠ ଲକ୍ଷ୍ମଣ
ପରମ ପ୍ରଭୁ ଯେ ଈଶ୍ୱର
ତାହାଙ୍କୁ ହନୂ ମହାବୀର
ପରମ ଭାଗବତ ସେହି
ନିଷ୍ଠାକେ ଭକ୍ତିଯୋଗ ଲଭି
ପ୍ରଭୁ ପଦାରବିନ୍ଦତଳେ
ସେବଇ ମନର ନିଷ୍ଠାକେ
ସେ ରାମକଥା ପୁଣ୍ୟତମ
ଗନ୍ଧର୍ବେ କରନ୍ତି ଗାୟନ
ଆର୍ଷ୍ଟିଷେଣ ସହିତ ତହିଁ
ହନୂ ଶୁଣଇ ତୋଷ ହୋଇ
ଏମନ୍ତ କରନ୍ତି ଗାୟନ
ସ୍ତୁତି କରନ୍ତି ଏ ବଚନ । ୧ ।

ଆର୍ଷ୍ଟିଷେଣେନ ସହ ଗନ୍ଧର୍ବୈରନୁଗୀୟମାନାଂ ପରମକଲ୍ୟାଣୀଂ ଭର୍ତ୍ତୃଭଗବତ୍‌-
କଥାଂ ସମୁପଶୃଣୋତି ସ୍ୱୟଞ୍ଚେଦଂ ଗାୟତି । ୨ ।

ଓଁ ନମୋ ଭଗବତେ ଉତ୍ତମଃଶ୍ଳୋକାୟ ନମ ଆର୍ଯ୍ୟଲକ୍ଷଣଶୀଲବ୍ରତାୟ ନମ
ଉପଶିକ୍ଷିତାତ୍ମନ ଉପାସିତଲୋକାୟ ନମଃ ସାଧୁବାଦନିକଷଣାୟ ନମୋ ବ୍ରହ୍ମଣ୍ୟଦେବାୟ
ମହାପୁରୁଷାୟ ମହାରାଜାୟ ନମ ଇତି । ୩ ।

ଯତ୍ତଦ୍‌ବିଶୁଦ୍ଧାନୁଭବମାତ୍ରମେକଂ ସ୍ୱତେଜସା ଧ୍ୱସ୍ତଗୁଣବ୍ୟବସ୍ଥମ୍ ।
ପ୍ରତ୍ୟକ୍ ପ୍ରଶାନ୍ତଂ ସୁଧିୟୋପଲମ୍ଭନଂ ହ୍ୟନାମରୂପଂ ନିରହଂ ପ୍ରପଦ୍ୟେ । ୪ ।

ସେଠାରେ ଆର୍ଷ୍ଟିଷେଣଙ୍କ ସହିତ ଗନ୍ଧର୍ବମାନେ ଗୀତିଦ୍ୱାରା ପରମ କଲ୍ୟାଣମୟ ପ୍ରଭୁଙ୍କର କଥା ସମ୍ୟକ୍‌ରୂପେ ଶ୍ରବଣ କରିଥାଆନ୍ତି ଏବଂ ନିଜେ ବକ୍ଷ୍ୟମାଣ ବାକ୍ୟ ଉଚ୍ଚାରଣ କରନ୍ତି । ୧-୨ ।

ଯେଉଁ ଭଗବାନଙ୍କର କୀର୍ତ୍ତିବ୍ରଜ ଲେଶମାତ୍ର ମଳିନ ହୁଏ ନାହିଁ ସେହି ଭଗବାନଙ୍କ ନମସ୍କାର, ଯାହାଙ୍କର ଧ୍ୱଜ ବଜ୍ରାଙ୍କୁଶ ଆଦି ଚିହ୍ନ ସାଧୁଚରିତ୍ର ଓ ଧର୍ମନିଷ୍ଠା ସମସ୍ତଙ୍କ ଶିରୋଧାର୍ଯ୍ୟ, ସେ ସଂଯତ ଚିତ୍ତ ଲୋକରଞ୍ଜନକାରୀ, ଯେ ସାଧୁଚାରିତ୍ରମସୀମା ସେହି ମହାପୁରୁଷ, ମହାରାଜ, ବ୍ରହ୍ମଣ୍ୟଦେବଙ୍କୁ ବାରମ୍ବାର ନମସ୍କାର କରେ । ୩ ।




ଭାରତବର୍ଷ ଓ କିଂପୁରୁଷବର୍ଷ ।

ଯେ ନିଖିଳ ବେଦାନ୍ତରେ ପ୍ରସିଦ୍ଧତତ୍ତ୍ୱ ବୋଲି ଉଦ୍‌ଗୀତ ହୋଇ ଅଛନ୍ତି ତାହାଙ୍କୁ ପ୍ରଣିପାତ କରୁଅଛୁ, ଗୁଣ ସମୂହ ଜାଗ୍ରତାଦି ବିବିଧ ଅବସ୍ଥାର ଅଧୀନ, ଯେ ସ୍ୱରୂପ ପ୍ରକାଶ ଦ୍ୱାରା ଏହି ଅବସ୍ଥାମାନ ତିରୋହିତ କରିଅଛନ୍ତି, ତେଣୁ ସେ ପ୍ରଶାନ୍ତ ଏବଂ ପ୍ରଶାନ୍ତ ବୋଲି ବିଶୁଦ୍ଧ, ନିରହଂକାର ଓ ସୁବୁଦ୍ଧିଯୁକ୍ତ ବ୍ୟକ୍ତିଙ୍କ କର୍ତ୍ତୃକ ଉପଲଭ୍ୟମାନ ଅଦ୍ୱିତୀୟବ୍ରହ୍ମ ସେହି ଶ୍ରୀରାମଚନ୍ଦ୍ରଙ୍କର ଶରଣାପନ୍ନ ହେଉଅଛୁ । ୪ ।

ଉତ୍ତମଶ୍ଳୋକ ତୁ ଠାକୁର
ନମଇ ତୋହର ପୟର
ସକଳ ଲକ୍ଷଣ ତୋ ଠାଇଁ
ସକଳ ଶ୍ରେଷ୍ଠ ତୁ ଗୋସାଇଁ
ସର୍ବବନ୍ଦନ ତୁ ଠାକୁର
ତୋତେ ମୋହର ନମସ୍କାର
ନମଇଁ ବ୍ରହ୍ମାଣ୍ଡ ଈଶ୍ୱର
ସକଳ ଦେବଙ୍କର ସାର

ମହାପୁରୁଷ ମହାରାଜ
ନମଇଁ ବ୍ରହ୍ମାଣ୍ଡର ବୀଜ । ୨ ।
ସ୍ୱତେଜେ କରି ତିନି ଗୁଣ
ବିନାଶ କରୁ ନାରାୟଣ
ପ୍ରଶାନ୍ତ ସାଧୁ ତୁ ଠାକୁର
ଜ୍ଞାନିଙ୍କ ଜ୍ଞାନେ ତୁ ଗୋଚର
ତୋହର ନାମ ରୂପ ଯେତେ
କେହି ନ ଜାଣନ୍ତି ଜଗତେ । ୩ ।

ସଂସାରେ ତୋର ମାନ୍ୟ ଜନ୍ମ
ରାକ୍ଷସ ସଂହାର କାରଣ
ଅନ୍ୟଥା କିସଁ । ଭଗବାନ
ସୀତା ହରଣେ ଯେ ବ୍ୟସନ
ଅଖିଳ ବ୍ରହ୍ମାଣ୍ଡ ଠାକୁର
ତୁମ୍ଭେ ବା କ କରି ନ ପାର

ମର୍ତ୍ତ୍ୟାବତାରସ୍ତ୍ୱିହ ମର୍ତ୍ତ୍ୟଶିକ୍ଷଣଂ ରକ୍ଷୋ ବଧାୟୈବ ନ କେବଳଂ ବିଭୋଃ ।
କୁତୋଽନ୍ୟଥା ସ୍ୟାଦ୍ରମତଃ ସ୍ୱ ଆତ୍ମନଃ ସୀତାକୃତାନି ବ୍ୟସନାନୀଶ୍ୱରସ୍ୟ । ୫ ।
ନ ବୈ ସ ଆତ୍ମାତ୍ମବତାଂ ସୁହୃତ୍ତମଃ ସକ୍ତସ୍ତ୍ରିଲୋକ୍ୟାଂ ଭଗବାନ୍ ବାସୁଦେବଃ ।
ନ ସ୍ତ୍ରୀକୃତଂ କଶ୍ମଳମଶ୍ନୁବୀତ ନ ଲକ୍ଷଣଞ୍ଚାପି ବିହାତୁମର୍ହତି । ୬ ।
ନ ଜନ୍ମ ନୂନଂ ମହତୋ ନ ସୌଭଗଂ ନ ବାଙ୍ ନ ବୁଦ୍ଧିର୍ନାକୃତିସ୍ତୋଷହେତୁଃ ।
ତୈର୍ଯଦ୍‌ବିସୃଷ୍ଟାନପି ନୋ ବନୌକସଶ୍ଚକାର ସଖ୍ୟେ ବତ ଲକ୍ଷଣାଗ୍ରଜଃ । ୭ ।

---

ସେହି ଭଗବାନ୍ ଦଶରଥଙ୍କର ଗୃହରେ ମନୁଷ୍ୟରୂପରେ ଅବତୀର୍ଣ୍ଣ ହୋଇଥିଲେ । କେବଳ ରାକ୍ଷସବଧ ଏହି ଅବତାରର ଉଦ୍ଦେଶ୍ୟ ନ ଥିଲା, ଲୋକଶିକ୍ଷା ଏହି ଅବତାରର ଉଦ୍ଦେଶ୍ୟ, ଅନ୍ୟଥା ସେ ଜଗତର ଆତ୍ମା, ଈଶ୍ୱର, ଆତ୍ମସ୍ୱରୂପ ସର୍ବଦା କ୍ରୀଡ଼ା-ରତ, ତାହାଙ୍କର ସୀତା ବିରହାଦି ଲାଗି ଦୁଃଖ ହେବ କାହିଁକି ।୫

ଭଗବାନ୍ ବାସୁଦେବ ତ୍ରିଭୁବନରେ କୌଣସି ପଦାର୍ଥରେ ଆସକ୍ତ ନୁହନ୍ତି, ସେ ଧୀରଗଣଙ୍କର ଆତ୍ମା ଓ ସୁହୃତ୍ତମ, ସୁତରାଂ ତାହାଙ୍କର ସ୍ତ୍ରୀ ପାଇଁ ମୋହ ହେବା ଅସମ୍ଭବ ଓ ଭ୍ରାତା ଲକ୍ଷ୍ମଣଙ୍କୁ ମଧ୍ୟ ପରିତ୍ୟାଗ କରିବା ସମ୍ଭବ ନୁହେଁ । ୬ ।

( ଶ୍ରୀରାମଚନ୍ଦ୍ରଙ୍କର ରାଜ୍ୟ କାଳ ପୂର୍ଣ୍ଣ ହେଲାପରେ ବ୍ରହ୍ମାଙ୍କ ବାକ୍ୟାନୁସାରେ ଜଣେ ଦେବଦୂତ ତାହାଙ୍କ ସହିତ ମନ୍ତ୍ରଣା କରିବାକୁ ଉପସ୍ଥିତ ହେଲେ, ସେହି ଦେବଦୂତ କାଳ ସହିତ ରାମଚନ୍ଦ୍ରଙ୍କ ପ୍ରତିଶ୍ରୁତ ହେଲେ ଯେ ସେମାନଙ୍କର କଥୋପକଥନବେଳେ ଯେ ସେଠାରେ ଉପସ୍ଥିତ ହେବ ତାହାକୁ ବଧ କରାଯିବ । ଇତି ମଧ୍ୟରେ ମହର୍ଷି ଦୁର୍ବାସା ଉପସ୍ଥିତ ହୁଅନ୍ତେ ଲକ୍ଷ୍ମଣ ତାହାଙ୍କର ଆଗମନ ସମ୍ବାଦ ଶ୍ରୀରାମଚନ୍ଦ୍ରଙ୍କୁ ଜଣାଇବା ନିମିତ୍ତ ସେହି କଥୋପକଥନ ସ୍ଥାନରେ ଉପସ୍ଥିତ ହୋଇଥିଲେ, ଶ୍ରୀରାମଚନ୍ଦ୍ର ପୂର୍ବପ୍ରତିଶ୍ରୁତି ଅନୁସାରେ ଲକ୍ଷ୍ମଣଙ୍କୁ ବଧ କରିବାକୁ ଉଦ୍ୟତ ହୁଅନ୍ତେ ବଶିଷ୍ଠ ତାହାଙ୍କୁ ନିଷେଧ କରିଥିଲେ । ଏହି ପ୍ରସଙ୍ଗ ଏଠାରେ ଉଲ୍ଲେଖ କରାଯାଇଅଛି । )

ସତ୍‌କୁଳରେ ଜନ୍ମ, ସୌନ୍ଦର୍ଯ୍ୟ, ମଧୁର କଣ୍ଠସ୍ୱର, ଉତ୍କୃଷ୍ଟ ଜାତି ଓ ପ୍ରଖର ବୁଦ୍ଧି, ଏହି ଗୁଣମାନ ଶ୍ରୀରାମଚନ୍ଦ୍ରଙ୍କ ସନ୍ତୋଷ ଉତ୍ପାଦନ କରିପାରିନାହିଁ, ତାହା ନ ହେଲେ ସେ ବାନରମାନଙ୍କ ସହିତ ବନ ମଧ୍ୟରେ ଭ୍ରମଣ କରି ନଥାନ୍ତେ । ୭ ।

---

ତେବେ ସନ୍ଧିର ନିମନ୍ତେ
କ୍ଲେଶ ମାନବ ଅବତାରେ ।୪,୫।
ଏ କି ତୋହରେ ସମ୍ଭବଇ
ଶ୍ରୀନାଥ ତୋର ମାୟା ଏହି
ଜନ୍ମ ମରଣ ଯାର ନାହିଁ
ଅଖିଳ ପ୍ରଭୁ ସର୍ବସାକ୍ଷୀ

ସୁର ଅସୁର ଆଦି କରି
ବ୍ରହ୍ମାଣ୍ଡେ ଯେତେ ଦେହଧାରୀ
ଏ ସର୍ବ ଆତ୍ମା ଯେ ଈଶ୍ୱର
କି ଅବା ଅକର୍ତ୍ତବ୍ୟ ତୋର
ଭକ୍ତିର କୌଶଳରେ ଜାତ,
ସେ ପ୍ରଭୁ ନରଦେହବନ୍ତ

ସେ ରାମ ପାଦତଳେ ମୁହିଁ
ସହସ୍ରେ ପ୍ରଣାମ କରଇ ।୬,୭।

ସୁରୋଽସୁରୋ ବାଥ ନରୋଽଥ ବାନରଃ ସର୍ବାତ୍ମନା ଯଃ ସୁକୃତଜ୍ଞମୁତ୍ତମମ୍ ।
ଭଜେତ ରାମଂ ମନୁଜାକୃତିଂ ହରିଂ ଯ ଉତ୍ତରାନନୟତ୍ କୋଶଲାନ୍ ଦିବମିତି ।୮

ଭାରତେଽପି ବର୍ଷେ ଭଗବାନ୍ ନରନାରାୟଣାଖ୍ୟ ଆକଳ୍ପାନ୍ତମୁପଚିତଧର୍ମଜ୍ଞାନ-ବୈରାଗ୍ୟୈଶ୍ୱର୍ଯ୍ୟୋପଶମୋପରମାତ୍ମୋପଲମ୍ଭନମନୁଗ୍ରହାୟାତ୍ମବତାମନୁକମ୍ପୟାତପୋ-ଽବ୍ୟକ୍ତଗତିଶ୍ଚରତି । ୯ ।

ତଂ ଭଗବାନ୍ନାରଦୋ ବର୍ଣ୍ଣାଶ୍ରମବତୀଭି ର୍ଭାରତୀଭିଃ ପ୍ରଜାଭିର୍ଭଗବତ୍ ପ୍ରୋକ୍ତାଭ୍ୟାଂ ସାଂଖ୍ୟଯୋଗାଭ୍ୟାଂ ଭଗବଦନୁଭାବୋପବର୍ଣ୍ଣନଂ ସାବର୍ଣ୍ଣେରୁପଦେକ୍ଷ୍ୟମାଣଂ ପରମ-ଭକ୍ତିଭାବେନୋପସରତି ଇଦଞ୍ଚାଭିଗୃଣାତି । ୧୦ ।

---

ସୁର, ଅସୁର, ନର, ବାନର ଯେ କେହି ପ୍ରଯତ୍ନସହକାରେ ସେହି ଉତ୍ତମ ଶ୍ଳୋକ, ସୁକୃତଜ୍ଞ, ମନୁଷ୍ୟାକୃତ ବିଷ୍ଣୁ ଶ୍ରୀରାମଚନ୍ଦ୍ରଙ୍କୁ ଭଜନା କରିଥିଲେ, ସେ ଭକ୍ତର ଅଧୀନ, ତେଣୁ ଉତ୍ତର କୋଶଳ ( ଅଯୋଧ୍ୟାବାସୀ ) ସମସ୍ତ ମନୁଷ୍ୟଙ୍କୁ ସ୍ୱର୍ଗକୁ ନେଇ ଯାଇଥିଲେ । ୮ ।

ଭାରତବର୍ଷରେ ମଧ୍ୟ ଭଗବାନ୍ ନରନାରାୟଣ ରୂପରେ କଳ୍ପାନ୍ତ କାଳପର୍ଯ୍ୟନ୍ତ ତପଶ୍ଚରଣ କରୁଅଛନ୍ତି । ସେହି ତପସ୍ୟା ଦ୍ୱାରା ସମ୍ୟକ୍‌ରୂପେ ବର୍ଦ୍ଧିତ ଧର୍ମ, ଜ୍ଞାନ, ବୈରାଗ୍ୟ ଅଣିମାଦି ଐଶ୍ୱର୍ଯ୍ୟ,ଇନ୍ଦ୍ରିୟ ସଂଯମନ, ନିରହଂକାରତା ସହି ଆତ୍ମଜ୍ଞାନ ଲାଭ କରାଯାଏ, ଯେ ସେହିପରି ତପସ୍ୟା କରୁଅଛନ୍ତି । ୯ ।

ଏହି ତପସ୍ୟାରେ ତାହାଙ୍କର କୌଣସି ସ୍ୱାର୍ଥ ନାହିଁ, ସେ ଆତ୍ମବାନ୍ ଜ୍ଞାନୀଗଣଙ୍କୁ ତପଶ୍ଚରଣ ଶିକ୍ଷା ଦେବା ନିମିତ୍ତ ଏପରି ତପସ୍ୟା କରୁଅଛନ୍ତି, ସେ ଋଷିମୂର୍ତ୍ତି ଗ୍ରହଣ କରି ଅବସ୍ଥାନ କରୁଅଛନ୍ତି, ତେଣୁ ତାହାଙ୍କର ଗତି ଅବ୍ୟକ୍ତ ଅର୍ଥାତ୍ ଭଗବାନ୍ ବୋଲି ତାହାଙ୍କୁ ଅନାୟାସରେ ନିର୍ଦ୍ଧାରଣ କରାଯାଏ ନାହିଁ; ଭଗବାନ୍ ନାରଦବର୍ଣ୍ଣାଶ୍ରମି ଭାରତୀୟ ପ୍ରଜାବୃନ୍ଦଙ୍କ ସହିତ ପରମଭକ୍ତି ଭାବରେ ତାହାଙ୍କୁ ଭଜନା କରନ୍ତି, ସେ ସାବର୍ଣ୍ଣି ମନୁଙ୍କୁ ଉପଦେଶ ଦେବେ ବୋଲି ଭଗବତ୍ ପ୍ରୋକ୍ତ ସାଂଖ୍ୟ ଓ ଯୋଗ ସହିତ ଭଗବାନଙ୍କର ଅନୁଭବ ବର୍ଣ୍ଣନା କରି ପଞ୍ଚରାତ୍ର ନାମକ ଗ୍ରନ୍ଥ ରଚନା କରିଥିଲେ । ୧୦ ।

---

ଶୁଣ ସୁଜନ ମନତୋଷେ
ଏବେ ଯେ ଭାରତବରଷେ
ନରନାରାୟଣ ସେ ହରି
କଳ୍ପେ ପର୍ଯ୍ୟନ୍ତ ଦେହ ଧରି
ସାଧୁଙ୍କ ପରିତ୍ରାଣ ପାଇଁ
ତପସ୍ୱୀ ରୂପବନ୍ତ ହୋଇ ।୮ ।

ଭ୍ରମନ୍ତି ଆତ୍ମାରାମ ମତେ
ନାରଦ ତାଙ୍କୁ ଯଥୋଚିତେ
ଭକତ ସାଧୁ ଲୋକ ମେଳେ
ସ୍ତୁତି କରନ୍ତି ସେ ନିଶ୍ଚଳେ ।୯ ।
ନମସ୍ତେ ସ୍ୱଭାବ ସୁଶୀଳ
ତୋ ରୂପ ଅକର୍ଷିନ ମୂଳ

ଋଷିଙ୍କ ବର ତୁ ଠାକୁର
ତୋତେ ମୋହର ନମସ୍କାର
ନର ନାରାୟଣ ଶରୀର
ପରମହଂସ ତୁ ଠାକୁର
ସକଳ ଆତ୍ମତତ୍ତ୍ୱ ତୁହି
ତୋ ପାଦପଦ୍ମେ ପ୍ରଣମଇଁ ।୧୦।

ଓଁ ନମୋ ଭଗବତେ ଉପଶମଶୀଲାୟୋପରତାନାତ୍ମ୍ୟାୟ ନମୋଽକିଞ୍ଚନବିତ୍ତାୟ ଋଷିଋଷଭାୟ ନରନାରାୟଣାୟ ପରମହଂସପରମଗୁରବେ ଆତ୍ମାରାମାଧିପତୟେ ନମୋ ନମ ଇତି । ୧୧ ।

ଗାୟତି ଚେଦଂ—

କର୍ତ୍ତାସ୍ୟ ସର୍ଗାଦିଷୁ ଯୋ ନ ବଧ୍ୟତେ ନ ହନ୍ୟତେ ଦେହଗତୋଽପି ଦୈହିକୈଃ ।
ଦ୍ରଷ୍ଟୁର୍ନ ଦୃଗ୍ୟସ୍ୟ ଗୁଣୈର୍ବିଦୂଷ୍ୟତେ ତସ୍ମୈ ନମୋଽସକ୍ତବିବିକ୍ତସାକ୍ଷିଣେ । ୧୨ ।
ଇଦଂ ହି ଯୋଗେଶ୍ୱରଯୋଗନୈପୁଣଂ ହିରଣ୍ୟଗର୍ଭୋ ଭଗବାନ୍ ଜଗାଦ ଯତ୍ ।
ଯଦନ୍ତକାଲେ ତ୍ୱୟି ନିର୍ଗୁଣେ ମନୋ ଭକ୍ତ୍ୟା ଦଧୀତୋଜ୍ଝିତଦୁଷ୍କଳେବରଃ । ୧୩ ।
ଯଥୈହିକାମୁଷ୍ମିକକାମଲମ୍ପଟଃ ସୁତେଷୁ ଦାରେଷୁ ଧନେଷୁ ଚିନ୍ତୟନ୍ ।
ଶଙ୍କେତ ବିଦ୍ୱାନ୍ କୁକଳେବରାତ୍ୟୟାଦ୍ ଯସ୍ତସ୍ୟ ଯତ୍ନଃ ଶ୍ରମ ଏବ କେବଲମ୍ । ୧୪ ।

---

ଯେ ଉପଶମଶୀଳ ନିବୃତ୍ତାହଙ୍କାର ଓ ଅକିଞ୍ଚନ ଧନସ୍ୱରୂପ ସେହି ଋଷିଶ୍ରେଷ୍ଠ ପରମହଂସଙ୍କର ପରମଗୁରୁ ଅପ୍ସରଗଣଙ୍କର ଅଧିପତି ସେହି ଭଗବାନ୍ ନାରାୟଣଙ୍କୁ ବାରମ୍ବାର ନମସ୍କାରକରି ଏହା ଗାନ କରନ୍ତି ।୧୧।

ଯେ ଏହି ବିଶ୍ୱର ସୃଷ୍ଟ୍ୟାଦିର କର୍ତ୍ତା ହେଲେ ମଧ୍ୟ ଅଭିମାନ ଦ୍ୱାରା ବଦ୍ଧ ନୁହନ୍ତି ଏବଂ ଯେ ଦେହ ମଧ୍ୟରେ ଅବସ୍ଥିତ ହୋଇ ଦେହଧର୍ମ କ୍ଷୁତ୍ ପିପାସା ଆଦି ଦ୍ୱାରା ଅଭିଭୂତ ହୁଅନ୍ତି ନାହିଁ ଏବଂ ଯେ ଦ୍ରଷ୍ଟାର ଦୃଷ୍ଟି ଦୃଶ୍ୟଗୁଣ ଦ୍ୱାରା ବିଦୂଷିତ ହୁଏ ନାହିଁ; ସେହି ଅସଙ୍ଗ, ପବିତ୍ର, ସାକ୍ଷୀଙ୍କୁ ନମସ୍କାର । ୧୨ ।

ହେ ଯୋଗେଶ୍ୱର ! ହିରଣ୍ୟଗର୍ଭ ବ୍ରହ୍ମା କହିଅଛନ୍ତି ଏହାହିଁ ଯୋଗୀମାନଙ୍କର ଯୋଗ କୌଶଳ ଯେ ଅନ୍ତଃକାଳରେ ଏହି ଦୁଷ୍ଟ ଦେହାଭିମାନ ପରିତ୍ୟାଗ କରି ଯେଉଁ ନିର୍ଗୁଣ ବ୍ରହ୍ମରେ ଭକ୍ତିଧାରଣା କରନ୍ତି ଅର୍ଥାତ୍ ଭକ୍ତି ସହକାରେ ନିର୍ଗୁଣ ବ୍ରହ୍ମରେ ମନସ୍ଥିର କରନ୍ତି; ଏହାହିଁ ଯୋଗ ନୈପୁଣ୍ୟ । ୧୩ ।

ଐହିକ ଓ ପାରତ୍ରିକ କାମ୍ୟ ପଦାର୍ଥରେ ଆଶକ୍ତ ବ୍ୟକ୍ତି ପୁତ୍ର, କଳତ୍ର ଓ ଧନ ବିଷୟରେ ଚିନ୍ତାଗ୍ରସ୍ତ ହୁଏ, ଯଦି ଯୋଗାଭ୍ୟାସି ବିଦ୍ୱାନ୍ ବ୍ୟକ୍ତି ମଧ୍ୟ ଏହି କୁତ୍ସିତ କଳେବର ପରିତ୍ୟାଗ କରିବାକୁ ଭୀତ ହୁଏ ତାହା ହେଲେ ତାହାର ଶାସ୍ତ୍ରାଭ୍ୟାସାଦି ଶ୍ରମ ବୃଥା ହୋଇଅଛି ବୋଲି ଜାଣିବାକୁ ହେବ । ହେ ପ୍ରଭୋ !

---

ସକଳ କର୍ତ୍ତା ତୁ ଈଶ୍ୱର
ନାହିଁ ତୋହର ଅହଙ୍କାର
ତୁ ଯେ ମାନବ କଳେବର
ଶରୀର ବେଗ ନାହିଁ ତୋର
ସକଳ ଦେଖନ୍ତା ଠାକୁର
ଗୁଣରେ ଦୋଷ ନାହିଁ ତୋର

ସକଳଗୁଣେ ତୋ ବିହାର
ସର୍ବ ବିଷୟେ ନିର୍ବିକାର ।୧୧।
ତୋହର ଚହିଁ ଯାର ମନ
ତାହାର ସଂସାର ଖଣ୍ଡନ
ଦାରା ତନୟ ଧନ ଘର
ଏଣେ ଅର୍ପିତ ମନ ଯାର

ତୋତେ ସେ ପାଇବେଟି କାହିଁ
ଶ୍ରମ କେବଳ ତାର ଦେହି ।୧୨,୧୩
ମୋହର ମୂଢ଼ମତି ବୁଦ୍ଧି
ବିନାଶ କର ଭବସ୍ୱାମୀ
ତୁମ୍ଭରଠାରେ ମୋର ମନ
ନିଷ୍ଠେ ରହୁ ଭଗବାନ ।୧୪।

ତନ୍ନଃ ପ୍ରଭୋ ତ୍ୱଂ କୁକଲେବରାର୍ପିତାଂ ତ୍ୱନ୍ମାୟୟାହଂ ମମତାମଧୋକ୍ଷଜ ।
ଭିନ୍ଦ୍ୟାମ ଯେନାଶୁ ବୟଂ ସୁଦୁର୍ଭିଦାଂ ବିଧେହି ଯୋଗଂ ତ୍ୱୟି ନଃ ସ୍ୱଭାବମ୍ ଇତି ।୧୫।

ଭାରତେଽପ୍ୟସ୍ମିନ୍ ବର୍ଷେ ସରିଚ୍ଛୈଳାଃ ସନ୍ତି ବହବଃ । ମଳୟୋ ମଙ୍ଗଳପ୍ରସ୍ଥୋ ମୈନାକସ୍ତ୍ରିକୂଟଋଷଭଃ କୂଟକଃ କୋଣ୍ୱଃ ସହ୍ୟୋ ଦେବଗିରିଋଷ୍ୟମୂକଃ ଶ୍ରୀଶୈଳୋ ବେଙ୍କଟୋ ମହେନ୍ଦ୍ରୋ ବାରିଧାରୋ ବିନ୍ଧ୍ୟଃ ଶୁକ୍ତିମାନୃକ୍ଷଗିରିଃ ପାରିପାତ୍ରୋ ଦ୍ରୋଣଶ୍ଚିତ୍ରକୂଟୋ ଗୋବର୍ଦ୍ଧନୋ ରୈବତକଃ କକୁଭୋ ନୀଲୋ ଗୋକାମୁଖ ଇନ୍ଦ୍ରକୀଳଃ କାମଗିରିରିତି ଚାନ୍ୟେ ଶତସହସ୍ରଶଃ ଶୈଳାସ୍ତେଷାଂ ନିତମ୍ବପ୍ରଭବା ନଦା ନଦ୍ୟଶ୍ଚ ସନ୍ତ୍ୟସଂଖ୍ୟାତାଃ ।୧୬।

ଏତାସାମପୋ ଭାରତ୍ୟଃ ପ୍ରଜା ନାମଭିରେବ ପୁନନ୍ତୀନାମାତ୍ମନା ଚୋପସ୍ପୃଶନ୍ତି ଚନ୍ଦ୍ରବଶା ତାମ୍ରପର୍ଣ୍ଣୀ ଅବଟୋଦା କୃତମାଲା ବୈହାୟସୀ କାବେରୀ ବେଣ୍ଣା ପୟସ୍ୱିନୀ ଶର୍କରାବର୍ତ୍ତା ତୁଙ୍ଗଭଦ୍ରା କୃଷ୍ଣବେଣା ଭୀମରଥୀ ଗୋଦାବରୀ ନିର୍ବିନ୍ଧ୍ୟା ପୟୋଷ୍ଣୀ ତାପୀ

---

ହେ ଅଧୋକ୍ଷଜ ! ଯେତେବେଳେ ବଦ୍ଧବ୍ୟକ୍ତିର ଏପରି ଦଶା ତାହାହେଲେ ଯଦ୍ୱାରା ଆମ୍ଭମାନଙ୍କର ଦୃଢ଼ପ୍ରତ ସହଜବାସନା ରୂମ୍ପଯୋଗ ଲାଭ ହୁଏ ତାହାହିଁ ବିଧାନ କର । ଯଦ୍ୱାରା ଅବିଳମ୍ବେ ଆପଣଙ୍କର ମାୟା ରଚିତ ଏହି କୁକଳେବର ଓ ତହିଁର ଆମ୍ଭ ଓ ମୋର ଭାବ ପରିତ୍ୟାଗ କରିପାରୁଁ ।୧୪,୧୫।

ଇଳାବୃତ ବର୍ଷ ତୁଲ୍ୟ ଏହି ଭାରତବର୍ଷରେ ମଧ୍ୟ ବହୁ ନଦୀ ଓ ପର୍ବତ ରହିଅଛି । ମଳୟ, ମଙ୍ଗଳପ୍ରସ୍ଥ, ମୈନାକ, ତ୍ରିକୂଟ, ଋଷଭ, କୂଟକ, କୌଣ୍ୱ, ସହ୍ୟ, ଦେବଗିରି, ଋଷ୍ୟମୂକ, ଶ୍ରୀଶୈଳ, ବେଙ୍କଟ, ମହେନ୍ଦ୍ର, ବାରିଧାର, ବିନ୍ଧ୍ୟ, ଶକ୍ତିମାନ, ଋକ୍ଷଗିରି, ପାରିପାତ୍ର, ଦ୍ରୋଣ, ଚିତ୍ରକୂଟ, ଗୋବର୍ଦ୍ଧନ, ରୈବତକ, କକୁଭ, ନୀଳ, ଗୋକାମୁଖ, ଇନ୍ଦ୍ରକୀଳ, କାମଗିରି, ପ୍ରଭୃତି, ଶତସହସ୍ର ପର୍ବତ ଓ ତହିଁର ନିତମ୍ବପ୍ରଦେଶରୁ ବହୁ ନଦନଦୀ ଉତ୍ପନ୍ନ ହୋଇ ଅଛନ୍ତି ।୧୬।

ଏହି ନଦୀମାନଙ୍କ ନାମ ଉଚ୍ଚାରଣ କଲେ ମନୁଷ୍ୟ ପବିତ୍ର ହୁଏ, ଭାରତବାସୀ ପ୍ରଜାଗଣ ଦେହରେ ଏହି ପବିତ୍ରଜଳ ଧାରଣ କରିଥାଆନ୍ତି, ଏହି ନଦୀମାନଙ୍କର ନାମ ଯଥା, ଚନ୍ଦ୍ରବଶା, ତାମ୍ରପର୍ଣ୍ଣୀ ଅବଟୋଦା, କୃତମାଳା, ବୈହାୟସୀ, କାବେରୀ, ବେଣ୍ଣା, ପୟସ୍ୱିନୀ, ସର୍କରାବର୍ତ୍ତା, ତୁଙ୍ଗଭଦ୍ରା, କୃଷ୍ଣବେଣ୍ୱା,

---

ଏ ଯେ ଭାରତବରଷରେ
ପର୍ବତେ ଅଛନ୍ତି ଅପାରେ
ମଳୟ ଋଷଭ କୂଟକ
ମଙ୍ଗଳପ୍ରସ୍ଥ ଯେ ମୈନାକ
କୋଲ୍ଲ ସହ୍ୟ ଦ୍ରୋଣ ତ୍ରିକୂଟ
ଦେବଗିରି ବିନ୍ଧ୍ୟ ବେଙ୍କଟ
ବାରିଧର ଯେ ଋଷ୍ୟମୂକ
ଋକ୍ଷଗିରି ଯେ ଗୋକାମୁଖ

ପାରିପାତ୍ର ଯେ ଶକ୍ତିମାନ
ଚିତ୍ରକୂଟ ଯେ ଗୋବର୍ଦ୍ଧନ
କାମଗିରି କକୁଭ ନୀଳ
ରୈବତକ ଯେ ଇନ୍ଦ୍ରକୀଳ
ମହେନ୍ଦ୍ର ଶ୍ରୀଶୈଳ ସମେତେ,
ଅଛନ୍ତି ଶତସସ୍ରମତେ
ଆଉରି ନଦନଦୀ ଆଦି
ଶତସହସ୍ର ଯେ ପ୍ରସିଦ୍ଧି

ଚନ୍ଦ୍ରବସା ଯେ ତାମ୍ରପର୍ଣ୍ଣୀ
ଅବଟୋଦା ଯେ ପୟସ୍ୱିନୀ
କୃତମାଳା କାବେରୀ ବେଣ୍ୱା
ଶର୍କରାବର୍ତ୍ତ କୃଷ୍ଣବେଣ୍ୱା
ବୈହାୟସୀ ଯେ ତୁଙ୍ଗଭଦ୍ରା
ଭୀମରଥୀ ତାପୀ ନିର୍ବିନ୍ଧ୍ୟା
ଗୋଦାବରୀ ରେବା ସୁରସା
ପୟୋଷ୍ଣୀ ନର୍ମଦା ଯେ ବିଶ୍ୱା

ରେବା ସୁରସା ନର୍ମଦା ଚର୍ମଣ୍ୱତୀ ଅନ୍ଧଃ ଶୋଣଶ୍ଚ ନଦୌ ମହାନଦୀ ବେଦସ୍ମୃତିରୃଷି-
କୁଲ୍ୟା ତ୍ରିସାମା କୌଶିକୀ ମନ୍ଦାକିନୀ ଯମୁନା ସରସ୍ୱତୀ ଦୃଷଦ୍‌ବତୀ ଗୋମତୀ ସରଯୂ-
ରୋଘବତୀ ଷଷ୍ଠବତୀ ସପ୍ତବତୀ ସୁଷୋମା ଶତଦ୍ରୂଶ୍ଚନ୍ଦ୍ରଭାଗା ମରୁଦ୍‌ବୃଧା ବିତସ୍ତା ଅସିକ୍ନୀ
ବିଶ୍ୱେତି ମହାନଦ୍ୟଃ । ୧୭ ।

ଅସ୍ମିନ୍ନେବ ବର୍ଷେ ପୁରୁଷୈର୍ଲବ୍‌ଧଜନ୍ମଭିଃ ଶୁକ୍ଲଲୋହିତକୃଷ୍ଣବର୍ଣ୍ଣେନ ସ୍ୱାରବ୍‌ଧେନ
କର୍ମ୍ମଣା ଦିବ୍ୟମାନୁଷନାରକଗତୟୋ ବହ୍ୱ୍ୟ ଆତ୍ମନ ଆନୁପୂର୍ବ୍ୟେଣ ସର୍ବା ହ୍ୟେବ
ସର୍ବେଷାଂ ବିଧୀୟନ୍ତେ ଯଥାବର୍ଣ୍ଣବିଧାନମପବର୍ଗଶ୍ଚାପି ଭବତି । ୧୮ ।

ଯୋଽସୌ ଭଗବତି ସର୍ବଭୂତାତ୍ମନ୍ୟନାତ୍ମ୍ୟେଽନିରୁକ୍ତେଽନିଲୟନେ ପରମାତ୍ମନି
ବାସୁଦେବେଽନନ୍ୟନିମିତ୍ତଭକ୍ତିଯୋଗଲକ୍ଷଣୋ ନାନାଗତିନିମିତ୍ତାବିଦ୍ୟାଗ୍ରନ୍ଥିରନ୍ଧନ-
ଦ୍ୱାରେଣ ଯଦା ହି ମହାପୁରୁଷପୁରୁଷପ୍ରସଙ୍ଗଃ । ୧୯ ।

---

ସ୍ୱାମରଥ, ଗୋଦାବରୀ; ନିର୍ବିନ୍ଧ୍ୟା, ପୟୋଷ୍ଣୀ, ତାପୀ, ସୁରସା; ନର୍ମଦା, ଚର୍ମନ୍ୱତୀ, ମହାନଦୀ, ବେଦସ୍ମୃତି, ଋଷିକୁଲ୍ୟା, ତ୍ରିସାମା, କୌଶିକୀ ମନ୍ଦାକିନୀ, ଯମୁନା, ସରସ୍ୱତୀ ଦୃଶଦ୍ୱତୀ, ଗୋମତୀ, ସରଯୂ, ଓଘବତୀ, ଷଷ୍ଠବତୀ, ସପ୍ତବତୀ, ସୁଷୋମା, ଶତଦ୍ରୁ, ଚନ୍ଦ୍ରଭାଗା ମରୁଦ୍‌ବୃଧା, ବିତସ୍ତା, ଅସିକ୍ନୀ, ଓ ବିଶ୍ୱା, ଏତଦ୍‌ବ୍ୟତୀତ ଅନ୍ଧ ଓ ଶୋଣ ନାମରେ ଦୁଇଟି ହ୍ରଦ ବିଦ୍ୟମାନ ରହିଅଛି । ୧୭ ।

ଏହି ବର୍ଷରେ ମନୁଷ୍ୟମାନେ ଜନ୍ମଲାଭ କରି ନିଜ ନିଜର ସାତ୍ତ୍ୱିକ, ରାଜସିକ ଓ ତାମସିକ କର୍ମଦ୍ୱାରା ଯଥାକ୍ରମେ ଦିବ୍ୟ ମନୁଷ୍ୟ ଓ ନାରକ ଗତି ଲାଭ କରିଥାନ୍ତି । ଏହି ବର୍ଷରେ ସର୍ବ ବ୍ୟକ୍ତିଙ୍କର ସର୍ବପ୍ରକାର ଗତି କର୍ମାନୁସାରେ ହୋଇଥାଏ, ଏବଂ ଯେଉଁ ବର୍ଣ୍ଣର ଯେପରି ବିଧାନ ଅର୍ଥାତ୍ ସନ୍ୟାସ ବାନପ୍ରସ୍ଥାଦି ତଦନୁସାରେ ତାହା ଅତିକ୍ରମ ନ କରି ମଧ୍ୟ ଲୋକେ ମୋକ୍ଷଲାଭ କରିଥାନ୍ତି । ୧୮ ।

ଯେଉଁ ସମୟରେ ନାନାବିଧ ଗତି ନିମିତ୍ତ ଭୂତ, ଅବିଦ୍ୟାଗ୍ରନ୍ଥି ଛେଦନଦ୍ୱାରା ମହାପୁରୁଷମାନଙ୍କର ସଙ୍ଗଲାଭ କରନ୍ତି ସେତେବେଳେ ସର୍ବଭୂତାତ୍ମା ଭଗବାନ ଗୁଣାଦି ରହିତବାକ୍ୟର ଅଗୋଚର ଅନାଧାର ବାସୁଦେବଙ୍କଠାରେ ଯେଉଁ ଅହୈତୁକ ଭକ୍ତି ଜାତ ହୁଏ ତାହାହିଁ ଅପବର୍ଗ । ୧୯ ।

---

ଚର୍ମଣ୍ୱତୀ ଶୋଣ ତ୍ରିସାମା
ଶରଯୂ ଶତଦ୍ରୂ ସୁଷୋମା
ବ୍ରହ୍ମପୁତ୍ର ଯେ ମନ୍ଦାକିନୀ
ଯମୁନା ବିତସ୍ତା ଅସିକ୍ନୀ
ମହାନଦୀ ଯେ ବେଦସ୍ମୃତି
ଋଷିକୁଲ୍ୟା ଯେ ଓଘବତୀ
କୌଶିକୀ ପୁଣି ସରସ୍ୱତୀ
ଚନ୍ଦ୍ରଭାଗା ଯେ ଷଷ୍ଠବତୀ

ଦୃଶଦ୍‌ବତୀ ପୁଣି ଗୋମତୀ
ମରୁଦ୍‌ବୃଧା ସପ୍ତବତୀ
ଏ ପୁଣ୍ୟଜଳ ସ୍ନାନ ପାନ
କରି ତରନ୍ତି ପ୍ରଜାଜନ ।୧୫-୧୭।
ଏହି ବରଷେ ହେ ରାଜନ
କର୍ମରୁ ପ୍ରାଣୀ ହୋନ୍ତି ଜନ୍ମ
ଶୁକ୍ଳ ଲୋହିତ କୃଷ୍ଣବର୍ଣ୍ଣ
କର୍ମରୁ ଲଭେ ପ୍ରାଣୀ ଜନ୍ମ

ସ୍ୱର୍ଗ ନରକ ଭୂମି ଭୋଗ
କର୍ମ ଅଧୀନେ କରେ ଭୋଗ
ଯେ ପ୍ରାଣୀ ସମଭୂତେ ସବୁ
କୃଷ୍ଣରେ ମତି ଯାହାର
ସର୍ବଭୂତରେ ଆତ୍ମା ଯେହି
ଅଖିଳ ବ୍ରହ୍ମାଣ୍ଡ ଗୋସାଇଁ
ସେ ବାସୁଦେବ ଚକ୍ରଧର
ତାହାର ତହିଁ ମତି ଯାର

ଏତଦେବ ହି ଦେବା ଗାୟନ୍ତି :—

ଅହୋ ବତୈଷାଂ କିମକାରି ଶୋଭନଂ ପ୍ରସନ୍ନ ଏଷାଂ ସ୍ୱିଦୁତ ସ୍ୱୟଂ ହରିଃ ।
ଯୈର୍ଜନ୍ମ ଲବ୍ଧଂ ନୃଷୁ ଭାରତାଜିରେ ମୁକୁନ୍ଦସେବୌପୟିକଂ ସ୍ପୃହା ହି ନଃ ।୨୦।
କିଂ ଦୁଷ୍କରୈର୍ନଃ କ୍ରତୁଭିସ୍ତପୋବ୍ରତୈର୍ଦାନାଦିଭିର୍ବା ଦ୍ୟୁଜୟେନ ଫଲ୍ଗୁନା ।
ନ ଯତ୍ର ନାରାୟଣପାଦପଙ୍କଜସ୍ମୃତିଃ ପ୍ରମୁଷ୍ଟାତିଶୟେନ୍ଦ୍ରିୟୋତ୍ସବାତ୍ । ୨୧ ।
କଲ୍ପାୟୁଷାଂ ସ୍ଥାନଜୟାତ୍ ପୁନର୍ଭବାତ୍ କ୍ଷଣାୟୁଷାଂ ଭାରତଭୂଜୟୋ ବରଃ ।
କ୍ଷଣେନ ମର୍ତ୍ତ୍ୟେନ କୃତଂ ମନସ୍ୱିନଃ ସଂନ୍ୟସ୍ୟ ସଂଯାନ୍ତ୍ୟଭୟଂ ପଦଂ ହରେଃ ।୨୨।
ନ ଯତ୍ର ବୈକୁଣ୍ଠକଥା ସୁଧାପଗା ନ ସାଧବୋ ଭାଗବତାସ୍ତଦାଶ୍ରୟାଃ ।
ନ ଯତ୍ର ଯଜ୍ଞେଶମଖା ମହୋତ୍ସବାଃ ସୁରେଶଲୋକୋଽପି ନ ବୈ ସ ସେବ୍ୟତାମ୍ ।୨୩

---

ଦେବତାମାନେ ଏହିପରି ଗାନ କରିଥାନ୍ତି, ଓହୋ ଏହି ମନୁଷ୍ୟମାନେ କି ଅନିର୍ବଚନୀୟ ପୁଣ୍ୟ କରିଥିଲେ ଯେ ଭଗବାନ୍ ହରି ସ୍ୱୟଂ ଏମାନଙ୍କ ପ୍ରତି ପ୍ରସନ୍ନ କାରଣ ଏହିମାନେ ଭାରତବର୍ଷରେ ଭଗବାନ୍ ମୁକୁନ୍ଦଙ୍କ ସେବାର ଉପଯୋଗୀ ମାନବ ଜନ୍ମଲାଭ କରିଅଛନ୍ତି ତେଣୁ ଭାରତବର୍ଷରେ ଜନ୍ମ ହେବାକୁ ଆମ୍ଭମାନଙ୍କର ଆକାଂକ୍ଷା । ୨୦ ।

ଆମ୍ଭେମାନେ ଦୁଷ୍କର ଯଜ୍ଞ, ତପସ୍ୟା, ବ୍ରତ ଓ ଦାନାଦିଦ୍ୱାରା ଯେଉଁ ତୁଚ୍ଛ ସ୍ୱର୍ଗ ଲାଭ କରିଅଛୁ ତହିଁରେ କି ଫଳ ? ଏହି ସ୍ୱର୍ଗ ଲୋକରେ ଇନ୍ଦ୍ରିୟ ଭୋଗର ଆତିଶଯ୍ୟ ହେତୁ ନାରାୟଣଙ୍କର ପଦପଙ୍କଜ ସ୍ମୃତି ବିଦ୍ୟମାନ ରହେ ନାହିଁ, ପକ୍ଷାନ୍ତରେ ସେ ସ୍ମୃତି ବିନଷ୍ଟ ହୋଇଯାଏ । ୨୧ ।

ବ୍ରହ୍ମଲୋକରେ ଦ୍ୱିପରାର୍ଦ୍ଧ କାଳ ବାସ କରିବା ଅପେକ୍ଷା ଭାରତବର୍ଷରେ କ୍ଷଣକାଳ ବାସ ମଧ୍ୟ ଶ୍ରେୟସ୍କର କାରଣ ବ୍ରହ୍ମଲୋକରେ ମଧ୍ୟ ତାହା ପୁନରାବୃତ୍ତି ହୋଇଥାଏ । କିନ୍ତୁ ଭାରତବାସୀ ଭଗବଦ୍ଭକ୍ତ ମରଣଶୀଳ ଦେହ ପାଇ ମଧ୍ୟ କ୍ଷଣକାଳ ମଧ୍ୟରେ ଶୁଭାଶୁଭ କର୍ମ ପରିତ୍ୟାଗ କରି ଶ୍ରୀହରିଙ୍କ ଅଭୟପଦ ଲାଭ କରିଥାନ୍ତି ।୨୨

ଯେଉଁ ସ୍ଥାନରେ ଭଗବାନଙ୍କର କଥା ସ୍ୱରୂପ ଅମୃତନଦୀ ନାହିଁ ଏବଂ ସେହି ଅମୃତ ନଦୀକୁ ଆଶ୍ରୟ କରି ସାଧୁ ଭାଗବତଗଣ ନାହାନ୍ତି ଏବଂ ଯେଉଁଠାରେ ସମହୋତ୍ସବ ଯୁକ୍ତ ଯଜ୍ଞେଶ୍ୱରଙ୍କର ଯଜ୍ଞ ଅନୁଷ୍ଠିତ ହେଉନାହିଁ ତାହା ବ୍ରହ୍ମଲୋକ ହେଲେ ମଧ୍ୟ ବାସୋପଯୋଗୀ ନୁହେଁ । ୨୩ ।

---

ଭକତିଯୋଗ ଦୃଢ଼ତାରେ
ସେପ୍ରାଣୀକର୍ମବନ୍ଧତରେ ।୧୮-୨୦
ମହାପୁରୁଷ ପ୍ରସଙ୍ଗରେ
ହେଳାରେ ଶ୍ରଦ୍ଧାରେ ଯେ କରେ
ଦେବେ ତାହାର ଗୁଣ କର୍ମ
ଆନନ୍ଦେ କରନ୍ତି ଗାୟନ ।୨୧।

ଧନ୍ୟ ଜୀବନ ତାର ସାର୍ଥ
ମୁକୁନ୍ଦ ପଦେ ମତି ଯାର
ଭାରତେ ମନୁଷ୍ୟ ଜନ୍ମରେ
ସେ ପ୍ରାଣୀ ଶ୍ରେଷ୍ଠ ସର୍ବଠାରେ ।୨୨
ଦୁଷ୍କର ଜପ ତପ ମାନ
ତହିଁରେ କି ଅବା କାରଣ ।

ଯଜନ ଆଦି ଯେତେ କର୍ମ
ତାହାର ଆଦି ନିସ୍ତାରଣ
ପ୍ରଭୁର ପାଦପଦ୍ମ ସାର
ସୁମତି ନୁହଇଟି ଯାର ! ୨୩ :

ପ୍ରାପ୍ତା ନୃଜାତିଂତ୍ୱିହ ଯେ ଚ ଜନ୍ତବୋ ଜ୍ଞାନକ୍ରିୟାଦ୍ରବ୍ୟକଳାପସମ୍ଭୃତାମ୍ ।
ନ ବୈ ଯତେରନ୍ନପୁନର୍ଭବାୟ ତେ ଭୂୟୋ ବନୌକା ଇବ ଯାନ୍ତି ବନ୍ଧନମ୍ ।୨୪।
ଯୈଃ ଶ୍ରଦ୍ଧୟା ବର୍ହିଷି ଭାଗଶୋ ହବିର୍ନିରୁପ୍ତମିଷ୍ଟଂ ବିଧିମନ୍ତ୍ରବସ୍ତୁତଃ ।
ଏକଃ ପୃଥଙ୍ନାମଭିରାହୁତୋ ମୁଦା ଗୃହ୍ଣାତି ପୂର୍ଣ୍ଣଃ ସ୍ୱୟମାଶିଷାଂ ପ୍ରଭୁଃ । ୨୫ ।
ସତ୍ୟଂ ଦିଶତ୍ୟର୍ଥିତମର୍ଥିତୋ ନୃଣାଂ ନୈବାର୍ଥଦୋ ଯତ୍ ପୁନରର୍ଥିତା ଯତଃ ।
ସ୍ୱୟଂ ବିଧତ୍ତେ ଭଜତାମନିଚ୍ଛତାମିଚ୍ଛାପିଧାନଂ ନିଜପାଦପଲ୍ଲବମ୍ । ୨୬ ।

---

ଏହି ଭାରତବର୍ଷରେ ଯେଉଁବ୍ୟକ୍ତି ଜ୍ଞାନ, ଜ୍ଞାନାନୁକୂଳ କ୍ରିୟା, ଓ କ୍ରିୟାନୁକୂଳ ଦ୍ରବ୍ୟ ପରିପୂର୍ଣ୍ଣ, ମନୁଷ୍ୟ ଜନ୍ମ ପ୍ରାପ୍ତ ହୋଇ ମଧ୍ୟ ମୋକ୍ଷ ନିମିତ୍ତ ଯତ୍ନବାନ ନ ହୁଏ ସେ ବନଚର ପକ୍ଷୀ ତୁଲ୍ୟ ପୁନର୍ବାର ବନ୍ଧନ ପ୍ରାପ୍ତ ହୁଏ, ବ୍ୟାଧର ଅସାବଧାନତା, ନିବନ୍ଧନ ଜାଲମୁକ୍ତ ପକ୍ଷୀ ଯଦି ପୂର୍ବବୃକ୍ଷରେ ଅସାବଧାନ ଭାବରେ ବିଚରଣ କରେ, ସେ ଯେପରି ପୁନର୍ବାର ବନ୍ଧନ ପ୍ରାପ୍ତ ହୁଏ, ଏହି ମନୁଷ୍ୟ ଜନ୍ମଲାଭ କରି ପୁନର୍ବାର ସେହି ଦଶା ଲାଭକରେ । ୨୪ ।

ଭାରତବାସୀମାନେ ଅତ୍ୟନ୍ତ ପୁଣ୍ୟବାନ୍ କାରଣ ସେମାନେ ଶ୍ରଦ୍ଧା ପୂର୍ବକ ଯଜ୍ଞରେ ଅଗ୍ନି ଓ ଇନ୍ଦ୍ର ପ୍ରଭୃତି ବିଭିନ୍ନ ଦେବତାଙ୍କ ଉଦ୍ଦେଶ୍ୟରେ ବିବିଧ ବିଧି, ମନ୍ତ୍ର, ପୁରୋଡ଼ାଶାଦି ହବିଃ ପ୍ରୟୋଗ କରିଥାନ୍ତି କିନ୍ତୁ ତାହା ଏକମାତ୍ର ଶ୍ରୀହରି ସେ ସମସ୍ତ ଦ୍ରବ୍ୟ ଗ୍ରହଣ କରିଥାନ୍ତି । ୨୫ ।

ମାନବଗଣ ଭଗବାନ୍‌ଙ୍କୁ ପ୍ରାର୍ଥନା କଲେ ସେ ଅଭିପ୍ସିତ ବରଦାନ କରନ୍ତି ସତ୍ୟ, କିନ୍ତୁ ପରମାର୍ଥ ପ୍ରଦାନ କରନ୍ତି ନାହିଁ କାରଣ ସେ ଯାହା ଦାନ କରନ୍ତି ତାହା ଭୋଗ କଲା ପରେ ମନୁଷ୍ୟ ପୁନର୍ବାର ପ୍ରାର୍ଥନା କରିଥାଏ, କିନ୍ତୁ ନିଷ୍କାମଭାବରେ ଭଜନା କଲେ ଭଗବାନ୍ ସେମାନଙ୍କୁ ନିଜର ପଦ ପଲ୍ଲବ ପ୍ରଦାନ କରନ୍ତି, ତା ହେଲେ ସର୍ବପ୍ରକାର କାମନା ତିରୋହିତ ହୋଇଯାଏ ଏବଂ ସର୍ବକାମ ପୂର୍ଣ୍ଣ ହୁଏ । ୨୬ ।

---

ତେଣୁ ଅମୂଷ ପୁଣ୍ୟମାନ
ଏଡୁ ସକଳ ବ୍ୟର୍ଥ ଶ୍ରମ
କ୍ଷଣେ ଅମୁଷ ଭାରତରେ
ମନ ଯାହାର କୃଷ୍ଣଠାରେ
ସେ ପ୍ରାଣୀ ସର୍ବଶ୍ରେଷ୍ଠ ହୋଇ
ତାହାର ସମ କେହି ନାହିଁ
ପ୍ରାଣ ପ୍ରୟାଣ ସମୟରେ
ଚିତ୍ତ ନିବେଶେ କୃଷ୍ଣପାୟେ
କ୍ଷଣକେ କର୍ମକୁ ଛେଦଇ
ବୈକୁଣ୍ଠ ପଦକୁ ଲଭଇ । ୨୪ ।
ବୈକୁଣ୍ଠ-କଥା ସୁଧାରସ
ଯେ ସ୍ଥଳେ ନ ହୋଏ ପ୍ରକାଶ
କୃଷ୍ଣ ଆଶ୍ରିତ ପ୍ରାଣିମାନ
ଯହିଁ ନାହାନ୍ତି ସାଧୁଜନ
ଯଜ୍ଞରେ ମହୋତ୍ସବ ଆଦି
ଯେ ସ୍ଥଳେ ନାହିଁ ଏ ପ୍ରସିଦ୍ଧି
ଇନ୍ଦ୍ରର ପୁର ଯେବେ ହୋଇ
ତହିଁରେ ବାସ ନ ଯୋଗାଇ ।୨୫।
ମାନବ ଜନ୍ମ ହୋଇ ନର
ଜ୍ଞାନେ ଅଜ୍ଞାନେ ଧ୍ୱଂସ ଯାର
ତଥାପି ପ୍ରଭୁଙ୍କ ଭଜନ
ତେଜଇ ଛନ୍ନ ହୋଇ ମନ
ନାନା ଯୋନିରେ ଜନ୍ମ ହୋଇ
କର୍ମବନ୍ଧନେ ସେ ପଡ଼ଇ ।୨୬।

ଯଦ୍ୟତ୍ର ନଃ ସ୍ୱର୍ଗସୁଖାବଶେଷିତଂ ସ୍ୱିଷ୍ଟସ୍ୟ ସୂକ୍ତସ୍ୟ କୃତସ୍ୟ ଶୋଭନମ୍ ।
ତେନାଜନାଭେ ସ୍ମୃତିମଜ୍ଜନ୍ମ ନଃ ସ୍ୟାଦ୍ ବର୍ଷେ ହରିର୍ଯଦ୍ଭଜତାଂ ଶଂ ତନୋତି ।୨୭।

ଶ୍ରୀଶୁକ ଉବାଚ ।

ଜମ୍ବୁଦ୍ୱୀପସ୍ୟ ଚ ରାଜନ୍ନୁପଦ୍ୱୀପାନଷ୍ଟୌ ହୈକ ଉପଦିଶନ୍ତି ସଗରାତ୍ମଜୈର-
ଶ୍ୱାନ୍ୱେଷଣ ଇମାଂ ମହୀଂ ପରିତୋ ନିଖନଦ୍ଭିରୁପକଳ୍ପିତାନ୍ ।୨୮।

ତଦ୍ୟଥା ସ୍ୱର୍ଣ୍ଣପ୍ରସ୍ଥଶ୍ଚନ୍ଦ୍ରଶୁକ୍ଳ ଆବର୍ତ୍ତନୋ ରମଣକୋ ମନ୍ଦହରିଣଃ ପାଞ୍ଚଜନ୍ୟଃ
ସିଂହଳୋ ଲଙ୍କେତି ।୨୯।

ଏବଂ ତବ ଭାରତୋତ୍ତମ ଜମ୍ବୁଦ୍ୱୀପବର୍ଷବିଭାଗୋ ଯଥୋପଦେଶମୁପବର୍ଣ୍ଣିତଃ ।୩୦।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ
ଜମ୍ବୁଦ୍ୱୀପବର୍ଣ୍ଣନଂ ନାମୈକୋନବିଂଶୋଽଧ୍ୟାୟଃ । ୧୯ ।

---

ଆମ୍ଭେମାନେ ଯେଉଁ ଯଜ୍ଞ ସମ୍ୟକ୍‌ରୂପେ ଅନୁଷ୍ଠାନ କରିଥିଲୁ ଏବଂ ଯେଉଁ ଶୋଭନବାକ୍ୟ ପ୍ରୟୋଗ କରିଥିଲୁ ଏବଂ ଯେଉଁ ସମସ୍ତ ସାଧୁକାର୍ଯ୍ୟ ଅନୁଷ୍ଠାନ କରିଥିଲୁ ତହିଁର ଫଳରେ ସ୍ୱର୍ଗ ସୁଖଭୋଗ କରୁଅଛୁଁ, ଯଦି ସେହି ଫଳର କିଞ୍ଚିତ୍ ପୁଣ୍ୟ ବାକିଥାଏ ତେବେ ପୂର୍ବସ୍ମୃତି ମୁକ୍ତ ହୋଇ ଯେପରି ଭାରତବର୍ଷରେ ଜନ୍ମ ଗ୍ରହଣକରି ଭଗବାନଙ୍କର ଭଜନା କରିପାରୁ ଓ ସେ ଭକ୍ତଙ୍କୁ ସୁଖଦାନ କରି ପାରନ୍ତି । ୨୭ ।

ଶ୍ରୀ ଶୁକଦେବ କହିଲେ, ହେ ରାଜନ୍ ! କେହି କେହି କହିଥାନ୍ତି ଏହି ଜମ୍ବୁଦ୍ୱୀପର ଆଠୋଟି ଉପଦ୍ୱୀପ ଅଛି । ସଗର ରାଜାଙ୍କର ପୁତ୍ରଗଣ ଅଶ୍ୱାନ୍ୱେଷଣ କଲାବେଳେ ଏହି ପୃଥିବୀର ଚତୁର୍ଦ୍ଦିଗ ଖନନ କରି ଏହି ଦ୍ୱୀପ ନିର୍ମାଣକରିଥିଲେ, ସେମାନଙ୍କର ନାମ ଯଥା—ସ୍ୱର୍ଣ୍ଣପ୍ରସ୍ଥ, ଚନ୍ଦ୍ରଶୁକ୍ଳ, ଆବର୍ତ୍ତନ, ରମଣକ, ମନ୍ଦହରିଣ, ପାଞ୍ଚଜନ୍ୟ, ସିଂହଳ ଓ ଲଙ୍କା । ୨୮ । ୨୯ ।

ଯେଉଁ ଜମ୍ବୁଦ୍ୱୀପ ମଧ୍ୟରେ ଭାରତବର୍ଷ ସର୍ବୋତ୍ତମ ସେହି ଜମ୍ବୁଦ୍ୱୀପର ବର୍ଷ ବିଭାଗ ସମ୍ବନ୍ଧେ ମୁଁ ଯେଉଁ ଉପଦେଶ ପାଇଅଛି ତାହା ହେ ଭାରତୋତ୍ତମ । ତୁମ୍ଭ ନିକଟରେ ବର୍ଣ୍ଣନା କରୁଅଛି । ୩୦ ।

---

ଶ୍ରଦ୍ଧାରେ ଯେତେ ଯେତେ ନରେ
ଯଜ୍ଞେ ଦିଅନ୍ତି ଅଗ୍ନି ଠାରେ
ନାନା ଦେବତା ରୂପ ହୋଇ
ଯଜ୍ଞ ଭୁଞ୍ଜନ୍ତି ଜଗତସ୍ୱାମୀ
ମାୟାରେ ପୃଥକ ସେ ହୋଇ
ତନ୍ତୁ ତା ବିନୁ କେହି ନାହିଁ ।୨୭।
ତାଙ୍କୁ ଭଜନ୍ତି ଯେତେ ପ୍ରାଣୀ
ଏଥି ସକାଶେ ମନ ଜାଣି
ଇଚ୍ଛା ସମାନେ ଫଳ ଦେଇ
ଯେଣୁ ତା ନାମ ଜଗତସ୍ୱାମୀ
ସେ ପାଦପଲ୍ଲବେ ନିଷ୍କାମେ
ମନ ଦିଅନ୍ତି ବୁଧଜନେ
ସେ ଭକ୍ତ ପ୍ରାଣିମାନଙ୍କରେ
ତୃଷ୍ଣା କରନ୍ତି ଦେବଗଣେ ।୨୮।
ଦେବେ ବୋଲନ୍ତି ସ୍ୱର୍ଗେ ଥାଇ
ଭାରତବର୍ଷେ ଜନ୍ମ ହୋଇ
ଯହିଁ ହରିର ସ୍ମୃତି ଜାତ
ହରିଚରଣେ ସେବା ମତ ।୨୯।

ଶ୍ରୀ ଶୁକଉବାଚ—

ଜମ୍ବୁଦ୍ୱୀପର ନୃପବର
ଅଷ୍ଟ ଉପଦ୍ୱୀପ ଅପର
ଅଶ୍ୱ ଖୋଜନ୍ତେ ବସୁନ୍ଧରା
ସଗରପୁତ୍ରଙ୍କରେ କରି
ଗର୍ତ୍ତ ହୋଇଲା ସ୍ୱରିଦଗ
ଏଣୁ ଏ ଅଷ୍ଟଦ୍ୱୀପ ଭାଗ
ଶୁଣ ହେ ସର୍ବଶ୍ରେଷ୍ଠ ରାଜନ
ଅଷ୍ଟ ଉପଦ୍ୱୀପର ନାମ
ରମଣକ ଯେ ଆବର୍ତ୍ତନ
ସ୍ୱର୍ଣ୍ଣପ୍ରସ୍ଥ ମନ୍ଦ ହରିଣ
ପାଞ୍ଚଜନ୍ୟ ଯେ ଚନ୍ଦ୍ର ଶୁକ୍ଳ
ଯେ ଲଙ୍କା ଅପରେ ସିଂହଳ
ବରଷ ବିଭାଗ ସମେତେ
ଜମ୍ବୁଦ୍ୱୀପର ଯଥୋଚିତେ
ତୁମ୍ଭ ପ୍ରଶ୍ନ ଅନୁସାରେ
କେ ନୃପ କହିଲି ତୁମ୍ଭରେ ।୩୦।
କହଇ ବିପ୍ର ଜଗନ୍ନାଥ
ଭାଗବତର ଯେ ଚରିତ
ଦ୍ୱୀପ ବରଣ ଅବକର
ସକଳ କର୍ତ୍ତା ସେ ମୁରାରି
ତାହାର ଚରଣାରବିନ୍ଦେ
ମନ ମୋ ରହୁ ଅପ୍ରମାଦେ

ବିଶଦାର୍ଥ—

ପୂର୍ବ ଅଧ୍ୟାୟରେ ଜମ୍ବୁଦ୍ୱୀପସ୍ଥ ବର୍ଷର ପ୍ରସଙ୍ଗ ଓ ଭଗବାନଙ୍କର ବିବିଧ ଅବତାର, ବିଷୟ ଉଲ୍ଲେଖ କରାଯାଇଅଛି । ବର୍ତ୍ତମାନ ଭାରତବର୍ଷ ବିଷୟରେ ଏହି ଊନବିଂଶ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି, ଭଗବାନ୍ ରାମଚନ୍ଦ୍ରଙ୍କର ଅବତାର ଓ ଭାରତବର୍ଷରେ ନର ନାରାୟଣ ଅବତାର ଓ ସେହି ଅବତାରମାନଙ୍କର ଉଦ୍ଦେଶ୍ୟ ଏହି ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି, ଏହି ଅଧ୍ୟାୟରେ ଭକ୍ତପ୍ରବର ଦେବର୍ଷି ନାରଦଙ୍କ ରଚିତ ନାରଦୀୟ ପଞ୍ଚରାତ୍ର ନାମକ ଭକ୍ତିଗ୍ରନ୍ଥ ପ୍ରସଙ୍ଗ ମଧ୍ୟ ଉଲ୍ଲେଖ କରାଯାଇଅଛି । ଏହି ଅଧ୍ୟାୟରେ ଭାରତର ବିଭିନ୍ନ ପର୍ବତ, ନଦ, ନଦୀ ପ୍ରଭୃତିଙ୍କର ନାମ ମଧ୍ୟ ଉଲ୍ଲେଖ କରାଯାଇଅଛି । ଏହି ଭାରତବର୍ଷରେ ଯେଉଁ ନର ନାରୀମାନେ ଜନ୍ମଗ୍ରହଣ କରିଅଛନ୍ତି ସେମାନେ ନିଜ ନିଜର କର୍ମଫଳାନୁସାରେ ପୁଣ୍ୟଲୋକ ବା ନରକଭୋଗ କରୁଅଛନ୍ତି, ସ୍ୱର୍ଗଲୋକରେ ଦେବତାମାନେ ଭାରତବର୍ଷରେ ଜନ୍ମଗ୍ରହଣ କରି ଶ୍ରୀହରିଙ୍କର ଭଜନା କରିବାକୁ ସୁଯୋଗ ପାଇବା ନିମିତ୍ତ ଅଭିଳାଷ କରୁଅଛନ୍ତି ।



---

## ବିଂଶ ଅଧ୍ୟାୟ ।

ବିଂଶେ ପ୍ଲକ୍ଷାଦିଷଡ଼୍ଦ୍ୱୀପ ସ୍ଥିତିମାହ ସହାର୍ଣ୍ଣବୈଃ ।
ଲୋକାଲୋକସ୍ଥିତିଞ୍ଚାନ୍ତର୍ବହିର୍ଭାଗାଦିମାନତଃ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀଋଷିରୁବାଚ ।

ଅତଃ ପରଂ ପ୍ଲକ୍ଷାଦୀନାଂ ପ୍ରମାଣଲକ୍ଷଣସଂସ୍ଥାନତୋ ବର୍ଷବିଭାଗ ଉପବର୍ଣ୍ଣ୍ୟତେ ।୧।

---

### ପ୍ଲକ୍ଷାଦି ଷଡ଼୍ଦ୍ୱୀପର ବୃତ୍ତାନ୍ତ ।

ବିଂଶ ଅଧ୍ୟାୟରେ ପ୍ଲକ୍ଷାଦି ଷଡ଼୍ଦ୍ୱୀପ, ଦ୍ୱୀପମାନଙ୍କ ସନ୍ନିକଟ ସମୁଦ୍ର ଏବଂ ଲୋକାଲୋକ ପର୍ବତ ପ୍ରଭୃତି ବିଷୟ ବିସ୍ତୃତଭାବରେ ବର୍ଣ୍ଣନା କରାଯାଇଅଛି । ୦ ।

ଶ୍ରୀଋଷି [ଶୁକଦେବ] କହିଲେ :—

ତଦନନ୍ତର ପ୍ଲକ୍ଷାଦିଦ୍ୱୀପର ପ୍ରମାଣ, ଲକ୍ଷଣ ଓ ଆକାର ଅନୁସାରେ ଏହି ଦ୍ୱୀପମାନଙ୍କର ବର୍ଷବିଭାଗ ବର୍ଣ୍ଣିତ ହେଉଅଛି ଶ୍ରବଣ କର । ୧ ।

---

ଯେ ଷଟ୍‌ଦ୍ୱୀପ ପ୍ଲକ୍ଷଆଦି, ତହିଁରେ ଯେତେକ ଉଦଧି । ଆଉରି ଲୋକାଲୋକ ଗିରି, ତରିତ ବିଂଶରେ ବିସ୍ତାରି ॥

ଶ୍ରୀ ଶୁକ ଉବାଚ ।

ଏ ଅନନ୍ତରେ ହେ ରାଜନ
ପ୍ଲକ୍ଷ ଆଦି ଯେ ଦ୍ୱୀପମାନ
ବରଷ ଲକ୍ଷଣ ପ୍ରମାଣ
କହିବା ସାବଧାନେ ଶୁଣ ।୧।

ଜମ୍ବୁଦ୍ୱୀପୋଽୟଂ ଯାବତ୍ପ୍ରମାଣବିସ୍ତାରସ୍ତାବତା କ୍ଷାରୋଦଧିନା ପରିବେଷ୍ଟିତୋ ଯଥା ମେରୁର୍ଜମ୍ବ୍ୱାଖ୍ୟେନ । ଲବଣୋଦଧିରପି ତତୋ ଦ୍ୱିଗୁଣବିଶାଳେନ ପ୍ଲକ୍ଷାଖ୍ୟେଣ ପରିକ୍ଷିପ୍ତୋ ଯଥା ପରିଖା ବାହ୍ୟୋପବନେନ ପ୍ଲକ୍ଷୋ ଜମ୍ବୁପ୍ରମାଣୋ ଦ୍ୱୀପାଖ୍ୟାତକରୋ ହିରଣ୍ମୟ ଉତ୍ଥିତୋ ଯସ୍ମିନ୍ନଗ୍ନିରୁପାସ୍ତେ ସପ୍ତଜିହ୍ୱଃ । ତସ୍ୟାଧିପତିଃ ପ୍ରିୟବ୍ରତାତ୍ମଜ ଇଧ୍ମଜିହ୍ୱଃ ସ୍ୱଂ ଦ୍ୱୀପଂ ସପ୍ତ ବର୍ଷାଣି ବିଭଜ୍ୟ ସପ୍ତ ବର୍ଷନାମଭ୍ୟ ଆତ୍ମଜେଭ୍ୟ ଆକଳଯ୍ୟ ସ୍ୱୟମାତ୍ମଯୋଗେନୋପରରାମ । ୨ ।

ଶିବଂ ବୟସଂ ସୁଭଦ୍ରଂ ଶାନ୍ତଂ କ୍ଷେମମମୃତମଭୟମିତି ବର୍ଷାଣି । ତେଷୁ ଗିରୟୋ ନଦ୍ୟଶ୍ଚ ସପ୍ତୈବାଭିଜ୍ଞାତାଃ । ୩ ।

ମଣିକୂଟୋ ବଜ୍ରକୂଟ ଇନ୍ଦ୍ରସେନୋ ଜ୍ୟୋତିଷ୍ମାନ୍ ସୁବର୍ଣ୍ଣୋ ହିରଣ୍ୟଷ୍ଠୀବୋ ମେଘମାଲ ଇତି ସେତୁଶୈଳାଃ । ଅରୁଣା ନୃମ୍ଣା ଆଙ୍ଗୀରସୀ ସାବିତ୍ରୀ ସୁପ୍ରଭାତା ଋତମ୍ଭରା ସତ୍ୟମ୍ଭରେତି ମହାନଦ୍ୟଃ । ଯାସାଂ ଜଳୋପସ୍ପର୍ଶନବିଧୂତରଜସ୍ତମସୋ ହଂସପତଙ୍ଗୋ-

---

ଜମ୍ବୁଦ୍ୱୀପ ଯେପରି ସୁମେରୁକୁ ବେଷ୍ଟନ କରି ଅବସ୍ଥାନ କରୁଅଛି ସେହିପରି ଲବଣସମୁଦ୍ର ଜମ୍ବୁଦ୍ୱୀପକୁ ପରିବେଷ୍ଟନ କରି ରହିଅଛି । ଏହି ଲବଣ ସମୁଦ୍ରର ପରିମାଣ ଜମ୍ବୁଦ୍ୱୀପର ପରିମାଣ ତୁଲ୍ୟ; ଯେପରି ପରିଖା ବାହ୍ୟୋପବନକୁ ବେଷ୍ଟନ କରିଥାଏ, ସେହିପରି ଲବଣ ସମୁଦ୍ରମଧ୍ୟ ପ୍ଲକ୍ଷଦ୍ୱୀପକୁ ବେଷ୍ଟନ କରିଅଛି । ଏହାର ବିଶାଳତା ଲବଣ ସମୁଦ୍ରର ଦ୍ୱିଗୁଣ, ଏହି ପ୍ଲକ୍ଷଦ୍ୱୀପରେ ଗୋଟିଏ ପ୍ଲକ୍ଷବୃକ୍ଷ ଅଛି, ଏହି ବୃକ୍ଷର ନାମାନୁସାରେ ଦ୍ୱୀପର ନାମ ପ୍ଲକ୍ଷ ହୋଇଅଛି । ଏହିବୃକ୍ଷର ପରିମାଣ ପୂର୍ବୋକ୍ତ ଜମ୍ବୁବୃକ୍ଷ ତୁଲ୍ୟ ଏହି ବୃକ୍ଷ ହିରଣ୍ମୟ, ଏଥିରେ ସପ୍ତଜିହ୍ୱ ଅଗ୍ନି ବାସ କରୁଅଛନ୍ତି, ପ୍ରିୟବ୍ରତଙ୍କର ପୁତ୍ର ଇଧ୍ମଜିହ୍ୱ ଏହି ଦ୍ୱୀପର ଅଧିପତି ସେ ଏହି ଦ୍ୱୀପକୁ ସପ୍ତବର୍ଷରେ ବିଭକ୍ତ କରି ସ୍ୱୀୟ ସପ୍ତପୁତ୍ରଙ୍କୁ ସମର୍ପଣ କରି ନିଜେ ଆତ୍ମଯୋଗ ଅବଲମ୍ବନ ପୂର୍ବକ ସଂସାରରୁ ବିରତ ହୋଇଅଛନ୍ତି । ୨ ।

ସେହି ସପ୍ତପୁତ୍ରଙ୍କର ନାମ ଏହି ବର୍ଷମାନଙ୍କର ନାମାନୁସାରେ ନାମ କରଣ କରାଯାଇଅଛି । ଯଥା ;—ଶିବ, ବୟସ, ସୁଭଦ୍ର, ଶାନ୍ତ, କ୍ଷେମ, ଅମୃତ ଓ ଅଭୟ । ଏହିବର୍ଷରେ ବହୁପର୍ବତ ଓ ନଦୀ ଥିଲେ ମଧ୍ୟ ସାତୋଟି ନଦୀ ଓ ସାତୋଟି ପର୍ବତ ପ୍ରଧାନ । ୩ ।

ମଣିକୂଟ, ବଜ୍ରକୂଟ, ଇନ୍ଦ୍ରସେନ, ଜ୍ୟୋତିଷ୍ମାନ, ସୁବର୍ଣ୍ଣ, ହିରଣ୍ୟଷ୍ଠୀବ, ମେଘମାଳ ଏହି ସାତୋଟି ପର୍ବତ ବିଖ୍ୟାତ ସାତଟି ପ୍ରସିଦ୍ଧ ନଦୀ ଯଥା :—ଅରୁଣା, ନୃମ୍ଣା; ଅଙ୍ଗିରସୀ, ସାବିତ୍ରୀ, ସୁପ୍ରଭାତା, ଋତମ୍ଭରା, ସତ୍ୟମ୍ଭରା, ଏହି ସମସ୍ତ ମହାନଦୀ, ଯେଉଁ ମହାନଦୀର ଜଳସ୍ପର୍ଶରେ ହଂସ ପତଙ୍ଗ ପ୍ରଭୃତି ଊର୍ଦ୍ଧାୟନ ଓ ସତ୍ୟାଙ୍ଗ ନାମକ ଚାରିବର୍ଣ୍ଣ, ରଜସ୍ତମୋ ରହିତ ଓ ସହସ୍ରାୟୁ ହୁଅନ୍ତି, ସେମାନଙ୍କର ଦର୍ଶନ ଓ ସନ୍ତାନୋତ୍ପାଦନ ଦେବ ତୁଲ୍ୟ ହୁଏ, ସୁତରାଂ ସେମାନେ ବେଦବିଦ୍ୟା ଦ୍ୱାରା ଭଗବାନ ବେଦମୟ ସୂର୍ଯ୍ୟ ଯେ ଆତ୍ମସ୍ୱରୂପ ଓ ସ୍ୱର୍ଗଦ୍ୱାର ତାହାଙ୍କୁ ଉପାସନା କରିଥାନ୍ତି । ୪ ।

---

ଜମ୍ବୁଦ୍ୱୀପ ଯେତେ ପ୍ରମାଣ
ପ୍ଲକ୍ଷ ଯେ ତହିଁର ଦ୍ୱିଗୁଣ
ଜମ୍ବୁବୃକ୍ଷେ ଏ ଦ୍ୱୀପ ଖ୍ୟାତ
ପ୍ଲକ୍ଷରେ ସେ ଦ୍ୱୀପ ବିଦିତ
ସପ୍ତଜିହ୍ୱ ଅଗ୍ନି ତହିଁ
ଅପରେ ଯେତେଜନ୍ତୁ ରହି । ୨-୪ ।

ର୍ଦ୍ଧ୍ୱାୟନସତ୍ୟାଙ୍ଗସଂଜ୍ଞାଶ୍ଚତ୍ୱାରୋ ବର୍ଣ୍ଣାଃ ସହସ୍ରାୟୁଷୋ ବିବୁଧୋପମସନ୍ଦର୍ଶନ ପ୍ରଜନନାଃ ସ୍ୱର୍ଗଦ୍ୱାରଂ ତ୍ରୟ୍ୟା ବିଦ୍ୟୟା ଭଗବନ୍ତଂ ତ୍ରୟୀମୟଂ ସୂର୍ଯ୍ୟମାତ୍ମାନଂ ଯଜନ୍ତେ ।୪।

ପ୍ରତ୍ନସ୍ୟ ବିଷ୍ଣୋ ରୂପଂ ଯତ୍ ସତ୍ୟସ୍ୟର୍ତ୍ତସ୍ୟ ବ୍ରହ୍ମଣଃ ।
ଅମୃତସ୍ୟ ଚ ମୃତ୍ୟୋଶ୍ଚ ସୂର୍ଯ୍ୟମାତ୍ମାନମୀମହି ଇତି । ୫ ।

ପ୍ଳକ୍ଷାଦିଷୁ ପଞ୍ଚସୁ ପୁରୁଷାଣାମାୟୁରିନ୍ଦ୍ରିୟମୋଜଃ ସହୋ ବଳଂ ବୁଦ୍ଧିର୍ବିକ୍ରମ ଇତି ଚ ସର୍ବେଷାମୌତ୍ପତ୍ତିକୀ ସିଦ୍ଧିରବିଶେଷେଣ ବର୍ତ୍ତତେ । ୬ ।

ପ୍ଳକ୍ଷସ୍ତୁ ସମାନେନେକ୍ଷୁରସୋଦେନାବୃତୋ ଯଥା ତଥା ଦ୍ୱୀପୋଽପି ଶାଲ୍ମଲୋ ଦ୍ୱିଗୁଣବିଶାଲ ସମାନେନ ସୁରୋଦେନାବୃତଃ ପରିବୃଙ୍କ୍ତେ । ୭ ।

---

ସେମାନଙ୍କର ଉପାସନା ମନ୍ତ୍ର ଯଥା :—ଯେଉଁ ପୁରାଣ ପୁରୁଷ ବିଷ୍ଣୁରୂପ, ଯେ ସତ୍ୟ ଅର୍ଥାତ୍ ଅନୁଷ୍ଠୀୟମାନ ଧର୍ମର ଋତର ଅର୍ଥାତ୍ ପ୍ରତୀୟମାନ ଧର୍ମର, ବେଦର, ଶୁଭଫଳର ଓ ଅଶୁଭଫଳର ଅଧିଷ୍ଠାତା. ସେହି ସୂର୍ଯ୍ୟଦେବଙ୍କ ଶରଣାପନ୍ନ ହେଉଅଛୁ । ୫ ।

ପ୍ଳକ୍ଷାଦି ପଞ୍ଚଦ୍ୱୀପରେ ପୁରୁଷମାନଙ୍କର ଆୟୁ, ଇନ୍ଦ୍ରିୟ, ମନୋବଳ, ଇନ୍ଦ୍ରିୟବଳ, ଦେହବଳ, ବୁଦ୍ଧି ଓ ବିକ୍ରମ ଏ ସମସ୍ତ ସ୍ୱାଭାବିକ ଭାବରେ ସିଦ୍ଧିଲାଭ କରି ସମାନଭାବରେ ରହିଅଛି । ୬ ।

ପ୍ଳକ୍ଷଦ୍ୱୀପ ଯେପରି ସମାନ ପରିମାଣ ଇକ୍ଷୁ ସମୁଦ୍ରଦ୍ୱାରା ପରିବେଷ୍ଟିତ ସେହିପରି ଶାଲ୍ମଳ ଦ୍ୱୀପ ପ୍ଳକ୍ଷଦ୍ୱୀପ ଅପେକ୍ଷା ଦ୍ୱିଗୁଣ ବିଶାଳ ଏବଂ ସମାନ ପରିମାଣରେ ସୁରୋଦକ ସମୁଦ୍ର ଦ୍ୱାରା ପରିବେଷ୍ଟିତ ହୋଇଅଛି । ୭ ।

---

ପ୍ରିୟବ୍ରତର ସେ ନନ୍ଦନ
ଇଧ୍ମଜିହ୍ୱ ତାହାର ନାମ ।
ସେ ଦ୍ୱୀପ ବିଭାଗ ସେ କରି
ପୁତ୍ରଙ୍କୁ ଦେଲା ଦଣ୍ଡଧାରୀ
ସପ୍ତପୁତ୍ରେ ଯେଉଁମାନେ
ସପ୍ତ ବରଷ ଯଥୋଚିତେ
କଲେ ପର୍ଯ୍ୟନ୍ତେ ଯୋଗବଳେ
ଅଛି ସେ ଅବନୀ ମଣ୍ଡଳେ
ବରଷ ନାମ ଶୁଣ କହି
ଶିବ ବୟସ ଶାନ୍ତ ହୋଇ
ସୁଭଦ୍ର କ୍ଷେମ ଯେ ଅମୃତ
ଅଭୟ ନାମେ ଏ ବିଦିତ । ୫।

ଏଥେ ଯେତେକ ଗିରିମାନ
ଅଛନ୍ତି ଶୁଣ ହେ ରାଜନ
ମଣିକୂଟ ଯେ ଇନ୍ଦ୍ରସେନ
ବଜ୍ରକୂଟ ଯେ ଜ୍ୟୋତିଷ୍ମାନ
ମେଘମାଳ ସୁଦର୍ଶ ଦୁଇ
ହିରଣ୍ୟଷ୍ଠୀବ ଯେ ଅଛଇ
ସାବିତ୍ରୀ ଆଙ୍ଗିରସୀ ବେନି
ଅରୁଣ ନୃମଣା ତଟିନୀ
ଋତମ୍ଭରା ସେ ସୁପ୍ରଭାତା
ସତ୍ୟମ୍ଭରା ନାମେ ବିଖ୍ୟାତା
ଏ ମହାନଦୀମାନେ ତହିଁ
ଏଣୁ ସେ ସ୍ଥଳୀ ବିରାଜଇ ।୬।

ତହିଁର ଜଳ ସ୍ନାନ ପାନେ
ମାନବ ପଶୁ ଜୀବମାନେ
ସକଳ ପାପ ଦୂର କରି
ସୁଖେ ଅଛନ୍ତି ସେ ବିହରି
ଦେବଙ୍କ ଆୟୁଷ ପ୍ରମାଣେ
ଜୀବନ୍ତି ତହିଁ ପ୍ରାଣିମାନେ
ଯଜ୍ଞ ଯୋଗ ନାନାପ୍ରକାରେ
ସୂର୍ଯ୍ୟଙ୍କୁ ପୂଜନ୍ତି ସେ ନରେ
ସ୍ତୁତି କରନ୍ତି ଏ ବଚନ
ଶୁଣ ରାଜନ ସାବଧାନେ ।୭।

ଯତ୍ର ହ ବୈ ଶାଲ୍ମଳୀ ପ୍ଲକ୍ଷାୟାମା । ଯସ୍ୟାଂ ବାବ କିଲ ନିଲୟମାହୁର୍ଭଗବତଶ୍ଛନ୍ଦଃସ୍ତୁତଃ ପତତ୍ରିରାଜସ୍ୟ ସା ଦ୍ୱୀପହୂତୟେ ଉପଲକ୍ଷ୍ୟତେ । ୮ ।

ତଦ୍ଦ୍ୱୀପାଧିପତିଃ ପ୍ରିୟବ୍ରତାତ୍ମଜୋ ଯଜ୍ଞବାହୁଃ ସ୍ୱସୁତେଭ୍ୟଃ ସପ୍ତଭ୍ୟସ୍ତନ୍ନାମାନି ସପ୍ତବର୍ଷାଣି ବ୍ୟଭଜତ୍ ସୁରୋଚନଂ ସୌମନସ୍ୟଂ ରମଣକଂ ଦେବବର୍ହଂ ପାରିଭଦ୍ରମାପ୍ୟାୟନମଭିଜ୍ଞାତମିତି । ୯ ।

ତେଷୁ ବର୍ଷାଦ୍ରୟୋ ନଦ୍ୟଶ୍ଚ ସପ୍ତୈବାଭିଜ୍ଞାତାଃ । ସ୍ୱରସଃ ଶତଶୃଙ୍ଗୋ ବାମଦେବଃ କୁନ୍ଦଃ କୁମୁଦଃ ପୁଷ୍ପବର୍ଷଃ ସହସ୍ରଶ୍ରୁତିରିତି । ଅନୁମତୀ ସିନୀବାଲୀ ସରସ୍ୱତୀ କୁହୂ ରଜନୀ ନନ୍ଦା ରାକେତି । ୧୦ ।

ତଦ୍ବର୍ଷପୁରୁଷାଃ ଶ୍ରୁତଧରବୀର୍ଯ୍ୟଧରବସୁନ୍ଧରେଷୁନ୍ଧରସଂଜ୍ଞା ଭଗବନ୍ତଂ ବେଦମୟଂ ସୋମମାତ୍ମାନଂ ବେଦେନ ଯଜନ୍ତେ । ୧୧ ।

---

ହେ ରାଜନ ! ଏହି ଦ୍ୱୀପରେ ପ୍ଲକ୍ଷ ତୁଲ୍ୟ ବିଶାଳ ଶାଳ୍ମଳୀ ବୃକ୍ଷ ରହିଅଛି । ତାହାର ପରିମାଣ ପୂର୍ବୋକ୍ତ ପ୍ଲକ୍ଷ ଦ୍ୱୀପ ତୁଲ୍ୟ, ଏହି ବୃକ୍ଷର ନାମାନୁସାରେ ଏହି ଦ୍ୱୀପର ନାମ ଶାଳ୍ମଳୀଦ୍ୱୀପ ହୋଇଅଛି ।୮।

ସେହି ଦ୍ୱୀପରେ ପକ୍ଷୀରାଜ ଗରୁଡ଼ ବାସ କରିଥାନ୍ତି । ସେ ସ୍ୱୀୟ ଅବୟବସ୍ୱରୂପ ବେଦମନ୍ତ୍ର ଦ୍ୱାରା ଶ୍ରୀବିଷ୍ଣୁଙ୍କ ସ୍ତୁତି କରିଥାନ୍ତି, ଏହା ଜ୍ଞାନୀମାନଙ୍କର ମତ । ପ୍ରିୟବ୍ରତଙ୍କ ପୁତ୍ର ଯଜ୍ଞବାହୁ ଏହି ଦ୍ୱୀପର ଅଧିପତି ସେ ଏହି ଦ୍ୱୀପକୁ ସପ୍ତବର୍ଷରେ ବିଭକ୍ତକରି ନିଜର ସପ୍ତପୁତ୍ରଙ୍କୁ ପ୍ରଦାନ କରିଥିଲେ । ସେ ପ୍ରତ୍ୟେକର ନାମାନୁସାରେ ଏହି ବର୍ଷମାନଙ୍କର ନାମକରଣ ହୋଇଅଛି ଯଥା ;—ସୁରୋଚନ, ସୌମନସ, ଲବଣକ, ଦେବବର୍ହି, ପାରିଭଦ୍ର, ଆପ୍ୟାୟନ ଏବଂ ଅଭିଜ୍ଞାତ । ୯ ।

ଏହି ଦ୍ୱୀପରେ ସାତୋଟି ପର୍ବତ ଓ ସାତୋଟି ନଦୀ ପ୍ରସିଦ୍ଧ । ସପ୍ତପର୍ବତମାନଙ୍କର ନାମ ଯଥା—ସରସ, ଶତଶୃଙ୍ଗ, ବାମଦେବ, କୁନ୍ଦ, କୁମୁଦ, ପୁଷ୍ପବର୍ଷ, ସହସ୍ରଶ୍ରୁତି, ସପ୍ତନଦୀର ନାମ ଯଥା—ଅନୁମତି ସିନିବାଲୀ, ସରସ୍ୱତୀ, କୁହୁ, ରଜନୀ, ନନ୍ଦା ଏବଂ ରାକା । ୧୦ ।

ତଦ୍ବର୍ଷ ବାସୀ ଶ୍ରୁତଧର, ବୀର୍ଯ୍ୟଧର, ବସୁନ୍ଧର, ଇଷୁନ୍ଧର ନାମକ ପୁରୁଷମାନେ ବେଦମୟ ଆତ୍ମା ସ୍ୱରୂପ ଭଗବାନ୍ ସୋମଦେବଙ୍କୁ ବେଦ ବିଧାନରେ ସର୍ବଦା ଉପାସନା କରି ସ୍ତବ କରିଥାନ୍ତି ।

---

ବିଷ୍ଣୁର ରୂପକୁ ତୁ ଧରି
ଅଖିଳ ପ୍ରକାଶ ଯେ କରି
ତୁ ସତ୍ୟ ବ୍ରହ୍ମ ଯେ ପୁରୁଷ
ସକଳ ଲୋକେ ତୋର ବାସ
ତୁ ଯେ ଅଶେଷ ବହୁ ନାମ
ତୋ ପାଦେ ଆମ୍ଭର ପ୍ରଣାମ । ୮ ।
ଯେ ସପ୍ତ ଦ୍ୱୀପ ପ୍ଲକ୍ଷ ଆଦି
ଏଥିରେ ଯେତେକ ପ୍ରସିଦ୍ଧି
ସେ ପ୍ରାଣିମାନଙ୍କ ଆୟୁଷ
ଇନ୍ଦ୍ରିୟ ବଳ ଯେ ସାହସ

ସ୍ୱଇଚ୍ଛାମତେ ସେ ତୁଅଇ
ଇତପରତରୁ ଯେତିକି ତହିଁ
ପ୍ଲକ୍ଷଦ୍ୱୀପର ଚାରିପାଶେ
ଇକ୍ଷୁରସ ସିନ୍ଧୁ ପ୍ରକାଶେ
ଏହାକୁ ଦ୍ୱିଗୁଣ ବିସ୍ତାର
ଶାଳ୍ମଳ ଦ୍ୱୀପ ନୃପବର
ସୁରା ସମୁଦ୍ର ବେଢ଼ିତାରେ
ଅଛଇ ବଳୟ ଆକାରେ । ୯ ।
ସେ ଦ୍ୱୀପେ ଯାର ଅଧିକାର
ପ୍ରିୟବ୍ରତର ସେ କୁମର

ଯଜ୍ଞବାହୁ ତାହାର ନାମ
ସେ ସାଧୁ ବିଷ୍ଣୁପରାୟଣ
ଏହି ସପ୍ତ ବରଷ କରି
ପୁତ୍ରଙ୍କୁ ଦେଲ ଦଣ୍ଡଧାରୀ
ବେଷ୍ଟରେ ତାର ସପ୍ତପୁତ୍ରେ
ନେଲେ ସେ ଯେ ଯାହାର ମତେ
ସେ ସାତ ପୁତ୍ରଙ୍କର ନାମ
ରାଜନ ଶୁଣ ସାବଧାନ
ପାରିଭଦ୍ର ଯେ ସୁରୋଚନ
ଦେବବର୍ହି ହେ ଆପ୍ୟାୟନ

ସ୍ୱଗୋଭିଃ ପିତୃଦେବେଭ୍ୟୋ ବିଭଜନ୍ କୃଷ୍ଣଶୁକ୍ଲୟୋଃ ।
ଅନ୍ନଃ ପ୍ରଜାନାଂ ସର୍ବାସାଂ ରାଜା ନଃ ସୋମ ଆସ୍ତ୍ୱିତି । ୧୨ ।

ଏବଂ ସୁରୋଦାଦ୍‌ବହିସ୍ତଦ୍ଦ୍ୱିଗୁଣଃ ସମାନେନାବୃତୋ ଘୃତୋଦେନ ଯଥାପୂର୍ବଃ କୁଶଦ୍ୱୀପୋ ଯସ୍ମିନ୍ କୁଶସ୍ତମ୍ବୋ ଦେବକୃତସ୍ତଦ୍ଦ୍ୱୀପାଖ୍ୟାପନୋ ଜ୍ୱଳନ ଇବାପରଃ ସ୍ୱଶଷ୍ପରୋଚିଷା ଦିଶୋ ବିରାଜୟତି । ୧୩ ।

ତଦ୍ଦ୍ୱୀପପତିଃ ପ୍ରୈୟବ୍ରତୋ ରାଜନ୍ ହିରଣ୍ୟରେତା ନାମ ସ୍ୱଂ ଦ୍ୱୀପଂ ସପ୍ତଭ୍ୟଃ ସ୍ୱପୁତ୍ରେଭ୍ୟୋ ଯଥାଭାଗଂ ବିଭଜ୍ୟ ସ୍ୱୟଂ ତପ ଆତିଷ୍ଠଦ୍ ବସୁବସୁଦାନଦୃଢ଼ରୁଚିନାଭିଗୁପ୍ତସତ୍ୟବ୍ରତବିପ୍ରବାମଦେବନାମଭ୍ୟଃ । ୧୪ ।

ତେଷାଂ ବର୍ଷେଷୁ ସୀମାଗିରୟୋ ନଦ୍ୟଶ୍ଚାଭିଜ୍ଞାତାଃ ସପ୍ତ ସପ୍ତୈବ । ବଭ୍ରୁଶ୍ଚତୁଃଶୃଙ୍ଗଃ କପିଲଶ୍ଚିତ୍ରକୂଟୋ ଦେବାନୀକ ଊର୍ଦ୍ଧ୍ୱରୋମା ଦ୍ରବିଣ ଇତି । ରସକୁଲ୍ୟା ମଧୁକୁଲ୍ୟା ମିତ୍ରବିନ୍ଦା ଶ୍ରୁତବିନ୍ଦା ଦେବଗର୍ଭା ଘୃତଚ୍ୟୁତା ମନ୍ତ୍ରମାଳେତି । ୧୫ ।

---

"ହେ ଭଗବନ୍, ସୋମ ସ୍ୱୀୟ ରଶ୍ମି ଦ୍ୱାରା କୃଷ୍ଣ ଓ ଶୁକ୍ଳ ପକ୍ଷରେ ଯଥାକ୍ରମେ ପିତୃ ଓ ଦେବତାମାନଙ୍କର ଅନ୍ନ ବିଭାଗ କରିଥାନ୍ତି । ସେ ଆମ୍ଭ ପ୍ରଜାମାନଙ୍କର ରାଜା ହୁଅନ୍ତୁ ।" । ୧୧-୧୨ ।

ଏହାପରେ ସୁରାସମୁଦ୍ରର ବହିର୍ଭାଗରେ କୁଶଦ୍ୱୀପ ଅବସ୍ଥିତ, ଏହାର ପରିମାଣ ପୂର୍ବ ସମୁଦ୍ରର ଦ୍ୱିଗୁଣ, ଯେଉଁ ଦ୍ୱୀପରେ ଦେବକୃତ ଗୋଟିଏ କୁଶସ୍ତମ୍ବ ଅବସ୍ଥିତ ଏବଂ ସେହି କୁଶ ଦ୍ୱୀପ ସମ ପରିମାଣ ଘୃତ ସମୁଦ୍ରରେ ପରିବେଷ୍ଟିତ, କୁଶସ୍ତମ୍ବର ନାମାନୁସାରେ ଏହାର ନାମ କୁଶଦ୍ୱୀପ ହୋଇଅଛି । ଏହି କୁଶସ୍ତମ୍ବ ଦ୍ୱିତୀୟ ଅଗ୍ନିତୁଲ୍ୟ, ଏହାର କୋମଳ ଶିଖାର ଦୀପ୍ତି ଦିଗବିଦିଗମାନଙ୍କୁ ଉଦ୍ଦୀପିତ କରିଅଛି ।୧୩।

ହେ ରାଜନ୍ ! ଏହି ଦ୍ୱୀପର ଅଧିପତି ପ୍ରିୟବ୍ରତ ପୁତ୍ର ହିରଣ୍ୟରେତା, ସେ ଏହି ଦ୍ୱୀପକୁ ତାଙ୍କର ସପ୍ତପୁତ୍ର ମାନଙ୍କ ମଧ୍ୟରେ ବିଭାଗ କରିଦେଇ ନିଜେ ତପଶ୍ଚରଣ କରିଥିଲେ । ଏମାନଙ୍କର ନାମ ଯଥା :— ବସୁ, ବସୁଦାନ, ଦୃଢରୁଚି,ନାଭିଗୁପ୍ତ, ସତ୍ୟବ୍ରତ, ବିପ୍ରନାମ ଏବଂ ଦେବନାଥ । ୧୪ ।

ଏହି ସପ୍ତବର୍ଷରେ ସାତୋଟି ପ୍ରଧାନ ପର୍ବତ ଓ ସାତୋଟି ପ୍ରଧାନ ନଦୀ ରହିଅଛି, ପର୍ବତମାନଙ୍କର ନାମଯଥା :-ବଭ୍ରୁ, ଚତୁଶୃଙ୍ଗ, କପିଳ, ଚିତ୍ରକୂଟ, ଦେବାନୀକ, ଊର୍ଦ୍ଧ୍ୱରୋମା ଏବଂ ଦ୍ରବୀଣ, ସାତୋଟି ନଦୀର ନାମ ଯଥା—ରସକୁଲ୍ୟା, ମଧୁକୁଲ୍ୟା, ମିତ୍ରବିନ୍ଦା, ଶ୍ରୁତବିନ୍ଦା, ଦେବଗର୍ଭା, ଘୃତଚ୍ୟୁତା ଏବଂ ମନ୍ତ୍ରମାଳା ।୧୫।

---

| | | |
|---|---|---|
| ରମଣକ ଯେ ଅଭିଜ୍ଞାତ । | ସିନୀବାଳି ଯେ ସରସ୍ୱତୀ | ହେ ନାଥ ତୋର ସୁଧାରସ |
| ସୌମନସ ଏ ଗିରି ସାତ | ରାକା ନନ୍ଦା ଯେ ଅନୁମତୀ | ପିତୃଦେବତାଙ୍କ ସନ୍ତୋଷ ।୧୦,୧୨ |
| ଏହି ବରଷେ ନଦୀ ଶିର | ରଜନୀ କୁହୁ ଜାଣ ବୀର | ଘୃତ ସମୁଦ୍ର ମଧ୍ୟ ଦେଶେ |
| ଏତେ ଅଛନ୍ତି ଦଣ୍ଡଧାର | ନଦୀଙ୍କ ସପ୍ତ ନାମ ଏହି | କୁଶ ଦ୍ୱୀପ ନାମ ପ୍ରକାଶେ |
| ଶତଶୃଙ୍ଗ ଯେ ପୁଷ୍ପବର୍ଷ | ଏ ଯେ ବରଷ ପ୍ରାଣୀମାନେ | କ୍ରମେ ସେ ସିନ୍ଧୁ ଦ୍ୱୀପମାନ |
| କୁମୁଦ କୁନ୍ଦ ଯେ ସ୍ୱରସ | ତପ ଆରାଧି ସାବଧାନେ | ପୂର୍ବଙ୍କୁ ଅପରେ ଦ୍ୱିଗୁଣ |
| ସହସ୍ର ଶ୍ରୁତିର ସହିତେ | ଯେ ରାଜା ଭଗବାନ ସୋମ | ପ୍ରିୟବ୍ରତର ସେ ନନ୍ଦନ |
| ବାମଦେବ ସପ୍ତ ପର୍ବତେ | ତାହାଙ୍କୁ କରନ୍ତି ଭଜନ | ହିରଣ୍ୟରେତା ତାର ନାମ |

ଯାସାଂ ପୟୋଭିଃ କୁଶଦ୍ୱୀପୌକସଃ କୁଶଳକୋବିଦାଭିଯୁକ୍ତକୁଲକସଂଜ୍ଞା ଭଗବନ୍ତଂ ଜାତବେଦଃସ୍ୱରୂପିଣଂ କର୍ମ୍ମକୌଶଲେନ ଯଜନ୍ତେ । ୧୬ ।

ପରସ୍ୟ ବ୍ରହ୍ମଣଃ ସାକ୍ଷାଜ୍ଜାତବେଦୋଽସି ହବ୍ୟବାଟ୍ ।
ଦେବାନାଂ ପୁରୁଷାଙ୍ଗାଣାଂ ଯଜ୍ଞେନ ପୁରୁଷଂ ଯଜ ଇତି । ୧୭ ।

ତଥା ଘୃତୋଦାଦ୍ ବହିଃ କ୍ରୌଞ୍ଚଦ୍ୱୀପୋ ଦ୍ୱିଗୁଣଃ ସମାନେନ କ୍ଷୀରୋଦେନ ପରିତ ଉପକ୍ଳୃପ୍ତଃ, ବୃତୋ ଯଥା କୁଶଦ୍ୱୀପୋ ଘୃତୋଦେନ । ଯସ୍ମିନ୍ କ୍ରୌଞ୍ଚନାମା ପର୍ବ୍ବତରାଜୋ ଦ୍ୱୀପନାମ ନିବର୍ତ୍ତକ ଆସ୍ତେ । ୧୮ ।

ଯୋଽସୌ ଗୁହପ୍ରହରଣୋନ୍ମଥିତନିତମ୍ବକୁଞ୍ଜୋଽପି କ୍ଷୀରୋଦେନାଭିଷିଚ୍ୟମାନୋ ଭଗବତା ବରୁଣେନାଭିଗୁପ୍ତୋ ନିର୍ଭୟୋ ବଭୂବ । ୧୯ ।

---

ଯେଉଁ ନଦୀମାନଙ୍କର ଜଳ ସେବନକରି କୁଶଦ୍ୱୀପ ବାସୀମାନେ କୁଶଳ, କୋବିଦ, ଅଭିଯୁକ୍ତ ଓ କୁଳକ ନାମରେ ପ୍ରସିଦ୍ଧି ଲାଭ କରିଅଛନ୍ତି ଏବଂ କର୍ମ କୌଶଳ ଦ୍ୱାରା ଭଗବାନ୍ ଅଗ୍ନିଦେବଙ୍କୁ ଯଜ୍ଞଦ୍ୱାରା ଆରାଧନା କରୁଅଛନ୍ତି ଏବଂ ସ୍ତବକରୁ ଅଛନ୍ତି । ୧୬ ।

ହେ ଜାତବେଦାଃ ! ଆପଣ ସାକ୍ଷାତ ପରମବ୍ରହ୍ମଙ୍କର ହବ୍ୟ ବହନ କରନ୍ତି ଏବଂ ସେହି ବିରାଟ ପୁରୁଷଙ୍କର ଅଙ୍ଗ ସ୍ୱରୂପ ଦେବଗଣଙ୍କର ଯଜ୍ଞଦ୍ୱାରା ହରିଙ୍କୁ ଆରାଧନା କରିଥାନ୍ତି । ୧୭ ।

ଯେପରି କୁଶଦ୍ୱୀପ ଘୃତ ସମୁଦ୍ରଦ୍ୱାରା ପରିବେଷ୍ଟିତ, ସେହିପରି ଘୃତସମୁଦ୍ରର ବହିର୍ଭାଗରେ ଦ୍ୱିଗୁଣ ପରିମାଣରେ କ୍ରୌଞ୍ଚଦ୍ୱୀପ ରହିଅଛି ଏହାସମ ପରିମାଣ କ୍ଷୀରସମୁଦ୍ର ଦ୍ୱାରା ପରିବେଷ୍ଟିତ, ସେହି ଦ୍ୱୀପରେ କ୍ରୌଞ୍ଚ ନାମରେ ପର୍ବତ ଥିବାରୁ ତାହାର ଏପରି ନାମ କରଣ ହୋଇଅଛି । ୧୮ ।

କାର୍ତ୍ତିକେୟଙ୍କର ପ୍ରହରଣ ବା ଅସ୍ତ୍ରାଘାତରେ ଏହି ପର୍ବତର ନିତମ୍ବ ଦେଶରେ ମଧ୍ୟକୁଞ୍ଜମାନ ଉନ୍ମଥିତ ହୋଇଥିଲେ ହେଁ କ୍ଷୀରୋଦ ଜଳରେ ଅଭିଷିକ୍ତ ଓ ଭଗବାନ୍ ବରୁଣଙ୍କ କର୍ତ୍ତୃକ ରକ୍ଷିତ ହୋଇ ନିର୍ଭୟରେ ରହିଅଛି । ୧୯ ।

---

କୁଶ ଦ୍ୱୀପରେ ଯେ ରାଜନ
ତାହାର ସପତ ନନ୍ଦନ
ଏ ସର୍ବ କ୍ରମେ ଦଣ୍ଡଧାରୀ
ପୁତ୍ରଙ୍କୁ ଦେଲେ ଭାଗ କରି
ସପତ ବରଷକୁ କଲେ
ଯେ ଯାହା ମତେ ତାଙ୍କୁ ଦେଲେ
ବସୁଦାନ ଯେ ସତ୍ୟବ୍ରତ
ଦୃଢରୁଚ ଯେ ନାଭିଗୁପ୍ତ
ବସୁ ଯେ ବପ୍ର ନାମ ଆଉ
ଦେବ ନାମ ଯେ ପୁତ୍ର ଏହୁ
ନଦୀ ପର୍ବତ ସୀମାକରି
ବେଗରେ ଦେଲେ ଦଣ୍ଡଧାରୀ

ଗିରିଙ୍କ ନାମେ ମହୀପାଳ
ବଭ୍ରୁ ଚତୁଃଶୃଙ୍ଗ କପିଳ
ଚିତ୍ରକୂଟ ଯେ ଊର୍ଦ୍ଧ୍ୱରୋମ
ଦେବାନୀକ ଗିରି ଦ୍ରବିଣ
ରସକୁଲ୍ୟା ଯେ ମିତ୍ର ବିନ୍ଦା
ମଧୁକୁଲ୍ୟା ଯେ ଶ୍ରୁତବିନ୍ଦା
ଦେବଗର୍ଭା ଯେ ଘୃତଚ୍ୟୁତା
ମନ୍ତ୍ରମାଳା ଗିରି ଦୁହିତା
ଏ ସପ୍ତ ନଦୀ ଜଳପାନେ
ସୁଖେ ବସନ୍ତି ତହିଁ ଜନେ
ଜାତବେଦ ରୂପକୁ ଧ୍ୟାୟି
ଅଛନ୍ତି ଏକମନ ହୋଇ

ପରମବ୍ରହ୍ମର ମୂରତି
ଯେ ରୂପ ଯୋଗିଜନେ ଚିନ୍ତି
ସଂସାରେ ଯେତେ ସାଧୁଜନେ
ଯଜ୍ଞ କରନ୍ତି ତୋଷମନେ
ଏମନ୍ତେ ନାନା ସ୍ତୁତିମତେ
ଅଗ୍ନି ପୂଜନ୍ତି ସେଥୋଇତେ ।୧୬,୧୭
କ୍ଷୀରସିନ୍ଧୁ ମଧ୍ୟଭାଗରେ
ଦ୍ୱୀପ ଯେ କ୍ରୌଞ୍ଚନାମ ଧରେ
କ୍ରୌଞ୍ଚନାମେ ଯେ ଗିରିବର
ତା ନାମେ ନାମ ସେ ଦ୍ୱୀପର ।୧୮
ପ୍ରିୟବ୍ରତର ପୁତ୍ର ହୋଇ
ଘୃତପୃଷ୍ଠ ନାମ ବହଇ

ତସ୍ମିନ୍ନପି ପ୍ରୈୟବ୍ରତୋ ଘୃତପୃଷ୍ଠୋ ନାମାଧିପତିଃ ସ୍ୱେ ଦ୍ୱୀପେ ବର୍ଷାଣି ସପ୍ତ ବିଭଜ୍ୟ ତେଷୁ ପୁତ୍ରନାମସୁ ସପ୍ତରକ୍ଥାଦାନ୍ ବର୍ଷପାନ୍ ନିବେଶ୍ୟ ସ୍ୱୟଂ ଭଗବାନ୍ ଭଗବତଃ ପରମକଲ୍ୟାଣଯଶସ ଆତ୍ମଭୂତସ୍ୟ ହରେଶ୍ଚରଣାରବିନ୍ଦମୁପଜଗାମ ।୨୦।

ଆମୋ ମଧୁରୁହୋ ମେଘପୃଷ୍ଠଃ ସୁଧାମା ଭ୍ରାଜିଷ୍ଠୋ ଲୋହିତାର୍ଣୋ ବନସ୍ପତିରିତି ଘୃତପୃଷ୍ଠସୁତାଃ । ତେଷାଂ ବର୍ଷଗିରୟଃ ସପ୍ତ, ସପ୍ତୈବ ନଦ୍ୟଶ୍ଚାଭିଖ୍ୟାତାଃ । ଶୁକ୍ଳୋ ବର୍ଦ୍ଧମାନୋ ଭୋଜନ ଉପବର୍ହିଣୋ ନନ୍ଦୋ ନନ୍ଦନଃ ସର୍ବତୋଭଦ୍ର ଇତି । ଅଭୟା ଅମୃତୌଘା ଆର୍ଯ୍ୟକା ତୀର୍ଥବତୀ ରୂପବତୀ ପବିତ୍ରବତୀ ଶୁକ୍ଳେତି । ୨୧ ।

ଯାସାମମ୍ଭଃ ପବିତ୍ରମମଲମୁପଯୁଞ୍ଜାନାଃ ପୁରୁଷର୍ଷଭଦ୍ରବିଣଦେବକସଂଜ୍ଞା ବର୍ଷପୁରୁଷା ଆପୋମୟଂ ଦେବମପାଂ ପୂର୍ଣ୍ଣେନାଞ୍ଜଳିନା ଯଜନ୍ତେ । ୨୨ ।

ଆପଃ ପୁରୁଷବୀର୍ଯ୍ୟାଃ ସ୍ଥ ପୁନନ୍ତୀର୍ଭୂର୍ଭୁବଃ ସ୍ୱଃ ।
ତା ନଃ ପୁନନ୍ତ୍ୱମୀବଘ୍ନୀଃ ସ୍ପୃଶତାମାତ୍ମନା ଭୁବ ଇତି । ୨୩ ।

ଏହି କ୍ରୌଞ୍ଚଦ୍ୱୀପରେ ମଧ୍ୟ ପ୍ରିୟବ୍ରତଙ୍କର ଅନ୍ୟତମପୁତ୍ର ଘୃତପୃଷ୍ଠ ଅଧିପତି, ସେ ସେହି ଦ୍ୱୀପକୁ ସାତଭାଗରେ ବିଭକ୍ତକରି ତନ୍ନାମକ ସପ୍ତପୁତ୍ରଙ୍କୁ ସପ୍ତବର୍ଷର ଅଧିପତିରୂପେ ସନ୍ନିବେଶିତ କରି ସ୍ୱୟଂ ଜ୍ଞାନୀହୋଇ ଭଗବାନ ପରମ କଲ୍ୟାଣଯଶା ଆତ୍ମଭୂତ ଶ୍ରୀହରିଙ୍କର ଚରଣାରବିନ୍ଦକୁ ଗମନ କରିଥିଲେ । ୨୦ ।

ଘୃତପୃଷ୍ଠଙ୍କର ସାତପୁତ୍ର ଯଥା—ଆମ୍ର, ମଧୁରୁହ, ମେଘପୃଷ୍ଠ, ମଧୁ, ଭ୍ରାଜିଷ୍ଠ, ଲୋହିତବର୍ଣ୍ଣ ଓ ବନସ୍ପତି, ଏହି ସାତଜଣ ଘୃତପୃଷ୍ଠଙ୍କର ପୁତ୍ର, ସେମାନଙ୍କ ବର୍ଷରେ ସାତୋଟି ପର୍ବତ ଓ ସାତୋଟି ନଦୀ ପ୍ରଧାନ, ପର୍ବତମାନଙ୍କର ନାମ ଯଥା—ଶୁକ୍ଳ, ବର୍ଦ୍ଧମାନ, ଭୋଜନ, ଉପବର୍ହଣ ନନ୍ଦ, ନନ୍ଦନ, ସର୍ବତୋଭଦ୍ର, ସାତୋଟି ନଦୀର ନାମ ଯଥା—ଅଭୟା, ଅମୃତୌଘା, ଆର୍ଯ୍ୟକା, ତୀର୍ଥବତୀ, ରୂପବତୀ, ପବିତ୍ରବତୀ ଏବଂ ଶୁକ୍ଳା । ୨୧ ।

ସେମାନଙ୍କର ପବିତ୍ର ଓ ନିର୍ମଳଜଳ ସେହି ବର୍ଷବାସୀ ପୁରୁଷମାନେ ପାନ କରି ଓ ପୁରୁଷର୍ଷଭ, ଦ୍ରବିଣ, ଦେବକ ଇତ୍ୟାଦି ନାମ ଧାରଣ କରି ଜଳାଞ୍ଜଳି ଦ୍ୱାରା ଜଳମୟ ଭଗବାନଙ୍କୁ ଅର୍ଚ୍ଚନା କରିଥାନ୍ତି । ୨୨

ହେ ଜଳଦେବ ! ତୁମ୍ଭେ ଈଶ୍ୱର ହେବାକୁ ସମର୍ଥ ଏବଂ ଭୂଃ ଭୁବଃ ଓ ସ୍ୱର୍ଲୋକକୁ ପବିତ୍ର କରୁଅଛ । ଆମ୍ଭେମାନେ ପାପନାଶକାରୀ ତୁମ୍ଭଙ୍କୁ ସ୍ପର୍ଶ କରୁଅଛୁ, ଆମ୍ଭମାନଙ୍କୁ ତୁମ୍ଭେ ପବିତ୍ର କର ।୨୩।

ସେ ଦ୍ୱୀପେ ସ୍ୱାମୀ ତାହାର
ସପତ ତାହାର କୁମର
ସପ୍ତ ବରଷ କରି ଦେଇ
ଗଲେ ପ୍ରଭୁଙ୍କୁ ଭଜଇ ।୧୯-୨୦

ମଧୁରୁହ ଯେ ମେଘପୃଷ୍ଠ
ସୁଧାମା ଆମ୍ର ଯେ ଭ୍ରାଜିଷ୍ଠ
ଲୋହିତାର୍ଣ୍ଣ ଯେ ବନସ୍ପତି
ଏ ସପ୍ତ ନାମେ ବର୍ଷ ଖ୍ୟାତି

ଶୁକ୍ଳ ବର୍ଦ୍ଧମାନ ଭୋଜନ
ଉପବର୍ହି ନନ୍ଦ ନନ୍ଦନ
ସର୍ବତୋଭଦ୍ର ଗିରି ଆଦି
ଆବର ଶୁଣ ସପ୍ତ ନଦୀ

ଅଭୟା ଶୁକ୍ଳ ତୀର୍ଥ ବତୀ
ଅମୃତୌଘା ଯେ ରୂପବତୀ
ଅର୍ଯ୍ୟକା ଯେ ପବିତ୍ରବତୀ
ଏ ସପ୍ତ ନଦୀ ନାମ ଖ୍ୟାତି ।୨୧

ଯାହାର ଜଳ ପାନ କରି
ଦେବଦେହକୁ ପ୍ରାଣୀ ଧରି
ଏ ଜଳମୟ ରୂପରାଶି
ତାହାଙ୍କୁ ଭଜନ୍ତି ବିଶ୍ୱାସି ।୨୨।

ହେ ଆପମୟ ତୁ ଈଶ୍ୱର
ଭୁବନ ପବିତ୍ର ତୁ କର
ତୁମ୍ଭର ପାଦରେ ବନ୍ଦନ
ଆମ୍ଭର ନିର୍ମଳ କର ମନ ।୨୩।

ଏବଂ ପରସ୍ତାତ୍ କ୍ଷୀରୋଦାତ୍ ପରିତ ଉପବେଶିତଃ ଶାକଦ୍ୱୀପୋ ଦ୍ୱାତ୍ରିଂଶଲ୍ଲକ୍ଷ-ଯୋଜନାୟାମଃ ସମାନେନ ଦଧିମଣ୍ଡୋଦେନ ପରୀତଃ ।ଯସ୍ମିନ୍ ହ ଶାକୋ ନାମ ମହୀ-ରୁହଃ ସ୍ୱକ୍ଷେତ୍ରବ୍ୟପଦେଶକଃ । ଯସ୍ୟ ହ ମହାସୁରଭିଗନ୍ଧସ୍ତଂ ଦ୍ୱୀପମନୁବାସୟତି ।୨୪।

ତସ୍ୟାପି ପ୍ରୈୟବ୍ରତ ଏବାଧିପତିର୍ନାମ୍ନା ମେଧାତିଥିଃ । ସୋଽପି ବିଭଜ୍ୟ ସପ୍ତ ବର୍ଷାଣି ପୁତ୍ରନାମାନି ତେଷୁ ସ୍ୱାତ୍ମଜାନ୍ ପୁରୋଜବ-ମନୋଜବ-ବେପମାନ-ଧୂମ୍ରାନୀକ-ଚିତ୍ରରେଫ-ବହୁରୂପ-ବିଶ୍ୱଧାରସଂଜ୍ଞାନ୍ ନିଧାପ୍ୟାଧିପତୀନ୍ ସ୍ୱୟଂ ଭଗବତ୍ୟନନ୍ତ ଆବେଶିତମତିସ୍ତ-ପୋବନଂ ପ୍ରବିବେଶ । ୨୫ ।

ଏତେଷାଂ ବର୍ଷମର୍ଯ୍ୟାଦାଗିରୟୋ ନଦ୍ୟଶ୍ଚ ସପ୍ତ ସପ୍ତୈବ । ଈଶାନ ଉରୁଶୃଙ୍ଗୋ ବଲଭଦ୍ରଃ ଶତକେଶରଃ ସହସ୍ରସ୍ରୋତୋ ଦେବପାଲୋ ମହାନସ ଇତି । ଅନଘାୟୁର୍ଦା ଉଭୟସ୍ପୃଷ୍ଟିରପରାଜିତା ପଞ୍ଚପଦୀ ସହସ୍ରସ୍ରୁତିର୍ନିଜଧୃତିରିତି । ୨୬ ।

---

ଏହିପରି କ୍ଷୀରୋଦ ସମୁଦ୍ର ପରେ ତାହାର ଚତୁର୍ଦ୍ଦିଗରେ ବତିଶଲକ୍ଷ ଯୋଜନ ବିସ୍ତାରିତ ଶାକଦ୍ୱୀପ ରହିଅଛି, ତତ୍ସମାନ ଦଧି ମଣ୍ଡୋଦ ସମୁଦ୍ର ଦ୍ୱାରା ଚତୁର୍ଦ୍ଦିଗରେ ପରିବେଷ୍ଟିତ ଏବଂ ସେହି ଦ୍ୱୀପରେ ଶାକ ନାମକ ମହାବୃକ୍ଷ ଥିବାରୁ ତାହାର ଏପରି ନାମ କରଣ ହୋଇଅଛି, ସେହି ବୃକ୍ଷର ମହା ସୁରଭିଗନ୍ଧ ଏହି ଦ୍ୱୀପକୁ ଅତ୍ୟନ୍ତ ସୁବାସିତ କରି ରଖିଅଛି । ୨୪ ।

ସେହି ଦ୍ୱୀପରେ ପ୍ରିୟବ୍ରତଙ୍କର ଅନ୍ୟତମପୁତ୍ର ମେଧାତିଥି ଅଧିପତି, ସେ ମଧ୍ୟ ଏହି ଦ୍ୱୀପକୁ ପୁତ୍ର-ମାନଙ୍କର ନାମାନୁସାରେ ସାତ ଭାଗରେ ବିଭକ୍ତ କରିଥିଲେ ଯଥାଃ— ମନୋଜବ, ବେପମାନ, ଧୂମ୍ରାନୀକ ଚିତ୍ରରେଫ, ବହୁରୂପ, ବିଶ୍ୱାଧାରକ । ପୁତ୍ରମାନଙ୍କ ହସ୍ତରେ ରାଜ୍ୟଭାର ଅର୍ପଣକରି ସେ ଭଗବାନ୍ ଅନନ୍ତ-ଙ୍କଠାରେ ମନୋନିବେଶକରି ତପୋବନକୁ ଗମନ କରିଥିଲେ । ୨୫ ।

ଏହି ବର୍ଷମାନଙ୍କରେ ସାତୋଟି ପ୍ରଧାନ ପର୍ବତ ଓ ପ୍ରଧାନ ନଦୀ ରହିଅଛି । ଈଶାନ, ଉରୁଶୃଙ୍ଗ, ବଳଭଦ୍ର, ଶତକେଶର, ସହସ୍ରସ୍ରୋତା, ଦେବପାଳ ଓ ମହାନସ ଏହି ସପ୍ତ ପର୍ବତ, ଏବଂ ଅନଘା, ଆୟୁର୍ଦା ଉଭୟସ୍ପୃଷ୍ଟୀ, ଅପରାଜିତା, ପଞ୍ଚପଦୀ, ସହସ୍ରଶ୍ରୁତି ଏବଂ ନିଜଧୃତି ଏହି ସପ୍ତ ନଦୀ । ୨୬ ।

---

ଏ ଅନନ୍ତରେ ପରୀକ୍ଷିତ
ଶାକ ଦ୍ୱୀପର ଯେ ବୃତ୍ତାନ୍ତ
ବତିଶ ଲକ୍ଷ ଯେ ଯୋଜନ
ଶାକ ଦ୍ୱୀପର ପରିମାଣ
ଦଧି ସମୁଦ୍ର ବେଢ଼ି ତାରେ
ଅଛି ସେ ଏ ସିନ୍ଧୁ ମଧ୍ୟରେ
ତହିଁରେ ଶାକ ତରୁବର
ସୁଗନ୍ଧ ବାସଇ ପ୍ରଖର ।୨୪।
ପ୍ରିୟବ୍ରତର ସେ କୁମର
ମେଧାତିଥି ନାମ ତାହାର
ରାଜ୍ୟପଣ ହୋଇ ତହିଁ
ସେ ଶାକ ଦ୍ୱୀପ ସେ ଶାସଇ
ଦ୍ୱୀପକୁ ସାତଭାଗ କରି
ପୁତ୍ରଙ୍କୁ ଦେଲେ ଦଣ୍ଡଧାରୀ
ତାହାର ପୁତ୍ରଙ୍କର ନାମ
ରାଜନ ଶୁଣ ସାବଧାନ
ବେପମାନ ଯେ ମନୋଜବ
ଧୂମ୍ରାନୀକ ଯେ ପୁରୋଜବ
ଚିତ୍ରରେଫ ଯେ ବହୁରୂପ
ବିଶ୍ୱାଧାର ଏ ସାତ ନୃପ
ସପ୍ତ ବରଷ ଯେଉଁମାନେ
ଦେଇ ଏ ପୁତ୍ରେ ଯଥୋଚିତେ
ପ୍ରଭୁ ପାଦରେ ଚିତ୍ତଦେଇ
ତପୋବନରେ ସେ ରହିଲେ ।୨୫।
ଏ ଦ୍ୱୀପ ପର୍ବତର ନାମ
କହିବା ଶୁଣ ହେ ରାଜନ
ସହସ୍ରସ୍ରୋତା ଦେବପାଳ
ମହାନସ ଶତକେଶର
ଗିରି ବଳଭଦ୍ର ଈଶାନ
ଉରୁଶୃଙ୍ଗ ସେ ସାତନାମ
ଅପରାଜିତା ନିଜ ଧୃତି
ଆୟୁର୍ଦା ଯେ ସହସ୍ର ସ୍ରୁତି
ଉଭୟ ସ୍ପୃଷ୍ଟି ପଞ୍ଚପଦୀ
ଅନଘା ଆଦି ସପ୍ତ ନଦୀ ।୨୬।

ତଦ୍‌ବର୍ଷପୁରୁଷା ଋତବ୍ରତ ସତ୍ୟବ୍ରତଦାନବ୍ରତାନୁବ୍ରତନାମାନୋ ଭଗବନ୍ତଂ ବାୟ୍ୱାତ୍ମକଂ ପ୍ରାଣାୟାମବିଧୂତରଜସ୍ତମସଃ ପରମସମାଧିନା ଯଜନ୍ତେ । ୨୭ ।

ଅନ୍ତଃ ପ୍ରବିଶ୍ୟ ଭୂତାନି ଯୋ ବିଭର୍ତ୍ତ୍ୟାତ୍ମକେତୁଭିଃ ।
ଅନ୍ତର୍ଯ୍ୟାମୀଶ୍ୱରଃ ସାକ୍ଷାତ୍ ପାତୁ ନୋ ଯଦ୍‌ବଶେ ସ୍ଫୁଟମ୍ । ୨୮ ।

ଏବମେବ ଦଧିମଣ୍ଡୋଦାତ୍ ପରତଃ ପୁଷ୍କରଦ୍ୱୀପସ୍ତତୋ ଦ୍ୱିଗୁଣାୟାମଃ ସମନ୍ତତ ଉପକଳ୍ପିତଃ ସମାନେନ ସ୍ୱାଦୂଦକେନ ସମୁଦ୍ରେଣ ବହିରାବୃତଃ । ଯସ୍ମିନ୍ ବୃହତ୍‌ପୁଷ୍କରଂ ଜ୍ୱଳନଶିଖାମଳକନକପତ୍ରାୟୁତାୟୁତଂ ଭଗବତଃ କମଳାସନସ୍ୟାଧ୍ୟାସନଂ ପରିକଳ୍ପିତମ୍ । ୨୯

ତଦ୍ଦ୍ୱୀପମଧ୍ୟେ ମାନସୋତ୍ତରନାମୈକ ଏବାର୍ବାଚୀନ ପରାଚୀନବର୍ଷୟୋର୍ମର୍ଯ୍ୟାଦାଚଳୋଽୟୁତଯୋଜନୋଚ୍ଛ୍ରାୟାୟାମଃ । ଯତ୍ର ତୁ ଚତସୃଷୁ ଦିକ୍ଷୁ ଚତ୍ୱାରି ପୁରାଣି

---

ଏହି ବର୍ଷମାନଙ୍କର ପୁରୁଷମାନେ ଧୃତବ୍ରତ, ସତ୍ୟବ୍ରତ, ଦାନବ୍ରତ, ଅନୁବ୍ରତ ଇତ୍ୟାଦି ନାମରେ ଅଭିହିତ ଏବଂ ପ୍ରାଣାୟାମ ଦ୍ୱାରା ରଜୋଗୁଣ ଓ ତମୋଗୁଣ ରହିତ ହୋଇ ଭଗବାନ୍ ବାୟୁଙ୍କୁ ପରମ ସମାଧି ଯୋଗେ ଉପାସନା କରି ନିମ୍ନୋକ୍ତ ବାକ୍ୟରେ ସ୍ତୁତ କରିଥାନ୍ତି । ୨୭ ।

ଯେ ପ୍ରାଣାଦି ବୃତ୍ତିଦ୍ୱାରା ଭୂତ ସମୂହର ଅଭ୍ୟନ୍ତରରେ ଅବସ୍ଥାନ କରି ଭୂତମାନଙ୍କୁ ପାଳନ କରନ୍ତି ଏବଂ ଯେ ସର୍ବାନ୍ତର୍ଯ୍ୟାମୀ, ସାକ୍ଷାତ୍ ଈଶ୍ୱର ଏବଂ ଅଖିଳଜଗତ୍ ଯାହାଙ୍କର ବଶୀଭୂତ ସେ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ୨୮ ।

ଦଧିମଣ୍ଡୋଦ ସମୁଦ୍ରର ବହିର୍ଭାଗରେ ଶାକ ଦ୍ୱୀପର ଦ୍ୱିଗୁଣ ପରିମାଣ ପୁଷ୍କର ଦ୍ୱୀପ ଅବସ୍ଥିତ, ସେହି ଦ୍ୱୀପର ସ୍ୱାଦୁ ଜଳ ସମୁଦ୍ରଦ୍ୱାରା ଚତୁର୍ଦ୍ଦିଗରେ ପରିବେଷ୍ଟିତ ହୋଇଅଛି, ଏହି ଦ୍ୱୀପରେ ଗୋଟିଏ ସୁବୃହତ୍ ପୁଷ୍କର ବା ପଦ୍ମ ରହିଅଛି, ଏହା ଅଗ୍ନିଶିଖା ତୁଲ୍ୟ ଲକ୍ଷସଂଖ୍ୟକ ନିର୍ମଳ ସୁବର୍ଣ୍ଣ ପତ୍ରଦ୍ୱାରା ପରିପୂର୍ଣ୍ଣ ହୋଇଅଛି, ଏହି ପଦ୍ମ ଭଗବାନ୍ କମଳାସନ ବ୍ରହ୍ମାଙ୍କର ଅବସ୍ଥାନ କ୍ଷେତ୍ର ବୋଲି ନିର୍ଦ୍ଦେଶ କରାଯାଇଅଛି । ୨୯

ଏହି ଦ୍ୱୀପରେ ମାନସୋତ୍ତର ନାମକ ଗୋଟିଏ ସୀମା ପର୍ବତ ରହିଅଛି, ତାହା ପୂର୍ବରେ ଓ ପଶ୍ଚିମରେ ଦୁଇଟି ବର୍ଷକୁ ବିଭାଗ କରିଅଛି । ଏହି ପର୍ବତର ଉଚ୍ଚତା ଓ ବିସ୍ତାର ଅୟୁତ ଯୋଜନ, ଏହାର

---

ସେ ବରଷର ଯେ ପୁରୁଷ
ଋତବ୍ରତ ଆଦି ବିଶେଷ
ପବନରୂପୀ ଭଗବାନ
ତାହାଙ୍କୁ କରନ୍ତି ସେବନ
ପରମଯୋଗ ସମାଧିରେ
ସ୍ତୁତି କରନ୍ତି ଏ ସ୍ତୁତିରେ । ୨୭ ।
ହେ ଦେବ ପବନ ଆକାର
ତୋତେ ଆମ୍ଭର ନମସ୍କାର

ପ୍ରାଣିଙ୍କ ଅନ୍ତର ବାହାରେ
ତୁ ନାଥ ଥାଉ ନିରନ୍ତରେ । ୨୮ ।
ଦଧିସିନ୍ଧୁ ପରେ ରାଜନ
ପୁଷ୍କର ଦ୍ୱୀପ ଯେ ଦ୍ୱିଗୁଣ
ସ୍ୱାଦୁଜଳ ସିନ୍ଧୁ ତହିଁରେ
ବେଢ଼ିଛି ବଳୟ ଆକାରେ
କମଳ ପଦ୍ମ ଯେ କେଶର
ତହିଁ ଆସନ ପ୍ରଭୁଙ୍କର

ଜ୍ୱଳନ କନକ ଶୋଭିତ
ଅୟୁତ ଶତ ଯାର ପତ୍ର
ଯାହାର ନାମ ଦ୍ୱୀପବର
ଲୋକ ପ୍ରସିଦ୍ଧ ଯେ ପୁଷ୍କର । ୨୯ ।
ଏ ଦ୍ୱୀପ ମଧ୍ୟେ ନୃପବର
ପର୍ବତ ମାନସ ଉତ୍ତର
ବିସ୍ତାର ଅୟୁତ ଯୋଜନ
ଘର ଦିଗରେ ହେ ରାଜନ

ଲୋକପାଲନାମିନ୍ଦ୍ରାଦୀନାମ୍ । ଯଦୁପରିଷ୍ଟାତ୍ ସୂର୍ଯ୍ୟରଥସ୍ୟ ମେରୁଂ ପରିକ୍ରାମତଃ ସମ୍ବତ୍-
ସରାତ୍ମକଂ ଚକ୍ରଂ ଦେବାନାମହୋରାତ୍ରାଭ୍ୟାଂ ପରିଭ୍ରମତି । ୩୦ ।

ତଦ୍ଦ୍ୱୀପସ୍ୟାଧିପତିଃ ପ୍ରୈୟବ୍ରତୋ ବୀତିହୋତ୍ରୋ ନାମ ତସ୍ୟାତ୍ମଜୌ ରମଣକ-
ଧାତକନାମାନୌ ବର୍ଷପତୀ ନିଯୁଜ୍ୟ ସ୍ୱୟଂ ପୂର୍ବଜବଦ୍ଭଗବତ୍କର୍ମଶୀଳ ଏବାସ୍ତେ ।୩୧।

ତଦ୍ୱର୍ଷପୁରୁଷା ଭଗବନ୍ତଂ ବ୍ରହ୍ମରୂପିଣଂ ସକର୍ମକେଣ କର୍ମଣାରାଧୟନ୍ତି ।
ଇଦଞ୍ଚୋଦାହରନ୍ତି । ୩୨ ।

ଯତ୍ତତ୍କର୍ମମୟଂ ଲିଙ୍ଗଂ ବ୍ରହ୍ମଲିଙ୍ଗଂ ଜନୋଽର୍ଚ୍ଚୟେତ୍ ।
ଏକାନ୍ତମଦ୍ୱୟଂ ଶାନ୍ତଂ ତସ୍ମୈ ଭଗବତେ ନମ ଇତି । ୩୩ ।

ତତଃ ପରସ୍ତାଲ୍ଲୋକାଲୋକ ନାମାଚଲୋ ଲୋକାଲୋକୟୋରନ୍ତରାଳେ ପରିତ
ଉପକ୍ଷିପ୍ତଃ । ୩୪ ।

---

ଚତୁର୍ଦ୍ଦିଗରେ ଲୋକପାଳମାନଙ୍କର ସୁବେଷ୍ଟିତ ପୁର ଶୋଭା ପାଉଅଛି, ସେହି ପୁରମାନଙ୍କର ଉପରିଭାଗରେ
ସୂର୍ଯ୍ୟ ରଥ, ସୁମେରୁର ଚାରିଦିଗରେ ପରିଭ୍ରମଣ କରୁଅଛି । ତାହାର ଚକ୍ରଦେବତାମାନଙ୍କର ଅହୋରାତ୍ର
ଅର୍ଥାତ୍ ଉତ୍ତରାୟଣ ଓ ଦକ୍ଷିଣାୟନରୂପେ ସମ୍ବତ୍ସରାତ୍ମକ କାଳଚକ୍ର ଭ୍ରମଣ କରୁଅଛି । ୩୦ ।

ପ୍ରିୟବ୍ରତଙ୍କର ଅନ୍ୟତମ ପୁତ୍ର ବୀତିହୋତ୍ର ଏହାର ଅଧିପତି, ସେ ନିଜର ପୁତ୍ର ରମଣକ ଓ
ଧାତକଙ୍କୁ ଉକ୍ତଦ୍ୱୀପର ଅଧିକାରୀ କରି ଜ୍ୟେଷ୍ଠଭ୍ରାତା ତୁଲ୍ୟ ଭଗବତ୍ ଆରାଧନାରେ ନିବିଷ୍ଟ ହେଲେ ।୩୧

ସେହି ବର୍ଷଦ୍ୱୟର ଅଧିବାସୀ ପୁରୁଷମାନେ ଭଗବାନ୍ କମଳାସନଙ୍କ ମୂର୍ତ୍ତିକୁ ବ୍ରହ୍ମ ସାଲୋକ୍ୟାଦି
ସାଧକ କର୍ମଦ୍ୱାରା ଆରାଧନା କରି ସ୍ତବ କରିଥାନ୍ତି । ୩୨ ।

ଯେ ଏହି ପ୍ରସିଦ୍ଧ କର୍ମଫଳର ଚିହ୍ନସ୍ୱରୂପ, ଯାହାଙ୍କଠାରୁ ବ୍ରହ୍ମ ପ୍ରକାଶିତ, ଏକମାତ୍ର ପରମେଶ୍ୱରଙ୍କ
ଠାରେ ଯାହାଙ୍କର ନିଷ୍ଠା ତେଣୁ ଯେ ଅଦ୍ୱିତୀୟ ଏବଂ ଲୋକେ ଭକ୍ତିଯୋଗରେ ଯାହାଙ୍କୁ ଅର୍ଚ୍ଚନା କରନ୍ତି,
ଆମ୍ଭେମାନେ ସେହି ଭଗବାନଙ୍କୁ ନମସ୍କାର କରୁଅଛୁ । ୩୩ ।

ଶୁଦ୍ଧୋଦକ ସମୁଦ୍ରରେ ଲୋକାଲୋକ ପର୍ବତ ଲୋକ ସୂର୍ଯ୍ୟାଦି ଆଲୋକ ପ୍ରାପ୍ତ, ଓ ଅଲୋକ, ଆଲୋକ
ରହିତ ପ୍ରଦେଶ ଏହାର ମଧ୍ୟ ସ୍ଥାନରେ ଅବସ୍ଥିତ । ୩୪ ।

---

ଇନ୍ଦ୍ରାଦି ଲୋକପାଳଙ୍କର
ଅଛଇ ଏଥି ସୁରପୁର
ମେରୁ ଭ୍ରମନ୍ତେ ଦିନକର
ଉପରେ ଭ୍ରମେ ଚକ୍ର ତାର ।୩୦।
ଧାତକ ରମଣକ ଦୁଇ
ବୀତିହୋତ୍ର ଯେ ପୁତ୍ର ହୋଇ
ଏ ଦ୍ୱୀପେ ତାଙ୍କ ଅଧିକାର
ଶୁଣ ପରୀକ୍ଷ ନୃପବର

ସେ ସ୍ଥଳ ଲୋକଙ୍କ ସହିତେ
ଏହି ସ୍ତୁତିରେ ଯେତେ ଥାଇତେ
ଯେବ୍ରହ୍ମରୂପୀ ଭଗବାନ
ତାହାଙ୍କୁ କରନ୍ତି ଭଜନ
ଯେ ବ୍ରହ୍ମ ବିଶ୍ୱରୂପ ହୋଇ
ଅଖିଳ ସୃଷ୍ଟିକୁ ଉଆଇ
ସେ ବ୍ରହ୍ମରୂପ ଯେ ଠାକୁର
ନମଇ ତାହାଙ୍କ ପୟର ।୩୧-୩୩।

ଏହାର ପରେ ପରିକ୍ଷିତ
ଲୋକାଲୋକ ନାମେ ପର୍ବତ
ଏହାର ମଧ୍ୟେ ଯେଉଁ ସ୍ଥଳ
କାଞ୍ଚନ ଭୂମି ମହୀପାଳ

ଯାବନ୍ମାନସୋତ୍ତରମେର୍ବୋରନ୍ତରଂ ତାବତୀ ଭୂମିଃ କାଞ୍ଚନ୍ୟାଦର୍ଶତଲୋପମା, ଯସ୍ୟାଂ ପ୍ରହିତଃ ପଦାର୍ଥୋ ନ କଥଞ୍ଚିତ୍ ପୁନଃ ପ୍ରତ୍ୟୁପଲଭ୍ୟତେ । ତସ୍ମାତ୍ସର୍ବସତ୍ତ୍ୱପରିହୃତାସୀତ୍ । ୩୫ ।

ଲୋକାଲୋକ ଇତି ସମାଖ୍ୟା ଯଦନେନାଚଲେନ ଲୋକୋଽଲୋକଶ୍ଚାନ୍ତର୍ବର୍ତ୍ତିନାବସ୍ଥାପ୍ୟତେ । ୩୬ ।

ସ ଲୋକତ୍ରୟାନ୍ତେ ପରିତ ଈଶ୍ୱରେଣ ବିହିତଃ । ଯସ୍ମାତ୍ ସୂର୍ଯ୍ୟାଦୀନାଂ ଧ୍ରୁବାପବର୍ଗାଣାଂ ଜ୍ୟୋତିର୍ଗଣାନାଂ ଗଭସ୍ତୟୋଽର୍ବାଚୀନାଂସ୍ତ୍ରୀନ୍ ଲୋକାନାବିତନ୍ୱାନା ନ କଦାଚିତ୍ ପରାଚୀନା ଭବିତୁମୁତ୍ସହନ୍ତେ ତାବଦୁନ୍ନହନାୟାମଃ । ୩୭ ।

ଏତାବାନ୍ ଲୋକବିନ୍ୟାସୋ ମାନଲକ୍ଷଣସଂସ୍ଥାଭିର୍ବିଚିନ୍ତିତଃ କବିଭିଃ । ସ ତୁ ପଞ୍ଚାଶତ୍କୋଟିଗୁଣିତସ୍ୟ ଭୂଗୋଲକସ୍ୟ ତୁରୀୟଭାଗୋଽୟଂ ଲୋକାଲୋକାଚଳଃ ।୩୮।

---

ମାନସୋତ୍ତର ପର୍ବତ ଓ ସୁମେରୁର ଅନ୍ତରାଳରେ ଯେଉଁ ଭୂଖଣ୍ଡ ଅଛି ସ୍ୱାଦୁଜଳ ବିଶିଷ୍ଟ ସମୁଦ୍ରର ପରେ ମଧ୍ୟ ସେହି ପରିମାଣର ଭୂମି ସୁବର୍ଣ୍ଣମୟୀ ଓ ଦର୍ପଣତୁଲ୍ୟ ଅତ୍ୟନ୍ତ ନିର୍ମଳ । ସେଥିରେ କୌଣସି ଦ୍ରବ୍ୟ ପତିତ ଓ ରକ୍ଷିତ ହେଲେ ତାହା କୌଣସି ପ୍ରକାରେ ଫେରି ଆସେ ନାହିଁ, ସୁତରାଂ ଏ ସ୍ଥାନ ସର୍ବ ପ୍ରାଣୀ ବର୍ଜିତ । ୩୫ ।

ଏହି ପର୍ବତ ଦ୍ୱୟର ମଧ୍ୟବର୍ତ୍ତୀ ପର୍ବତର ନାମ ଲୋକାଲୋକ ପର୍ବତ, ଏହି ପର୍ବତର ମଧ୍ୟ ସ୍ଥଳରେ ଥାଇଁ ଲୋକ ଅର୍ଥାତ୍ ସୂର୍ଯ୍ୟାଦି ଆଲୋକ ବିଶିଷ୍ଟ ଦେଶ ଏବଂ ଆଲୋକ ରହିତ ଦେଶ ଏହି ଦୁଇଦେଶକୁ ପରସ୍ପରଠାରୁ ପୃଥକ ଭାବରେ ରଖିଥିବାରୁ ଏହାର ନାମ ଲୋକାଲୋକ ହୋଇଅଛି ।୩୬।

ଈଶ୍ୱର ଏହି ଲୋକାଲୋକ ପର୍ବତକୁ ତ୍ରିଲୋକର ପ୍ରାନ୍ତଦେଶରେ ଚତୁର୍ଦ୍ଦିଗର ସୀମାରୂପେ ସ୍ଥାପନ କରିଅଛନ୍ତି, ଏହି ଲୋକାଲୋକ ପର୍ବତର ଉଚ୍ଚତା ଓ ବିସ୍ତାର ଏପରି ଯେ ସୂର୍ଯ୍ୟଙ୍କଠାରୁ ଆରମ୍ଭକରି ଧ୍ରୁବଲୋକ ପର୍ଯ୍ୟନ୍ତ ଯେତେ ଜ୍ୟୋତିର୍ମଣ୍ଡଳ ଅଛି ସେମାନଙ୍କର କିରଣ ସମୂହ ନିମ୍ନଦେଶରେ ତିନିଲୋକକୁ ସର୍ବତୋଭାବରେ ପ୍ରକାଶକରିଥାଏ କିନ୍ତୁ ଲୋକାଲୋକ ପର୍ବତକୁ ଅତିକ୍ରମ କରିପାରିବାକୁ ସମର୍ଥ ହୁଏନାହିଁ ।୩୭

ପଣ୍ଡିତମାନେ ନାମ, ଆକାର ଓ ଅବସ୍ଥାନ ଦ୍ୱାରା ଏହି ଲୋକ ରଚନା ବର୍ଣ୍ଣନା କରି ଅଛନ୍ତି । ଭୂଗୋଳକର ପରିମାଣ ପଞ୍ଚାଶତକୋଟି ଯୋଜନ, ଏହି ଲୋକାଲୋକ ପର୍ବତ ତାହାର ଚତୁର୍ଥାଂଶ । ୩୮ ।

---

ମେରୁ ମାନସ ମଧ୍ୟଦେଶେ
କାଞ୍ଚନ ଭୂମି ଯେ ପ୍ରକାଶେ
ଯେଣୁ ଏହାର ଅନ୍ତରରେ
ଗତାଗତ ନାହିଁ ତା ପରେ
ଏଣୁ ଏ ଲୋକା ଲୋକ ନାମ
ଏ ସର୍ବ ଈଶ୍ୱର ଭିଆଣ ।୩୫-୩୭
ଏତୁ ଯେ ଭୂଗୋଳ ସୃଜନ
ପଞ୍ଚାଶ କୋଟିରେ ଗୁଣନ,
ପୃଥ୍ୱୀର ଚତୁର୍ଭାଗେ ସମ
ଏ ଲୋକାଲୋକ ଗିରି ନାମ ।୩୮

ତଦୁପରିଷ୍ଟାଚ୍ଚତସୃଷ୍ୱାଶାସ୍ୱାତ୍ମଯୋନିନାଖିଳଜଗଦ୍‌ଗୁରୁଣା ଧିନିବେଶିତା ଯେ ଦ୍ୱିରଦପତୟ ଋଷଭଃ ପୁଷ୍କରଚୂଡ଼ୋ ବାମନୋଽପରାଜିତ ଇତି ସକଳଲୋକସ୍ଥିତିହେତବଃ । ୩୯ ।

ତେଷାଂ ସ୍ୱବିଭୂତୀନାଂ ମହେନ୍ଦ୍ରାଦୀନାଂ ଲୋକପାଳାନାଞ୍ଚ ବିବିଧବୀର୍ଯ୍ୟୋପବୃଂହଣାୟ ଭଗବାନ୍ ପରମମହାପୁରୁଷୋ ମହାବିଭୂତିପତିରନ୍ତର୍ଯ୍ୟାମ୍ୟାତ୍ମନୋ ବିଶୁଦ୍ଧସତ୍ତ୍ୱଂ ଧର୍ମଜ୍ଞାନବୈରାଗ୍ୟୈଶ୍ୱର୍ଯ୍ୟାଦ୍ୟଷ୍ଟମହାସିଦ୍ଧ୍ୟୁପଲକ୍ଷଣଂ ବିଷ୍ୱକ୍‌ସେନାଦିଭିଃ ସ୍ୱପାର୍ଷଦପ୍ରବରୈଃ ପରିବାରିତୋ ନିଜବରାୟୁଧୋପଶୋଭିତୈର୍ଦୋର୍ଦଣ୍ଡୈଃ ସନ୍ଧାରୟମାଣସ୍ତସ୍ମିନ୍ ଗିରିବରେ ସମନ୍ତାତ୍ ସକଳଲୋକସ୍ୱସ୍ତୟ ଆସ୍ତେ । ୪୦ ।

ଆକଳ୍ପମେଷ ଏବଂ ଗତୋ ଭଗବାନାତ୍ମଯୋଗମାୟାବିରଚିତବିବିଧ ଲୋକଯାତ୍ରାଗୋପୀଥାୟେତ୍ୟର୍ଥଃ । ୪୧ ।

---

ଏହି ପର୍ବତର ଉପରିଭାଗରେ ଜଗଦ୍‌ଗୁରୁ, ଆତ୍ମଯୋନି ବ୍ରହ୍ମା ଚାରିଦିଗରେ ଚାରୋଟି ଗଜ ସ୍ଥାପନ କରି ଅଛନ୍ତି, ସେମାନେ ଋଷଭ, ପୁଷ୍କରଚୂଡ଼, ବାମନ ଓ ଅପରାଜିତ ନାମରେ ଅଭିହିତ, ଏହି ଚାରୋଟି ଗଜ ସର୍ବ ଲୋକର ସ୍ଥିତିର ହେତୁ । ୩୯ ।

ଏମାନେ ନିଜ ବିଭୂତି ଗଜପତିଗଣଙ୍କର ଓ ମହେନ୍ଦ୍ରାଦି ଲୋକପାଳଗଣଙ୍କର ବିବିଧବୀର୍ଯ୍ୟ ବର୍ଦ୍ଧନ ନିମିତ୍ତ ଏବଂ ସର୍ବଲୋକ ମଙ୍ଗଳ ନିମିତ୍ତ ପରମ ମହାବିଭୂତିପତି ଭଗବାନ୍ ନିଜର ବିଶୁଦ୍ଧ ସତ୍ତ୍ୱ ଯାହା ଧର୍ମ ଜ୍ଞାନ, ବୈରାଗ୍ୟାଦି ଅଷ୍ଟ ମହାସିଦ୍ଧିର ଉପଲକ୍ଷଣ ତାହା ପ୍ରକାଶ କରିଥାନ୍ତି ଏବଂ ବିଷ୍ୱକ୍ ସେନାଦି ପାର୍ଷଦଗଣ ପରିବେଷ୍ଟିତ ହୋଇ ନିଜର ଶ୍ରେଷ୍ଠାସ୍ତ୍ର ପରିଶୋଭିତ ବାହୁଦ୍ୱାରା ସେମାନଙ୍କୁ ଧାରଣ କରି ସେହି ପର୍ବତରେ ଅବସ୍ଥାନ କରନ୍ତି । ୪୦ ।

ଏହି ବେଶଧାରୀ ଭଗବାନ୍ ନିଜ ମାୟାରଚିତ ବିବିଧଲୋକ ଯାତ୍ରା ରକ୍ଷା ନିମିତ୍ତ ଅଲ୍ପକାଳ ପର୍ଯ୍ୟନ୍ତ ଅବସ୍ଥାନ କରନ୍ତି । ୪୧ ।

---

ଅଖିଳ ଜଗତର ଗୁରୁ
ଯେ ଆତ୍ମଯୋନି ମହାମେରୁ
ଅଖିଳ ଲୋକଙ୍କର ହିତେ,
ଏହା ଉପରେ ଯଥୋଚିତେ ।
ଦିଗ୍‌ଗଜପତି ଏ ଚତ୍ୱାରେ
ରଖିଲେ ନିଜେ ସେ ବେଳରେ

ଅପରାଜିତ ଯେ ବାମନ
ପୁଷ୍କର ଋଷଭ ଏ ନାମ ।୩୯।
ଏହାଙ୍କ ବଳ ନିମିତ୍ତରେ
ଅଖିଳ ବ୍ରହ୍ମାଣ୍ଡ ଠାକୁରେ
ସେନାଦି ପାରଷଦ କରେ
ନାନା ଆୟୁଧ ଧରି କରେ

ସେ ହସ୍ତିରକ୍ଷଣର ପାଇଁ
ରଖିଲେ ପ୍ରଭୁ ସ୍ୱବସ୍ଥ ସ୍ଥାଇ
ନାନା ଅଳଙ୍କାରକୁ ଦେଇ
ବିଚିତ୍ର ବେଶକୁ କରାଇ ।୪୦,୪୧।

ଯୋଽନ୍ତର୍ବିସ୍ତାର ଏତେନ ହ୍ୟଲୋକପରିମାଣଞ୍ଚ ବ୍ୟାଖ୍ୟାତଂ ଯଦ୍ବହିର୍ଲୋକାଲୋକାଚଳାତ୍ । ତତଃ ପରସ୍ତାଦ୍ ଯୋଗେଶ୍ୱରଗତିଂ ବିଶୁଦ୍ଧାମୁଦାହରନ୍ତି । ୪୨ ।

ଅଣ୍ଡମଧ୍ୟଗତଃ ସୂର୍ଯ୍ୟୋ ଦ୍ୟାବାଭୂମ୍ୟୋର୍ଯଦନ୍ତରମ୍ ।
ସୂର୍ଯ୍ୟାଣ୍ଡଗୋଲୟୋର୍ମଧ୍ୟେ କୋଟ୍ୟଃ ସ୍ୟୁଃ ପଞ୍ଚବିଂଶତିଃ । ୪୩ ।

ମୃତେଽଣ୍ଡ ଏଷ ଏତସ୍ମିନ୍ ଯଦଭୂତ୍ ତତୋ ମାର୍ତ୍ତଣ୍ଡ ଇତି ବ୍ୟପଦେଶଃ । ହିରଣ୍ୟଗର୍ଭ ଇତି ଯଦ୍ଧିରଣ୍ୟାଣ୍ଡସମୁଦ୍ଭବଃ । ୪୪ ।

ସୂର୍ଯ୍ୟେଣ ହି ବିଭଜ୍ୟନ୍ତେ ଦିଶଃ ଖଂ ଦ୍ୟୌର୍ମହୀ ଭିଦା ।
ସ୍ୱର୍ଗାପବର୍ଗୌ ନରକା ରସୌକାଂସି ଚ ସର୍ବଶଃ । ୪୫ ।

---

ହେ ରାଜନ୍ ! ଭଗବାନ ଅନ୍ତର୍ଯ୍ୟାମୀ ହୋଇ ସର୍ବକାର୍ଯ୍ୟ କରି ପାରନ୍ତି । ତଥାପି ସେ ବାହ୍ୟଭାଗରେ ମୂର୍ତ୍ତି ପ୍ରକାଶ କରି ଅବସ୍ଥାନ କରୁଅଛନ୍ତି । ତାହାର କାରଣ ଏହି କି ଯେ ତାହାଙ୍କର ସ୍ୱୀୟ ଯୋଗମାୟା ଯେଉଁ ବିବିଧଲୋକ ଯାତ୍ରା ରଚନା କରିଅଛି, ତାହା ରକ୍ଷଣ ନିମିତ୍ତ ଏପରି ବେଶଧାରଣ କରି ଲୀଳା ବିସ୍ତାରକରି ବାହ୍ୟାଙ୍ଗରେ ଅବସ୍ଥାନ କରୁଅଛନ୍ତି । ମେରୁଠାରୁ ଆରମ୍ଭକରି ଲୋକାଲୋକ ପର୍ଯ୍ୟନ୍ତ ଯେଉଁ ବିସ୍ତାରବର୍ଣ୍ଣନା କରାଯାଇ ଅଛି ତାହାର ବହିର୍ଦେଶରେ ଅଲୋକ ଦେଶର ବିସ୍ତାର ମଧ୍ୟ ତାଦୃଶ । ତାହାର ପରବର୍ତ୍ତୀ ସ୍ଥାନରେ ଯୋଗେଶ୍ୱରମାନଙ୍କର ବିଶୁଦ୍ଧାଗତି ହୋଇଥାଏ, ଏହା ଜ୍ଞାନୀମାନେ କହିଥାନ୍ତି । ୪୨,୪୩ ।

ବ୍ରହ୍ମାଣ୍ଡର ମଧ୍ୟସ୍ଥଳରେ ସୂର୍ଯ୍ୟ ଅବସ୍ଥିତ, ସ୍ୱର୍ଗ ଓ ଭୂମି ମଧ୍ୟରେ ଯେଉଁ ଅନ୍ତର ତାହାହିଁ ବ୍ରହ୍ମାଣ୍ଡର ମଧ୍ୟ ସ୍ଥାନ । ସୂର୍ଯ୍ୟ ଓ ଅଣ୍ଡ ଗୋଲକ ଏହି ଉଭୟର ମଧ୍ୟସ୍ଥାନର ପରିମାଣ ପଞ୍ଚବିଂଶତି କୋଟି ଯୋଜନ ।୪୪

ଯେତେବେଳେ ଏହି ଅଣ୍ଡ ମୃତ ବା ଅଚେତନ ଥିଲା ସେତେବେଳେ ସୂର୍ଯ୍ୟଦେବ ବୈରାଜ ପୁରୁଷରୂପେ ତନ୍ମଧ୍ୟରେ ପ୍ରବେଶ କରିଥିବାରୁ ତାହାଙ୍କର ନାମ ମାର୍ତ୍ତଣ୍ଡ ହୋଇ ଅଛି । ପୁନଶ୍ଚ ସେ ହିରଣ୍ମୟ ଅଣ୍ଡ ମଧ୍ୟରୁ ଉଦ୍ଭୂତ ହେବାରୁ ତାହାଙ୍କୁ ହିରଣ୍ୟଗର୍ଭ ବୋଲାଯାଏ । ୪୫ ।

---

ବରଷ ଦ୍ୱୀପ ନଗ ଗିରି
ଭୂମିରେ କହିଲୁଁ ବିସ୍ତାର
ଲୋକାଲୋକ ଗିରି ଅନ୍ତରେ
ଈଶ୍ୱରସୃଷ୍ଟି ଅଗୋଚରେ
ଅଣ୍ଡମଧ୍ୟରେ ରବିସ୍ଥିତ
ଭୂମି ସ୍ୱର୍ଗର ମଧ୍ୟବର୍ତ୍ତୀ

ସୂର୍ଯ୍ୟ ଅଣ୍ଡମଧ୍ୟର ମଧ୍ୟ
ପଞ୍ଚିଶ କୋଟି ଯେ ପ୍ରସିଦ୍ଧ
ମୃତଅଣ୍ଡରେ ଉଦେ ହୋନ୍ତି
ମାର୍ତ୍ତଣ୍ଡ ନାମକୁ ବହନ୍ତି
ହିରଣ୍ୟ ଅଣ୍ଡୁ ଯେ ସମ୍ଭବ
ତେଣୁ ନାମ ହିରଣ୍ୟଗର୍ଭ

ଦଶ ଆକାଶ ସୂର୍ଯ୍ୟ ଭଳି
ବିଭାଗ ହୋଇ ଦଣ୍ଡଧାରି
ଦେବ ତିର୍ଯ୍ୟକ ନରଆଦି
ସର୍ବସ୍ୱ ବୃକ୍ଷ ପ୍ରସିଦ୍ଧି

ଦେବତିର୍ଯ୍ୟଙ୍‌ମନୁଷ୍ୟାଣାଂ ସରୀସୃପ୍‌ଖଗବୀରୁଧାମ୍ ।
ସର୍ବଜୀବନିକାୟାନାଂ ସୂର୍ଯ୍ୟ ଆତ୍ମା ଦୃଗୀଶ୍ୱରଃ । ୪୬ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ
ସମୁଦ୍ରଦ୍ୱୀପବର୍ଣ୍ଣନଂ ନାମ ବିଂଶୋଽଧ୍ୟାୟଃ । ୨୦ ।

---

ହେ ରାଜନ୍ ! ସୂର୍ଯ୍ୟହିଁ ସର୍ବଗତ ଆକାଶ, ସ୍ୱର୍ଗ, ମର୍ତ୍ତ୍ୟ ଇତ୍ୟାଦି ବିଭାଗ କରି ଅଛନ୍ତି ଏବଂ ସ୍ୱର୍ଗ, ମୁକ୍ତି ନରକ ଏବଂ ଅତଳାଦି ଲୋକମାନ ବିଭାଗ କରିଅଛନ୍ତି । ଦେବତା, ତିର୍ଯ୍ୟକ, ପକ୍ଷୀ, ମନୁଷ୍ୟ, ସରୀସୃପ ଲତା, ଏବଂ ସର୍ବପ୍ରକାର ଜୀବ ଏବଂ ସର୍ବଆତ୍ମା, ଚକ୍ଷୁ ଓ ଇନ୍ଦ୍ରିୟର ଅଧିଷ୍ଠାତା ସୂର୍ଯ୍ୟ । ୪୬ ।

---

ଆତ୍ମା'ର ଚକ୍ଷୁରୂପ ସେହି | ବସ୍ତୁର ରୂପ ସେ ସାକ୍ଷାତ
ସେସୂର୍ଯ୍ୟଅଖିଳଗୋସାଇଁ।୪୫-୪୬ | କହଇ ବିପ୍ର ଜଗନ୍ନାଥ



**ବିଶଦାର୍ଥ :—**

ବିଂଶ ଅଧ୍ୟାୟରେ ପ୍ଲକ୍ଷାଦି ଷଡ଼୍‌ଦ୍ୱୀପର ବିବରଣ ଓ ସମୁଦ୍ରସ୍ଥିତ ଲୋକାଲୋକ ପର୍ବତର ବର୍ଣ୍ଣନା କରାଯାଇଅଛି, ଏହି ପ୍ରତ୍ୟେକ ଦ୍ୱୀପର ନାମ ପ୍ଲକ୍ଷ, ଶାଲ୍ମଳୀ, କୁଶ, କ୍ରୌଞ୍ଚ, ଶାକ, ଓ ପୁଷ୍କର; ପ୍ରତ୍ୟେକ ଦ୍ୱୀପର ନାମକରଣ ହେବାର କାରଣ ମଧ୍ୟ ଦିଆଯାଇ ଅଛି ଯଥା :—ପ୍ଲକ୍ଷ ଦ୍ୱୀପରେ ପ୍ଲକ୍ଷ ନାମକ ବୃକ୍ଷ, ଶାଲ୍ମଳୀ ଦ୍ୱୀପରେ ଶାଲ୍ମଳୀ ବୃକ୍ଷ, କୁଶଦ୍ୱୀପରେ କୁଶ ସ୍ତମ୍ଭ, କ୍ରୌଞ୍ଚଦ୍ୱୀପରେ କ୍ରୌଞ୍ଚ ପର୍ବତ, ଶାକଦ୍ୱୀପରେ ଶାକନାମକ ମହାବୃକ୍ଷ, ପୁଷ୍କର ଦ୍ୱୀପରେ ପୁଷ୍କର ବା ପଦ୍ମ ବିରାଜିତ ଅଛି । ତଦନୁସାରେ ଏହି ଦ୍ୱୀପ ମାନଙ୍କର ନାମ ହୋଇଅଛି, ଏହି ପ୍ରତ୍ୟେକ ଦ୍ୱୀପସ୍ଥ ପ୍ରଧାନ ନଦୀ ଓ ପର୍ବତର ନାମ ଉଲ୍ଲେଖ କରା ଯାଇ ଅଛି, ରାଜା ପ୍ରିୟବ୍ରତଙ୍କର ସପ୍ତପୁତ୍ର ଯଥା :—ଇଧ୍ମଜିହ୍ୱ, ଯଜ୍ଞବାହୁ, ହିରଣ୍ୟରେତା, ଘୃତପୃଷ୍ଠ, ମେଧାତିଥି ବୀତିହୋତ୍ର ଯଥାକ୍ରମେ ପ୍ରତ୍ୟେକ ଦ୍ୱୀପର ଅଧିପତି ଥିଲେ । ସେମାନେ ଯଥାକାଳରେ ସେମାନଙ୍କର ଅଧିକୃତ ଦ୍ୱୀପକୁ ନିଜ ନିଜର ପୁତ୍ରମାନଙ୍କ ମଧ୍ୟରେ ବିଭାଗ କରି ଶ୍ରୀହରି ଚରଣାରବିନ୍ଦରେ ଶରଣାପନ୍ନ ହୋଇଥିଲେ । ଏହି ପ୍ରତ୍ୟେକଦ୍ୱୀପର ଅଧିବାସୀମାନେ ଯଥାକ୍ରମରେ ସୂର୍ଯ୍ୟ, ସୋମ, ଅନଳ, ବରୁଣ, ବାୟୁ ଓ ବ୍ରହ୍ମାଙ୍କୁ ଆରାଧନା କରି ଆରାଧ୍ୟ ଦେବତାଙ୍କର ଆଶୀର୍ବାଦ ଭିକ୍ଷା କରିଥାନ୍ତି ।

ତଦନନ୍ତର ଲୋକାଲୋକ ପର୍ବତର ବିବରଣ ଏବଂ ତାହାର ନାମକରଣ ପ୍ରସଙ୍ଗ ଉଲ୍ଲେଖ କରାଅଛି ଏହି ପର୍ବତର ଅଧିଷ୍ଠାତା ଦେବତା ସୂର୍ଯ୍ୟ, ସୂର୍ଯ୍ୟଙ୍କର ନାମ କି ହେତୁ ମାର୍ତ୍ତଣ୍ଡ ଓ ହିରଣ୍ୟଗର୍ଭ ହେଲା ତାହା ମଧ୍ୟ ଏହି ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି ।

## ଏ କ ବିଂ ଶ ଅ ଧ୍ୟା ୟ ।

ଏକବିଂଶେ ରବେଃ କାଳଚକ୍ରେଣ ଭ୍ରମତୋଽନ୍ୱହମ୍ ।
ସ୍ୱଗତ୍ୟା ରାଶିସଞ୍ଚାରେର୍ଲୋକଯାତ୍ରା ନିରୂପ୍ୟତେ ।୦। ( ଶ୍ରୀଧରସ୍ୱାମୀ )
ଶ୍ରୀଶୁକ ଉବାଚ ।

ଏତାବାନେବ ଭୂବଲୟସ୍ୟ ସନ୍ନିବେଶଃ ପ୍ରମାଣଲକ୍ଷଣତୋ ବ୍ୟାଖ୍ୟାତଃ ।୧।

ଏତେନ ହି ଦିବୋ ମଣ୍ଡଲମାନଂ ତଦ୍ବିଦଉପଦଶନ୍ତି ଯଥା ଦ୍ୱିଦଳୟୋର୍ନିଷ୍ପାବାଦୀନାଂ । ତେ ଅନ୍ତରେଣାନ୍ତରୀକ୍ଷଂ ତଦୁଭୟସନ୍ଧିତମ୍ ।୨।

ଯନ୍ମଧ୍ୟଗତୋ ଭଗବାଂସ୍ତପତାଂପତସ୍ତପନ ଆତପେନ ତ୍ରିଲୋକୀଂ ପ୍ରତପତ୍ୟବଭାସୟତ୍ୟାତ୍ମଭାସା । ସ ଏଷ ଉଦଗୟନ ଦକ୍ଷିଣାୟନ ବୈଷୁବତସଂଜ୍ଞାଭିର୍ମାନ୍ଦ୍ୟଶୈପ୍ରସମାନାଭିର୍ଗତିଭିରାରୋହଣାବରୋହଣସମସ୍ଥାନେଷୁ ଯଥାସବନମଭିପଦ୍ୟମାନୋ ମକରାଦଷୁ ରାଶିଷ୍ୱହୋରାତ୍ରାଣି ଦୀର୍ଘହ୍ରସ୍ୱସମାନାନ ବିଧତ୍ତେ । ୩ ।

---

### ସ୍ୱର୍ଗ, ସୂର୍ଯ୍ୟ, ରାଶିଚକ୍ର ଇତ୍ୟାଦିର ବର୍ଣ୍ଣନା ।

ଏକବିଂଶ ଅଧ୍ୟାୟରେ ଦୈନନ୍ଦିନ କାଳଚକ୍ର ଦ୍ୱାରା ଭ୍ରମଣ କରୁଥିବା ରବିଙ୍କର ଗତି ଅନୁସାରେ ରାଶିସଞ୍ଚାର ପ୍ରଭୃତି ବର୍ଣ୍ଣନାକରାଯାଇ ଅଛି ।୦।

ଶ୍ରୀ ଶୁକଦେବ କହିଲେ :—

ପରିମାଣ ଓ ସ୍ୱରୂପତଃ ଭୂମଣ୍ଡଳ ବିଷୟ ବର୍ଣ୍ଣନା କରିଅଛି । ୧ ।

ଏହା ଦ୍ୱାରହିଁ ସ୍ୱର୍ଗ ମଣ୍ଡଳପରିମାଣଜ୍ଞ ବ୍ୟକ୍ତିମାନେ ସ୍ୱର୍ଗମଣ୍ଡଳର ମଧ୍ୟ ପରିମାଣ ବର୍ଣ୍ଣନା କରିଥାଆନ୍ତି, ଯେପରି ଚଣକାଦି ଦୁଇଦଳ ପଦାର୍ଥ ମଧ୍ୟରୁ ଏକଦଳର ପରିମାଣ ଦ୍ୱାରା ଅପର ଦଳର ପରିମାଣ ନିର୍ଣ୍ଣୟ କରାଯାଏ, ସେହି ଉଭୟ ମଣ୍ଡଳର ମଧ୍ୟଭାଗରେ ଉଭୟ ମଣ୍ଡଳ ସହିତ ସଂଲଗ୍ନ ହୋଇ ଅନ୍ତରୀକ୍ଷ ବର୍ତ୍ତମାନ୍ । ଯେଉଁ ଅନ୍ତରୀକ୍ଷର ମଧ୍ୟଭାଗରେ ରହି ଭଗବାନ୍ ସମସ୍ତ ତେଜର ଅଧିପତି ସୂର୍ଯ୍ୟଦେବ ନିଜର ତେଜ ଦ୍ୱାରା ତ୍ରିଭୁବନକୁ ତେଜାୟିତ କରନ୍ତି ଏବଂ ନିଜର ଦୀପ୍ତିଦ୍ୱାରା ଆଲୋକିତ କରନ୍ତି । ସେହି ସୂର୍ଯ୍ୟହିଁ ଉତ୍ତରାୟନ ଓ ଦକ୍ଷିଣାୟନ ଓ ବୈଷୁବତ ନାମକ ମନ୍ଦ, କ୍ଷିପ୍ର ଓ ସମାନ ଗତିଦ୍ୱାରା ଆରୋହଣ, ଅବରୋହଣ ଓ ସମସ୍ଥାନରେ ରହି ଯଥାକାଳରେ ମକରାଦି ରାଶିରେ କ୍ରମେ ଦିନ ଓ ରାତ୍ରିକୁ ଦୀର୍ଘ, ହ୍ରସ୍ୱ ଓ ସମାନ କରିଥାଆନ୍ତି । ୨,୩ ।

---

ଆକାଶେ ରବି ସଞ୍ଚରଣ । ଏକବିଂଶରେ ତା ବର୍ଣ୍ଣନ । ୦ ।

ଶ୍ରୀ ଶୁକଉବାଚ ।
ଭୁବନକୋଷ ପରିମାଣ
କହିଲୁ ଯେତେକ ଲକ୍ଷଣ

ଏମନ୍ତ ଦିବ ମଣ୍ଡଳର
ଲକ୍ଷଣ ଶୁଣ ନୃପବର ।୧।
ଚଣକ ବେଢିଫାଳ ଯେଉଁ
ଏକକୁ ଅନେକ ସମାନେ

ତେସନ ଧରା ପରିମାଣ
ଦିବମଣ୍ଡଳ ଯେ ସମାନ
ଏ ମଧ୍ୟ ଅନ୍ତରୀକ୍ଷେ ରହି
ସୂର୍ଯ୍ୟ ତ୍ରିଲୋକକୁ ତାପଇ,

ଯଦା ମେଷତୁଲୟୋର୍ବର୍ତ୍ତତେ ତଦାହୋରାତ୍ରାଣି ସମାନାନି ଭବନ୍ତି; ଯଦା ବୃଷଭାଦିଷୁ ପଞ୍ଚସୁ ଚ ରାଶିଷୁ ଚରତି ତଦାହାନ୍ୟେବ ବର୍ଦ୍ଧନ୍ତେ । ହ୍ରସତି ଚ ମାସି ମାସ୍ୟେକୈକା ଘଟିକା ରାତ୍ରିଷୁ । ୪ ।

ଯଦା ବୃଶ୍ଚିକାଦିଷୁ ପଞ୍ଚସୁ ରାଶିଷୁ ବର୍ତ୍ତତେ ତଦାହୋରାତ୍ରାଣି ବିପର୍ଯ୍ୟୟାଣି ଭବନ୍ତି ।୫।

ଯାବଦ୍ଦକ୍ଷିଣାୟନମହାନି ବର୍ଦ୍ଧନ୍ତେ ଯାବଦୁଦଗୟନଂ ରାତ୍ରୟଃ । ୬ ।

ଏବଂ ନବ କୋଟୟ ଏକପଞ୍ଚାଶଲ୍ଲକ୍ଷାଣି ଚ ଯୋଜନାନାଂ ମାନସୋତ୍ତରଗିରିପରିବର୍ତ୍ତନସ୍ୟୋପଦିଶନ୍ତି, ତସ୍ମିନ୍ନୈନ୍ଦ୍ରୀଂ ପୁରୀଂ ପୂର୍ବସ୍ୟାଂ ମେରୋର୍ଦେବଧାନୀଂ ନାମ ଦକ୍ଷିଣତୋ ଯାମ୍ୟାଂ ସଂଯମନୀଂ ନାମ ପଶ୍ଚାଦ୍‌ବାରୁଣୀଂ ନିମ୍ଲୋଚନୀଂ ନାମ ଉତ୍ତରତଃ ସୌମ୍ୟାଂ ବିଭାବରୀଂ ନାମ, ତାସୂଦୟମଧ୍ୟାହ୍ନାସ୍ତମୟନିଶୀଥାନି ଭୂତାନାଂ ପ୍ରବୃତ୍ତିନିବୃତ୍ତିନିମିତ୍ତାନି ସମୟବିଶେଷେଣ ମେରୋଶ୍ଚତୁର୍ଦ୍ଦିଶମ୍ । ୭ ।

---

ଯେତେବେଳେ ସୂର୍ଯ୍ୟ ମେଷ ଓ ତୁଳାରାଶିରେ ରହନ୍ତି ସେତେବେଳେ ଦିବା ଓ ରାତ୍ରି ସମାନ ହୋଇଥାଏ, ଯେତେବେଳେ ବୃଷାଦି ପଞ୍ଚରାଶିରେ ରହନ୍ତି ସେତେବେଳେ ଦିବାମାନ ବର୍ଦ୍ଧିତ ହୁଏ ଏବଂ ରାତ୍ରିମାନ ପ୍ରତିମାସରେ ଏକ ଘଟିକା କରି ହ୍ରସ୍ୱ ହୁଏ, ଏବଂ ଯେତେବେଳେ ସୂର୍ଯ୍ୟଦେବ ବୃଶ୍ଚିକାଦି ପଞ୍ଚରାଶିରେ ଅବସ୍ଥାନ କରନ୍ତି ସେତେବେଳେ ଏହାର ବିପରୀତ ହୋଇ ଥାଏ । ୪,୫ ।

ଯେଉଁ ପର୍ଯ୍ୟନ୍ତ ଦକ୍ଷିଣାୟନ କାଳଥାଏ ସେତେବେଳଯାଏ ଦିନଗୁଡ଼ିକ ବୃଦ୍ଧିଯୁକ୍ତହୁଏ, ଯେଉଁପର୍ଯ୍ୟନ୍ତ ଉତ୍ତରାୟନ କାଳଥାଏ ସେ ପର୍ଯ୍ୟନ୍ତ ରାତ୍ରି ଦିନ ଅପେକ୍ଷା ବୃଦ୍ଧି ହୋଇଥାଏ । ୬ ।

ଏହିପରି ମାନସୋତ୍ତର ଗିରିର ପରିମାଣ ନଅକୋଟି ଏକାବନଲକ୍ଷ ଯୋଜନବୋଲି ଜ୍ଞାନୀମାନେ କହିଥାନ୍ତି; ଏହି ମାନସୋତ୍ତର ଗିରି ମେରୁର ପୂର୍ବଦିଗରେ ଦେବଧାନୀ ନାମ୍ନୀ ଇନ୍ଦ୍ରପୁରୀ, ଦକ୍ଷିଣରେ ସଂଯମନୀ ନାମ୍ନୀ ଯମପୁରୀ, ପଶ୍ଚିମରେ ନିମ୍ଲୋଚନୀ ନାମ୍ନୀ ବରୁଣପୁରୀ ଏବଂ ଉତ୍ତରରେ ବିଭାବରୀ ନାମ୍ନୀ ଚନ୍ଦ୍ରପୁରୀ ବିରାଜିତ, ମେରୁର ଚତୁର୍ଦ୍ଦିଗରେ ସମୟ ବିଶେଷରେ ଏହି ପୁରୀମାନଙ୍କରେ ଉଦୟ, ମଧ୍ୟାହ୍ନ, ଅସ୍ତ ଓ ନିଶୀଥ ହୋଇଥାଏ, ତଦ୍ଦ୍ୱାରା ଭୂତମାନଙ୍କର କାର୍ଯ୍ୟ ପ୍ରବୃତ୍ତି ଓ ନିବୃତ୍ତି ଘଟିଥାଏ । ୭ ।

---

ଅୟନ ଭେଦରାଗ ହୋଇ
ଉତ୍ତର ଦକ୍ଷିଣେ ଭ୍ରମଇ
ମନ୍ଦ କ୍ଷିପ୍ର ବା ବେଗ ସମ
ଦିନ ରାତି ଭେଦ ରଚନ
ମକରଠାରୁ ରାଶି ଯେତେ
ଦୀର୍ଘ ହ୍ରସ୍ୱ ଜାଣ ଯୁଗତେ
ବିଷୁବେ ସମାନକୁ ଯାଇ
ପୁଣି ପାର୍ଶ୍ୱ ହ୍ରସ୍ୱେ ବଢ଼ଇ
ତୁଳ ମେଷ ବିଷୁବ ପାଇ
ଅହୋରାତ୍ରି ସମାନ ହୋଇ ।୨-୬।

ନ କୋଟି ଏକାବନ ଲକ୍ଷ
ଯୋଜନ ପ୍ରମାଣ ପ୍ରତ୍ୟକ୍ଷ
ମାନସୋତ୍ତର ଗିରି ତହିଁ
ଇନ୍ଦ୍ରର ପୁର ବିରାଜଇ
ପୂର୍ବଭାଗରେ ସେ ମେରୁର
ଦେବଧାନୀ ନାମ ତାହାର
ଯମର ପୁର ତା ଦକ୍ଷିଣେ
ବିରାଜେ ସଂଯମନୀ ନାମେ
ପଶ୍ଚିମେ ପୁର ବରୁଣର
ନିମ୍ଲୋଚନୀ ନାମ ତାହାର

ଉତ୍ତରଭାଗେ ସୋମପୁରୀ
ନାମ ତାହାର ବିଭାବରୀ
ତହିଁ ଉଦୟ ମଧ୍ୟ ଅସ୍ତ
ନିଶୀଥ କାଳ ଯେ ବିହିତ
ସୁମେରୁ ଚତ୍ୱାର ଦିଗରେ
ପ୍ରାଣୀ ପ୍ରବୃତ୍ତି ନିବୃତ୍ତିରେ
ଅହର୍ନିଶି ଭାବରେ ରହି
ପ୍ରାଣିଙ୍କ ସମୟ ହୁଅଇ ।୭।

ତନ୍ନିଭ୍ୟାନାଂ ଧ୍ରୁବସମୀପଗତ ଏବ ସଦାଦିତ୍ୟସ୍ତପତି ସବ୍ୟେନ ଚଳନ୍ ଦକ୍ଷିଣେନ କରୋତି । ୮ ।

ଯତ୍ରୋଦେତି ତସ୍ୟ ସମାନସୂତ୍ରନିପାତେ ନିମ୍ଲୋଚତି ଯତ୍ର କ୍ୱଚନ ସ୍ୟନ୍ଦେନାଭିତପତି ତସ୍ୟ ହୈଷ ସମାନସୂତ୍ରନିପାତେ ପ୍ରସ୍ୱାପୟତି ତେ ତତ୍ର ଗତଂ ନ ପଶ୍ୟନ୍ତି ଯେ ତଂ ସମନୁପଶ୍ୟେରନ୍ । ୯ ।

ଯଦା ଚୈନ୍ଦ୍ର୍ୟାଃ ପୁର୍ୟାଃ ପ୍ରଚଳତେ ପଞ୍ଚଦଶଭିର୍ଘଟିକାଭିର୍ୟାମ୍ୟାଂ ସପାଦକୋଟିଦ୍ୱୟଂ ଯୋଜନାନାଂ ସାର୍ଦ୍ଧଦ୍ୱାଦଶଲକ୍ଷାଣି ସାଧିକାନି ଚୋପୟାତି । ଏବଂ ତତୋ ବାରୁଣୀଂ ସୌମ୍ୟାମୈନ୍ଦ୍ରୀଞ୍ଚ ପୁନଃ । ୧୦ ।

ତଥାନ୍ୟେ ଚ ଗ୍ରହାଃ ସୋମାଦୟୋ ନକ୍ଷତ୍ରୈଃ ସହ ଜ୍ୟୋତିଶ୍ଚକ୍ରେ ସମଭ୍ୟୁଦ୍ୟନ୍ତି ସହ ବାଭିନିମ୍ଲୋଚନ୍ତି । ୧୧ ।

---

ସୂର୍ଯ୍ୟଦେବ ଯେତେବେଳେ ଧ୍ରୁବଙ୍କର ମଧ୍ୟଭାଗରେ ଆରୂଢ ହୁଅନ୍ତି ସେତେବେଳେ ଏହି ସୁମେରୁସ୍ଥିତ ବ୍ୟକ୍ତିମାନଙ୍କୁ ତାପ ଦିଅନ୍ତି, ଗତିକ୍ରମେ ସୁମେରୁଙ୍କୁ ବାମଭାଗରେ ରଖି ଦକ୍ଷିଣାବର୍ତ୍ତରେ ପ୍ରବାହ ନାମକ ବାୟୁ ଜ୍ୟୋତିଶ୍ଚକ୍ରକୁ ବେଷ୍ଟନ କରିବାରୁ ପ୍ରତ୍ୟହ ଥରେ ଥରେ ଦକ୍ଷିଣଦିଗକୁ ଯାଇ ଥାଆନ୍ତି ତେଣୁ ଚକ୍ରଗତ ହେତୁ ଦୂରରୁ ସୂର୍ଯ୍ୟଙ୍କୁ ଭୂମିଲଗ୍ନ ହୋଇଥିବାର ଦେଖାଯାଏ, ଏହା ସୂର୍ଯ୍ୟଙ୍କର ଉଦୟ, ଆକାଶରୂଢ ଓ ଭୂପ୍ରବିଷ୍ଟ ଅବସ୍ଥାବୋଲି ଦୃଶ୍ୟମାନ ହୁଏ । ୮ ।

ସୂର୍ଯ୍ୟଦେବ ଯେଉଁ ସ୍ଥାନରେ ଉଦିତ ହୁଅନ୍ତି ତାହାର ସମସୂତ୍ର ନିପାତସ୍ଥାନରେ ଅସ୍ତ ଗମନ କରନ୍ତି ପୁଣି ମଧ୍ୟାହ୍ନକାଳରେ ସୂର୍ଯ୍ୟଦେବ ଯେଉଁ ସ୍ଥାନରେ ପ୍ରାଣିମାନଙ୍କୁ ଘର୍ମାକ୍ତ କରି ତାପ ଦାନକରନ୍ତି ତାହାର ସମାନ ସୂତ୍ରପାତ ସ୍ଥାନରେ ନିଶୀଥ ହେବାରୁ ସେଠାରେ ପ୍ରାଣୀମାନେ ନିଦ୍ରିତ ହୁଅନ୍ତି, ଅତଏବ ଯେଉଁମାନେ ତାହାଙ୍କର ଅସ୍ତଗମନ ଦେଖନ୍ତି ସେମାନେ ଏହି ତନ୍ନସ୍ଥାନକୁ ଗଲେ ଆଉ ତାହାଙ୍କୁ ଦେଖି ପାରନ୍ତି ନାହିଁ । ୯

ଯେତେବେଳେ ସୂର୍ଯ୍ୟଦେବ ଇନ୍ଦ୍ରପୁରୀରୁ ଯମପୁରୀକୁ ଗମନ କରନ୍ତି ଏବଂ ଯମପୁରୀରୁ ଚନ୍ଦ୍ରପୁରୀକୁ ଗମନ କରନ୍ତି, ସେତେବେଳେ ତାହାଙ୍କୁ ଦୁଇକୋଟି ପଚିଶିଲକ୍ଷ ପଚସ୍ତରିହଜାର ଯୋଜନ ଅତିକ୍ରମ କରିବାକୁ ହୁଏ । ସେହିପରି ବରୁଣପୁରୀ ଓ ସେଠାରୁ ପୁନଶ୍ଚ ଇନ୍ଦ୍ରପୁରୀକୁ ଆଗମନ କରନ୍ତି । ୧୦ ।

ଏହିପରି ଅପରାପରଗ୍ରହ, ଚନ୍ଦ୍ର ଓ ନକ୍ଷତ୍ରଙ୍କ ସହିତ ଜ୍ୟୋତିଶ୍ଚକ୍ର ସମୂହ ଉଦିତ ହୋଇ ଥାଆନ୍ତି; ପୁଣି ସଙ୍ଗେ ସଙ୍ଗେ ଅସ୍ତ ହୁଅନ୍ତି । ୧୧ ।

---

ବାମାବର୍ତ୍ତନ କରି ତହିଁ
ନିତ୍ୟେ ଆଦିତ୍ୟ ସେ ଭ୍ରମଇ
ଉଦୟକାଳେ ଯେ ଲକ୍ଷଣ
ଅସ୍ତକାଳରେ ସେହି ପୁଣ
ଦ୍ୱିକୋଟି ଦ୍ୱାଦଶ ଯୋଜନ
ଲକ୍ଷରେ କରି ପରିମାଣ

ପଞ୍ଚଦଶ ଘଟିକାବେଳେ
ଇନ୍ଦ୍ରପୁରୁ ଅବହେଳେ
ଯମର ପୁରରେ ପ୍ରବେଶ
ସେଠାରେ କରନ୍ତି ପ୍ରକାଶ

ଏଥି ବରୁଣ ଆଦି ଯେତେ
ଆଦିତ୍ୟ ଭ୍ରମନ୍ତି ସେ ନିତ୍ୟେ ୮-୧୦
ଚନ୍ଦ୍ରାଦି ଯେତେ ଗ୍ରହମାନ
ଏହି ପ୍ରକାରେ ସେ ଭ୍ରମଣ । ୧୧ ।

ଏବଂ ମୁହୂର୍ତ୍ତେନ ଚତୁସ୍ତ୍ରିଂଶଲ୍ଲକ୍ଷଯୋଜନାନ୍ୟଷ୍ଟଶତାଧିକାନି ସୌରରଥସ୍ତ୍ରୟୀମୟୋଽସୌ ଚତସୃଷୁ ପରିବର୍ତ୍ତତେ ପୁରୀଷୁ ।୧୨।

ଯସ୍ୟୈକଂ ଚକ୍ରଂ ଦ୍ୱାଦଶାରଂ ଷଣ୍ନେମି ତ୍ରିଣାଭି ସମ୍ବତ୍ସରାତ୍ମକଂ ସମାମନନ୍ତି । ତସ୍ୟାକ୍ଷୋ ମେରୋର୍ମୂର୍ଦ୍ଧନି କୃତୋ ମାନସୋତ୍ତରେ କୃତେତରଭାଗୋ ଯତ୍ର ପ୍ରୋତଂ ରବିରଥଚକ୍ରଂ ତୈଳଯନ୍ତ୍ରଚକ୍ରବଦ୍ଭ୍ରମନ୍ମାନସୋତ୍ତରଗିରୌ ପରିଭ୍ରମତି ।୧୩।

ତସ୍ମିନ୍ନକ୍ଷେ କୃତମୂଲୋ ଦ୍ୱିତୀୟୋଽକ୍ଷସ୍ତୁର୍ଯ୍ୟମାନେନ ସମ୍ମିତସ୍ତୈଳଯନ୍ତ୍ରାକ୍ଷବଦ୍ ଧ୍ରୁବେ କୃତୋପରିଭାଗଃ ।୧୪।

ରଥନୀଡସ୍ତୁ ଷଟ୍ତ୍ରିଂଶଲ୍ଲକ୍ଷଯୋଜନାୟତସ୍ତତ୍ତୁରୀୟଭାଗବିଶାଲସ୍ତାବାନ୍ରବିରଥଯୁଗଃ । ଯତ୍ର ହୟାଶ୍ଛନ୍ଦୋନାମାନଃ ସପ୍ତାରୁଣଯୋଜିତା ବହନ୍ତି ଦେବମାଦିତ୍ୟମ୍ ।୧୫।

---

ଏହିପରି ଏହି ବେଦମୟ ସୂର୍ଯ୍ୟରଥ ମୁହୂର୍ତ୍ତକମଧ୍ୟରେ ପୂର୍ବୋକ୍ତ ଇନ୍ଦ୍ରପୁରୀ ପ୍ରଭୃତି ଚାରିପୁରର ଚତୁଃପାର୍ଶ୍ୱରେ ୩୪ ଲକ୍ଷ ୮୦୦ ଯୋଜନ ଭ୍ରମଣ କରେ ।୧୨।

ଏହି ରଥର ଗୋଟିଏ ଚକ୍ର, ତାହାର ନାମ ସମ୍ବତ୍ସର । ଏହି ଚକ୍ରର ଦ୍ୱାଦଶଟି ଅର ଏବଂ ଏହା ଦ୍ୱାଦଶମାସ, ଷଡ଼ଋତୁ, ଷଡ଼ନେମି, ୩ଚାତୁର୍ମାସ୍ୟ, ତାହାର ୩ଟି ନାଭି ବା ମଧ୍ୟଭାଗ—ଏହାହିଁ ପଣ୍ଡିତମାନଙ୍କର ମତ, ଏହି ଅକ୍ଷର ଏକଭାଗ ସୁମେରୁର ଉପରିଭାଗ, ଅନ୍ୟଭାଗ ମାନସୋତ୍ତର ପର୍ବତର ଉପରିଭାଗରେ ଅବସ୍ଥାପିତ, ଏହି ସୂର୍ଯ୍ୟରଥ ମାନସୋତ୍ତରରେ ସ୍ଥାପିତ ହେବାରୁ ତୈଳ ଯନ୍ତ୍ର ଚକ୍ରପରି ସର୍ବଦା ପରିଭ୍ରମଣ କରୁଅଛି ।୧୩।

ସୂର୍ଯ୍ୟ ରଥର ଆଉଗୋଟିଏ ଅକ୍ଷ ଅଛି, ତାହା ପ୍ରଥମ ଅକ୍ଷର ଚତୁର୍ଥାଂଶ ପରିମିତ ଏବଂ ପ୍ରଥମ ଅକ୍ଷ ସହିତ ଦ୍ୱିତୀୟ ଅକ୍ଷର ପୂର୍ବଭାଗ ନିବଦ୍ଧ ରହିଅଛି ଏବଂ ତେଲଯନ୍ତ୍ର ତୁଲ୍ୟ ଧ୍ରୁବ ଲୋକର ବାୟୁପାଶ ଦ୍ୱାରା ତାହାର ଉପରିଭାଗ ସଂଲଗ୍ନ ହୋଇଅଛି ।୧୪।

ରଥର ନୀଡ଼ ବା ଉପବେଶନ ସ୍ଥାନ ଛତିଶଲକ୍ଷଯୋଜନ ଆୟତ, ତାହାର ଚତୁର୍ଭାଗ ଉଚ୍ଚ, ଏହି ରଥର ଯୁଗ (ଜୁଆଳି) ସେହି ପରିମାଣରେ ଯୋଜନ ବିସ୍ତୃତ । ଏହି ରଥରେ ଗାୟତ୍ରି ପ୍ରଭୃତି ସପ୍ତଛନ୍ଦ ସାତୋଟି ଅଶ୍ୱରୂପେ ନିଯୋଜିତ ହୋଇ ସୂର୍ଯ୍ୟଦେବଙ୍କୁ ବହନ କରୁଅଛନ୍ତି ।୧୫।

---

ଜ୍ୟୋତିଷଚକ୍ର ଏପ୍ରକାରେ
ଭ୍ରମଇ ତହିଁର ବେଗରେ
ଆଦିତ୍ୟ ରଥର ଗମନ
ମୁହୂର୍ତ୍ତକରେ ହେ ସୁଜନ
ଚଉତିଶ ଲକ୍ଷ ଯୋଜନ
ଅଷ୍ଟଶତ ଅଧିକ ପୁଣ
ଇନ୍ଦ୍ରାଦି ସର୍ବଦେବପୁରେ
ଏ କ୍ରମେ ଭ୍ରମନ୍ତି ଉଚ୍ଛୁରେ

ଶତେକ ପାଖୁଡ଼ା ପଦ୍ମର
ସୂଚି ମାରନ୍ତେ ନୃପବର
ସେ ଯେତେକେ ତହିଁକି ଗଳଇ
ତେସନେ ଶୀଘ୍ର ସେ ଚଳଇ ।୧୨।
ଦ୍ୱାଦଶଅର ନାମ ତାର
ସେ ରଥେ ଏକ ଚକ୍ରବର
ସୁମେରୁ ମସ୍ତକ ଉପରେ
କ୍ରମେ ସେ ମାନସଉତ୍ତରେ

ତୈଳ ଯନ୍ତ୍ରର ପ୍ରାୟ ହୋଇ
ତହିଁରେ ରଥସେ ଭ୍ରମଇ ।୧୩।୧୪
ରଥର ଗର୍ଭ ପରିମାଣ
ଷଡ଼ତ୍ରିଂଶ ଲକ୍ଷଯୋଜନ
ଚତୁର୍ଥଭାଗ ଉଚ୍ଚ ହୋଇ
ଯୁଗ ସେ ବିସ୍ତାର ଅଟଇ
ସପତ ଛନ୍ଦ ଅଶ୍ୱ ହୋନ୍ତି
ଆଦିତ୍ୟ ଦେବଙ୍କୁ ବହନ୍ତି ।୧୫।

ପୁରସ୍ତାତ୍‌ସବିତୁରରୁଣଃ ପଶ୍ଚାଚ ନିଯୁକ୍ତଃ ସୌତ୍ୟେ କର୍ମଣି କିଲାସ୍ତେ । ୧୬ ।

ତଥା ବାଲଖିଲ୍ୟା ଋଷୟୋଽଙ୍ଗୁଷ୍ଠପର୍ବମାତ୍ରାଃ ଷଷ୍ଟିସହସ୍ରାଣି ପୁରତଃ ସୂର୍ଯ୍ୟଂ ସୂକ୍ତବାକ୍ୟାୟ ନିଯୁକ୍ତାଃ ସଂସ୍ତୁବନ୍ତି । ୧୭ ।

ତଥାନ୍ୟେ ଚ ଋଷୟୋ ଗନ୍ଧର୍ବାପ୍‌ସରସୋ ନାଗା ଗ୍ରାମଣ୍ୟୋ ଯାତୁଧାନା ଦେବା ଇତ୍ୟେକୈକଶୋ ଗଣାଃ ସପ୍ତ ଚତୁର୍ଦ୍ଦଶ ମାସି ମାସି ଭଗବନ୍ତଂ ସୂର୍ଯ୍ୟମାତ୍ମାନଂ ନାନାନାମାନଂ ପୃଥଙ୍‌ନାମାନଃ ପୃଥକ୍‌କର୍ମଭିର୍ଦ୍ୱନ୍ଦ୍ୱଶ ଉପାସତେ । ୧୮ ।

ଲକ୍ଷୋତ୍ତରସାର୍ଦ୍ଧନବକୋଟିଯୋଜନପରିମଣ୍ଡଳଂ ଭୂବଲୟସ୍ୟ କ୍ଷଣେନ ସଗବ୍ୟୂତ୍ୟୁତ୍ତରଂ ଦ୍ୱିସହସ୍ରଯୋଜନାନି ସ ଭୁଂକ୍ତେ । ୧୯ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଜ୍ୟୋତିଶ୍ଚକ୍ରେ ସୂର୍ଯ୍ୟରଥବର୍ଣ୍ଣନଂ ନାମୈକବିଂଶୋଽଧ୍ୟାୟଃ । ୨୧ ।

---

ଏହି ରଥର ସାରଥି ଅରୁଣ, ଅଗ୍ରଭାଗରେ ସ୍ଥାପିତ ହେଲେ ମଧ୍ୟ ସେ ପଶ୍ଚିମମୁଖରେ ଉପବିଷ୍ଟ ହୋଇ ଅଛନ୍ତି କାରଣ ସୂର୍ଯ୍ୟଙ୍କର ସମ୍ମୁଖ ଭାଗ ପଶ୍ଚିମ ଦିଗ । ୧୬ ।

ଦେହାଙ୍ଗୁଷ୍ଠ ପରିମିତ ଷଷ୍ଠି ସହସ୍ର ବାଲଖିଲ୍ୟ ଋଷିଗଣ ସୂର୍ଯ୍ୟଙ୍କର ପୁରୋଭାଗରେ ସ୍ତୁତିପାଠ କରିବା ନିମିତ୍ତ ନିୟୋଜିତ ହୋଇ ଅଛନ୍ତି । ୧୭ ।

ସେହିପରି ଅନ୍ୟଋଷିମାନେ ଗନ୍ଧର୍ବ, ଅପ୍‌ସରା, ନାଗ, ଗ୍ରାମଦେଵୀ, ରାକ୍ଷସ, ଦେବତା ପ୍ରଭୃତି ଗୋଟିଏ ଗୋଟିଏ ଗଣ; ସେମାନଙ୍କର ସଂଖ୍ୟା ଚତୁର୍ଦ୍ଦଶ; ସେମାନେ ଦୁଇଦୁଇଟିରେ ସପ୍ତଗଣହୋଇ ପ୍ରତି ମାସରେ ପୃଥକ୍ ପୃଥକ୍ କର୍ମଦ୍ୱାରା ନାନା ନାମଧାରୀ ପରମାତ୍ମରୂପେ ଭଗବାନ୍ ସୂର୍ଯ୍ୟଦେବଙ୍କ ଉପାସନା କରୁଅଛନ୍ତି । ୧୮ ।

ଭୂବଳୟର ପରିମାଣ ନବକୋଟି ଏକପଞ୍ଚାଶତ ଲକ୍ଷ ଯୋଜନ, ଏକ ମୁହୂର୍ତ୍ତରେ ସୂର୍ଯ୍ୟରଥ ଦୁଇସହସ୍ର ଯୋଜନ ଦୁଇକ୍ରୋଶ ଗମନ କରେ । ୧୯ ।

---

ଅରୁଣ ସାରଥି ତହିଁରେ
ସପତ ଅଶ୍ୱ ଯେଉଁଠାରେ
ଅଙ୍ଗୁଷ୍ଠ ପରିମାଣ ହୋଇ
ଷାଠିସହସ୍ର ମୁନି ତହିଁ
ବସନ୍ତି ସେ ବାଳଖିଲ୍ୟରେ
ରବିରଥ ଅଗ୍ରଭାଗରେ
ମୁନିଏ ସର୍ବେ ନାନାମତେ
ସ୍ତୁତିକରନ୍ତିଯଥୋଚିତେ ।୧୬,୧୭
ଅନ୍ୟ ଯେ ନାନା ଋଷିଗଣ
ଗନ୍ଧର୍ବ ସିଦ୍ଧ ଯେ ଚାରଣ
ସକଳ ଯକ୍ଷଙ୍କର ବର
ଅପ୍‌ସରାଗଣେ ଯେଉଁଠାର

ଯେ ଯାତୁଧାନ ନାଗମାନ
ସଙ୍ଗତେ ଘେନି ଯେଉଁଗଣ
ଅପ୍‌ସରାଗଣ ନୃତ୍ୟ ଗୀତେ
ଏମନ୍ତେ ଯେ ଯାହାର ମତେ
ସେ ସୂର୍ଯ୍ୟରୂପ ଭଗବାନ
ଅଖିଳ ଆତ୍ମାର କାରଣ
ତାହାଙ୍କ ଚରଣାରବିନ୍ଦେ
ସେବନ୍ତି ମନର ଆନନ୍ଦେ
ଯେ ଯାହା କର୍ମ ଅନୁମତେ
ସେବନ୍ତି ତାଙ୍କ ପାଦଗତେ ।୧୮।
ନବକୋଟି ଲକ୍ଷ ଯୋଜନ
ଅଧିକ ଲକ୍ଷ ଏକାବନ

ଏମନ୍ତ କୋଷ ଯେ ଭୁବନ
ସେ ସୂର୍ଯ୍ୟ କରନ୍ତି ଭ୍ରମଣ
କ୍ଷଣମାତ୍ରକେ ଭଗବାନ
ବେନି ସହସ୍ର ଯେ ଯୋଜନ ।୧୯
ଅଚିନ୍ତ୍ୟ ତାହାଙ୍କ ଚରିତ
କହଇ ଦାସ ଜଗନ୍ନାଥ
ଅଖିଳ ଅନାଦି କାରଣ
ସେ ସୂର୍ଯ୍ୟରୂପକୁ ଧରିଣ
ଭ୍ରମନ୍ତି ପ୍ରାଣିଙ୍କର ହିତେ
ତାହାଙ୍କ ପଦ୍‌ସାଦଗତେ
ପାମର ମୋର ବୁଦ୍ଧି ନିତ୍ୟେ
ତହିଁରେ ରହୁ ଅବିରତେ

ଭାବାର୍ଥ :—

ଏହି ଅଧ୍ୟାୟରେ ସୂର୍ଯ୍ୟଙ୍କର ଗତି ଓ ଅନ୍ୟାନ୍ୟ ଗ୍ରହ ନକ୍ଷତ୍ରାଦିଙ୍କର ବିଷୟ ବର୍ଣ୍ଣନା କରାଯାଇଅଛି, ଭୂମିରେ ଭୂବଲୋକ ଓ ଊର୍ଦ୍ଧ୍ୱରେ ସ୍ୱର୍ଗମଣ୍ଡଳ, ଏହି ଦୁଇଟି ଭାଗ, ତାହାର ମଧ୍ୟ ଭାଗରେ ଯେଉଁ ଶୂନ୍ୟସ୍ଥାନ ରହିଅଛି ତାହା ସେହି ଉଭୟଭାଗ ସହିତ ସମ୍ପୂର୍ଣ୍ଣ ସଂସୃଷ୍ଟ । ଏହାର ମଧ୍ୟ ଭାଗରେ ସୂର୍ଯ୍ୟଦେବ ଅବସ୍ଥାନ କରି ତ୍ରିଭୁବନକୁ ଆଲୋକଦାନ କରୁଅଛନ୍ତି, ସୂର୍ଯ୍ୟଦେବ ଯେ ଗତି କରୁଅଛନ୍ତି, ତାହା ଆମ୍ଭେମାନେ ସ୍ଥୂଳ ଚକ୍ଷୁରେ ଦେଖି ପାରୁନାହୁଁ, କିନ୍ତୁ ଯଥାର୍ଥରେ ତାହାଙ୍କର ଗତି ଅଛି, ଏହି ଗତି ଉତ୍ତରାୟନ, ଦକ୍ଷିଣାୟନ ଓ ବୈଷୁବତ ଏହି ତିନି ନାମରେ ଅଭିହିତ, ତାହା ଯଥାକ୍ରମେ ମନ୍ଦ, କ୍ଷିପ୍ର ଓ ସମାନ ବୋଲି ଅଭିହିତ, ଏହି ଗତିଭେଦ କାଳରେ ସୂର୍ଯ୍ୟ ଆରୋହଣ, ଅବରୋହଣ ଓ ସମାନ ଦେଶରେ ସ୍ଥିତି ଅବଲମ୍ବନ କରି ଥାଆନ୍ତି, ଏହିସବୁ ଗତିଭେଦ ଅବଲମ୍ବନ କାଳରେ ଦିବାରାତ୍ରି ସମାନ ପରିମାଣରେ ହୋଇଥାଏ, ସୂର୍ଯ୍ୟଦେବଙ୍କର ଗତି ଅନୁସାରେ ଦିନ ବଡ଼, ରାତି ଛୋଟ ବା ରାତି ବଡ଼, ଦିନ ଛୋଟ ବା ଉଭୟ ସମାନ, ମକର ରାଶିରୁ ଆରମ୍ଭକରି ଛଅଟି ରାଶିରେ ସୂର୍ଯ୍ୟ ଅବସ୍ଥାନ କଲେ ଦିନକ୍ରମେ ବଡ଼ ହୋଇଥାଏ ଏବଂ ରାତି ଛୋଟ ହୋଇଥାଏ, ଦକ୍ଷିଣାୟନ ସୂର୍ଯ୍ୟଙ୍କର କ୍ଷିପ୍ରଗତି । ଏହି ସମୟରେ ସୂର୍ଯ୍ୟ କର୍କଟାଦି ଛଅ ରାଶିରେ ଅବସ୍ଥାନ କରନ୍ତି, ଏହି ଅବସ୍ଥାରେ ଦିନ ଛୋଟ ରାତି ବଡ଼ ହୋଇଥାଏ, ସୂର୍ଯ୍ୟ ମେଷ ଓ ତୁଳା ରାଶିରେ ଅବସ୍ଥାନ କଲାବେଳେ ଦିବାରାତ୍ରି ସମାନ ହୁଏ । ସୂର୍ଯ୍ୟ ଯେ ପର୍ଯ୍ୟନ୍ତ ଦକ୍ଷିଣାୟନରେ ଥାଆନ୍ତି ସେପର୍ଯ୍ୟନ୍ତ ଓ ଯେପର୍ଯ୍ୟନ୍ତ ଉତ୍ତରାୟନରେ ଥାଆନ୍ତି ସେ ପର୍ଯ୍ୟନ୍ତ ଯଥାକ୍ରମେ ଦିନ ଓ ରାତି ଦୀର୍ଘ ହୁଏ, ବୃଷାଦିରାଶିରେ ସୂର୍ଯ୍ୟ ଅବସ୍ଥାନ କଲାବେଳେ ଦିବସ ବୃଦ୍ଧିହୁଏ, ସେତେବେଳେ ରାତ୍ରି ଏକଘଟିକା କରି କ୍ଷୀଣ ହୁଏ, ଏବଂ ବୃଶ୍ଚିକରାଶିରେ ସୂର୍ଯ୍ୟ ଅବସ୍ଥାନ କଲାବେଳେ ପ୍ରତି ମାସରେ ଦିନ ଏକଘଣ୍ଟା କରି କ୍ଷୀଣ ହୁଏ । ମେରୁ ପର୍ବତର ଉତ୍ତରଦିଗରେ ମାନସୋତ୍ତର ପର୍ବତ ଅବସ୍ଥିତ, ସେହି ମାନସୋତ୍ତର ପର୍ବତର ପୂର୍ବ ଦିଗରେ ଇନ୍ଦ୍ରପୁରୀ ବା ଦେବଧାନୀ, ଇନ୍ଦ୍ରପୁରୀରେ ଯେଉଁ ଦେବତାମାନେ ଅବସ୍ଥାନ କରନ୍ତି ସେମାନେ ଏହି ଦିଗରେ ଥାଆନ୍ତି । ଦକ୍ଷିଣ ଦିଗରେ ସଂଯମନୀ ଇତ୍ୟାଦି ପୂର୍ବେ କଥିତ ହୋଇଅଛି, ତଦନନ୍ତର ସୂର୍ଯ୍ୟଙ୍କର ରଥ, ଚକ୍ର, ଅକ୍ଷ, ଯୁଗ, ଅଶ୍ୱ, ସାରଥି ପ୍ରଭୃତିଙ୍କର ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି, ସୂର୍ଯ୍ୟଙ୍କର ରଥର ଚକ୍ର ଗୋଟିଏ, ଯେଉଁମାନେ ସର୍କସରେ ଏକଚକିଆ ସାଇକଲରେ ଖେଳ ଦେଖିଥିବେ ଏହା ସେମାନେ ସହଜରେ ଅନୁମାନ କରି ପାରିବେ ।

---

## ଦ୍ୱା ବିଂ ଶ ଅ ଧ୍ୟା ୟ ।

ଦ୍ୱାବିଂଶେ ସୋମଶୁକ୍ରାଦେଃ ସ୍ଥାନମାହୋତ୍ତରୋତ୍ତରମ୍ ।
ତତ୍ତଦ୍‌ଗତ୍ୟନୁସାରେଣ ଇଷ୍ଟାନିଷ୍ଟେ ତଥା ନୃଣାମ୍ ।୦ । ( ଶ୍ରୀଧରସ୍ୱାମୀ )

---

### କାଳଚକ୍ର ବର୍ଣ୍ଣନା ସୋମାଦିଗ୍ରହ ଓ ନକ୍ଷତ୍ରମାନଙ୍କର ବର୍ଣ୍ଣନା ।

ଦ୍ୱାବିଂଶ ଅଧ୍ୟାୟରେ କାଳଚକ୍ର ଏବଂ ସୋମ ଶୁକ୍ର ପ୍ରଭୃତି ଗ୍ରହମାନଙ୍କର ଉତ୍ତରୋତ୍ତର ସ୍ଥାନ ବର୍ଣ୍ଣନ ଏବଂ ଗତି ଅନୁସାରେ ମନୁଷ୍ୟମାନଙ୍କର ଶୁଭାଶୁଭ ବର୍ଣ୍ଣନା କରାଯାଇଅଛି । • ।

---

ଦ୍ୱାବିଂଶେ ଅନ୍ୟ ଗ୍ରହଙ୍କର । ବର୍ଣ୍ଣନ ସ୍ଥିତି ଯେ ସଞ୍ଚର ॥

ଶ୍ରୀରାଜୋବାଚ ।

ଯଦେତଦ୍‌ଭଗବତ ଆଦିତ୍ୟସ୍ୟ ମେରୁଂ ଧ୍ରୁବଞ୍ଚ ପ୍ରଦକ୍ଷିଣେନ ପରିକ୍ରାମତୋ ରାଶିନାମଭିମୁଖଂ ପ୍ରଚଳିତଞ୍ଚାପ୍ରଦକ୍ଷିଣଂ ଭଗବତୋପବର୍ଣ୍ଣିତମମୁଷ୍ୟ ବୟଂ କଥମନୁମିମୀମହୀତି । ୧ ।

ସ ( ଶୁକ ) ହୋବାଚ ।

ଯଥା କୁଲାଲଚକ୍ରେଣ ଭ୍ରମତା ସହ ଭ୍ରମତାଂ ତଦାଶ୍ରୟାଣାଂ ପିପୀଲିକାଦୀନାଂ ଗତିରନ୍ୟୈବ ପ୍ରଦେଶାନ୍ତରେଷ୍ୱପ୍ୟୁପଲଭ୍ୟମାନତ୍ୱାତ୍ ଏବଂ ନକ୍ଷତ୍ରରାଶିଭିରୁପଲକ୍ଷିତେନ କାଳଚକ୍ରେଣ ଧ୍ରୁବଂମେରୁଞ୍ଚପ୍ରଦକ୍ଷିଣତଃ ପରିଧାବତାସହପରିଧାବମାନାନାଂ ତଦାଶ୍ରୟାଣାଂ ସୂର୍ଯ୍ୟାଦୀନାଂ ଗ୍ରହାଣାଂଗତିରନ୍ୟୈବ ନକ୍ଷତ୍ରାନ୍ତରେ ରାଶ୍ୟନ୍ତରେଚୋପଲଭ୍ୟମାନତ୍ୱାତ୍ ।୨

---

ଶ୍ରୀରାଜା ପରୀକ୍ଷିତ କହିଲେ :—

ହେ ମୁନିବର ! ଆପଣ କହିଲେ ସୁମେରୁ ଓ ଧ୍ରୁବ ପ୍ରଦକ୍ଷିଣକାରୀ ଭଗବାନ୍ ସୂର୍ଯ୍ୟଦେବ ରାଶି ପ୍ରଦକ୍ଷିଣ ଓ ଅପ୍ରଦକ୍ଷିଣ କରି ଗମନ କରିଥାଆନ୍ତି, ଏହା ପରସ୍ପର ବିପରୀତମତ । ଏହା କିପରି ହୋଇପାରେ ମୋତେ ବୁଝାଇ କହନ୍ତୁ । ୧ ।

ଶ୍ରୀଶୁକଦେବ କହିଲେ :—

ହେ ରାଜନ୍ ! ଯେତେବେଳେ କୁମ୍ଭକାରଚକ୍ର ଭ୍ରମଣ କରୁଥାଏ, ସେତେବେଳେ ତଦାଶ୍ରିତ ପିପୀଲିକା ମାନଙ୍କର ସେହିପରି ଗତି ହୋଇଥାଏ, କିନ୍ତୁ ପିପୀଲିକା ପ୍ରଭୃତିଙ୍କର ସ୍ୱୀୟଗତି ଭିନ୍ନ ବୋଲି ପ୍ରତୀତ ହୁଏ କାରଣ ସେମାନେ ଏକସ୍ଥାନରୁ ସ୍ଥାନାନ୍ତରକୁ ଗମନ କରନ୍ତି । ସେହିପରି ନକ୍ଷତ୍ରରାଶିଦ୍ୱାରା ଉପଲକ୍ଷିତ କାଳଚକ୍ର, ଧ୍ରୁବ ଓ ସୁମେରୁକୁ ପ୍ରଦକ୍ଷିଣକରି ପରିଧାବିତ ହେଉଅଛି । ସୁତରାଂ ତଦାଶ୍ରିତ ସୂର୍ଯ୍ୟାଦିଗ୍ରହଙ୍କର ତଦନୁସାରେ ଗତି ହେଉଅଛି, କିନ୍ତୁ ସୂର୍ଯ୍ୟାଦିଗ୍ରହ ଯେତେବେଳେ ଏକ ନକ୍ଷତ୍ରରୁ ନକ୍ଷତ୍ରାନ୍ତରକୁ ଏବଂ ଏକରାଶିରୁ ରାଶ୍ୟାନ୍ତରକୁ ଗମନ କରିବାରି ପ୍ରତୀତ ହେଉଅଛନ୍ତି ସେତେବେଳେ ସେମାନଙ୍କର ନିଜ ନିଜର ବିଭିନ୍ନ ଗତି ବିପରୀତଦିଗକୁ ହୋଇପାରେ ଏଥିରେ ଅସମ୍ଭବ କଣ ଅଛି । ୨ ।

---

ଶ୍ରୀ ରାଜୋବାଚ—

ହେ ମୁନି ଏଥିର ଉଦନ୍ତ
ଶୁଣିଲି ଯିବଇଁ ପ୍ରଗାଢ
ଆଦିତ୍ୟ ଦେବ ଯଥୋଚିତେ
ମେରୁ ପ୍ରଦକ୍ଷିଣ କରନ୍ତେ
ଦ୍ୱାଦଶ ରାଶିଙ୍କ ସମ୍ମୁଖେ
ଭୋଗ ସେ କରନ୍ତି ପ୍ରତ୍ୟକ୍ଷେ
ଆଦିତ୍ୟ ଗତି ବ୍ୟଗତର
ତହିଁରେ କେମନ୍ତେ ସଞ୍ଚାର
ଏତେଣତ ମୋହର ସନ୍ଦେହ
ହେମୁନି ତଦନ୍ତ ତୁ କହ । ୧ ।

ଶ୍ରୀ ଶୁକଉବାଚ—

କୁମ୍ଭକାରଚକ୍ର ପ୍ରାୟ ହୋଇ ।
ଆଦିତ୍ୟରଥ ସେ ଭ୍ରମଇ ;
ରାଶି ନକ୍ଷତ୍ର ଆଦି ଯେତେ
ତହିଁରେ ଭ୍ରମନ୍ତି ସମସ୍ତେ
କୁମ୍ଭକାରଚକ୍ରର ସହିତେ
କ୍ଷୁଦ୍ର ଜନ୍ତୁଙ୍କ ଗତି ମତେ
ସେ କାଳଚକ୍ର-ଏକଦେଶେ
ଭ୍ରମନ୍ତି ଯେ ଯାହା ପ୍ରକାଶେ
ଧ୍ରୁବ ସୁମେରୁ ପ୍ରଦକ୍ଷିଣ
କରି ଭ୍ରମନ୍ତି ଅନୁକ୍ଷଣ । ୨ ।

ସ ଏଷ ଭଗବାନାଦିପୁରୁଷ ଏବ ସାକ୍ଷାନ୍ନାରାୟଣୋ ଲୋକାନାଂ ସ୍ୱସ୍ତୟ ଆତ୍ମାନଂ ତ୍ରୟୀମୟଂ କର୍ମ୍ମବିଶୁଦ୍ଧିନିମିତ୍ତଂ କବିଭିରପି ଚ ବେଦେନ ବିଜିଜ୍ଞାସ୍ୟମାନୋ ଦ୍ୱାଦଶଧା ବିଭଜ୍ୟ ଷଟ୍‌ସୁ ବସନ୍ତାଦିଷ୍ୱୃତୁଷୁ ଯଥୋପଜୋଷମୃତୁଗୁଣାନ୍ ବିଦଧାତି । ୩ ।

ତମେତମିହ ପୁରୁଷାସ୍ତ୍ରୟ୍ୟା ବିଦ୍ୟୟା ବର୍ଣ୍ଣାଶ୍ରମାଚାରାନୁପଥା ଉଚ୍ଚାବଚୈଃ କର୍ମ୍ମଭିରାମ୍ନାତୈର୍ଯୋଗବିତାନୈଶ୍ଚ ଶ୍ରଦ୍ଧୟା ଯଜନ୍ତୋଽଞ୍ଜସା ଶ୍ରେୟଃ ସମଧିଗଚ୍ଛନ୍ତି । ୪ ।

ଅଥ ସ ଏଷ ଆତ୍ମା ଲୋକାନାଂ ଦ୍ୟାବାପୃଥିବ୍ୟୋରନ୍ତରେଣ ନଭୋବଲୟସ୍ୟ କାଳଚକ୍ରଗତୋ ଦ୍ୱାଦଶମାସାନ୍ ଭୁଙ୍‌କ୍ତେ ରାଶିସଂଜ୍ଞକାନ୍ ସମ୍ୱତ୍ସରାବୟବାନ୍ ମାସଃ ପକ୍ଷଦ୍ୱୟଂ ଦିବା ନକ୍ତଞ୍ଚେତ୍ୟୁପଦିଶନ୍ତି ଯାବତା ଷଷ୍ଠମଂଶଂ ଭୁଞ୍ଜୀତ ସ ବୈ ଋତୁରିତ୍ୟୁପଦିଶ୍ୟତେ ସମ୍ୱତ୍ସରାବୟବଃ । ୫ ।

---

ହେ ରାଜନ୍ ! ସେହି ଭଗବାନ୍ ଆଦିତ୍ୟ ଦେବ, ସାକ୍ଷାତ୍ ଆଦିପୁରୁଷ ନାରାୟଣ, ଲୋକମାନଙ୍କର ମଙ୍ଗଳବିଧାନ ନିମିତ୍ତ ଓ କର୍ମବିଶୁଦ୍ଧି ନିମିତ୍ତ ନିଜର ବେଦମୟ ଆତ୍ମାକୁ ଦ୍ୱାଦଶ ଭାଗରେ ଓ ବସନ୍ତାଦି ଛଅ ଋତୁରେ ବିଭକ୍ତକରି କର୍ମଭୋଗ ଉପଯୋଗୀ ଶୀତୋଷ୍ଣାଦି ଋତୁମାନ ବିଧାନକରି ଥାଆନ୍ତି ଜ୍ଞାନମାନେ ବେଦଦ୍ୱାରା ଏହାର ସ୍ୱରୂପ ସମ୍ବନ୍ଧରେ ନାନା ବିତର୍କାଦି କରିଥାଆନ୍ତି । ୩ ।

ବର୍ଣ୍ଣାଶ୍ରମ ଅନୁମୋଦକ ପଣ୍ଡିତଗଣ ସେହି ଭଗବାନ୍ ଆଦିପୁରୁଷଙ୍କୁ ଏହି ସଂସାରରେ ବେଦ ବିଦ୍ୟା, ବେଦୋକ୍ତ ନାନାପ୍ରକାର ଉଚ୍ଚ ନୀଚ କର୍ମ ଏବଂ ଯୋଗବିଜ୍ଞାନ ବା ଧ୍ୟାନାଦିଦ୍ୱାରା ଶ୍ରଦ୍ଧାରେ ପୂଜାକରି ପରମଙ୍ଗଳ ଲାଭ କରି ଥାଆନ୍ତି । ୪ ।

ଲୋକମାନେ ଲୋକମାନଙ୍କର ଆତ୍ମା ସେହି ଭଗବାନ୍ ସୂର୍ଯ୍ୟ ସ୍ୱର୍ଗ ଓ ମର୍ତ୍ତ୍ୟ ମଧ୍ୟରେ ନଭୋମଣ୍ଡଳରେ କାଳଚକ୍ର ପରି ହୋଇ ରାଶିନାମକ ଦ୍ୱାଦଶମାସ ଯାହା ସମ୍ବତ୍ସରର ଅବୟବ ତାହା ଭୋଗ କରିଥାଥନ୍ତି । ପଣ୍ଡିତମାନେ ଏହି ମାସକୁ ଚାନ୍ଦ୍ରମାସ ଗଣନାରେ କୃଷ୍ଣ ଓ ଶୁକ୍ଳ ଦୁଇପକ୍ଷରେ ନିର୍ଦ୍ଧାରଣ କରନ୍ତି । ସୌର ଗଣନାନୁସାରେ ଦୁଇଟି ନକ୍ଷତ୍ର ଓ ଏକଚତୁର୍ଥାଂଶ ଗୋଟିଏ ରାଶିର ଭୋଗକାଳ, ପିତୃଲୋକର ପରିମାଣ ଅନୁସାରେ ଏହିମାସ ଅହୋରାତ୍ରମାସ ହୁଏ, ଭଗବାନ୍ ସୂର୍ଯ୍ୟ ଯେତେବେଳେ ସମ୍ବତ୍ସରର ଷଷ୍ଠଭାଗ ଅର୍ଥାତ୍ ଦୁଇରାଶି ଭୋଗକରନ୍ତି, ସେତେବେଳେ ଗୋଟିଏ ଋତୁ ହୁଏ, ଏହିଋତୁ ସମ୍ବତ୍ସରର ଅବୟବ । ୫ ।

---

ଆଦି ପୁରୁଷ ଭଗବାନ,
ସାକ୍ଷାତେ ପ୍ରଭୁ ନାରାୟଣ
ତ୍ରୟୀମୟ ଯେ ତାଙ୍କ ମୂର୍ତ୍ତି
କର୍ମବିଶୁଦ୍ଧରେ ସେ ଥାନ୍ତି
ସେ ମୂର୍ତ୍ତି ଦ୍ୱାଦଶ ପ୍ରକାର
କରିଣ ବ୍ରହ୍ମାଣ୍ଡେ ପ୍ରଭୁର
ଛଅଋତୁ ବସନ୍ତ ଆଦି
ଏଥିରେ ଯେତେକ ପ୍ରସିଦ୍ଧି
ଯେ ଋତୁକାଳେ ଯେ ହୁଅନ୍ତି
ଅପଣେ ବିଧାନ କରନ୍ତି

ଆଶ୍ରମ ମତେ ନାନାପଥେ
ନାନାକର୍ମରେ ଯେଥାଅତେ
ମହାପୁରୁଷ ମହାଜନେ
ନାନାଯୋଗରେ ଶ୍ରଦ୍ଧାମନେ
ଯେ ତାଙ୍କ ଚରଣେ ସେବନ୍ତି
ସକଳ ପାପୁ ସେ ତରନ୍ତି
ପରମ କଲ୍ୟାଣ ଲଭନ୍ତି
ଅନ୍ତେ ପରମ ଗତି ପାନ୍ତି । ୪ ।
ଏମନ୍ତେ ଶୁଣ ନୃପବର
ସେ ସୂର୍ଯ୍ୟ ଆତ୍ମା ପ୍ରାଣିଙ୍କର

ପୃଥିବୀ ଆକାଶ ମଧ୍ୟରେ
କାଳଚକ୍ରରେ ଏ ଶୂନ୍ୟରେ
ଦ୍ୱାଦଶ ମାସକୁ ଭୁଞ୍ଜନ୍ତି
ସମ୍ବତ୍ସର ଯାହା କହନ୍ତି
ମାସକେ ବେଳଭାଗ କରି
ଭୁଞ୍ଜନ୍ତି ଅହୋରାତ୍ର କରି
ସେ ବେଳ ମାସେ ଏକ ଋତୁ
ସମ୍ବତ୍ସରରେ ଷଡ଼ଋତୁ । ୫ ।

ଅଥ ଚ ଯାବତାର୍ଦ୍ଧେନ ନଭୋବୀଥ୍ୟାଃ ପ୍ରଚରତି ତଂ କାଳମୟନମାଚକ୍ଷ୍ୟତେ ।୬।

ଅଥ ଚ ଯାବନ୍ନଭୋମଣ୍ଡଳଂ ସହଦ୍ୟାବାପୃଥିବ୍ୟୋର୍ମଣ୍ଡଳାଭ୍ୟାଂକାର୍ତ୍ସ୍ନ୍ୟେନ ସ ହ ଭୁଞ୍ଜୀତ ତଂ କାଳଂ ସମ୍ବତ୍ସରଂ ପରିବତ୍ସରମିଡାବତ୍ସରମନୁ ବତ୍ସରମିତି ଭାନୋର୍ମାନ୍ଦ୍ୟଶୈଘ୍ର୍ୟସମଗତିଭିଃ ସମାମନନ୍ତି ।୭।

ଏବଂ ଚନ୍ଦ୍ରମା ଅର୍କଗଭସ୍ତିଭ୍ୟ ଉପରିଷ୍ଟାଲ୍ଲକ୍ଷଯୋଜନତ ଉପଲଭ୍ୟମାନୋଽର୍କସ୍ୟ ସମ୍ବତ୍ସରଭୁକ୍ତିଂ ପକ୍ଷାଭ୍ୟାଂ ମାସଭୁକ୍ତିଂସପାଦର୍କ୍ଷାଭ୍ୟାଂଦିନେନୈବ ପକ୍ଷଭୁକ୍ତିମଗ୍ରଚରୀ ଦ୍ରୁତତରଗମନୋଭୁଂକ୍ତେ ।୮।

ଅଥ ଚାପୂର୍ଯ୍ୟମାଣାଭିଶ୍ଚ କଳାଭିରମରାଣାମପକ୍ଷୀୟମାଣାଭିଶ୍ଚ କଳାଭିଃ ପିତୃଣା-

---

ଯେତେବେଳେ ଭଗବାନ୍ ସୂର୍ଯ୍ୟଦେବ ନଭୋମଣ୍ଡଳର ଅର୍ଦ୍ଧଭାଗରେ ବିଚରଣ କରନ୍ତି ଅର୍ଥାତ୍ ଛଅମାସ ଭୋଗକରନ୍ତି ସେତେବେଳେ ଗୋଟିଏ ଅୟନ ହୁଏ ।୬।

ସେହି ସୂର୍ଯ୍ୟଦେବ ଯେତେବେଳେ ସ୍ୱର୍ଗ ଓ ପୃଥିବୀମଣ୍ଡଳ ସହ ନଭୋମଣ୍ଡଳ ସମ୍ପୂର୍ଣ୍ଣରୂପେ ଭୋଗ କରନ୍ତି, ସେହିକାଳକୁ ସମ୍ବତ୍ସର ପରିବତ୍ସର ଇଡାବତ୍ସର, ଅନୁବତ୍ସର ଓ ବତ୍ସର ବୋଲି କୁହାଯାଏ, ଏହି ନାମମାନ ସୂର୍ଯ୍ୟଙ୍କର ମନ୍ଦଗତି କ୍ଷିପ୍ରଗତି ଓ ସମଗତି ଅନୁସାରେ ହୋଇଥାଏ, ଏହାହିଁ ପଣ୍ଡିତ ମାନଙ୍କର ମତ * ।୭।

ଏହିପରି ଚନ୍ଦ୍ରମା ସୂର୍ଯ୍ୟମଣ୍ଡଳରୁ ଲକ୍ଷେଯୋଜନ ଉପରେ ଉପଲକ୍ଷିତ ହୋଇଥାଆନ୍ତି । ଏହି ଦୁଇପକ୍ଷ କାଳ ସୂର୍ଯ୍ୟଙ୍କର ଏକବତ୍ସର, ଏବଂ ଦୁଇଦିନ ଏକପାଦରେ ସୂର୍ଯ୍ୟଙ୍କର ଏକମାସ ହୁଏ, ଗୋଟିଏ ଦିନରେ ସୂର୍ଯ୍ୟଙ୍କର ଏକପକ୍ଷ ଭୋଗ ହୁଏ, ଏହି ଚନ୍ଦ୍ର ଭଗବାନ୍ ବୋଲି ଦ୍ରୁତତର ଗମନଶୀଳ ।୮।

ଏହି ଚନ୍ଦ୍ର ଆପୂର୍ଯ୍ୟମାନ କଳାଦ୍ୱାରା ଅର୍ଥାତ୍ ଯେତେବେଳେ ଚନ୍ଦ୍ରକଳା ବୃଦ୍ଧିହୁଏ, ସେତେବେଳେ ଦେବତାମାନଙ୍କର ଦିନ ଏବଂ ଚନ୍ଦ୍ରକଳାର ହ୍ରାସ ସଙ୍ଗେ ସଙ୍ଗେ ତାହାକ୍ଷୀଣ ହୋଇଥାଏ । ଏହିପରି

---

ଯେ କାଳ ନଭ ଅର୍ଦ୍ଧଭାଗେ
ରହନ୍ତି କାଳଚକ୍ର ଲାଗେ
ତାକୁ ଅୟନ ବୋଲି କହି
ଶୁଣ ରାଜନ ! ମନଦେଇ ।୬।
ଦ୍ୟାବା ପୃଥିବୀର ସହିତେ
ନଭମଣ୍ଡଳକୁ ଯାବତେ
ରବି ଭୁଞ୍ଜନ୍ତି ଯେତେକାଳେ
ସମ୍ବତ୍ସର ବୋଲି ତାହାରେ ।୭।
ଏ ଅନନ୍ତରେ ହେ ରାଜନ
ଚନ୍ଦ୍ରର ଏରୂପେ ।ଗମନ

ଲକ୍ଷେ ଯୋଜନର ଅନ୍ତରେ
ସୂର୍ଯ୍ୟର ଠାରୁ ସେ ବହିରେ
ପ୍ରବଳ ଗତି ତାର ଖରେ
ଚନ୍ଦ୍ର ଭୁଞ୍ଜନ୍ତି ଯେ ବେଗରେ
ସୂର୍ଯ୍ୟଙ୍କ ଭୋଗ ବେଳପକ୍ଷେ
ବେନି ନକ୍ଷତ୍ର ପାଦ ରକ୍ଷେ
ପକ୍ଷ ଭୋଗକୁ ଏକଦିନେ
ଭୁଞ୍ଜନ୍ତି ଅହୋରାତ୍ର ମାନେ ।୮।
ଏ ଅନନ୍ତରେ ନୃପବର
ବର୍ଦ୍ଧିତ କଳା ଶଶଧର

ଅହୋରାତ୍ର ସେ ଦେବଙ୍କର
ସେ ଶୁକ୍ଳପକ୍ଷରେ ତାହାର
କ୍ଷୀଣ କଳାରେ ପିତୃଙ୍କର
ଅହୋ ରାତ୍ର ହେ ନୃପବର
ସେ ଯେ ସକଳ ପ୍ରାଣିଙ୍କର
ଜୀବନଭୂତ ଶଶଧର
ଭୁଞ୍ଜନ୍ତି ତ୍ରିଂଶତ ମୁହୂର୍ତ୍ତ
ଏକନକ୍ଷତ୍ର ଯଥୋଚିତ ।୯ ।

---

* ସ୍ୱଳ୍ପ ସମ୍ବତ୍ସରରେ ସଂକ୍ରାନ୍ତ ନହେଲେ ସେହି ସମୟରେ ସୌର ଓ ଚାନ୍ଦ୍ରମାସର ଯୁଗପତ୍ ଅବସ୍ଥା ହୁଏ । ଏହାକୁ ସମ୍ବତ୍ସର ବୋଲିଯାଏ, ସୌରମାସରେ ବର୍ଷମଧ୍ୟରେ ଛଅଦିନ ଅଧିକ ହୁଏ, ଚାନ୍ଦ୍ରମାସରେ ଛଅଦିନ କମିଯାଏ । ସୁତରାଂ ୧୨ଦିନ ଅଗରଳ ହୋଇଯାଏ । ଏହିପରି ପାଞ୍ଚବର୍ଷ ଯାଏ, ତହିଁ ମଧ୍ୟରେ ଯୋଡ଼ିଏ ମଳମାସ ପଡ଼େ, ହେଁଉରେ ବର୍ଷ ସମ୍ବତ୍ସର ଅବସ୍ଥା ହୁଏ ।

ମହୋରାତ୍ରାଣି ପୂର୍ବପକ୍ଷାପରପକ୍ଷାଭ୍ୟାଂ ବିତନ୍ୱାନଃ ସର୍ବଜୀବନିବହପ୍ରାଣୋ ଜୀବଶ୍ଚୈକମେକଂ ନକ୍ଷତ୍ରଂ ତ୍ରିଂଶତା ମୁହୂର୍ତ୍ତୈର୍ଭୁଂକ୍ତେ । ୯ ।

ଏ ଏଷ ଷୋଡ଼ଶ କଳଃ ପୁରୁଷୋ ଭଗବାନ୍ ମନୋମୟୋଽନ୍ନମୟୋଽମୃତମୟୋ ଦେବପିତୃମନୁଷ୍ୟଭୂତପଶୁପକ୍ଷୀସରୀସୃପବୀରୁଧାଂ ପ୍ରାଣାପ୍ୟାୟନଶୀଲତ୍ୱାତ୍ ସର୍ବମୟ ଇତି ବର୍ଣ୍ଣୟନ୍ତି । ୧୦ ।

ତତ ଉପରିଷ୍ଟାଦ୍‌ଦ୍ୱିଲକ୍ଷଯୋଜନତୋ ନକ୍ଷତ୍ରାଣି ମେରୁଂ ଦକ୍ଷିଣେନୈବ କାଲାୟନ ଈଶ୍ୱରଯୋଜିତାନି ସହାଭିଜିତାଷ୍ଟାବିଂଶତିଃ । ୧୧ ।

ତତ ଉପରିଷ୍ଟାଦୁଶନା ଦ୍ୱିଲକ୍ଷଯୋଜନତ ଉପଲଭ୍ୟତେ ପୁରତଃ ପଶ୍ଚାତ୍ ସହୈବାର୍କସ୍ୟ ଶୈଘ୍ର୍ୟମାନ୍ଦ୍ୟସାମ୍ୟାଭିର୍ଗତିଭିରର୍କବଚ୍ଚରତି ଲୋକାନାଂ ନିତ୍ୟଦାନୁକୂଳ ଏବ, ପ୍ରାୟେଣ ବର୍ଷୟଂଶ୍ଚାରେଣାନୁମୀୟତେ ସ ବୃଷ୍ଟିବିଷ୍ଟମ୍ଭଗ୍ରହୋପଶମନଃ । ୧୨ ।

---

ଚନ୍ଦ୍ରମା ଶୁକ୍ଳ ଓ କୃଷ୍ଣପକ୍ଷ ଦ୍ୱାରା ଦେବ ଓ ପିତୃ ସମ୍ବନ୍ଧୀୟ ଅହୋରାତ୍ର ବିଧାନକରି ତ୍ରିଂଶତ ମୁହୂର୍ତ୍ତରେ ଏକନକ୍ଷତ୍ର ଭୋଗ କରନ୍ତି, ସେ ସମସ୍ତ ଜୀବ ସମୂହର ପ୍ରାଣ ସ୍ୱରୂପ ବୋଲି ଜୀବ ନାମରେ ଅଭିହିତ ।୯।

ସେହି ଚନ୍ଦ୍ରମା ଷୋଡ଼ଶକଳା ଯୁକ୍ତ ପୁରୁଷ, ସେ ମନୋମୟ, ଅମୃତମୟ ଏବଂ ଦେବତା ପିତୃ ମାନବ ଭୂତ, ପଶୁପକ୍ଷୀ ସରୀସୃପ ଲତା, ଉଦ୍‌ଭିଦ ପ୍ରଭୃତିର ପ୍ରାଣିଙ୍କୁ ତୃପ୍ତି ଦେଇଥାଏ, ତେଣୁ ଜ୍ଞାନୀମାନେ ତାହାଙ୍କୁ ସର୍ବମୟ ବୋଲି ବର୍ଣ୍ଣନା କରିଅଛନ୍ତି । ୧୦ ।

ତାହାଙ୍କର ଉପରିଭାଗରେ ଦୁଇଲକ୍ଷ ଯୋଜନ ଦୂରରେ ନକ୍ଷତ୍ରମାନ ମେରୁକୁ ପ୍ରଦକ୍ଷିଣ କରି ଈଶ୍ୱରଙ୍କର ନିୟମାନୁସାରେ କାଳଚକ୍ରରେ ଭ୍ରମଣ କରୁଅଛନ୍ତି । ସେମାନଙ୍କର ଆଉ ପୃଥକ୍ ଗତି ନାହିଁ, ସେମାନଙ୍କର ସଂଖ୍ୟା ସପ୍ତବିଂଶତି ମାତ୍ର ଉତ୍ତରାଷାଢ଼ା ଓ ଶ୍ରବଣାନକ୍ଷତ୍ରର ସନ୍ଧିସ୍ଥଳ ଅଭିଜିତ୍ ନକ୍ଷତ୍ର ନାମରେ ଅଭିହିତ, ତାହାଠାରୁ ବିଶେଷଫଳ ପ୍ରାପ୍ତି ହେତୁ ତାହାକୁ ପୃଥକ୍ ଭାବରେ କଳ୍ପନା କରାଯାଇଅଛି । ୧୧ ।

ନକ୍ଷତ୍ର ମଣ୍ଡଳର ଦୁଇଲକ୍ଷ ଯୋଜନର ଦୂରତାରେ ଶୁକ୍ରଗ୍ରହ ଅବସ୍ଥିତ, ସୂର୍ଯ୍ୟଙ୍କ ତୁଲ୍ୟ ଏହାଙ୍କର ମଧ୍ୟ କ୍ଷିପ୍ରଗତି, ମନ୍ଦ ଗତି ଓ ସମଗତି ଅଛି, ତେଣୁ କେତେବେଳେ ସୂର୍ଯ୍ୟଙ୍କର ଅଗ୍ରରେ କେତେବେଳେ ପଶ୍ଚାତ୍‌ଭାଗରେ ଏବଂ କେତେବେଳେ ତାହାଙ୍କର ସହିତ ସେ ଗତି କରିଥାଆନ୍ତି, ସେ ସର୍ବଦା ଲୋକମାନଙ୍କର ଅନୁକୂଳ; ଶୁକ୍ରଙ୍କର ସଞ୍ଚାର କାଳରେ ପ୍ରାୟ ବୃଷ୍ଟି ହୋଇଥାଏ । ଅତଏବ ଯେଉଁ ଗ୍ରହମାନେ ବୃଷ୍ଟି ପ୍ରତିବନ୍ଧକ, ସେ ସେମାନଙ୍କୁ ଉପଶମ କରିଥାନ୍ତି ବୋଲି ଅନୁମିତ ହୁଏ । ୧୨ ।

---

ଏଣୁ ସେ ଅନାଦି ପୁରୁଷ
ଷୋଡ଼ଶ କଳା ସେ ବିଶେଷ
ଅମୃତ ଶରୀରକୁ ଧରି
ପ୍ରାଣିଙ୍କୁ ଆପ୍ୟାୟନ କରି
ମନୁଷ୍ୟ ପଶୁ ପକ୍ଷୀ ଆଦି
ସରୀସୃପ ବୃକ୍ଷ ପ୍ରଭୃତି

ଏହାଙ୍କ ହୃଦରେ ବସନ୍ତି
ଏଣୁ ସେ ସର୍ବ ସୁଖ ଦ୍ୟନ୍ତି ।୧୦।
ଏହାର ଊର୍ଦ୍ଧ୍ୱେ ହେ ରାଜନ
ଦ୍ୱିତୀୟ ଲକ୍ଷ ଯେ ଯୋଜନ,
ନକ୍ଷତ୍ର ଯେ ଅଷ୍ଟବିଂଶତି
ମେରୁର ଦକ୍ଷିଣେ ବସନ୍ତି ।୧୧।

ଦ୍ୱିଲକ୍ଷ ତାହାର ଉପରେ
ଉଶନା ବାସ ଯେଉଁଠାରେ
ଆଦିତ୍ୟ ପ୍ରାୟ ନାନା ଗତି
ପାଶ୍ୱେଁ ତାଙ୍କର ବସନ୍ତି
ଲୋକର ଯେ ଶୁଭ କଲ୍ୟାଣ
ଏଥେ ସେ ଜାତ୍ୟ ସମ୍ପୂର୍ଣ୍ଣ ।୧୨।

ଉଶନସା ବୁଧୋ ବ୍ୟାଖ୍ୟାତଃ । ତତ ଉପରିଷ୍ଟାଦଦ୍ୱିଲକ୍ଷଯୋଜନତୋ ବୁଧଃ ସୋମସୁତ ଉପଲଭ୍ୟମାନଃ ପ୍ରାୟେଣ ଶୁଭକୃତ୍ । ଯଦାର୍କାଦ୍ବ୍ୟତିରିଚ୍ୟତେ ତଦାତିବାତାଭ୍ରପ୍ରାୟାନାବୃଷ୍ଟ୍ୟାଦିଭୟମାଶଂସତେ । ୧୩ ।

ଅତ ଊର୍ଦ୍ଧ୍ୱମଙ୍ଗାରକୋଽପି ଯୋଜନଲକ୍ଷଦ୍ୱିତୟ ଉପଲଭ୍ୟମାନସ୍ତ୍ରିଭିସ୍ତ୍ରିଭିଃ ପକ୍ଷୈରେକୈକଶୋ ରାଶୀନ୍ ଦ୍ୱାଦଶାନୁଭୁଂକ୍ତେ ଯଦି ନ ବକ୍ରେଣାଭିବର୍ତ୍ତତେ ପ୍ରାୟେଣାଶୁଭଗ୍ରହୋଽଘଶଂସଃ । ୧୪ ।

ତତ ଉପରିଷ୍ଟାଦ୍ଦ୍ୱିଲକ୍ଷଯୋଜନାନ୍ତରଗତୋ ଭଗବାନ୍ ବୃହସ୍ପତିରେକୈକସ୍ମିନ୍ ରାଶୌ ପରିବତ୍ସରଂ ପ୍ରଚରତି ଯଦି ନ ବକ୍ରଃ ସ୍ୟାତ୍ ପ୍ରାୟେଣାନୁକୂଲୋ ବ୍ରାହ୍ମଣକୁଲସ୍ୟ । ୧୫ ।

---

ଶୁକ୍ରଗ୍ରହଙ୍କର ବର୍ଣ୍ଣନାଦ୍ୱାରା ବୁଧଙ୍କ କଥାମଧ୍ୟ ବର୍ଣ୍ଣିତ ହେଲା ଅର୍ଥାତ୍ ବୁଧଗ୍ରହ ସୂର୍ଯ୍ୟଙ୍କ ସହିତ କେଁଉତ୍ ଅଗ୍ର ବା ପଶ୍ଚାତ୍‌ରେ ସଞ୍ଚରଣ କରିଥାଏ, ଶୁକ୍ରଗ୍ରହର ଦୁଇଲକ୍ଷ ଯୋଜନ ଉପରେ ସୋମସୁତ ବୁଧ ପରି ଲକ୍ଷିତ ହୁଅନ୍ତି । ଏହି ବୁଧଗ୍ରହ ପ୍ରାୟ ଲୋକର ଶୁଭକାରୀ କିନ୍ତୁ ଯେତେବେଳେ ସୂର୍ଯ୍ୟଠାରୁ ଅତିରିକ୍ତରେ ସେ ଗମନ କରନ୍ତି ସେତେବେଳେ ପ୍ରାୟ ପ୍ରବଳ ବାୟୁ ନିର୍ଜ୍ଜଳ ମେଘାଡ଼ମ୍ବର ଓ ଅନାବୃଷ୍ଟି ପ୍ରଭୃତି ଭୟ ବିସ୍ତାରିତ ହୋଇଥାଏ । ୧୩ ।

ବୁଧ ଗ୍ରହର ଦୁଇଲକ୍ଷ ଯୋଜନ ଉପରେ ମଙ୍ଗଳଗ୍ରହ ଦୃଶ୍ୟ ହୁଏ, ସେହି ମଙ୍ଗଳଗ୍ରହ ତିନିପକ୍ଷ କାଳ ଗୋଟିଏ ଗୋଟିଏ ରାଶି ଭୋଗ କରେ, ଏହିପରି କ୍ରମେ ଦ୍ୱାଦଶରାଶି ଭୋଗ କରିଥାଏ । ଯଦି ମଙ୍ଗଳ ଗ୍ରହ ବକ୍ର ନ ହୁଏ ତେବେ ପୂର୍ବ ନିୟମରେ ଚଳେ, ପ୍ରାୟ ଏହା ଅଶୁଭ ଗ୍ରହ ଓ ଲୋକଙ୍କର ଅମଙ୍ଗଳ ସୂଚନା କରିଥାଏ । ୧୪ ।

ମଙ୍ଗଳ ଗ୍ରହର ଦୁଇଲକ୍ଷ ଯୋଜନ ଉପରେ ଭଗବାନ୍ ବୃହସ୍ପତି ଗ୍ରହ ଅବସ୍ଥିତ, ସେ ଗୋଟିଏ ରାଶିରେ ଏକବର୍ଷ ବିଚରଣ କରିଥାଆନ୍ତି, ସେ ବକ୍ର ନ ହେଲେ ପ୍ରାୟ ବ୍ରାହ୍ମଣକୁଳ ପ୍ରତି ଅନୁକୂଳ ହୋଇ ଥାଆନ୍ତି । ୧୫ ।

---

ଏହାର ଊର୍ଦ୍ଧ୍ୱେ ଯେ ଉପରେ
ଦ୍ୱିଲକ୍ଷ ଯୋଜନ ଅନ୍ତରେ
ବୁଧ ନାମେ ସେ ଚନ୍ଦ୍ରସୁତ
ତହିଁରେ ତାହାଙ୍କର ସ୍ଥିତ
ପ୍ରାଣୀର ସୁଖେ ଯେହୁ ଥାଇ
ଯେବେ ସେ ସୂର୍ଯ୍ୟ ବେଗହୋଇ
ଅତିପବନ ଖରତରେ
ଅନାବୃଷ୍ଟି ଆଦି ଆଚରେ ।୧୩।

ତାହାର ପରେ ଦୋନି ଲକ୍ଷ
ଯୋଜନେ କୁଜ ଯେ ପ୍ରତ୍ୟକ୍ଷ
ଏକ ରାଶିରେ ତିନିପକ୍ଷ
ମଙ୍ଗଳ ଭୁଞ୍ଜନ୍ତି ପ୍ରତ୍ୟକ୍ଷ
ବକ୍ର ଭାବରେ ଭୋଗ କରେ
ଏ କ୍ରମେ ଦ୍ୱାଦଶ ରାଶିରେ । ୪ ।
ଏହାର ଊର୍ଦ୍ଧ୍ୱେ ହେ ରାଜନ
ଦ୍ୱିତୀୟ ଲକ୍ଷ ଯେ ଯୋଜନ

ତହିଁ ଅଛନ୍ତି ବୃହସ୍ପତି
ଯେ ଦେବ ପୁରୋହିତ ହୋନ୍ତି
ଏକ ରାଶିରେ ସେ ବରଷେ
ଭୋଗ ସେ କରନ୍ତି ସନ୍ତୋଷେ
ସେ ବୃହସ୍ପତି ଭଗବାନ
ବ୍ରାହ୍ମଣ କୁଳର କଲ୍ୟାଣ
ଯେବେ ସେ ବକ୍ରଗତି ହୋଇ
କଦର୍ଯ୍ୟ ଫଳକୁ ବହଇ । ୧୫।

ତତ ଉପରିଷ୍ଟାଦ୍ ଯୋଜନଲକ୍ଷଦ୍ୱୟାତ୍ ପ୍ରତୀୟମାନଃ ଶନୈଶ୍ଚର ଏକୈକସ୍ମିନ୍ ରାଶୌ ତ୍ରିଂଶତଂ ତ୍ରିଂଶତଂ ମାସାନ୍ ବିଲମ୍ବମାନଃ ସର୍ବାନେବାନୁପର୍ଯ୍ୟେତି ତାବଦ୍ଭିରନୁବତ୍ସରୈଃ ପ୍ରାୟେଣ ହି ସର୍ବେଷାମଶାନ୍ତିକରଃ । ୧୬ ।

ତତ ଉତ୍ତରସ୍ମାଦୃଷୟ ଏକାଦଶଲକ୍ଷଯୋଜନାନ୍ତର ଉପଲଭ୍ୟନ୍ତେ ଯ ଏବ ଲୋକାନାଂ ଶମନୁଭାବୟନ୍ତୋ ଭଗବତୋ ବିଷ୍ଣୋର୍ଯତ୍ ପରମଂ ପଦଂ ପ୍ରଦକ୍ଷିଣଂ ପ୍ରକ୍ରାମନ୍ତି । ୧୭ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଜ୍ୟୋତିଶ୍ଚକ୍ରବର୍ଣ୍ଣନଂ ନାମ ଦ୍ୱାବିଂଶୋଽଧ୍ୟାୟଃ । ୨୨ ।

---

ବୃହସ୍ପତି ଗ୍ରହଙ୍କର ଉପରେ ଦୁଇଲକ୍ଷ ଯୋଜନ ଅନ୍ତରରେ ଶନିଶ୍ଚର ଗ୍ରହ ପରିଲକ୍ଷିତ ହୁଏ, ସେ ଗୋଟିଏ ଗୋଟିଏ ରାଶିରେ ଅଢ଼େଇ ବର୍ଷ ଥାଏ । ତିରିଶ ବର୍ଷରେ ସମସ୍ତ ଦ୍ୱାଦଶ ରାଶିରେ ଭ୍ରମଣ କରେ । ସେ ପ୍ରାୟ ସମସ୍ତ ଲୋକର ଅଶାନ୍ତିକର, ଶନିଶ୍ଚର ଗ୍ରହର ଉତ୍ତର ଦିଗରେ ପ୍ରାୟ ଏଗାର ଲକ୍ଷ ଯୋଜନ ବ୍ୟବଧାନରେ ସପ୍ତର୍ଷିମାନେ ଦୃଶ୍ୟ ହୁଅନ୍ତି । ସେମାନେ ଲୋକମାନଙ୍କର ଶାନ୍ତି ବିଧାନ ପୂର୍ବକ ଭଗବାନ ବିଷ୍ଣୁଙ୍କ ପରମପଦ ଧ୍ରୁବଲୋକକୁ ବେଷ୍ଟନ କରି ନିୟତ ପରିଭ୍ରମଣ କରନ୍ତି । ୧୬,୧୭ ।

---

ତହୁଁ ଦ୍ୱିଲକ୍ଷ ଯୋଜନରେ
ତହୁଁ ଅଛନ୍ତି ଶନିଶ୍ଚରେ
ଏକ ରାଶିରେ ଭୋଗ ତାର
ତ୍ରିଂଦଶ ମାସ ନୃପବର
ଅଶାନ୍ତି ସକଳେ କରଇ
ଅଧିକ କେବେ ବା ଭୁଞ୍ଜଇ ।୧୬।

ଏହାର ଉପରେ ଗ୍ରହନ
ଏକାଦଶ ଲକ୍ଷ ଯୋଜନ
ଋଷିଙ୍କ ବାସ ଯେ ସେଠାରେ
ସେ କୃପା କରନ୍ତି ପ୍ରାଣୀରେ
ଲୋକଙ୍କ ଭାବନ୍ତି କୁଶଳ
ଅଶେଷ କରୁଣାର ମୂଳ

ଯେ ବିଷ୍ଣୁ ପଦ ଉତ୍ତ୍ୟେ ଭନ୍ତି
ପ୍ରଦକ୍ଷିଣରେ ଭ୍ରମୁଛନ୍ତି । ୧୭ ।
ସେ ମୁନିଗଣଙ୍କ ପଦ୍ମରେ
ମୋ ଚିତ୍ତ ରହୁ ନିରନ୍ତରେ
କହଇ ଦ୍ୱିଜ ଜଗନ୍ନାଥ
ପଞ୍ଚମସ୍କନ୍ଧେ ଭାଗବତ

---

**ବିଶଦାର୍ଥ :—**

ଭଗବାନ୍ ସୂର୍ଯ୍ୟଦେବ ନାରାୟଣ ସ୍ୱରୂପ, ବସନ୍ତାଦି ଋତୁମାନ ତାହାଙ୍କ ହେତୁରୁ ଉତ୍ପନ୍ନ, ଭଗବାନ୍ ଶ୍ରୀକୃଷ୍ଣ ଶ୍ରୀମଦ୍ ଭଗବଦ୍‌ଗୀତାରେ ନିଜକୁ ସୂର୍ଯ୍ୟ ସ୍ୱରୂପ ବୋଲି ବର୍ଣ୍ଣନା କରିଅଛନ୍ତି ଯଥା—

"ଜ୍ୟୋତିଷାଂ ରବିରଂଶୁମାନ୍"

ବର୍ଣ୍ଣାଶ୍ରମ ଧର୍ମାବଲମ୍ବୀମାନେ ଭଗବାନଙ୍କୁହିଁ ମୁଖ୍ୟ ଓ ଗୌଣ ଭାବରେ ଉପାସନା କରିଥାନ୍ତି, ବିଶ୍ୱାତ୍ମା ଭଗବାନ୍ ସମସ୍ତଙ୍କ ପୂଜାରେ ପରିତୁଷ୍ଟ ହୋଇ ଇଷ୍ଟ ଫଳଦାନ କରିଥାନ୍ତି । ଉପାସକମାନେ ଯାଗାଦିଦ୍ୱାରା ବା ଯେ କୌଣସିରୂପେ ତାହାଙ୍କର ଉପାସନା କରିଥାନ୍ତି, ସୂର୍ଯ୍ୟହିଁ ଜଗତର ଆତ୍ମା, ସେ ଯେପରି ନିଜ ପ୍ରକାଶ ଦ୍ୱାରା ସାକ୍ଷୀରୂପେ ବର୍ତ୍ତମାନ୍ ଥାଇଁ ପ୍ରକୃତ୍ୟାଦି ଷଡ଼ବର୍ଗର କ୍ରିୟାନୁକୂଲ୍ୟ ବିଧାନ କରିଥାନ୍ତି, ସେହିପରି ସୂର୍ଯ୍ୟଦେବ ସ୍ୱୀୟ ପ୍ରକାଶ ଦ୍ୱାରା ଜଗତକୁ କର୍ମରେ ନିୟୋଜିତ କରିଥାନ୍ତି, ଗ୍ରହମାନେ ପ୍ରାଣୀମାନଙ୍କୁ ଶୁଭାଶୁଭ ଦାନ କରିଥାନ୍ତି ଏହି ଅଧ୍ୟାୟରେ ସୂର୍ଯ୍ୟ ଚନ୍ଦ୍ର, ଗ୍ରହ, ନକ୍ଷତ୍ରମାନଙ୍କର ଗତି ବର୍ଣ୍ଣନା କରାଯାଇଅଛି ।

## ତ୍ରୟୋବିଂଶ ଅଧ୍ୟାୟ ।

ତ୍ରୟୋବିଂଶେ ଧ୍ରୁବସ୍ଥାନଂ ଜ୍ୟୋତିଶ୍ଚକ୍ରାଶ୍ରୟଂ ତତଃ ।
ଶିଶୁମାରସ୍ୱରୂପେଣ ହରେଶ୍ଚ ସ୍ଥିତିରୁଚ୍ୟତେ ।୦। ( ଶ୍ରୀଧରସ୍ୱାମୀ )

ଶ୍ରୀଶୁକ ଉବାଚ ।

ଅଥ ତସ୍ମାତ୍ ପରତସ୍ତ୍ରୟୋଦଶଲକ୍ଷଯୋଜନାନ୍ତରତୋ ଯତ୍ତଦ୍ବିଷ୍ଣୋଃ ପରମଂ ପଦମଭିବଦନ୍ତି ଯତ୍ର ମହାଭାଗବତୋ ଧ୍ରୁବ ଔତ୍ତାନପାଦିରଗ୍ନିନେନ୍ଦ୍ରେଣ ପ୍ରଜାପତିନା କଶ୍ୟପେନ ଧର୍ମ୍ମେଣ ଚ ସମକାଲଯୁଗ୍ଭିଃ ସବହୁମାନଂ ଦକ୍ଷିଣତଃ କ୍ରିୟମାଣ ଇଦାନୀମପି କଳ୍ପଜୀବିନାମାଜୀବ୍ୟ ଉପାସ୍ତେ । ତସ୍ୟ ମହାନୁଭାବ ଉପବର୍ଣ୍ଣିତଃ ।୧।
ସ ହି ସର୍ବେଷାଂ ଜ୍ୟୋତିର୍ଗଣାନାଂ ଗ୍ରହନକ୍ଷତ୍ରାଦୀନାମନିମିଷେଣାବ୍ୟକ୍ତରଂହସା ଭଗବତା କାଲେନ ଭ୍ରାମ୍ୟମାଣାନାଂ ସ୍ଥାଣୁରିବାବଷ୍ଟମ୍ଭ ଈଶ୍ୱରେଣ ବିହିତଃ ଶଶ୍ୱଦବଭାସତେ ।୨।

---

### ଜ୍ୟୋତିଶ୍ଚକ୍ରରେ ଧ୍ରୁବଙ୍କର ଅବସ୍ଥାନ ଓ ଶିଶୁମାର ରୂପେ ଶ୍ରୀହରିଙ୍କର ଅବସ୍ଥାନ ।

ତ୍ରୟୋବିଂଶ ଅଧ୍ୟାୟରେ ଧ୍ରୁବଙ୍କର ସ୍ଥାନ ଏବଂ ଶିଶୁମାର ଚକ୍ରସ୍ୱରୂପରେ ଭଗବାନ୍ ଶ୍ରୀହରିଙ୍କର ସ୍ଥିତି ବର୍ଣ୍ଣନା କରା ହୋଇଅଛି । ୦ ।

ଶ୍ରୀଶୁକଦେବ କହିଲେ :—

ଅନନ୍ତର ସପ୍ତର୍ଷି ମଣ୍ଡଳଠାରୁ ତ୍ରୟୋଦଶଲକ୍ଷ ଯୋଜନ ଦୂରରେ ଯେଉଁ ଧ୍ରୁବଲୋକ ଅବସ୍ଥିତ, ତାହା ବିଷ୍ଣୁଙ୍କର ପରମପଦ ବୋଲି ଅଭିହିତ, ତାହା ଭଗବାନ୍ ବିଷ୍ଣୁଙ୍କର ପରମସ୍ଥାନ, ସେ ସ୍ଥାନରେ ଉତ୍ତାନପାଦ ପୁତ୍ର ମହାଭାଗବତ ଧ୍ରୁବ ଅବସ୍ଥାନ କରୁଅଛନ୍ତି, ସେଠାରେ ନକ୍ଷତ୍ରରୂପୀ ଅଗ୍ନି, ଇନ୍ଦ୍ର, ପ୍ରଜାପତି କଶ୍ୟପ ଓ ଧର୍ମ ବହୁମାନ୍ୟ ସହକାରେ ତାହାଙ୍କୁ ପ୍ରଦକ୍ଷିଣ କରୁଅଛନ୍ତି । ସେ ଅଦ୍ୟାପି ମଧ୍ୟ କଳ୍ପଜୀବମାନଙ୍କର ଅବଲମ୍ବନୀୟ, ଏହାର ମହାନ୍‌ଅନୁଭବ ପୂର୍ବେ ବର୍ଣ୍ଣିତ ହୋଇଅଛି । ୧ ।

ଈଶ୍ୱର ସେହି ଧ୍ରୁବ ନକ୍ଷତ୍ରକୁ ଅବିଶ୍ରାନ୍ତ ଗତି ଅବ୍ୟକ୍ତ ବେଗଯୁକ୍ତ କାଳକର୍ତ୍ତୃକ ଭ୍ରାମ୍ୟମାଣ ସମସ୍ତ ଗ୍ରହନକ୍ଷତ୍ର ଆଦିର ଥାଣୁବତ୍ ଅବଲମ୍ବନ କରି ସୃଷ୍ଟି କରିଅଛନ୍ତି, ଏହିପରି ସେ ସତତ ଦୀପ୍ତି ପାଉଅଛନ୍ତି, ( ଯେପରି କୌଣସି ତୈଳଯନ୍ତ୍ର ବା ଘଣା ମଧ୍ୟସ୍ଥାନବର୍ତ୍ତୀ କାଷ୍ଠକେନ୍ଦ୍ରକୁ କେନ୍ଦ୍ରକରି ତାହାର ଚାରିଆଡ଼େ ଗୋ ପ୍ରଭୃତି ଯନ୍ତ୍ରବାହକ ଚାରିଆଡ଼େ ଘୂରି ଥାଆନ୍ତି ସେହିପରି ଧ୍ରୁବଙ୍କୁ କେନ୍ଦ୍ରକରି ଅନ୍ୟ ଜ୍ୟୋତିଷ୍କମାନେ ଘୂରୁଅଛନ୍ତି )। ୨ ।

---

ତ୍ରୟୋବିଂଶରେ ଧ୍ରୁବସ୍ଥାନ । ଶିଶୁମାର ଚକ୍ର ବର୍ଣ୍ଣନ । ୦ ।

ଶ୍ରୀଶୁକଉବାଚ—
ଏଥିଅନ୍ତରେ ଶୁଣ ରାଜନ
ତ୍ରୟୋଦଶ ଲକ୍ଷ ଯୋଜନ
ଯେ ସ୍ଥାନ ବିରାଜଇ ତହିଁ
ବିଷ୍ଣୁର ସ୍ଥାନ ତାକୁ କହି
ଯହିଁ ପରମ ଭାଗବତ
ଧ୍ରୁବ ଉତ୍ତାନପାଦ ସୁତ
ଅଛନ୍ତି କଶ୍ୟପ ସଙ୍ଗତେ
କାଳ ସୃଷ୍ଟିର ଯେତେ ମତେ
କଳ୍ପେ ପର୍ଯ୍ୟନ୍ତ ସୁଖଭୋଗେ
ପ୍ରଭୁଙ୍କୁ ସେବନ୍ତି ନିଷ୍ଠକେ
ସେ ଭାଗବତ ଧ୍ରୁବ-ବାଣୀ
ପୂର୍ବେ କହିଛୁ ନୃପମଣି ।୧।
ଗ୍ରହ ନକ୍ଷତ୍ର ଜ୍ୟୋତିର୍ଗଣ
ଧ୍ରୁବର ସହିତେ ରାଜନ
ଈଶ୍ୱର ସୃଷ୍ଟି ଅନୁସାରେ
ଏବେ ଦିଶଇ ସେ ଲୋକରେ
କାଳଚକ୍ରର ଭ୍ରମେ ଜାଣ
ବେଗେ ଭ୍ରମନ୍ତି ଅନୁକ୍ଷଣ

ଯଥା ମେଢୀସ୍ତମ୍ଭ ଆକ୍ରମଣପଶବଃ ସଂଯୋଜିତାସ୍ତ୍ରିଭିଃ ସବନୈର୍ଯଥାସ୍ଥାନଂ ମଣ୍ଡଳାନି ଚରନ୍ତି । ଏବଂ ଭଗଣା ଗ୍ରହାଦୟ ଏତସ୍ମିନ୍ନନ୍ତର୍ବହିର୍ଯୋଗେନ କାଳଚକ୍ର ଆଯୋଜିତା ଧ୍ରୁବମେବାବଲମ୍ବ୍ୟ ବାୟୁନୋଦୀର୍ଯ୍ୟମାଣା ଆକଳ୍ପାନ୍ତଂ ପରିତଃ କ୍ରାମନ୍ତି । ନଭସି ଯଥା ମେଘାଃ ଶ୍ୟେନାଦୟୋ ବାୟୁବଶା କର୍ମ୍ମସାରଥୟଃ ପରିବର୍ତ୍ତନ୍ତେ ଏବଂ ଜ୍ୟୋତିର୍ଗଣାଃ ପ୍ରକୃତିପୁରୁଷସଂଯୋଗାନୁଗୃହୀତାଃ କର୍ମ୍ମନିର୍ମ୍ମିତଗତୟୋ ଭୁବି ନ ପତନ୍ତି ।୩

କେଚଦେତଜ୍ଜ୍ୟୋତିରନୀକଂ ଶିଶୁମାରସଂସ୍ଥାନେନ ଭଗବତୋ ବାସୁଦେବସ୍ୟ ଯୋଗଧାରଣାୟାମନୁବର୍ଣ୍ଣୟନ୍ତି । ୪ ।

ଯସ୍ୟ ପୁଚ୍ଛାଗ୍ରେଽବାକ୍ଶିରସଃ କୁଣ୍ଡଳୀଭୂତଦେହସ୍ୟ ଧ୍ରୁବ ଉପକଳ୍ପିତଃ ତସ୍ୟ ଲାଙ୍ଗୁଲେ ପ୍ରଜାପତିରଗ୍ନିରିନ୍ଦ୍ରୋ ଧର୍ମ୍ମ ଇତି ପୁଚ୍ଛମୂଲେ ଧାତା ବିଧାତା ଚ କଟ୍ୟାଂ

---

ଯେପରି ଧାନ ମଳାଇବେଳେ ଗୋରୁମାନଙ୍କୁ ଚାଷିମାନେ ମେଢ଼ିଖୁଣ୍ଟରେ ବାନ୍ଧି ଥାନ୍ତି ଓ ମେଢ଼ି ଖୁଣ୍ଟର ନିକଟରେ ବା ଦୂରରେ ଥିବା ଅନୁସାରେ କେହି ଚଞ୍ଚଳ, କେହି ମଧ୍ୟଭଳି ବା କେହି ଆସ୍ତେଆସ୍ତେ ନିଜ ନିଜର ମଣ୍ଡଳମଧ୍ୟରେ ବୁଲୁଥାନ୍ତି, ସେହିପରି ଗ୍ରହନକ୍ଷତ୍ରାଦି ଜ୍ୟୋତିଷ୍କମାନେ ଧ୍ରୁବଙ୍କୁ ମେଢ଼ିକରି ଓ ତାଙ୍କଠାରେ ନିବଦ୍ଧ ହୋଇ କେହି ମଧ୍ୟ ସ୍ଥାନରେ କେହି ଦୂରରେ ଭ୍ରାମ୍ୟମାଣ ହୋଇ ବର୍ତ୍ତୁଳଗତିରେ ନିଜ ନିଜର କକ୍ଷରେ ଭ୍ରମଣ କରୁଅଛନ୍ତି । ଯେପରି ଆକାଶମଣ୍ଡଳରେ ମେଘମାନ ଓ ଶ୍ୟେନାଦି ପକ୍ଷୀ ବାୟୁ ସାହାଯ୍ୟରେ ଓ ପକ୍ଷ ସଞ୍ଚାଳନାଦି କର୍ମଦ୍ୱାରା ଭ୍ରମଣ କରିଥାନ୍ତି, ସେହିପରି ଗ୍ରହନକ୍ଷତ୍ରାଦି ପ୍ରକୃତିର ଓ ପୁରୁଷର ଅଧୀନ ହୋଇ ଗତିଶୀଳ ହୁଅନ୍ତି, ଏବଂ ବେଳେ ବେଳେ ପୃଥିବୀରେ ପତିତ ହୁଅନ୍ତି । ୩ ।

କେହି କେହି କହନ୍ତି ଏହି ଜ୍ୟୋତିଷ୍ଚକ୍ର ଶିଶୁମାର ରୂପେ ଭଗବାନ୍ ବିଷ୍ଣୁଙ୍କର ଯୋଗଧାରଣାରେ ଅବସ୍ଥାନ କରୁଅଛି । ୪ ।

ସୁତରାଂ ପତନର ଆଶଙ୍କା ନାହିଁ, ଏହି ଶିଶୁମାର ଦେହକୁ କୁଣ୍ଡଳୀଭୂତକରି ଅଧୋମୁଖରେ ଅବସ୍ଥାନ କରୁଅଛି, ଧ୍ରୁବ ଏହାର ପୁଚ୍ଛାଗ୍ର, ପୁଚ୍ଛାଗ୍ରର ଅଧୋଭାଗ ଅର୍ଥାତ୍ ଲାଙ୍ଗୁଳପ୍ରଜାପତି, ଅଗ୍ନି, ଇନ୍ଦ୍ର, ଓ ଧର୍ମ, ଧାତା ଓ ବିଧାତା ପୁଚ୍ଛମୂଳ ଏବଂ କଟୀଦେଶ ସପ୍ତର୍ଷିମଣ୍ଡଳ; ଦକ୍ଷିଣାବର୍ତ୍ତରେ କୁଣ୍ଡଳୀଭୂତ ହୋଇ

---

ମେଢ଼ିରେ ପଶୁଗଣ ଯେସନ୍ତେ
ସକଳେ ଭ୍ରମନ୍ତି ତେସନେ,
ମଣ୍ଡଳ ଆକାରେ ସେ ତହିଁ
ଯେ ଯାହା ସ୍ଥାନେ ସେ ଭ୍ରମଇ
ନକ୍ଷତ୍ର ଗ୍ରହ ଆଦି ଯେତେ
ଏହି ପ୍ରକାରେ ସେ ସମସ୍ତେ
କାଳର ଚକ୍ରେ ସେ ଭ୍ରମଣ
ବାହାର ଅନ୍ତରେ ଭ୍ରମଣ
କଳ୍ପାନ୍ତ ଯାଏ ସେ ପ୍ରକାରେ
ଅଛନ୍ତି ବିବିଧ ବେଶରେ

ଶୂନ୍ୟମଣ୍ଡଳେ ମେଘମାନେ
ଯେସନ୍ତେ ଯାଆନ୍ତି ବାୟୁବଳେ
ଯେସନ୍ତେ ଶ୍ୟେନାଦି ପକ୍ଷୀମାନେ
ପବନବଳେ ଥାନ୍ତି ଶୂନ୍ୟେ
କର୍ମଅଧୀନେ ଜ୍ୟୋତିର୍ଗଣେ
ଶୂନ୍ୟରେ ଭ୍ରମନ୍ତି ତେସନେ
ପ୍ରକୃତି ପୁରୁଷର ଯୋଗେ
ତହିଁରେ ହୁଅଇ ସଂଯୋଗେ
କର୍ମ ବନ୍ଧନ ନିମିତ୍ତରେ
ପତନ ହୁଅନ୍ତି ଭୂମିରେ । ୨-୩।

ଏ ଅନନ୍ତରେ ନୃପବର
ଏ ଜ୍ୟୋତିଷ୍ଚକ୍ର ଶିଶୁମାର
ଏମନ୍ତ କରି କେ ବର୍ଣ୍ଣଇ
କହିବା ଶୁଣ ମନ ଦେଇ
ଯେ ପ୍ରଭୁ ଅଖିଳ କାରଣ
ବାସୁଦେବ ଯେ ଭଗବାନ
ତାହାଙ୍କ ଯୋଗର ମୂରତି
ଶରୀର କୁଣ୍ଡଳ ଆକୃତି
ଅଧୋବଦନ ତାହାଙ୍କର
ପୁଚ୍ଛରେ ବାସ ଯେ ଧ୍ରୁବର

ସପ୍ତବିଂଶତିସଂଖ୍ୟସ୍ୟ ଦକ୍ଷିଣାବର୍ତ୍ତକୁଣ୍ଡଳୀଭୂତଶରୀରସ୍ୟ ଯାନ୍ୟୁଦଗୟନାନି ଦକ୍ଷିଣପାର୍ଶ୍ୱେ ନକ୍ଷତ୍ରାଣି ଉପକଳ୍ପୟନ୍ତି, ଦକ୍ଷିଣାୟନାନି ତୁ ସବ୍ୟେ ଯଥା ଶିଶୁମାରସ୍ୟ କୁଣ୍ଡଳାଭୋଗସନ୍ନିବେଶସ୍ୟ ପାର୍ଶ୍ୱୟୋରୁଭୟୋରପ୍ୟବୟବାଃ ସମସଂଖ୍ୟା ଭବନ୍ତି । ପୃଷ୍ଠେ ତ୍ୱଜବୀଥୀ ଆକାଶଗଙ୍ଗା ଚୋଦରତଃ । ୫ ।

ପୁନର୍ବସୁପୁଷ୍ୟୌ ଦକ୍ଷିଣବାମୟୋଃ ଶ୍ରୋଣ୍ୟୋରାର୍ଦ୍ରାଶ୍ଲେଷା ଚ ଦକ୍ଷିଣବାମୟୋଃ ପାଦୟୋରଭିଜିଦୁତ୍ତରାଷାଢ଼େ ଦକ୍ଷିଣବାମୟୋର୍ନାସିକୟୋର୍ଯଥାସଂଖ୍ୟଂ ଶ୍ରବଣପୂର୍ବାଷାଢ଼େ ଦକ୍ଷିଣବାମୟୋର୍ଲୋଚନୟୋର୍ଧନିଷ୍ଠା ମୂଳଞ୍ଚ ଦକ୍ଷିଣବାମୟୋଃ କର୍ଣ୍ଣୟୋର୍ମଘାଦୀନ୍ୟଷ୍ଟନକ୍ଷତ୍ରାଣି ଦକ୍ଷିଣାୟନାନି ବାମପାର୍ଶ୍ୱବଙ୍କ୍ରିଷୁ ଯୁଞ୍ଜୀତ । ତଥୈବ ମୃଗଶୀର୍ଷାଦୀନ୍ୟୁଦଗୟନାନି ଦକ୍ଷିଣପାର୍ଶ୍ୱେଷୁ ପ୍ରାତିଲୋମ୍ୟେନ ଯୁଞ୍ଜୀତ । ଶତଭିଷାଜ୍ୟେଷ୍ଠେ ସ୍କନ୍ଧୟୋର୍ଦକ୍ଷିଣବାମୟୋର୍ନ୍ୟସେୟତ୍ । ୬ ।

---

ଏହି ଶିଶୁମାର ରହିଅଛି, ଏହାର ଦକ୍ଷିଣ ପାର୍ଶ୍ୱରେ ଉତ୍ତରାୟଣ ନକ୍ଷତ୍ର ବା ଅଭିଜିତ୍‌ଠାରୁ ଆରମ୍ଭକରି ପୁନର୍ବସୁ ପର୍ଯ୍ୟନ୍ତ ଏହି ଚତୁର୍ଦ୍ଦଶ ନକ୍ଷତ୍ର ଓ ବାମପାର୍ଶ୍ୱରେ ଦକ୍ଷିଣାୟନ ନକ୍ଷତ୍ର ଅର୍ଥାତ୍ ପୁଷ୍ୟାଠାରୁ ଆରମ୍ଭକରି ଉତ୍ତରଷାଢ଼ା ପର୍ଯ୍ୟନ୍ତ ଚତୁର୍ଦ୍ଦଶ ନକ୍ଷତ୍ର, ଏହିପରି କୁଣ୍ଡଳୀଭୂତ ହୋଇ ଶିଶୁମାର ଦେହ ବିସ୍ତାର କରିଅଛି, ତାହାର ଉଭୟ ପାର୍ଶ୍ୱର ଅବୟବ ସଂଖ୍ୟା ସମାନ୍, ଏହାର ପୃଷ୍ଠ ଦେଶରେ ଅଜବୀଥୀ ବା ମୂଳା, ପୂର୍ବାଷାଢ଼ା, ଓ ଉତ୍ତରଷାଢ଼ା, କ୍ରୋଡଦେଶରେ ଆକାଶ ଗଙ୍ଗା ମନ୍ଦାକିନୀ । ୫ ।

ହେ ମହାରାଜ ! କେଉଁ ନକ୍ଷତ୍ରକୁ କେଉଁ ଅବୟବବୋଲି କଳ୍ପନାକରାଯାଇଅଛି ତାହାବର୍ତ୍ତମାନ୍ ଶ୍ରବଣକରନ୍ତୁ, ମୁଁ ବିଭାଗ କରି କହୁଅଛି, ଏହି ଶିଶୁମାରର ଦକ୍ଷିଣଶ୍ରୋଣୀ ପୁନର୍ବସୁ ବାମଶ୍ରୋଣୀ ପୁଷ୍ୟା, ଦକ୍ଷିଣପାଦ ଆର୍ଦ୍ରା, ବାମପାଦ ଅଶ୍ଳେଷା, ଦକ୍ଷିଣନାସିକା ଅଭିଜିତ୍, ବାମ ନାସିକା ଉତ୍ତରଷାଢ଼ା, ଦକ୍ଷିଣଚକ୍ଷୁ ଶ୍ରବଣା, ବାମଚକ୍ଷୁ ପୂର୍ବାଷାଢ଼ା, ଦକ୍ଷିଣକର୍ଣ୍ଣ ଧନିଷ୍ଠା, ବାମ କର୍ଣ୍ଣ ମୂଳା, ବାମପାର୍ଶ୍ୱରେ ଦକ୍ଷିଣାୟନ ସମ୍ବନ୍ଧୀୟ ମଘାଠାରୁ ଅନୁରାଧା ପର୍ଯ୍ୟନ୍ତ ଆଠଟି ନକ୍ଷତ୍ର ରହିଅଛି । ସେହିପରି ଉତ୍ତରାୟଣ ସମ୍ବନ୍ଧୀୟ ବିପରୀତ ଭାବରେ ମୃଗଶିରାଠାରୁ ପୂର୍ବଭଦ୍ର ପର୍ଯ୍ୟନ୍ତ ଆଠଟି ନକ୍ଷତ୍ର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥାନ କରୁଅଛନ୍ତି, ଦକ୍ଷିଣ ଓ ବାମ ସ୍କନ୍ଧଦେଶରେ ବା ବାହୁମୂଳରେ ଶତଭିଷା ଓ ଜ୍ୟେଷ୍ଠା କ୍ରମରେ ରହିଅଛି । ୬ ।

---

ଲାଙ୍ଗୁଳେ ପ୍ରଜାପତି ବାସ
ଅନଳ ଧର୍ମ ଯେ ସୁରେଶ
ଧାତା ବିଧାତା ପୁଚ୍ଛମୂଳେ
ସପତ ଋଷି କଟୀ ସ୍ଥଳେ
ଦକ୍ଷିଣାବର୍ତ୍ତ ପ୍ରାପ୍ତ ହୋଇ
କୁଣ୍ଡଳ ଆକାର ଯେ ଦେହି
ତାର ଦକ୍ଷିଣ ଅଂଶ ଗତେ
ନକ୍ଷତ୍ରମାନ ଯେ ସମସ୍ତେ
ଅଭିଜିତ ଆଦି ଏ ଗଣ
ବାମ ପାର୍ଶ୍ୱେ ତାଙ୍କ ସ୍ଥାନ

ପୁନର୍ବସୁ ଯେ ପୁଷ୍ୟା ଦୁଇ
ବାମ ଦକ୍ଷିଣ ଶ୍ରୋଣି ଚହିଁ
ଆକାଶ ଗଙ୍ଗା ଯେ ପୃଷ୍ଠରେ
ବିରାଜେ ଅତି ଶୁଭ୍ରତରେ
ବାମ ଦକ୍ଷିଣ ପାଦଦେଶେ
ଆର୍ଦ୍ରା ଅଶ୍ଳେଷା ସୁପ୍ରକାଶେ
ଉତ୍ତରାଷାଢ଼ା ଅଭିଜିତ
ସବ୍ୟ ଦକ୍ଷିଣ ଘ୍ରାଣେ ସ୍ଥିତ
ଶ୍ରବଣା ପୂର୍ବାଷାଢ଼ା ଦୁଇ
ଦକ୍ଷିଣ ବାମ ନେତ୍ରେ ରହି

ଧନିଷ୍ଠା ମୂଳା ବେନିଜନ
ଦକ୍ଷିଣ ବାମ ବେନି କର୍ଣ୍ଣେ
ମଘାଦି ଅଷ୍ଟମ ନକ୍ଷତ୍ର
ବାମ ଅସ୍ଥିରେ କ୍ରମେ ସ୍ଥିତ
ମୃଗଶିରାଦି ଦକ୍ଷିଣରେ
ଜ୍ୟେଷ୍ଠା ଶତଭିଷା ସ୍କନ୍ଧରେ ।୫-୬

ଉତ୍ତରାହନାବଗସ୍ତିରଧରାହନୌ ଯମୋ ମୁଖେ ଚାଙ୍ଗାରକଃ ଶନୈଶ୍ଚର ଉପସ୍ଥେ ବୃହସ୍ପତିଃ କକୁଦି ବକ୍ଷସ୍ୟାଦିତ୍ୟୋ ହୃଦୟେ ନାରାୟଣୋ ମନସି ଚନ୍ଦ୍ରୋ ନାଭ୍ୟାମୁଶନା-ସ୍ତନୟୋ ରଶ୍ୱିନୌ ବୁଧଃ ପ୍ରାଣାପାନୟୋଃ ରାହୁର୍ଗଳେ କେତବଃ ସର୍ବାଙ୍ଗେଷୁ ରୋମସୁ ସର୍ବେ ତାରାଗଣାଃ । ୭ ।

ଏତଦୁ ହୈବ ଭଗବତୋ ବିଷ୍ଣୋଃ ସର୍ବଦେବତାମୟଂ ରୂପମହରହଃ ସନ୍ଧ୍ୟାୟାଂ ପ୍ରୟତୋ ବାଗ୍ୟତୋ ନିରୀକ୍ଷମାଣ ଉପତିଷ୍ଠେତ ନମୋ ନମୋ ଜ୍ୟୋତିର୍ଲୋକାୟ କାଳାୟନାୟାନିମିଷାଂ ପତୟେ ମହାପୁରୁଷାୟାଭିଧୀମହୀତି । ୮ ।

ଗ୍ରହର୍କ୍ଷତାରାମୟମାଧିଦୈବିକଂ ପାପାପହଂ ମନ୍ତ୍ରକୃତାଂ ତ୍ରିକାଳମ୍ ।
ନମସ୍ୟତଃ ସ୍ମରତୋ ବା ତ୍ରିକାଳଂ ନଶ୍ୟେତ ତତ୍କାଳଜମାଶୁ ପାପମ୍ । ୯ ।

---

ଏହି ଶିଶୁମାରର ଉତ୍ତର ହନୁରେ ଅଗସ୍ତ୍ୟ ଅଧଃ ହନୁରେ କ୍ଷେତ୍ରରୂପୀ ଯମ, ଶଙ୍ଖମଣ୍ଡଳଗ୍ରହ, ଉପସ୍ଥ ଶନିଗ୍ରହ, କକୁତ୍ ବା ମଙ୍ଗ ପୃଷ୍ଠ ଶୃଙ୍ଗ ବୃହସ୍ପତି, ବକ୍ଷସ୍ଥଳ ଆଦିତ୍ୟ, ହୃଦୟ ନାରାୟଣ, ମନ ଚନ୍ଦ୍ର, ନାଭି ଶୁକ୍ର, ସ୍ତନଦ୍ୱୟ ଅଶ୍ୱିନୀକୁମାରଦ୍ୱୟ, ପ୍ରାଣ ଓ ଅପାନ ବୁଧ, ଗଳଦେଶ ରାହୁ, ସର୍ବାଙ୍ଗ କେତୁ, ରୋମ ରାଜି ତାରାଗଣଙ୍କର ଅବସ୍ଥାନ କ୍ଷେତ୍ର । ୭ ।

ଏ ଭଗବାନ ବିଷ୍ଣୁଙ୍କର ଏହି ସର୍ବଦେବମୟ ରୂପ ସତତ ସନ୍ଧ୍ୟାକାଳରେ ପ୍ରଯତ୍ନ ପୂର୍ବକ ବାକ୍-ସଂଯମୀ ହୋଇ ନିରୀକ୍ଷଣ କରି ଉପାସନା କରିବ । ମନ୍ତ୍ର ଯଥା :— ଜ୍ୟୋତିର୍ଗଣଙ୍କ ଆଶ୍ରୟ କାଳ ଚକ୍ରସ୍ୱରୂପ, ଦେବଗଣଙ୍କ ପତି ମହାପୁରୁଷଙ୍କୁ ପୁନଃ ପୁନଃ ନମସ୍କାର ଓ ଧ୍ୟାନ କରୁଅଛୁ, ।୮।

ଯେଉଁମାନେ ତ୍ରିସନ୍ଧ୍ୟାରେ ଭଗବାନଙ୍କର ଏହି ମନ୍ତ୍ର ଜପ କରନ୍ତି ସେମାନେ ପାପନାଶକାରୀ ସର୍ବଦେବଙ୍କର ଅଧିଷ୍ଠାନ ସ୍ଥଳ ଗ୍ରହ ନକ୍ଷତ୍ର ଆଦି ଶୋଭିତ ଭଗବାନ ଶିଶୁମାର ଶରୀରକୁ ତ୍ରିସନ୍ଧ୍ୟାରେ ପ୍ରତ୍ୟକ୍ଷ କରନ୍ତି, ତାହାଙ୍କୁ ନମସ୍କାର; ପରୋକ୍ଷରେ ତାହାଙ୍କୁ ସ୍ମରଣକଲେ ତତ୍କାଳଜ ପାପ ନାଶ ହୁଏ ।୯।

---

ଉତ୍ତର ଅଧର ହନୁରେ
ଅଗସ୍ତି ଶମନ କ୍ରମରେ
ମୁଖରେ ଅଙ୍ଗାରକ ଶୋହେ
ଉପସ୍ଥେ ଶନୈଶ୍ଚର ରହେ ।
ଆଦିତ୍ୟ ବକ୍ଷସ୍ଥଳେ ବସେ
ବୃହସ୍ପତି କକୁଦ ଦେଶେ
ହୃଦରେ ନାରାୟଣ ସ୍ଥିତ
ଚନ୍ଦ୍ରମା ମନରେ ବସନ୍ତି
ନାଭିରେ ଉଶନା ପ୍ରକାଶ
ସ୍ତନରେ ଅଶ୍ୱିନୀର ବାସ
ପ୍ରାଣ ଅପାନେ ବୁଧ ବସେ
ଗଳାରେ ରାହୁ ଯେ ପ୍ରକାଶେ
ସର୍ବ ଅଙ୍ଗରେ କେତୁ ସ୍ଥାନ ।
ଏ ଅନୁକ୍ରମ ହେ ରାଜନ
ରୋମ ମୂଳରେ ତାରାଗଣ
ବିଚିତ୍ର ରୂପ ନାରାୟଣ । ୭ ।
ଏ ରୂପ ସର୍ବଦେବମୟୀ
ଯେ ଜନ ଶୁଦ୍ଧବନ୍ତ ହୋଇ
ସନ୍ଧ୍ୟାରେ ଦେଖି ସ୍ତବକରେ
ଅଶେଷ ପାପୁ ସେ ନିସ୍ତରେ
ଏ ସ୍ତବ ତୁଣ୍ଡେ ଉଚ୍ଚାରଣ
ସ୍ତୁତି କରିବ ସାବଧାନ । ୮ ।
ନମଇ ଜ୍ୟୋତିର୍ଲୋକମୟ
କାଳ ଅଦ୍ଭୁତ ଯାର ଦେହ
ସକଳ ଦେବ ସ୍ୱାମୀ ତୁହି
ତୋ ପାଦେ ଆନନ୍ଦେ ନମଇ
ଗ୍ରହ ରୂପ ଯେ ତାରାଗଣ
ସର୍ବାଧିଦେବ ନାରାୟଣ
ଯେ ତିନି ସନ୍ଧ୍ୟାବେଳେ ନର
ସ୍ମରଣେ କରେ ନମସ୍କାର
ଅହୋରାତ୍ରର ପାପ ତାର
ଦହନ ହୁଏ ନୃପବର ।୯।
କହଇ ଦାସ ଜଗନ୍ନାଥ
ଭାଷା ପ୍ରବନ୍ଧେ ଭାଗବତ
ସେ ଦେବମୟ ଏ ଈଶ୍ୱର
ଅନାଦି ବ୍ରହ୍ମାଣ୍ଡ ଠାକୁର
ତାହାଙ୍କ ଚରଣକମଳେ
ମୋ ମନ ରହୁ ସୁନିଶ୍ଚଳେ

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଶିଶୁମାରସଂସ୍ଥାନଂ ନାମ ତ୍ରୟୋବିଂଶୋଽଧ୍ୟାୟଃ । ୨୩ ।

---

**ଭାବାର୍ଥ** :—ଧ୍ରୁବନକ୍ଷତ୍ରକୁ କେନ୍ଦ୍ରକରି ସମସ୍ତ ଗ୍ରହ ନକ୍ଷତ୍ର ପରିଭ୍ରମଣ କରୁଅଛନ୍ତି । ଧ୍ରୁବଶବ୍ଦର ଅର୍ଥ 'ନିଶ୍ଚିତ' । ଏହା ଅନ୍ୟାନ୍ୟ ନକ୍ଷତ୍ରମାନଙ୍କ ମଧ୍ୟରେ ସ୍ଥିର ହେଲେ ଏହା କେନ୍ଦ୍ର ସ୍ୱରୂପ । ଗ୍ରହନକ୍ଷତ୍ର କାଳକ୍ରମେ ଭ୍ରମଣ କରୁଅଛନ୍ତି । କାଳର କୌଣସି ଶରୀର ନାହିଁ । ଏ କାଳ ଓ ଧ୍ରୁବନକ୍ଷତ୍ରକୁ କୃଷକର ମେଢ଼ି ଓ ଦାଉଁଣୀରେ ଯୋଗ ହୋଇ ଧାନ ଅମଳ କରିବା ବଳଦମାନଙ୍କ ସହିତ ତୁଳନା କରାଯାଇଅଛି । ବଡ଼ିକ ଗ୍ରହ ନକ୍ଷତ୍ର କପରି ଶିଶୁମାର ନକ୍ଷତ୍ରର ବିଭିନ୍ନ ଅଙ୍ଗ ସ୍ୱରୂପ, ତାହା ଏହି ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ଏହି ଜ୍ୟୋତିଶ୍ଚକ୍ର ମଧ୍ୟରେ ଭଗବାନଙ୍କର ଅଙ୍ଗସ୍ୱରୂପ ଗ୍ରହ ନକ୍ଷତ୍ରମାନେ ଅବସ୍ଥିତ, ସେହି ଜ୍ୟୋତିଶ୍ଚକ୍ରର କେନ୍ଦ୍ରବର୍ତ୍ତୀ, ଉର୍ଦ୍ଧ୍ୱବର୍ତ୍ତୀ ଭଗବାନଙ୍କୁ ଧ୍ୟାନ କରିବାକୁ ହେବ ।

---

## ଚ ତୁ ର୍ବିଂ ଶ ଅ ଧ୍ୟା ୟ ।

ଚତୁର୍ବିଂଶେ ରବେରର୍ବାକ୍ ସ୍ୱର୍ଭାନ୍ୱାଦସ୍ଥିତି କ୍ରମାତ୍ ।
ଅତଳାଦିବଳସ୍ୱର୍ଗମର୍ଯ୍ୟାଦାଃ ସପ୍ତ ବର୍ଣ୍ଣିତାଃ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀଶୁକ ଉବାଚ ।

ଅଧସ୍ତାତ୍ ସବିତୁର୍ଯୋଜନାୟୁତେ ସ୍ୱର୍ଭାନୁର୍ନକ୍ଷତ୍ରବଚ୍ଚରତୀତ୍ୟେକେ ଯୋଽସାବମରତ୍ୱଂ ଗ୍ରହତ୍ୱଞ୍ଚାଲଭତ ଭଗବଦନୁକମ୍ପୟା ସ୍ୱୟମସୁରାପସଦଃ ସୈଂହିକେୟୋ ହ୍ୟତଦର୍ହଃ, ତସ୍ୟ ତାତ ଜନ୍ମକର୍ମାଣି ଚୋପରିଷ୍ଟାଦ୍ବକ୍ଷ୍ୟାମଃ । ୧ ।

---

### ରାହୁ ପ୍ରଭୃତିଙ୍କର ସ୍ଥିତି ଓ ଅତଳାଦି ସପ୍ତ ଅଧୋଲୋକ ବର୍ଣ୍ଣନ :—

ଚତୁର୍ବିଂଶ ଅଧ୍ୟାୟରେ ରାହୁ କେତୁ ଦୁହିଁଙ୍କର ସ୍ଥାନ ଏବଂ ଅତଳାଦି ବିଳସ୍ୱର୍ଗ ଏବଂ ତହିଁର ମର୍ଯ୍ୟାଦା ପ୍ରଭୃତି ବର୍ଣ୍ଣନା ହୋଇଅଛି ।

ଶ୍ରୀ ଶୁକଦେବ କହିଲେ

ସୂର୍ଯ୍ୟର ଅଧୋଭାଗରେ ଅୟୁତ ଯୋଜନ ନିମ୍ନଦେଶରେ ରାହୁ ନକ୍ଷତ୍ର ତୁଲ୍ୟ ବିଚରଣ କରୁଥାଏ ସିଂହିକା ପୁତ୍ର ରାହୁ ସ୍ୱୟଂ ଅସୁରାଧମ, ସେ ଅଯୋଗ୍ୟ ହେଲେ ମଧ୍ୟ ଭଗବାନ୍ତ୍ରି କୃପାରୁ କିପରି ଅମରତ୍ୱ ଓ ଗ୍ରହତ୍ୱ ଲାଭ କରିଥିଲା । ହେ ତାତ ! ତାହାର ଜନ୍ମ ଓ କର୍ମ ବୃତ୍ତାନ୍ତ ପରେ ବର୍ଣ୍ଣନା କରିବା । ୧ ।

---

ଚତୁର୍ବିଂଶରେ ରାହୁ ସ୍ଥାନ । ବିଳସ୍ୱର୍ଗ ଆଦି ବର୍ଣ୍ଣନ ॥

ଶ୍ରୀ ଶୁକଉବାଚ—

ଆଦିତ୍ୟଠାରୁ ଅଧୋମେଳେ
ଅୟୁତେ ଯୋଜନର ତଳେ
ଭ୍ରମ ଆକାରେ ରାହୁ ସ୍ଥିତ
ଏମନ୍ତେ କେ ଅବା କହନ୍ତି
ସ୍ୱଭବେ ସିଂହିକା ନନ୍ଦନ
ଏଡ଼ ଅସୁର କେ ସୁଜନ
ଯେଣୁ ପ୍ରଭୁର କୃପା ହୋଇ
ଅମରପଣର ଏହା ଦେହ
ଏହାର ଜନ୍ମ କର୍ମମାନ
ପଛେ କହିବା ହେ ସୁଜନ ।୧।

ଯଦଧସ୍ତରଣେର୍ମଣ୍ଡଳଂ ପ୍ରତପତସ୍ତଦ୍ଵିସ୍ତରତୋ ଯୋଜନାୟୁତମାଚକ୍ଷତେ ଦ୍ୱାଦଶସାହସ୍ରଂସୋମସ୍ୟ । ତ୍ରୟୋଦଶସାହସ୍ରଂ ରାହୋର୍ଯଃ ପର୍ବାଣି ତଦ୍ବ୍ୟବଧାନକୃଦ୍ ବୈରାନୁବନ୍ଧଃ ସୂର୍ଯ୍ୟାଚନ୍ଦ୍ରମସାବଭିଧାବତି । ୨ ।

ତନ୍ନିଶମ୍ୟୋଭୟତ୍ରାପି ଭଗବତା ରକ୍ଷଣାୟ ପ୍ରଯୁକ୍ତଂ ସୁଦର୍ଶନଂ ନାମ ଭାଗବତଂ ଦୟିତମସ୍ତ୍ରଂ ତତ୍ତେଜସା ଦୁର୍ବିଷହଂ ମୁହୁଃ ପରିବର୍ତ୍ତମାନମଭ୍ୟବସ୍ଥିତୋ ମୁହୂର୍ତ୍ତମୁଦ୍-ଵିଜମାନଶ୍ଚକିତହୃଦୟ ଆରାଦେବ ନିବର୍ତ୍ତତେ ତଦୁପରାଗମିତି ବଦନ୍ତି ଲୋକାଃ । ୩ ।

ତତୋଽଧସ୍ତାତ୍ ସିଦ୍ଧଚାରଣବିଦ୍ୟାଧରାଣାଂ ସଦନାନି ତାବନ୍ମାତ୍ର ଏବ । ୪ ।

ତତୋଽଧସ୍ତାଦ୍ ଯକ୍ଷରକ୍ଷଃପିଶାଚପ୍ରେତଭୂତଗଣାନାଂ ବିହାରାଜିରମନ୍ତରିକ୍ଷଂ ଯାବଦ୍ବାୟୁଃ ପ୍ରବାତି ଯାବନ୍ମେଘା ଉପଲଭ୍ୟନ୍ତେ । ୫ ।

---

ସୂର୍ଯ୍ୟଦେବ ଯାହାର ଅଧୋଭାଗକୁ ନିଜର କିରଣ ସମ୍ପାତରେ ପ୍ରଦୀପ୍ତ କରିଥାଆନ୍ତି, ସୂର୍ଯ୍ୟଦେବଙ୍କର ସେହି ମଣ୍ଡଳ ଅୟୁତ ଯୋଜନ ବିସ୍ତୃତ ଓ ଚନ୍ଦ୍ରମଣ୍ଡଳ ଦ୍ୱାଦଶସହସ୍ର ଯୋଜନ ବିସ୍ତୃତ । ରାହୁଙ୍କର ବିସ୍ତାର ତ୍ରୟୋଦଶ ଯୋଜନ, ପୂର୍ବେ ରାହୁ ଅମୃତପାନ କରିବା ନିମିତ୍ତ ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ମଧ୍ୟରେ ବସିଥିଲେ, ସେମାନେ ତାହା ପ୍ରକାଶ କରିଦେବାରୁ, ସେମାନଙ୍କର ରାହୁର ଶତ୍ରୁତା, ତେଣୁ ଅମାବାସ୍ୟା ବା ପୂର୍ଣ୍ଣିମାରେ ରାହୁ ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ଆଡ଼କୁ ଯଥାକ୍ରମେ ଧାବିତ ହୋଇଥାଏ । ୨ ।

ଭଗବାନ୍ ବିଷ୍ଣୁ, ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ରକ୍ଷା ନିମିତ୍ତ ନିଜର ପ୍ରିୟ ଅସ୍ତ୍ର ସୁଦର୍ଶନଚକ୍ରକୁ ପ୍ରୟୋଗ କରିଥିଲେ, ଏହି ଭଗବତ ଅସ୍ତ୍ର ନିରନ୍ତର ପରିଭ୍ରମଣ କରୁଅଛି ଏହାର ତେଜ ଦୁର୍ବିସହ, ସୁତରାଂ, ଏହି ଅସ୍ତ୍ରକୁ ଦେଖି ରାହୁ, ମୁହୂର୍ତ୍ତକାଳ ଉଦ୍‌ବେଗ ସହକାରେ ଚକିତ ହୃଦୟରେ ଦୂରରୁ ନିବୃତ୍ତ ହୁଏନ୍ତି । ଲୋକେ ଏହାକୁ ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟ ଉପରାଗ କହି ଥାନ୍ତି । ୩ ।

ଏହି ରାହୁଗ୍ରହର ସ୍ଥାନପରେ ଅୟୁତଯୋଜନ ନିମ୍ନରେ ସିଦ୍ଧଚାରଣ, ବିଦ୍ୟାଧର ମାନେ ଅବସ୍ଥାନ କରୁଅଛନ୍ତି । ୪

ତହିଁର ଅଧଃ ଭାଗରେ ଯକ୍ଷ, ରାକ୍ଷସ, ପିଶାଚ, ପ୍ରେତଭୂତ ମାନଙ୍କର ବିହାର ସ୍ଥାନ ଶୂନ୍ୟ ଭାଗ, ଯେପର୍ଯ୍ୟନ୍ତ ବାୟୁ ପ୍ରକୃଷ୍ଟ ରୂପେ ପ୍ରବାହିତ ହୁଏ ସେଠାରେ ମେଘମାନେ ଦୃଷ୍ଟ ହୋଇଥାନ୍ତି, ଏହାହିଁ ତାହାର ସୀମା । ୫ ।

---

ଅଧୋ ଭାଗରେ ଯେ ସବିତ
ତରଣିମଣ୍ଡଳ ହୁଅଇ
ଅୟୁତ ଯୋଜନ ବିସ୍ତାର
ଲୋକରେ ଖ୍ୟାତ ନୃପବର
ଦ୍ୱାଦଶ ସହସ୍ର ଯୋଜନ
ଚନ୍ଦ୍ର ମଣ୍ଡଳ ପରିମାଣ
ତ୍ରୟୋଦଶ ସହସ୍ର ମତେ
ରାହୁମଣ୍ଡଳ ଯେ ଯୁଗତେ
ବୈରାନୁବନ୍ଧ ଭାବେ ତହିଁ
ଚନ୍ଦ୍ର ସୂର୍ଯ୍ୟଙ୍କୁ ସେ ଗ୍ରାସଇ

ଧାମଇ ବେଗବନ୍ତ ହୋଇ
ତା ଦେଖି ବ୍ରହ୍ମାଣ୍ଡ ଗୋସାଇଁ
ରକ୍ଷାନିମନ୍ତେ ସୁଦର୍ଶନ
ରଖିଅଛନ୍ତି ଭଗବାନ
ଚକ୍ରର ଅତି ତେଜପାଇ
ନିକଟୁ ନିବୃତ୍ତ ହୁଅଇ
ଚକିତ ହୋଇଣ ତାହାର
ଉଦ୍‌ବେଗ ହୁଅଇ ଅନ୍ତର
ତାହାକୁ ଉପରାଗ ନାମ
ଏ ଲୋକେ କରନ୍ତି ଗାୟନ । ୨-୩

ତାହାର ତଳେ ନୃପବର
ସିଦ୍ଧ ଚାରଣ ବିଦ୍ୟାଧର
ଏହାଙ୍କ ସଦନ ନିର୍ମିତ
ଏହାର ତଳେ ପରୀକ୍ଷିତ
ଯକ୍ଷ ପିଶାଚ ଭୂତ ପ୍ରେତ
ଏହାଙ୍କ ଗୃହ ଯେ ନିର୍ମିତ
ଯାବତ ବାୟୁର ସଞ୍ଚାର
ଯାବତ ଗତି ଜଳଧର । ୪-୫

ତତୋଽଧସ୍ତାଚ୍ଛତଯୋଜନାନ୍ତର ଇୟଂ ପୃଥିବୀ ଯାବଦ୍ଧଂସ-ଭାସ-ଶ୍ୟେନସୁପର୍ଣ୍ଣା-ଦୟଃ ପତତ୍ରିପ୍ରବରା ଉତ୍ପତନ୍ତୀତି । ୬ ।

ଉପବର୍ଣ୍ଣିତଂ ଭୂମେର୍ଯଥାସନ୍ନିବେଶାବସ୍ଥାନଂ । ଅବନେରପ୍ୟଧସ୍ତାତ୍ ସପ୍ତ ଭୂବବରା ଏକୈକଶୋ ଯୋଜନାୟୁତାନ୍ତରେଣାୟାମବିସ୍ତାରେଣୋପକ୍ଳୃପ୍ତାଃ । ଅତଳଂ, ବିତଳଂ ସୁତଳଂ ତଳାତଳଂ ମହାତଳଂ ରସାତଳଂ ପାତାଳମିତି । ୭ ।

ଏତେଷୁ ବିଳସ୍ୱର୍ଗେଷୁ ସ୍ୱର୍ଗାଦପ୍ୟଧିକକାମଭୋଗୈଶ୍ୱର୍ଯ୍ୟାନନ୍ଦଭୂତିବିଭୂତିଭିଃ ସୁସମୃଦ୍ଧଭବନୋଦ୍ୟାନାକ୍ରୀଡ଼ବିହାରେଷୁ ଦୈତ୍ୟଦାନବକାଦ୍ରବେୟା ନିତ୍ୟପ୍ରମୁଦିତାନୁ-ରକ୍ତକଳତ୍ରାପତ୍ୟବନ୍ଧୁସୁହୃଦନୁଚରା ଗୃହପତୟ ଈଶ୍ୱରାଦପ୍ୟପ୍ରତିହତକାମା ମାୟା-ବିନୋଦା ନିବସନ୍ତି । ୮ ।

---

ତାହାର ଅଧୋଭାଗରେ ଶତଯୋଜନ ଦୂରରେ ଏହି ପୃଥିବୀ ଓ ପାର୍ଥିବ ବିକାର ହଂସ, ଭାସ ପକ୍ଷି ଶ୍ୟେନ ଓ ସୁବର୍ଣ୍ଣାଦି ଶ୍ରେଷ୍ଠ ପକ୍ଷିଗଣ ଯେତେଦୂର ପର୍ଯ୍ୟନ୍ତ ଉଡ଼ି ପାରନ୍ତି ତାହାହିଁ ଭୂଲୋକର ସୀମା । ଏହାର ସନ୍ନିବେଶ ସ୍ଥାନ ପୂର୍ବେ ବର୍ଣ୍ଣିତ ହୋଇଅଛି । ୬ ।

ଏହି ପୃଥିବୀର ନିମ୍ନଦେଶରେ ଅତଳ, ବିତଳ, ସୁତଳ, ତଳାତଳ, ମହାତଳ ରସାତଳ ଓ ପାତାଳ ନାମରେ ସାତଗୋଟି ଭୂବିବର ଅଛି, ଏହା ପ୍ରତ୍ୟେକ, କ୍ରମେ ଅୟୁତ ଯୋଜନ ଦୂରରେ ଅବସ୍ଥିତ, ଏହାର ପ୍ରତ୍ୟେକର ଦୈର୍ଘ୍ୟ ଓ ବିଶାଳତା ଅୟୁତଯୋଜନ । ୭ ।

ଏହି ସ୍ୱର୍ଗ ତୁଲ୍ୟ ବିଭବର ମଧ୍ୟରେ ଭବନ, ଉଦ୍ୟାନ, ରହସ୍ୟ କ୍ରୀଡ଼ାର ସ୍ଥାନ ଓ ବିହାର ସ୍ଥାନ ରହିଅଛି, ଏହି ଭବନାଦି ସ୍ୱର୍ଗାପେକ୍ଷା ଅଧିକ କାମଭୋଗ ଐଶ୍ୱର୍ଯ୍ୟାନନ୍ଦ, ସନ୍ତତି ଓ ସମ୍ପତ୍ତିରେ ସୁସମୃଦ୍ଧ, ଏହି ସ୍ଥାନରେ ଦୈତ୍ୟ, ଦାନବ ଓ ନାଗଗଣ ଗୃହାଧିପତି, ସେମାନେ ନିତ୍ୟ, ପ୍ରମୋଦଯୁକ୍ତ ଓ ଅନୁରକ୍ତ କଳତ୍ର, ଅପତ୍ୟ, ବନ୍ଧୁ, ସୁହୃତ ଇତ୍ୟାଦି ଯାହା ଅଭିଳାଷ କରନ୍ତି ତାହା ପ୍ରାପ୍ତ ହୋଇଥାଆନ୍ତି, ଏବଂ ସେମାନେ ମାୟାବଲମ୍ବନ କରି ନାନାବିଧ ଆମୋଦ ପ୍ରମୋଦ କରି ଥାଆନ୍ତି । ୮ ।

---

ଭୂମିମଣ୍ଡଳ ହେ ସୁଜନ
ତା ତଳେ ଶତେକ ଯୋଜନ
ଗମନ କରନ୍ତି ଶୂନ୍ୟରେ
ସୁପର୍ଣ୍ଣ ଆଦି ପକ୍ଷିବରେ । ୬ ।
ଭୂମିମଣ୍ଡଳର ବର୍ଣ୍ଣନ
କହିଛି ଅଛୁଁ ହେ ସୁଜନ
ଅବନୀ ତଳର ବେଭାର
କହିବା ଶୁଣ ନୃପବର ।
ସପତ ଭୂବିବରେ କରି
ସପ୍ତଭୁବନ ଦଣ୍ଡଧାରି

ଅତଳ ବିତଳ ସୁତଳ
ତଳାତଳ ଯେ ମହାତଳ
ରସାତଳ ଯେ ମହୀପାଳ
ସପ୍ତ ଯେ ବିଦିତ ପାତାଳ
କ୍ରମେ ଏ ଅୟୁତ ଯୋଜନ
ଏକ ଏକର ଯେ ପ୍ରମାଣ ।୭।
ବିଳ ସ୍ୱର୍ଗ ନାମ ଏହାର
ସ୍ୱର୍ଗୁ ଅଧିକ ସୁଖକର
କାମ ଐଶ୍ୱର୍ଯ୍ୟ କାମ ଭୋଗ
ନାନା ଆନନ୍ଦ ଯେ ସମ୍ପଦ

ନାନାରତ୍ନରେ ଦିବ୍ୟପୁର
ସୌରଭେ ଭୁବନ ସୁନ୍ଦର
ବିବିଧ କ୍ରୀଡ଼ା ଯେ ବିହାର
ସୁସର୍ଥି ସ୍ଥଳ ମନୋହର
ଏ ସ୍ଥଳେ କ୍ରୀଡ଼ନ୍ତି ଆନନ୍ଦେ
ଯେ ସ୍ଥଳବାସୀ ଜୀବବୃନ୍ଦେ
କାଦ୍ରବ ଦାନବ ଦଇତେ
ଅପତ୍ୟ ସନ୍ନୀର ସହିତେ ।୮।

ଯେଷୁ ମହାରାଜ ମୟେନ ମାୟାବିନା ବିନିର୍ମିତାଃ ପୁରୋ ନାନାମଣିପ୍ରବରପ୍ରବେକବିରଚିତ
ବିଚିତ୍ର ଭବନପ୍ରାକାରଗୋପୁରସଭାଚୈତ୍ୟଚତ୍ୱରାୟତନାଦିଭିର୍ନାଗାସୁରମିଥୁନପାରାବତ
ଶୁକଶାରିକାକୀର୍ଣ୍ଣକୃତ୍ରିମଭୂମିଭିର୍ବିବରେଶ୍ୱରଗୃହୋତ୍ତମୈଃ ସମଳଙ୍କୃତାଶ୍ଚକାସତି । ୯ ।

ଉଦ୍ୟାନାନି ଚାତିତରାଂ ମନଇନ୍ଦ୍ରିୟାନନ୍ଦିଭିଃ କୁସୁମଫଳସ୍ତବକସୁଭଗକିଶଳୟା-
ବନତରୁଚିରବିଟପବିଟପିନାଂ ଲତାଙ୍ଗାଲିଙ୍ଗିତାନାଂ ଶ୍ରୀଭିଃ ସମିଥୁନବିବିଧବିହଙ୍ଗଜଳା-
ଶୟାନାମମଳଜଳପୂର୍ଣ୍ଣାନାଂ ଝଷକୁଳୋଲ୍ଲଙ୍ଘନକ୍ଷୁଭିତନୀରନୀରଜକୁମୁଦକୁବଳୟକ-
ହ୍ଲାରନୀଳୋତ୍ପଳଲୋହିତଶତପତ୍ରାଦିବନେଷୁ କୃତନିକେତନାନାମେକବିହାରାକୁଳ-
ମଧୁରବିବିଧସ୍ୱନାଦିଭିରିନ୍ଦ୍ରିୟୋତ୍ସବୈରମରଲୋକଶ୍ରିୟମତିଶୟିତାନି । ୧୦ ।

ହେ ମହାରାଜ ! ଯେଉଁ ଭୂବିବର ସ୍ଥାନ ସମୂହରେ ମାୟାବୀ ମୟଦାନବ ଏପରି ବହୁପୁରୀ ନିର୍ମାଣ କରି ଦେଇଅଛନ୍ତି ଯେ ଯହିଁରେ ନାନାପ୍ରକାର ଅସଂଖ୍ୟ ଶ୍ରେଷ୍ଠ ମଣିସମୂହଦ୍ୱାରା ନିର୍ମିତ, ବିଚିତ୍ରଗୃହ, ପ୍ରାଚୀର, ପୁରଦ୍ୱାର, ସଭାଗୃହ, ଚୈତ୍ୟ ଓ ଚତ୍ୱରାୟତନଯୁକ୍ତ ଉତ୍ତମୋତ୍ତମମାନଙ୍କର ଗୃହ ଶୋଭା ପାଉଅଛି ସେହି ଗୃହମାନଙ୍କରେ କେଉଁଠାରେ ନାଗଗଣ, କେଉଁଠାରେ ଅସୁରଗଣ, ମିଥୁନଭାବରେ ବର୍ତ୍ତମାନ୍ କେଉଁଠାରେ ପାରାବତ, କେଉଁଠାରେ ଶୁକପକ୍ଷୀ, କେଉଁଠାରେ ଶାରିକାଗଣ କର୍ତ୍ତୃକ କୃତ୍ରିମ ଭୂମି ସମନ୍ୱିତ ଏପରି ବିଚିତ୍ର ଭବନାଦି ସମଳଙ୍କୃତ ହୋଇ ପୁରମାନ ଅପୂର୍ବଶୋଭା ଧାରଣ କରିଅଛି । ୯ ।

ସେଠାରେ ଉଦ୍ୟାନରାଜି ଅମରଲୋକ ଶୋଭାକୁ ପରାଜୟ କରି ବିଦ୍ୟମାନ ରହିଅଛି, ଏହି ଉଦ୍ୟାନମାନଙ୍କରେ ସୁନ୍ଦର ବୃକ୍ଷ, ଶାଖାସମୂହ, ପୁଷ୍ପ,ଗୁଚ୍ଛ, ଫଳଭାରରେ ଅବନତ ଓ ସୁଭଗ କିଶଳୟଯୁକ୍ତ ଲତାମାନ ତରୁ ସମୂହକୁ ଆଲିଙ୍ଗନ କରି ରହିଅଛନ୍ତି, ସେଠାରେ ଅମଳ ଜଳପୂର୍ଣ୍ଣ ଜଳାଶୟ ମାନଙ୍କରେ ଚକ୍ରବାକାଦି ମିଥୁନ ଯୁକ୍ତ ହୋଇ ବିବିଧ ବିହଙ୍ଗମ, ମତ୍ସ୍ୟକୁଳର ଉଲ୍ଲଙ୍ଘନ ହେତୁ କ୍ଷୁଭିତ ଶରୀରରେ ବିରାଜମାନ ନୀରଜ, କୁମୁଦ କୁବଳୟ, କହ୍ଲାର, ନୀଳୋତ୍ପଳ, ଲୋହିତ, ଓ ଶତପତ୍ରାଦି ପଦ୍ମବନରେ ବାସ କରିଥାଆନ୍ତି । ସେମାନଙ୍କର ଅବିଚ୍ଛିନ୍ନ ବିହାର ସମୟରେ ମନ ଇନ୍ଦ୍ରିୟମାନଙ୍କର ଆନନ୍ଦପ୍ରଦ ବିବିଧ ଓ ମଧୁରଧ୍ୱନି ଉତ୍ଥିତ ହୋଇ ଇନ୍ଦ୍ରିୟମାନଙ୍କର ମହୋତ୍ସବ ସମ୍ପାଦନ କରିଥାଏ ଏବଂ ଶୋଭାରେ ଅମର ଲୋକର ଲକ୍ଷ୍ମୀ ଶୋଭାକୁ ମଧ୍ୟ ଅତିକ୍ରମ କରିଥାଏ । ୧୦ ।

ମାୟାବୀ ମୟଦୈତ୍ୟ ଯହିଁ
ନିର୍ମାଣ କରି ଯେ ଅଛଇ
ନାନାମନ୍ଦିର ଦିବ୍ୟପୁର
ବିଚିତ୍ର ବୈଦୁର୍ଯ୍ୟର ଘର
ସଭା ଚତ୍ୱର ଯେ ଗୋପୁର
ବିବିଧ ନାନା ମଣି ସାର !
ମିଥୁନ ଶୁକ ପାରାବତ
କୃତ୍ରିମ ମଣିରେ ନିର୍ମିତ
ଶାରିକା ଆଦି ପକ୍ଷୀମାନ,
ବିବିଧପ୍ରକାର ଭୂଷଣ

ମଣିସଦନ ଉଚ୍ଚସାର
ଶୋହିଅଛି ଅତି ମନୋହର
ବିବିଧ ଛନ୍ଦ ଉପବନ
ସୌରଭେ ହରେ ପ୍ରାଣିମନ
କୁସୁମ ଫଳ ଅତିଭରେ
ବିଟପୀ ଲଗନ୍ତି ଭୂମିରେ
କୋମଳ ପଲ୍ଲବ ସୁରଙ୍ଗ
ପକ୍ଷିମିଥୁନ ଯହିଁ ସଙ୍ଗ
ବିବିଧ ଜଳାଶୟ ମାନ
କ୍ରୀଡନ୍ତି ନାନା ବିହଙ୍ଗମ

ନୀରଜ କୁମୁଦ କହ୍ଲାର
ଏହାଙ୍କ ବନେ ତାଙ୍କ ଘର
ସେ ପକ୍ଷିଗଣ ଦିବ୍ୟ ସ୍ୱନ
ଶ୍ରବଣେ ହରେ ପ୍ରାଣିମନ
ସ୍ୱର୍ଗହୁଁ ଅତି ମନୋହର
ସେ ସ୍ଥାନ ମାନ ନୃପବର ।୯,୧୦।

ଯତ୍ର ହ ବାବ ନ ଭୟମହୋରାତ୍ରାଦିଭିଃ କାଳବିଭାଗୈରୁପଲକ୍ଷ୍ୟତେ । ୧୧ ।

ଯତ୍ର ହି ମହାହିପ୍ରବରଶିରୋମଣୟଃ ସର୍ବଂ ତମଃ ପ୍ରବାଧନ୍ତେ । ୧୨ ।

ନ ବା ଏତେଷୁ ବସତାଂ ଦିବ୍ୟୌଷଧିରସରସାୟନାଶନପାନସ୍ନାନାଦିଭିରାଧୟୋ ବ୍ୟାଧୟୋ ବଲୀପଲିତଜରାଦୟଶ୍ଚ ଦେହବୈବର୍ଣ୍ୟଂ ଦୌର୍ଗନ୍ଧ୍ୟଂ ସ୍ୱେଦଃ କ୍ଲମୋ ଗ୍ଲାନିରିତି ବୟୋଽବସ୍ଥାଶ୍ଚ ଭବନ୍ତି । ୧୩ ।

ନ ହି ତେଷାଂ କଲ୍ୟାଣାନାଂ ପ୍ରଭବତି କୁତଶ୍ଚନ ମୃତ୍ୟୁର୍ବିନା ଭଗବତ୍ତେଜସଶ୍ଚକ୍ରାପଦେଶାତ୍ । ୧୪ ।

ଯସ୍ମିନ୍ ପ୍ରବିଷ୍ଟେଽସୁରବଧୂନାଂ ପ୍ରାୟଃପୁଂସବନାନି ଭୟାଦେବସ୍ରବନ୍ତି ପତନ୍ତି ଚ ।୧୫

ଅଥାତଲେ ମୟପୁତ୍ରୋଽସୁରୋ ବଲୋ ନିବସତି । ଯେନ ହ ବା ଇହ ସୃଷ୍ଟାଃ ଷଣ୍ଣବତିର୍ମାୟା ଯାଃ କାଶ୍ଚନାଦ୍ୟାପି ମାୟାବିନୋ ଧାରୟନ୍ତି । ଯସ୍ୟ ଚ ଜୃମ୍ଭମାଣସ୍ୟ ମୁଖତସ୍ତ୍ରୟଃ ସ୍ତ୍ରୀଗଣା ଉଦପଦ୍ୟନ୍ତ ସ୍ୱୈରିଣ୍ୟଃ କାମିନ୍ୟଃ ପୁଂଶ୍ଚଲ୍ୟ ଇତି । ଯା ବୈ

---

ସେହି ଭୁବନର ସମୂହରେ ସୂର୍ଯ୍ୟକିରଣ ପଡ଼ୁନଥିବାରୁ ଦିବାରାତ୍ରି କାଳର କୌଣସି ବିଭାଗ ନାହିଁ ସୁତରାଂ କାଳର କୌଣସି ଭୟ ଲକ୍ଷିତ ହୁଏ ନାହିଁ । ୧୧ ।

ସେଠାରେ ନାଗ ଶ୍ରେଷ୍ଠଗଣଙ୍କର ମସ୍ତକସ୍ଥ ଉଜ୍ଜ୍ୱଳମଣି ସମୂହ ଦ୍ୱାରା ସେଠାର ଅନ୍ଧକାର ବିନଷ୍ଟ ହୋଇଥାଏ । ୧୨ ।

ଏହି ଭୁବନରମାନଙ୍କରେ ଯେଉଁମାନେ ବାସ କରନ୍ତି ସେମାନେ ଦିବ୍ୟ ଔଷଧି ରସ ଓ ଜରାଦିବିନାଶକ ରସାୟନ ଭୋଜନ ପାନ କରିଥାଆନ୍ତି ଓ ସ୍ନାନାଦିକ୍ରିୟାର ଉତ୍କର୍ଷହେତୁ ସେମାନଙ୍କର ଆଧିବ୍ୟାଧିକୁଞ୍ଚିତ ଚର୍ମତା ପକ୍ୱ କେଶତା ଏବଂ ବାର୍ଦ୍ଧକ୍ୟାଦି ଦେହର ବିବର୍ଣ୍ଣତା, ଦୁର୍ଗନ୍ଧତା, ସ୍ୱେଦ, କ୍ଲାନ୍ତି, ଓ ଗ୍ଲାନି, ଇତ୍ୟାଦି ଜରାବସ୍ଥା ସେଠାରେ ଆକ୍ରମଣ କରେ ନାହିଁ । ୧୩ ।

ସେହି ସ୍ଥାନରେ ଯେଉଁ ଜୀବମାନେ ବାସ କରନ୍ତି ସେମାନେ ଏପରି କଲ୍ୟାଣମୟ ଯେ ଭଗବାନଙ୍କର ଚକ୍ରନାମକ ତେଜ ବ୍ୟତୀତ ମୃତ୍ୟୁ କୌଣସି କାରଣରୁ ସେମାନଙ୍କ ଉପରେ କୌଣସି ପ୍ରକାର ପ୍ରଭାବ ବିସ୍ତାର କରିପାରେ ନାହିଁ । ( ଚକ୍ର ଶବ୍ଦର ଅର୍ଥ କାଳଚକ୍ର ) । ୧୪ ।

ଭଗବାନଙ୍କର ଏହି ତେଜ ସେଠାରେ କସ୍ମିନ୍‌କାଳେ ପ୍ରବିଷ୍ଟ ହେଲେ ଭୟରେ ପ୍ରାୟ ଅସୁର ବଧୂଗଣଙ୍କର ଗର୍ଭପାତ ହୋଇଥାଏ । ୧୫ ।

ତଦନନ୍ତର ଅତଳନାମକ ଭୁବନର ପ୍ରସଙ୍ଗ କୁହା ଯାଉଅଛି, ଅତଳ ନାମକ ଭୁବନରରେ ମୟଦାନବର ପୁତ୍ର ବଳନାମକ ଅସୁର ବାସ କରେ । ସେ ୯୬ ପ୍ରକାରର ମାୟାର ସୃଷ୍ଟିକର୍ତ୍ତା, ଅଦ୍ୟାପି

---

| | | |
|---|---|---|
| ଅହିଙ୍କ ଶିରେ ମଣିମାନ | ବ୍ୟାଧିର ପରାଭବ ନାହିଁ | ଶ୍ରୀହରି ଚକ୍ର ବିନୁ ତହିଁ |
| ଯହିଁ ହରନ୍ତି ଅନ୍ଧତମ | ଦେହରେ ରୋଗ ନ ଲାଗଇ | ଅବସ୍ଥା ମୃତ୍ୟୁଭୟ ନାହିଁ ।୧୧-୧୫। |
| ସେ ଭୂମି ଅତି ଅନୁପମ | ବୟସ ନର ନାରୀଙ୍କର | ଅତଳେ ଅଛି ମହାସୁର |
| ଜଣ୍ଡୁତ ନାହିଁ ରାତ୍ରି ଦିନ | ଅବସ୍ଥା ନାହିଁଟି ଶରୀର | ମୟର ପୁତ୍ର ନାମ, ବଳ |

ବିଳାୟନଂ ପ୍ରବିଷ୍ଟଂ ପୁରୁଷଂ ରସେନ ହାଟକାଖ୍ୟେନ ସାଧୟିତ୍ୱା ସ୍ୱବିଳାସାବଲୋକାନୁରାଗସ୍ମିତସଂଲାପୋପଗୂହନାଦିଭିଃ ସ୍ୱୈରଂ କିଲ ରମୟନ୍ତି । ଯସ୍ମିନ୍ନୁପଯୁକ୍ତେ ପୁରୁଷ ଈଶ୍ୱରୋଽହଂ ସିଦ୍ଧୋଽହମିତ୍ୟୟୁତମହାଗଜବଲମାତ୍ମାନମଭିମନ୍ୟମାନଃ କତ୍ଥତେ ମଦାନ୍ଧ ଇବ । ୧୬ ।

ତତୋଽଧସ୍ତାଦ୍ବିତଳେ ହରୋ ଭଗବାନ୍ ହାଟକେଶ୍ୱରଃ ସ୍ୱପାର୍ଷଦଭୂତଗଣାବୃତଃ ପ୍ରଜାପତିସର୍ଗୋପବୃଂହଣାୟ ଭବୋ ଭବାନ୍ୟା ସହ ମିଥୁନୀଭୂୟାସ୍ତେ । ଯତଃ ପ୍ରବୃତ୍ତା ସରିତ୍ପ୍ରବରା ହାଟକୀନାମ ଭବୟୋର୍ବୀର୍ଯ୍ୟେଣ । ଯତ୍ର ଚିତ୍ରଭାନୁର୍ମାତରିଶ୍ୱନା ସମିଧ୍ୟମାନ ଓଜସା ପିବତି । ତନ୍ନିଷ୍ଠ୍ୟୁତଂ ହାଟକାଖ୍ୟଂ ସୁବର୍ଣ୍ଣଂ ଭୂଷଣେନାସୁରେନ୍ଦ୍ରାବରୋଧେଷୁ ପୁରୁଷାଃ ସହ ପୁରୁଷୀଭିର୍ଧାରୟନ୍ତି । ୧୭ ।

---

ମାୟାବୀଗଣ ଏହି ମାୟାର କୌଣସି ପ୍ରକାର ଧାରଣା କରି ପାରି ନାହାନ୍ତି । ଏହି ଅସୁର ଜୃମ୍ଭଣ (ହାଇମାରିବା) କଲେ ଏହାର ମୁଖରୁ ସ୍ୱୈରିଣୀ ( ସବର୍ଣ୍ଣରତା ), କାମିନୀ ( ଅସବର୍ଣ୍ଣରତା ) ପୁଂଶ୍ଚଳୀ ( ଚଞ୍ଚଳା ) ଏହି ତିନିପ୍ରକାର ସ୍ତ୍ରୀ ଜାତ ହୋଇ ଥାଆନ୍ତି । ସେହି ସ୍ତ୍ରୀମାନେ ଏହି ଭୁବନର ମଧ୍ୟରେ ପ୍ରବିଷ୍ଟ ପୁରୁଷକୁ ହାଟକରସ ( ଧାତୁସ୍ୱରସ ) ପାନ କରାଇ ସମ୍ଭୋଗ ସମର୍ଥ କରାନ୍ତି ଏବଂ ଅସାଧାରଣ ବିଳାସ ପୂର୍ବକ ଅବଲୋକନ ଅନୁରାଗ ଯୁକ୍ତ ସ୍ମିତ ସହକାରେ ସମ୍ଭାଷଣ ଓ ଆଲିଙ୍ଗନାଦି ଦ୍ୱାରା ସ୍ୱଚ୍ଛନ୍ଦରେ ରମଣ କରି ଥାନ୍ତି, ଏହି ରସ ପାନକଲେ ପୁରୁଷ ଆପଣାକୁ ଈଶ୍ୱର ଓ ସିଦ୍ଧ ବୋଲି ଆତ୍ମାଭିମାନ କରିଥାଏ, ସେତେବେଳେ ତାହାର ଶରୀରରେ ଅୟୁତ ସଂଖ୍ୟକ ମତ୍ତଗଜର ବଳ ଆସେ । ୧୬ ।

( ବିତଳର ବିବରଣ ବୃତ୍ତାନ୍ତ କଥିତ ହେଉଅଛି ) ବିତଳନାମକ ଭୁବନରେ ଭଗବାନ୍ ଶିବ ହାଟକେଶ୍ୱର ନାମଧାରଣ କରି ସ୍ୱୀୟ ପାର୍ଷଦଭୂତଗଣ ସମାବୃତ ହୋଇ ପ୍ରଜାପତିଙ୍କର ସୃଷ୍ଟିବର୍ଦ୍ଧନ ନିମିତ୍ତ ଭଗବାନଙ୍କ ସହିତ ମିଥୁନୀଭୂତ ଅବସ୍ଥାନ କରୁଅଛନ୍ତି, ଭବ ଓ ଭବାନୀଙ୍କର ବୀର୍ଯ୍ୟରେ ହାଟକୀ ନାମ୍ନୀ ଶ୍ରେଷ୍ଠ ନଦୀ ପ୍ରବାହିତା ହେଉଅଛି, ଅଗ୍ନିଦେବ ବାୟୁଦ୍ୱାରା ଉଦ୍ଦୀପିତ ହୋଇ ସେହି ବୀର୍ଯ୍ୟ ଓଜଃ ସହକାରେ ପାନ କରୁଥାନ୍ତି, ଅର୍ଥାତ୍ ସ୍ୱୀୟ ତେଜରେ ଶୋଷଣକରି କଠିନ କରି ଫୁତ୍କାର ସହକାରେ ପରିତ୍ୟାଗ କରୁଥାନ୍ତି, ସେହି ଫୁତ୍କାର ତ୍ୟକ୍ତ ପଦାର୍ଥ ହାଟକ ନାମକ ସୁବର୍ଣ୍ଣ, ତାହାକୁ ଅସୁରେନ୍ଦ୍ରଗଣ ଅନ୍ତଃପୁର ବାସିନୀ ନାରୀଗଣଙ୍କ ସହିତ ପୁରୁଷଗଣ ବିବିଧ ଅଳଙ୍କାର ରୂପରେ ଆଦରରେ ଗ୍ରହଣ କରିଥାନ୍ତି । ୧୭ ।

---

ତାହାର ମାୟା ଦୂରତରେ
ଅଦ୍ୟାପି ସଂସାରେ ପ୍ରଚରେ
ତହିଁରୁ ଜନମି ଏ ତିନି
ସ୍ୱୈରିଣୀ ପୁଂଶ୍ଚଳୀ କାମିନୀ
ହାଟକନାମେ ମାୟାରସ
ତହିଁରେ ପିଆଇ ପୁରୁଷ
ଅୟୁତ ମହାଗଜ ବଳ
ହୁଅଇ ତହୁଁ ପୁରୁଷର । ୧୬

ବିଳାସ ଅବଲୋକନରେ
ନାନାପ୍ରକାରେ କ୍ରୀଡାକରେ
ବିତଳେ ଶମ୍ଭୁ ଭଗବାନ
ହାଟକେଶ୍ୱର ତାଙ୍କ ନାମ
ପ୍ରଜାପତି ସୃଷ୍ଟି ନିମନ୍ତେ
ଅଛନ୍ତି ଭବାନୀ ସହିତେ
ଏହାଙ୍କ ବୀର୍ଯ୍ୟୁ ଜାତ ହୋଇ
ହାଟକୀ ନାମେ ନଦୀ ବହି

ତାର ସଂସର୍ଗୁ ଜାତ ହୋଇ
ସୁବର୍ଣ୍ଣ ହାଟକ ବୋଲାଇ
ଅସୁରଙ୍କର ବଧୂଗଣ
ତାହାକୁ କରନ୍ତି ଭୂଷଣ । ୧୭ ।

ତତୋଽଧସ୍ତାତ୍ ସୁତଲ ଉଦାରଶ୍ରବାଃ ପୁଣ୍ୟଶ୍ଲୋକୋ ବିରୋଚନାତ୍ମଜୋ ବଲିର୍ଭଗବତା ମହେନ୍ଦ୍ରସ୍ୟ ପ୍ରିୟଂ ଚିକୀର୍ଷମାଣେନାଦିତେର୍ଲବ୍ଧକାୟୋ ଭୂତ୍ୱା ବଟୁବାମନରୂପେଣ ପରାକ୍ଷିପ୍ତଲୋକତ୍ରୟୋ ଭଗବଦନୁକମ୍ପୟୈବ ପୁନଃ ପ୍ରବେଶିତ ଇନ୍ଦ୍ରାଦିଷ୍ୱବିଦ୍ୟମାନୟା ସୁସମୃଦ୍ଧୟା ଶ୍ରିୟାଭିଜୁଷ୍ଟଃ ସ୍ୱଧର୍ମେଣାରାଧୟଂସ୍ତମେବ ଭଗବନ୍ତମାରାଧନୀୟମପଗତସାଧ୍ୱସ ଆସ୍ତେଽଧୁନାପି । ୧୮ ।

ନୋ ଏବୈତତ୍ ସାକ୍ଷାତ୍କାରୋ ଭୂମିଦାନସ୍ୟ ଯତ୍ତଦ୍‌ଭଗବତ୍ୟଶେଷଜୀବନିକାୟାନାଂ ଜୀବଭୂତାତ୍ମଭୂତେ ପରମାତ୍ମନି ବାସୁଦେବେ ତୀର୍ଥତମେ ପାତ୍ର ଉପପନ୍ନେ ପରୟା ଶ୍ରଦ୍ଧୟା ପରମାଦରେଣ ସମାହିତମନସା ସଂପ୍ରତିପାଦିତସ୍ୟ ସାକ୍ଷାଦପବର୍ଗଦ୍ୱାରସ୍ୟ ଯଦ୍‌ବିଲନିଲୟୈଶ୍ୱର୍ଯ୍ୟମ୍ । ୧୯ ।

ଯସ୍ୟ ହ ବାବ କ୍ଷୁତ୍‌ପତନପ୍ରସ୍ଖଲନାଦିଷୁ ବିବଶଃ ସକୃନ୍ନାମାଭିଗୃଣନ୍ ପୁରୁଷଃ କର୍ମବନ୍ଧନମଞ୍ଜସା ବିଧୂନୋତି । ଯସ୍ୟ ହୈବ ପ୍ରତିବାଧନନ୍ତୁ ମୁମୁକ୍ଷବୋଽନ୍ୟଥୈବୋପଲଭନ୍ତେ । ୨୦ ।

---

( ସୁତଳପ୍ରସଙ୍ଗ ) ସୁତଳ ନାମକ ଭୁବନର ବିତଳ ଅଧୋଭାଗରେ ଅବସ୍ଥିତ । ଏହିଠାରେ ଉଦାର କୀର୍ତ୍ତି ପୁଣ୍ୟଶ୍ଲୋକ ବିରୋଚନ ପୁତ୍ର ବଳି, ଅଦ୍ୟାପି ବାସ କରୁଅଛନ୍ତି । ଭଗବାନ୍ ବାସୁଦେବ, ଦେବରାଜ ଇନ୍ଦ୍ରଙ୍କର ପ୍ରିୟସାଧନ ଇଚ୍ଛାରେ ଅଦିତିଙ୍କ ଗର୍ଭରୁ ବାମନରୂପେ ଜନ୍ମଗ୍ରହଣକରି, ବାମନରୂପରେ ତାହାଙ୍କଠାରୁ ଲୋକତ୍ରୟ ଅପହରଣ କରିଥିଲେ ଏବଂ ପରେ ଦୟାକରି ବଳୀକୁ ସୁତଳରେ ସ୍ଥାନ ଦାନ କରି ଅଛନ୍ତି । ତାହାଙ୍କୁ ଏପରି ଶୋଭା ସମୃଦ୍ଧିର ଅଧିକାରୀ କରିଅଛନ୍ତି ଯେ ଇନ୍ଦ୍ରାଦିଲୋକରେ ମଧ୍ୟ ସେପରି ସମୃଦ୍ଧି ଦେଖା ଯାଏ ନାହିଁ, ମହାରାଜ ବଳୀ ନିର୍ଭୟରେ ଅଦ୍ୟାପି ସ୍ୱଧର୍ମାନୁଚରଣ କରି ଭକ୍ତିଭାବ ସେହି ଭଗବାନଙ୍କୁ ଆରାଧନା କରୁଅଛନ୍ତି । ୧୮ ।

ସେହି ବଳୀ ସୁତଳରେ ଏହି ପରମ ଐଶ୍ୱର୍ଯ୍ୟ ଲାଭ କରିବା ଭୂମିଦାନର ସାକ୍ଷାତ୍ ଫଳ ନୁହେଁ, ଭଗବାନ୍ ଅଶେଷ ଜୀବ ସମୂହର ଜୀବନ ସ୍ୱରୂପ ଆତ୍ମା, ସେହି ପରମାତ୍ମା ବାସୁଦେବ, ସେ ପବିତ୍ରତମ ପାତ୍ର, ପରମଶ୍ରଦ୍ଧା, ପରମଆଦର ଓ ସମାହିତ ଚିତ୍ତରେ ତାହାଙ୍କୁ ଦାନ କରିବାରୁ ଅପବର୍ଗ ଅର୍ଥାତ୍ ମୁକ୍ତିର ହେତୁ ହୋଇଅଛି, ସୁତରାଂ ଅକିଞ୍ଚିତ୍କର ଐଶ୍ୱର୍ଯ୍ୟ ଏହି ଦାନର ସାକ୍ଷାତ୍ ଫଳ । ୧୯ ।

ପୁରୁଷ କ୍ଷୁଧା, ପତନ ଓ ପଦସ୍ଖଳନାଦି କାଳରେ ବିବଶ ହୋଇ ଯଦି ଥରେ ମାତ୍ର ଭଗବାନଙ୍କ ନାମ ଗ୍ରହଣ କରେ ତାହାହେଲେ ଅବଲମ୍ବେ ଜଟିଳ କର୍ମ ବନ୍ଧନରୁ ମୁକ୍ତହୁଏ । ମୁମୁକ୍ଷୁ ଯେଉଁ କର୍ମବନ୍ଧନର ଅପନୋଦନ ନିମିତ୍ତ ଯୋଗାଦି ସାଧନ କରି ଥାଆନ୍ତି । ୨୦ ।

---

ସୁତଳେ ବଳି ଯାର ନାମ
ତାହାର ଶୁଣ ହେ ସ୍ୱଜନ
ଉଦ ରଣବା ପୁଣ୍ୟ ଶ୍ଲୋକ
ଯାହାକୁ ବୋଲନ୍ତି ସେ ଲୋକ
ଇନ୍ଦ୍ରର ପ୍ରିୟ ହିତ ବହି
ଅଖିଳ ବ୍ରହ୍ମାଣ୍ଡ ଗୋସାଇଁ

ଅଦିତି ଉଦୁଁ ଜାତ ହୋଇ
ବଟୁ ବାମନ ରୂପବହି
ନାନାସମ୍ପଦ ତାର ହରି
ପୁଣି ଦୟା କଲେ ମୁରାରି
ଇନ୍ଦ୍ରାଦି ସୁର ଉତୁଁ ବଳ
ସମ୍ପତ୍ତି ଦେଲେ ବନମାଳୀ

ପୂଜ୍ୟ ଅଖିଳ ଦେବଙ୍କର
ଅନାଦି ପ୍ରଭୁ ଯେ ଈଶ୍ୱର
ସ୍ୱକର୍ମେ ତାଙ୍କୁ ଆରାଧିଣ
ସୁଖେ ସେ ଅଛନ୍ତି ସ୍ୱଜନ ।୧୮।
ସେ ସର୍ବରାଜ ଭଗବାନ
ପରମ ଆତ୍ମା ସୂକ୍ଷ୍ମବ୍ରହ୍ମ

ତଦ୍‌ଭଗବତାମାତ୍ମବତାଂ ସର୍ବେଷାମାତ୍ମନ୍ୟାତ୍ମଦ ଆତ୍ମତମେ ଚ । ୨୧ ।

ନ ବୈ ଭଗବାନ୍ ନୂନମମୁଷ୍ୟାନୁଜଗ୍ରାହ । ଯଦୁତ ପୁନରାତ୍ମାନୁସ୍ମୃତିମୋଷଣଂ ମାୟାମୟଂ ଭୋଗୈଶ୍ୱର୍ଯ୍ୟମେବାତନୁତେତି । ୨୨ ।

ଯତ୍ତଦ୍‌ଭଗବତାନଧିଗତାନ୍ୟୋପାୟେନ ଯାଚ୍ଞାଚ୍ଛଲେନାପହୃତସ୍ୱଶରୀରାବଶେଷିତଲୋକତ୍ରୟୋ ବରୁଣପାଶୈଃ ସମ୍ପ୍ରତିମୁକ୍ତୋ ଗିରିଦର୍ଯ୍ୟାଞ୍ଚାପବଦ୍ଧ ଇତି ହୋବାଚ । ୨୩ ।

ନୂନଂ ବତାୟଂ ଭଗବାନର୍ଥେଷୁ ନ ନିଷ୍ଣାତୋ ଯୋଽସାବନ୍ଦ୍ରୋ ଯସ୍ୟ ସଚିବୋ ମନ୍ତ୍ରାୟ ବୃତ ଏକାନ୍ତତୋ ବୃହସ୍ପତିସ୍ତମତିହାୟ ସ୍ୱୟମୁପେନ୍ଦ୍ରେଣ ଆତ୍ମାନମୟାଚତ ଆତ୍ମନଶ୍ଚାଶିଷୋ ନୋ ଏବ ତଦ୍ଦାସ୍ୟମ୍ । ଅତିଗମ୍ଭୀରବୟସଃ କାଳସ୍ୟ ମନ୍ୱନ୍ତରପରିବୃତ୍ତଂ କିୟଲ୍ଲୋକତ୍ରୟମିଦମ୍ । ୨୪ ।

---

ସ୍ୱର୍ଗାଂ ସଞ୍ଚାମୀ ଭକ୍ତ ଜ୍ଞାନମାନଙ୍କର ଧ୍ରୁବପଦ ସର୍ବ ଜୀବର ଆତ୍ମାଭୂତ ପରମାତ୍ମା ବାସୁଦେବଙ୍କର ଉଦ୍ଦେଶ୍ୟରେ ଭୂମିଦାନର ଫଳ ଏହା ହୋଇ ନ ପାରେ । ୨୧ ।

ଭଗବାନ୍ ଯେ ବଳୀଙ୍କ ପ୍ରତି ଅନୁଗ୍ରହ ପ୍ରଦର୍ଶନ କରିଥିଲେ ଏହା ମଧ୍ୟ କୁହା ଯାଇ ନ ପାରେ କାରଣ ସେ ବଳୀକୁ ଏପରି ଭୋଗ ଐଶ୍ୱର୍ଯ୍ୟ ଦାନ କରି ଅଛନ୍ତି ଯେ ଯାହା ଭଗବତ୍ ସ୍ମୃତି ବିଲୋପ କରି ମାୟାର ବୃଦ୍ଧି ସମ୍ପାଦନ କରିଅଛି । ୨୨ ।

ଭଗବାନ୍ ବାସୁଦେବ ବଳୀକୁ ନିର୍ଯ୍ୟାତନ କରିବାର ଉପାୟ ନ ପାଇ ଦାନ ଛଳରେ ବଳୀଙ୍କର ଶରୀରମାତ୍ର ଅବଶିଷ୍ଟ ରଖି ତ୍ରିଲୋକ ଅପହରଣ କରିଥିଲେ ଏବଂ ପରେ ତାହାଙ୍କୁ ବରୁଣପାଶରେ ଆବଦ୍ଧ କରି ପର୍ବତ ଗହ୍ୱାରରେ ନିକ୍ଷେପ କରିଥିଲେ । ସେତେବେଳେ ମହାରାଜ ବଳୀ ନିମ୍ନଲିଖିତ ଭାବରେ କହିଥିଲେ । ୨୩ ।

କି ଦୁଃଖର ବିଷୟ ଇନ୍ଦ୍ରଦେବ ପୁରୁଷାର୍ଥ ବିଷୟରେ ନିଶ୍ଚୟ ନିପୁଣ ନୁହନ୍ତି, ବୃହସ୍ପତି ତାହାଙ୍କର ମନ୍ତ୍ରୀ ହେଲେ ମଧ୍ୟ ସେ ମଧ୍ୟ ହିତାହିତ ବିଷୟରେ ଏକାନ୍ତ ନିପୁଣ ନୁହନ୍ତି କାରଣ ଇନ୍ଦ୍ର ସ୍ୱୟଂ ଭଗବାନଙ୍କୁ ପରିତ୍ୟାଗକରି ତାହାଙ୍କ ଦ୍ୱାରା ମୋ ନିକଟରେ ତ୍ରୈଲୋକ୍ୟର ଐଶ୍ୱର୍ଯ୍ୟ ପ୍ରାର୍ଥନା କରିଥିଲେ । କିନ୍ତୁ ଭଗବାନଙ୍କର ଦାସ୍ୟ ପ୍ରାର୍ଥନା କରିନଥିଲେ, କିନ୍ତୁ ଅନନ୍ତ ପରିମାଣ କାଳ ପ୍ରଭାବରେ ମନ୍ୱନ୍ତର ବିପର୍ଯ୍ୟସ୍ତ ଏହି ଲୋକତ୍ରୟର ମୂଲ୍ୟ ବା କେତେ ? । ୨୪ ।

---

ଯେ ତୀର୍ଥପଦ ଜଗନ୍ନାଥ
ସକଳ ଦେଶକାଳ ପାତ୍ର
ତାହାଙ୍କୁ ଶ୍ରଦ୍ଧାଯୁକ୍ତ ହୋଇ
ସ୍ଥିର ମନରେ ଭୂମି ଦେଇ

ବଳସ୍ୱର୍ଗକୁ ଭୋଗ କରେ
ନାନାଐଶ୍ୱର୍ଯ୍ୟର ବେଷ୍ଟରେ
ଯାଚଷ୍ଟାଛଳେ ଯେ ଉପାୟେ
ତହିଁରେ କରି ଦେବରାୟେ

ତ୍ରିଲୋକ ବ୍ୟାପିଲେ ଶରୀରେ
ଶେଷ ନ ରହିଲା ସଂସାରେ
ଯେ ଇନ୍ଦ୍ରେ ଅନୁଗ୍ରହ କରି
ଇନ୍ଦ୍ରର ଭାବଭାବ ଧରି

ଯସ୍ୟାନୁଦାସ୍ୟମେବାସ୍ମତ୍‌ପିତାମହଃ କିଲ ବବ୍ରେ ନ ତୁ ସ୍ୱଂ ପିତ୍ର୍ୟଂ ଯଦୁ ତାକୁ-
ତୋଭୟଂପଦଂ ଦୀୟମାନଂ ଭଗବତଃ ପରମିତ ଭଗବତୋପରତେ ଖଲୁ ସ୍ୱପିତରି ।୨୫
ତସ୍ୟ ମହାନୁଭାବସ୍ୟାନୁପଥମମୃଜିତକଷାୟଃ କୋ ବାସ୍ମଦ୍‌ବିଧଃ ପରିହୀଣଭଗ-
ବଦନୁଗ୍ରହ ଉପଜିଗମିଷତୀତି । ୨୬ ।
ତସ୍ୟାନୁଚରିତମୁପରିଷ୍ଟାଦ୍ ବିସ୍ତରିଷ୍ୟତେ । ଯସ୍ୟ ଭଗବାନ୍ ସ୍ୱୟମଖିଳଜଗଦ୍
ଗୁରୁର୍ନାରାୟଣୋ ଦ୍ୱାରି ଗଦାପାଣିରବତିଷ୍ଠତେ ନିଜଜନାନୁକମ୍ପିତହୃଦୟଃ, ଯେନାଙ୍ଗୁ-
ଷ୍ଠେନ ପଦା ଦଶକନ୍ଧରୋ ଯୋଜନାୟୁତାୟୁତଂ ଦିଗ୍‌ବିଜୟ ଉଚ୍ଚାଟିତଃ । ୨୭ ।
ତତୋଽଧସ୍ତାତ୍ ତଳାତଳେ ମୟୋ ନାମ ଦାନବେନ୍ଦ୍ରସ୍ତ୍ରିପୁରାଧିପତିର୍ଭଗବତା ତ୍ରିପୁରାରିଣା
ତ୍ରିଲୋକ୍ୟାଃ ଶଂ ଚିକୀର୍ଷୁଣା ନିର୍ଦଗ୍‌ଧସ୍ୱପୁରତ୍ରୟସ୍ତତ୍ପ୍ରସାଦାଲ୍ଲବ୍‌ଧପଦୋ ମାୟାବିନାମା
ଚାର୍ଯୋ ମହାଦେବେନ ପରିରକ୍ଷିତୋ ବିଗତସୁଦର୍ଶନଭୟୋ ମହୀୟତେ । ୨୮ ।

---

ମୋର ପିତାମହ ପ୍ରହ୍ଲାଦ ଯଥାର୍ଥରେ ଶ୍ରେୟ ବିଷୟରେ ନିପୁଣ ଥିଲେ, ତାହାଙ୍କର ପିତାଙ୍କର ମୃତ୍ୟୁପରେ ଭଗବାନ୍ ତାହାଙ୍କୁ ଅକୁତୋ ଭୟରେ ପୈତୃକପଦ ପ୍ରଦାନ କରିବାକୁ ଇଚ୍ଛା କରିଥିଲେ, କିନ୍ତୁ ସେ ତାହା ଗ୍ରହଣ ନ କରି ଭଗବାନଙ୍କର ଦାସତା ପ୍ରାର୍ଥନା କରିଥିଲେ । ୨୫ ।

ଯାହାର ରାଗାଦି ଦୋଷ କ୍ଷୀଣ ହୋଇନାହିଁ ଏବଂ ଯାହାଙ୍କ ପ୍ରତି ଭଗବାନଙ୍କର ଅନୁଗ୍ରହ ଅତ୍ୟଳ୍ପ ମୋ ତୁଲ୍ୟ ହତଭାଗ୍ୟ ଏପରି କେଉଁ ବ୍ୟକ୍ତି ସେହି ମହାନୁଭବ ପ୍ରହ୍ଲାଦ ପ୍ରଦର୍ଶିତ ମାର୍ଗ ଅନୁସରଣ କରିବାକୁ ଇଚ୍ଛା ନ କରିବ । ୨୬ ।

ସେହି ବଳୀଙ୍କ ଚରିତ ପରେ ବିସ୍ତୃତଭାବରେ ବର୍ଣ୍ଣିତ ହେବ ( ଅଷ୍ଟମସ୍କନ୍ଧ )

ସେହି ବଳୀଙ୍କ ଦ୍ୱାରଦେଶରେ ସର୍ବଜଗତର ପୂଜ୍ୟାସ୍ପଦ ଗୁରୁ ଭକ୍ତଜନଙ୍କ ପ୍ରତି କୃପାମୟ ଭଗବାନ୍ ନାରାୟଣ ସ୍ୱୟଂ ଗଦା ହସ୍ତରେ ଧାରଣ କରି ନିରନ୍ତର ଅବସ୍ଥାନ କରୁଅଛନ୍ତି, ଥରେ ଦିଗ୍‌ବିଜୟ ଛଳରେ ବାହାରି ଦଶାନନ ରାବଣ ଯେତେବେଳେ ସେହି ଦ୍ୱାରଦେଶରେ ଉପସ୍ଥିତ ହୋଇଥିଲା, ସେତେବେଳେ ଭଗବାନ ପାଦାଙ୍ଗୁଷ୍ଠରେ ତାହାକୁ ବହୁଯୋଜନ ଦୂରକୁ ନିକ୍ଷେପ କରିଥିଲେ । ୨୭ ।

ତଳାତଳର ବର୍ଣ୍ଣନା—ସୁତଳର ନିମ୍ନଦେଶରେ ତଳାତଳ ସେଠାରେ ତ୍ରିପୁରାଧିପତି ମାୟାବିଶ୍ରେଷ୍ଠ ମୟନାମକ ଦାନବେନ୍ଦ୍ର ମହାଦେବଙ୍କ କର୍ତ୍ତୃକ ପରିରକ୍ଷିତ ହୋଇଥିବାରୁ ସୁଦର୍ଶନର ଭୟରୁ ମୁକ୍ତ ହୋଇ ସସମ୍ମାନରେ ଅବସ୍ଥାନ କରୁଅଛି, ତ୍ରିପୁରାରି ମହାଦେବ ତ୍ରିଭୁବନର ମଙ୍ଗଳକାମନାରେ ତାହାର ତିନିପୁରକୁ ପୂର୍ବେ ଦଗ୍‌ଧ କରିଥିଲେ । କିନ୍ତୁ ପୁଣି ତାହାପ୍ରତି ଅନୁଗ୍ରହ ପ୍ରକାଶ କରି ସ୍ୱପଦରେ ସ୍ଥାନ ଦେଇ ଅଛନ୍ତି । ୨୮ ।

---

ଜନ୍ମିଲେ ବ୍ରହ୍ମାଣ୍ଡ ଠାକୁର
ତାହା ନିମନ୍ତେ ନୃପବର
ସେ ସର୍ବଭବ ଭଗବାନ
ଅଖିଳ ଗୁରୁ ନାରାୟଣ
ଯାହାର ଦ୍ୱାରେ ଗଦାଧର
ଅଛନ୍ତି ପ୍ରଭୁ ଯେ ମୁରାରି ।୧୯-୨୭

ଏହାର ଅଧୋଦେଶ ଠାରି
ତଳାତଳ ପୁରି ଅଛଇ
ମୟନାମେ ଦାନବବର
ଦ୍ରୋହ ସେ କଲା ଚକ୍ରଧରେ
ସେ ପୁରି ତାର ଦଗ୍‌ଧ ହେଲା
ତେଣୁ ସେ ବରକୁ ଲଭିଲା

ମାୟାବିମାନଙ୍କର ବର
ଐଶ୍ୱର୍ଯ୍ୟ ଲଭି ସେ ଅସୁର
ଅଭୟ ବରକୁ ସେ ପାଇ
ତଳାତଳରେ ଯେ ଅଛଇ
ସୁଦରଶନ ଚକ୍ର ଡରେ
ଶରଣ ପଶିଲା ଶମ୍ଭୁରେ

ତତୋଽଧସ୍ତାନ୍ମହାତଳେ କାଦ୍ରବେୟାଣାଂ ସର୍ପାଣାଂ ନୈକଶିରସାଂ କ୍ରୋଧବଶୋ ନାମ ଗଣଃ କୁହକ ତକ୍ଷକ କାଳୀୟସୁଷେଣାଦ୍ୟ ପ୍ରଧାନା ମହାଭୋଗବନ୍ତଃ ପତତ୍ରିରାଜାଧିପତେଃ ପୁରୁଷବାହାଦନବରତମୁଦ୍ବିଜମାନାଃ ସ୍ୱକଳତ୍ରାପତ୍ୟସୁହୃତ୍କୁଟୁମ୍ବସଙ୍ଗେନ କ୍ୱଚିତ୍ ପ୍ରମତ୍ତା ବିହରନ୍ତି । ୨୯ ।

ତତୋଽଧସ୍ତାଦ୍ରସାତଳେ ଦୈତେୟା ଦାନବାଃ ପଣୟୋ ନାମ ନିବାତକବଚାଃ କାଳକେୟା ହିରଣ୍ୟପୁରବାସିନଃ ଇତି ବିବୁଧପ୍ରତ୍ୟନୀକା ଉତ୍ପତ୍ତ୍ୟା ମହୌଜସୋ ମହାସାହସିନୋ ଭଗବତଃ ସକଳଲୋକାନୁଭାବସ୍ୟ ହରେରେବ ତେଜସା ପ୍ରତିହତବଳାବଲେପା ବିଲେଶୟା ଇବ ବସନ୍ତି । ଯେ ବୈ ସରମୟେନ୍ଦ୍ରଦୂତ୍ୟା ବାଗ୍ଭିର୍ମନ୍ତ୍ରବର୍ଣ୍ଣାଭିରିନ୍ଦ୍ରାଦ୍ବିଭ୍ୟତି । ୩୦ ।

---

(ମହାତଳ) ତହିଁର ଅଧୋଭାଗରେ ମହାତଳ ନାମକ ଛିଦ୍ରବିବରରେ ବହୁଶୀର୍ଷଯୁକ୍ତ କଦ୍ରୁନନ୍ଦନ କ୍ରୋଧ ପରବଶ ସର୍ପସମୂହ ବାସ କରନ୍ତି, ସେମାନଙ୍କ ମଧ୍ୟରୁ କୁହକ, ତକ୍ଷକ, ଓ ସୁଷେଣ ପ୍ରଭୃତି କତିପୟ ନାଗ ପ୍ରଧାନ, ଏହି ନାଗମାନେ ସର୍ବଦା ବିଷ୍ଣୁ ବାହନ ପକ୍ଷୀରାଜ ଗରୁଡ଼ ଭୟରେ ଅଭିଭୂତ ହୋଇନିଜର ସ୍ତ୍ରୀ, ପୁତ୍ର, ସୁହୃଦ୍, କୁଟୁମ୍ବଗଣଙ୍କ ସହିତ ସାବଧାନରେ ନାନାସ୍ଥାନରେ ବିହାର କରୁଅଛନ୍ତି ।୨୯

(ରସାତଳ) ତହିଁର ଅଧୋଭାଗରେ ଦୈତ୍ୟ, ଦାନବ, ପଣି, ନିବାତକବଚ, କାଳକେୟ, ହିରଣ୍ୟପୁରବାସୀ ଏହି ଦେବଶତ୍ରୁମାନେ ବାସକରନ୍ତି, ସେମାନେ ଜନ୍ମରୁ ମହାପରାକ୍ରମୀ, ମହା ସାହସୀ କିନ୍ତୁ ସେମାନଙ୍କର ବଳଗର୍ବ କେବଳମାତ୍ର ନିଖିଳ ଜଗତ ବିସ୍ତୃତ ପ୍ରଭାବ ଶ୍ରୀହରିଙ୍କର ତେଜରେ ପ୍ରତିହତ; ସେମାନେ ଛିଦ୍ରବିବରରେ ସର୍ପ ତୁଲ୍ୟ ବାସ କରୁ ଅଛନ୍ତି । ସେମାନେ ଇନ୍ଦ୍ରଦୂତୀ, ସରମା କର୍ତ୍ତୃକ ଉଚ୍ଚାରିତ ମନ୍ତ୍ର ବାକ୍ୟ ଦ୍ୱାରା ଇନ୍ଦ୍ରଙ୍କଠାରୁ ଥରେ ଭୟପ୍ରାପ୍ତ ହୋଇଥିଲେ । ୩୦ ।

---

ସେ ଭୟ ତାର ଦୂର କରି
ଭଣିଲେ ଶିବ ଶୂଳଧାରୀ
ନିର୍ଭୟ ହୋଇ ସେ ଦାନବ
ସେ ସ୍ଥଳେ ଭୁଞ୍ଜଇ ବିଭବ ।୨୮।
ତାହାର ଅଧୋଭାଗ ଦେଶେ
ମହାତଳ ପୁର ପ୍ରକାଶେ
ସହିଁରେ କାଦ୍ରବେୟ ଅହି
କ୍ରୋଧବଶ ନାମେ ପ୍ରସିଦ୍ଧି
କୁହକ କାଳୀୟ ସୁଷେଣ
ତକ୍ଷକପ୍ରଧାନ ଏମାନ
ମହାଶରୀର ବଳବନ୍ତ
ତହିଁ ଅଛନ୍ତି ପଞ୍ଚଶତ
ଅତେ୍ୟ ବୈନତେୟର ଭୟେ
ଉଦ୍ବେଗ ହୋଇ ତାଙ୍କ କାୟେ
ଦାରା ତନୟ ବନ୍ଧୁ ସଙ୍ଗେ
ମତ୍ତେ ବିହରନ୍ତି ସେ ରଙ୍ଗେ ।୨୯
ତାହାର ତଳେ ମହୀପାଳ
ଯେ ପୁର ନାମ ରସାତଳ
ଦୈତ୍ୟ ଦାନବପଣିମାନ
କବଚ କାଳକା ହିରଣ୍ୟ
ଅତ୍ୟନ୍ତ ବଳବନ୍ତ ହୋନ୍ତି
ଦେବଙ୍କୁ ଦ୍ରୋହି ସେ ଚଳନ୍ତି
ସକଳ ଲୋକର କାରଣ
ମହାପୁରୁଷ ନାରାୟଣ
ମହାନୁଭବ ସେ ଯେ ହରି
ତାହାଙ୍କ ଅତିତେଜେ କରି
ପ୍ରତିହତ ବଳ ସେ ଦାନବେ
ସେ ସ୍ଥଳେ ଥାନ୍ତି ଉଦବେଗେ
ଇନ୍ଦ୍ରର ଦୂତୀ ବାକ୍ୟ ଶୁଣି
ଭିତେ୍ୟ ଡରନ୍ତି ନୃପମଣି ।୩୦।

ତତୋଽଧସ୍ତାତ୍ ପାତାଳେ ନାଗଲୋକପତୟୋ ବାସୁକିପ୍ରମୁଖାଃ ଶଙ୍ଖକୁଳିକ ମହାଶଙ୍ଖଶ୍ୱେତଧନଞ୍ଜୟଧୃତରାଷ୍ଟ୍ର ଶଙ୍ଖଚୂଡ଼ କମ୍ବଳାଶ୍ୱତରଦେବଦତ୍ତାଦୟୋ ମହାଭୋଗିନୋ ମହାମର୍ଷା ନିବସନ୍ତି । ଯେଷାମୁହ ବୈ ପଞ୍ଚସପ୍ତଦଶଶତସହସ୍ରଶୀର୍ଷାଣାଂ ଫଣାସୁ ବିରଚିତା ମହାମଣୟୋ ରୋଚିଷ୍ଣବଃ ପାତାଳବିବରତିମିରନିକରଂ ସ୍ୱରୋଚିଷା ବିଧମନ୍ତି । ୩୧ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ବିବରଗୋପବର୍ଣ୍ଣନଂ ନାମ ଚତୁର୍ବିଂଶୋଽଧ୍ୟାୟଃ । ୨୪ ।

---

ଥରେ ଅସୁରମାନେ ଦେବତାମାନଙ୍କର ଧେନୁ ଅପହରଣ କରି ଲୁଚାଇ ରଖିଥିଲେ, ସେତେବେଳେ ଇନ୍ଦ୍ର ଏହି ଧେନୁ ଖୋଜିବାକୁ ନିଜର କୁକୁରୀ ସରମାକୁ ପ୍ରେରଣ କଲେ, ଅସୁରମାନେ ସନ୍ଧିକରିବା ଅଭିଳାଷରେ ସରମାକୁ ପ୍ରଶ୍ନକଲେ ତୁମ୍ଭେ କାହିଁକି ଆଗମନ କରିଅଛ ? ସେ ସନ୍ଧିକରିବାର ଇଚ୍ଛା ନ କରି ଇନ୍ଦ୍ରଙ୍କର ସ୍ତୁତି ବାକ୍ୟ ଉଚ୍ଚାରଣ କଲା ଓ କହିଲା ଇନ୍ଦ୍ର ଅନ୍ୟାନ୍ୟ ଅସୁରମାନଙ୍କୁ ବଧ କରିଅଛନ୍ତି, ତୁମ୍ଭେ ପଳାୟନ କର , ସେମାନେ ଏହି ମନ୍ତ୍ରରୂପ ବାକ୍ୟରେ ଭୀତ ହୋଇଥିଲେ । ୩୦ ।

(ପାତାଳ) ତହିଁର ଅଧୋଭାଗରେ ପାତାଳରେ ବାସୁକି ପ୍ରଭୃତି ନାଗଲୋକ ପତିମାନେ ଏବଂ ଶଙ୍ଖ, କୁଳିକ, ମହାଶଙ୍ଖ, ଶ୍ୱେତ, ଧନଞ୍ଜୟ, ଧୃତରାଷ୍ଟ୍ର, ଶଙ୍ଖଚୂଡ଼, କମ୍ବଳ, ଅଶ୍ୱତର ଓ ଦେବଦତ୍ତାଦି କୋପନ ସ୍ୱଭାବ, ମହାସର୍ପାଦିମାନେ ବାସ କରନ୍ତି । ସେମାନଙ୍କର ପାଞ୍ଚ, ସାତ, ଦଶ, ବା, ଶତ ବା ସହସ୍ର ଫଣାଅଛି, ସେମାନଙ୍କର ଫଣାରେ ଯେଉଁ ଉଜ୍ଜ୍ୱଳମଣି ବିଦ୍ୟମାନ, ତହିଁର କିରଣରେ ପାତାଳ ବିବରର ଅନ୍ଧକାର ଅପସାରିତ ହୁଏ । ୩୧ ।

---

ଏହାର ଉତ୍ତରେ ପାତାଳ
ତହିଁ ଅଛନ୍ତି ନାଗକୁଳ
ବାସୁକି ଆଦି ନାଗବର
ଶଙ୍ଖ କୁଳିକ ଯେ କମ୍ବଳ
ମହାଶଙ୍ଖ ଯେ ଆଉ ଶ୍ୱେତ
ଧନଞ୍ଜୟ ଯେ ଦେବଦତ୍ତ
ଧୃତରାଷ୍ଟ୍ର ଯେ ଶଙ୍ଖଚୂଡ଼
ଯେ ମହାଭୋଗୀ ଅଶ୍ୱତର

ଏ ଯେତେ ମହା ଭୋଗିମାନେ
ବସନ୍ତି ପାତାଳଭୁବନେ
ପଞ୍ଚ ସପତଦଶ ଶିର
ଅନେକ ଫଣା ତାହାଙ୍କର
ଏହାଙ୍କ ମହାମଣିମାନ
ପ୍ରକାଶେ ଆଦିତ୍ୟ ଯେସନ
ପାତାଳ ବିବର ତମର
ସ୍ୱତେଜେ କରନ୍ତି ଯେ ଦୂର ।୩୧।

ପଞ୍ଚମସ୍କନ୍ଧେ ଏ ବର୍ଣ୍ଣନ
ସୁଜନେ ସାବଧାନେ ଶୁଣ
କହଇ ଜଗନ୍ନାଥ ଦାସ
ଭାଷା ପ୍ରବନ୍ଧେ ସୁଧାରସ
କୃଷ୍ଣ ଚରଣେ ମନ ଦିଅ
ସୁଜନେ ନିତ୍ୟେ ଏହା ଗାଅ
କୃଷ୍ଣ ପଦାରବିନ୍ଦରସ
ସ୍ନେହରେ କରି ଏହା ଗ୍ରାସ ॥



**ଭାବାର୍ଥ :—**

ଏହି ଚତୁର୍ବିଂଶ ଅଧ୍ୟାୟରେ ସୂର୍ଯ୍ୟ ମଣ୍ଡଳ, ଚନ୍ଦ୍ରମଣ୍ଡଳ ଗ୍ରହ ନକ୍ଷତ୍ର ମଣ୍ଡଳ ପ୍ରଥମେ ବର୍ଣ୍ଣିତ ହୋଇଅଛି । ତଦନନ୍ତର ପୃଥିବୀର ନିମ୍ନଦେଶସ୍ଥ ସାତଗୋଟି ଭୂବିବର ଅର୍ଥାତ୍ ଅତଳ, ବିତଳ, ସୁତଳ ତଳାତଳ, ମହାତଳ, ରସାତଳ ଓ ପାତାଳ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ଏହି ପ୍ରତ୍ୟେକ ବିବରର ଶୋଭା ଐଶ୍ୱର୍ଯ୍ୟ ଏବଂ ଅଧିବାସୀ ଓ ତତ୍ରତ୍ୟ ଅଧିପତିମାନଙ୍କର ବୃତ୍ତାନ୍ତ ବର୍ଣ୍ଣିତ ହୋଇଅଛି, ବଳୀବାମନ ପ୍ରସଙ୍ଗ ଅଷ୍ଟମ ସ୍କନ୍ଧରେ ବର୍ଣ୍ଣିତ ହେବ, ମାତ୍ର ଏଠାରେ ତାହାର ସୂଚନାମାତ୍ର ଦିଆ ଯାଇଅଛି, ବଳୀରାଜା ଅସୁରବଂଶ ସମ୍ଭୂତ ହେଲେ ମଧ୍ୟ ସେ ଦାନଶୀଳ । ସେ ପ୍ରହ୍ଲାଦର ବଂଶଧର, ସେ ଭଗବତ୍ କୃପାପାତ୍ର ହୋଇଥିଲେ, ଇନ୍ଦ୍ରପଦ ଲାଭକରିବାକୁ ସେ ଦାନରତ ହୋଇଥିଲେ, ବାମନରୂପଧାରୀ ଭଗବାନ ବିଷ୍ଣୁ, ବଳୀର ଦାନଗର୍ବ ଖର୍ବ କରିବା ନିମିତ୍ତ ଦାନପ୍ରାର୍ଥୀ ହୋଇଥିଲେ, ବୃହସ୍ପତି ଦେବଗୁରୁ ଓ ଇନ୍ଦ୍ରଙ୍କର ମନ୍ତ୍ରଣା ଦାତା, ଶୁକ୍ର ଦୈତ୍ୟଗୁରୁ ଏବଂ ଅସୁରରାଜ ବଳୀଙ୍କର ମନ୍ତ୍ରଣାଦାତା, ଶୁକ୍ର ବିଷ୍ଣୁମାୟା ବୁଝିପାରି ବଳୀଙ୍କୁ ବାମନଙ୍କୁ ଦାନ ଦେବାରୁ ନିବୃତ୍ତ କରିବାର ଚେଷ୍ଟା କରିଥିଲେ । ମାତ୍ର ବଳୀ ଏ ସୁଯୋଗ ନ ହରାଇ ଭଗବାନଙ୍କୁ ପ୍ରାର୍ଥିତ ତ୍ରିପାଦ ଭୂମି ଦାନ କରିବାକୁ ପ୍ରତିଶ୍ରୁତ ହୋଇଥିଲେ, ବଳୀ ଭଗବଦ୍ ଭକ୍ତରୂପେ ସୁତଳରେ ନାରାୟଣଙ୍କ ଶ୍ରୀଚରଣରେ ସ୍ଥାନଲାଭ କରିଥିଲେ ଏବଂ ସ୍ୱୟଂ ନାରାୟଣ ଗଦାହସ୍ତରେ ବଳୀର ଦ୍ୱାରଦେଶରେ ପ୍ରହରୀ ରୂପେ ନିଯୁକ୍ତ । ଇନ୍ଦ୍ରପଦ ଓ ଭଗବଦ୍ ପଦଲାଭ, ଉଭୟ ମଧ୍ୟରେ କିଏ ଶ୍ରେଷ୍ଠ ? ଏହି ପ୍ରସଙ୍ଗ ଉଲ୍ଲେଖକରି ବଳୀ ଦେବଗୁରୁ ବୃହସ୍ପତିଙ୍କ ମନ୍ତ୍ରଣାକୁ ଧିକ୍କାର କରିଥିଲେ । ଏହି ବଳୀ ବାମନ ପ୍ରସଙ୍ଗରୁ ଜଣାଯାଏ ମନୁଷ୍ୟ ଭଗବତ୍ ଚରଣାରବିନ୍ଦରେ ତାହାର ସର୍ବସ୍ୱ ସମର୍ପଣ ନ କରିବା ଯାଏ ତାହାର ଅଭିମାନ ଦୂର ହୁଏନାହିଁ ଏବଂ ସେ ଭଗବଦ୍ ପାଦପଦ୍ମରେ ସ୍ଥାନ ଲାଭ କରିବାକୁ ସମର୍ଥ ହୁଏ ନାହିଁ, କେବଳ ଆତ୍ମନିବେଦନ ବା ଆତ୍ମସମର୍ପଣ ଦ୍ୱାରାହିଁ ଭଗବତ୍ ପ୍ରାପ୍ତି ସମ୍ଭବ ହୋଇପାରେ ।

ଏହି ଅଧ୍ୟାୟରେ ମୟଦାନବ ପ୍ରସଙ୍ଗ ମଧ୍ୟ ଉଲ୍ଲେଖ କରାଯାଇଅଛି; ଏହି ମୟଦାନବ ଅସୁରମାନଙ୍କ ମଧ୍ୟରେ ମାୟାରେ ଶ୍ରେଷ୍ଠ । ମାୟାଦ୍ୱାରା ସେ ବହୁ ସୃଷ୍ଟି କରିପାରେ, ସେ ଶିବଭକ୍ତ, ତେଣୁ ବିଷ୍ଣୁ ଚକ୍ର ବା ସୁଦର୍ଶନଚକ୍ରର କବଳରୁ ପରିତ୍ରାଣ ପାଇଅଛି; ଏହି ମୟଦାନବ କଥା ଖାଣ୍ଡବବନ ଦହନ ପ୍ରସଙ୍ଗରେ ମହାଭାରତରେ ଦେଖାଯାଏ, ଏହି ମୟଦାନବ ଅସୁରମାନଙ୍କମଧ୍ୟରେ ବିଶ୍ୱକର୍ମା ବା ପ୍ରଧାନ ଶିଳ୍ପୀ, ସେ ପାଣ୍ଡବମାନଙ୍କ ନିମିତ୍ତ ବିଚିତ୍ର ସଭାଗୃହ ନିର୍ମାଣ କରିଥିଲେ ।

ଏହି ଅଧ୍ୟାୟରେ ବିଭିନ୍ନ ନାଗଲୋକ ଓ ବିଭିନ୍ନ ନାଗ ବାସୁକି ପ୍ରଭୃତିଙ୍କ ପ୍ରସଙ୍ଗ ମଧ୍ୟ ଉଲ୍ଲେଖ କରା ଯାଇଅଛି ।



## ପ ଞ୍ଚ ବିଂ ଶ ଅ ଧ୍ୟା ୟ ।

ପଞ୍ଚବିଂଶେ ତତୋଽଧସ୍ତାଦାହ ଶେଷସ୍ୟ ସଂସ୍ଥିତିମ୍ ।
ଯଜ୍ଜିହ୍ୱାର୍ଷୋଋଦଂ କାଲେ ଯତୋ ରୁଦ୍ର ସମୁଦ୍ଭବଃ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀଶୁକ ଉବାଚ ।

ତସ୍ୟ ମୂଳଦେଶେ ତ୍ରିଂଶଦ୍ୟୋଜନସହସ୍ରାନ୍ତର ଆସ୍ତେ ଯା ବୈ କଳା ଭଗବତ-ସ୍ତାମସୀ ସମାଖ୍ୟାତା ଅନନ୍ତ ଇତି ସାତ୍ୱତୀୟା ଦ୍ରଷ୍ଟୃଦୃଶ୍ୟୟୋଃ ସଙ୍କର୍ଷଣମହମିତ୍ୟଭି-ମାନଲକ୍ଷଣଂ ଯଂ ସଙ୍କର୍ଷଣ ଇତ୍ୟାଚକ୍ଷ୍ୟତେ । ୧ ।

ଯସ୍ୟେଦଂ କ୍ଷିତିମଣ୍ଡଳଂ ଭଗବତୋଽନନ୍ତମୂର୍ତ୍ତେଃ ସହସ୍ରଶିରସ ଏକସ୍ମିନ୍ନେବ ଶୀର୍ଷଣି ଧ୍ରିୟମାଣଂ ସିଦ୍ଧାର୍ଥ ଇବ ଲକ୍ଷ୍ୟତେ । ୨ ।

---

### ଅନନ୍ତ ଦେବଙ୍କର ଅବସ୍ଥିତି ବର୍ଣ୍ଣନ ।

ପଞ୍ଚବିଂଶ ଅଧ୍ୟାୟରେ ପାତାଳରେ ଶେଷଦେବଙ୍କର ସଂସ୍ଥାନ ବର୍ଣ୍ଣନା କରାଯାଇ ଅଛି ।

ଶ୍ରୀଶୁକଦେବ କହିଲେ :—

ପାତାଳର ମୂଳଦେଶରେ ତ୍ରିଂଶସହସ୍ର ଯୋଜନ ଦୂରରେ ଭଗବାନଙ୍କର ତାମସୀ କଳା ବାସ କରୁଅଛନ୍ତି, ସେ ଅନନ୍ତ ନାମରେ ଆଖ୍ୟାତ, ତାହାଙ୍କୁ ବାସୁଦେବ ଭକ୍ତମାନେ ସଙ୍କର୍ଷଣ ବୋଲି କହିଥାଆନ୍ତି, କାରଣ ସେ ଦ୍ରଷ୍ଟା ଓ ଦୃଶ୍ୟ ଉଭୟଙ୍କୁ ଆକର୍ଷଣ କରି ଏକୀଭୂତ କରିଅଛନ୍ତି, ଏପରି କରିବାର କାରଣ ଏହି ଯେ ମନୁଷ୍ୟର ଯେଉଁ ଅହଂତ୍ୱ ବା ଅଭିମାନ ବା ଅହଂକାର ଅଛି, ସେ ତହିଁର ଅଧିଷ୍ଠାତା । ୧ ।

ବିଷ୍ଣୁଭକ୍ତମାନେ ଭଗବାନଙ୍କର ଚତୁର୍ବିଧ ବ୍ୟୂହ କଳ୍ପନା କରନ୍ତି ଯଥା, ପ୍ରଦ୍ୟୁମ୍ନ, ଅନିରୁଦ୍ଧ, ବାସୁଦେବ ଓ ସଙ୍କର୍ଷଣ । ଅନନ୍ତ ମୂର୍ତ୍ତି ସହସ୍ର ଶୀର୍ଷା ଏହି ଭଗବାନଙ୍କର ଏକମାତ୍ର ମସ୍ତକରେ ଧୃତ ହୋଇ କ୍ଷିତିମଣ୍ଡଳ ସର୍ଷ ତୁଲ୍ୟ ଲକ୍ଷିତ ହୁଏ । ୨ ।

---

ପାତାଳେ ଥିବା ସଙ୍କର୍ଷଣ । ଚରିତ ସଂକ୍ଷେପେ ବର୍ଣ୍ଣନ । ॰ ।

ଶ୍ରୀ ଶୁକଉବାଚ—
ତାହାର ତଳେ ହେ ରାଜନ
ତିରିଶ ସହସ୍ର ଯୋଜନ
ତାମସୀ କଳା ଯେ ବିଶେଷ
ଅନନ୍ତ ନାମେ ଯେ ପ୍ରକାଶ
ଯେ ବିଷ୍ଣୁ ଅଂଶବନ୍ତ ହୋଇ
ସଙ୍କରଷଣ ନାମ ବହି
ଅନନ୍ତ ମୂରତି ଠାକୁର
ସହସ୍ର ମସ୍ତକ ତାହାର
ତାହାର ଏକଇ ଶିରରେ
ମହୀମଣ୍ଡଳ ଅଛି ସ୍ଥିରେ ।୧,୨।

ଯସ୍ୟ ହ ବା ଇଦଂ କାଳେନୋପସଂଜିହୀର୍ଷତୋଽମର୍ଷବିରଚିତରୁଚିରଭ୍ରମଦ୍‌ଭ୍ରୁବୋରନ୍ତରେଣ ସଙ୍କର୍ଷଣୋ ନାମ ରୁଦ୍ର ଏକାଦଶବ୍ୟୂହସ୍ତ୍ର୍ୟକ୍ଷସ୍ତ୍ରିଶିଖଂ ଶୂଳମୁତ୍ତମ୍ଭୟନ୍ନୁଦତିଷ୍ଠତ୍ । ୩ ।

ଯସ୍ୟାଙ୍ଘ୍ରିକମଳଯୁଗଳାରୁଣବିଶଦନଖମଣିଷଣ୍ଡମଣ୍ଡଳେଷ୍ୱାଦର୍ଶେଷ୍ୱିହପତୟଃ ସହ ସାତ୍ୱତର୍ଷଭୈରେକାନ୍ତଭକ୍ତିଯୋଗେନାବନମନ୍ତଃ ସ୍ୱବଦନାନି ପରିସ୍ଫୁରତ୍‌କୁଣ୍ଡଳପ୍ରଭାମଣ୍ଡିତଗଣ୍ଡସ୍ଥଳାନ୍ୟତିମନୋହରାଣି ପ୍ରମୁଦିତମନସଃ ଖଳୁ ବିଲୋକୟନ୍ତି । ୪ ।

ଯସ୍ୟୈବ ହି ନାଗରାଜକୁମାର୍ଯ୍ୟ ଆଶିଷ ଆଶାସାନାଶ୍ଚାର୍ବଙ୍ଗବଳୟବିଳସିତବିଶଦବିପୁଳଧବଳସୁଭଗରୁଚିରଭୁଜରଜତସ୍ତମ୍ଭେଷ୍ୱଗୁରୁଚନ୍ଦନକୁଙ୍କୁମପଙ୍କାନୁଲେପନାବଲି-

---

ଯେତେବେଳେ ପ୍ରଳୟକାଳ ଉପସ୍ଥିତ ହୁଏ, ସେତେବେଳେ ଏହି ସମଗ୍ର ବିଶ୍ୱକୁ ସେ ସଂହାର କରିବାକୁ ଇଚ୍ଛା କରନ୍ତି, ସେତେବେଳେ ତାହାଙ୍କର ଭ୍ରୂଦ୍ୱୟ କ୍ରୋଧରେ କୁଟିଳତାପ୍ରାପ୍ତ ହେଲେ ତହିଁ ମଧ୍ୟରେ ଏକାଦଶ ବ୍ୟୂହ ଓ ତ୍ରିଲୋଚନ ସଙ୍କର୍ଷଣ ନାମକ ରୁଦ୍ରଦେବ ଆବିର୍ଭୂତ ହୋଇ ତ୍ରିଶୂଳ ଉତ୍ତୋଳନ କରି ସଂହାର କରିବାକୁ ଉଦ୍ୟତ ହୁଅନ୍ତି । ୩ ।

ପ୍ରଭୁ ଅନନ୍ତଦେବଙ୍କର ପାଦପଦ୍ମଯୁଗଳରେ ଅରୁଣବର୍ଣ୍ଣ ନିର୍ମଳ ନଖ ମଣି ସମୂହ ଦର୍ପଣରୂପେ ବିରାଜିତ । ଭକ୍ତ ଶ୍ରେଷ୍ଠମାନେ ଓ ନାଗପତିଗଣ ଏକାନ୍ତ ଭକ୍ତିଯୋଗରେ ସେଠାରେ ଅବନତ ଥାଆନ୍ତି, ସେତେବେଳେ ସମୁଜ୍ଜ୍ୱଳ କୁଣ୍ଡଳମାନଙ୍କର ପ୍ରଭାମଣ୍ଡଳ ଦ୍ୱାରା ମଣ୍ଡିତ ଗଣ୍ଡସ୍ଥଳ ସମନ୍ୱିତ ଅତିମନୋହର ସେମାନଙ୍କର ବଦନ ଏହି ନଖମଣି ଦର୍ପଣରେ ପ୍ରତିଫଳିତ ହେଲେ ସେମାନେ ହୃଷ୍ଟଚିତ୍ତରେ ତାହା ଅବଲୋକନ କରିଥାଆନ୍ତି । ୪ ।

ନାଗ ରାଜକୁମାରୀଗଣ ଭୋଗ୍ୟବସ୍ତୁ ଆକାଂକ୍ଷାରେ ଅନନ୍ତଦେବଙ୍କର ଭୁଜ ସମୂହରେ ଅଗୁରୁ, ଚନ୍ଦନ, ଓ କୁଙ୍କୁମ ପଙ୍କ ଅନୁଲେପନ କରିଥାଆନ୍ତି । ତାହାଙ୍କର ଶୁଭ୍ର ଅଙ୍ଗ ମଣ୍ଡଳରେ ବିଳସିତ ବିଶଦ ବିପୁଳ ଧବଳ, ସୁଭଗ, ରୁଚିରଭୁଜ ସମୂହ ରଜତ ସ୍ତମ୍ଭ ତୁଲ୍ୟ ଲକ୍ଷିତ ହୁଏ, ସେହି କାଳେବେଳେ ତାହାଙ୍କର ଅଙ୍ଗ ସ୍ପର୍ଶ ହେତୁ ନାଗକୁମାରୀଙ୍କର ହୃଦୟରେ କାମାବେଶ ହେଲେ ସେମାନଙ୍କର ବଦନରେ ରୁଚିର ଓ

---

ଯେ ସୃଷ୍ଟି କରଇ ସଂହାର
ଭ୍ରୂକୁଟି କରିଣ କରାଳ
ଏକାଦଶ ରୁଦ୍ର ଯେ ହୋଇ
ସଂକରଷଣ ଯେ ବୋଲାଇ
ତିନି ଲୋଚନ ତିନି ଶିର
ପ୍ରଚଣ୍ଡ ଶୂଳଟି ଯାହାର । ୩ ।
ଭକ୍ତିରେ ଅହିପତି ମାନ
ଯାହାରେ କରନ୍ତେ ବନ୍ଦନ
ତାହାର ପାଦ ଯେ କମଳ
ବିରାଜେ ନଖର ମଣ୍ଡଳ

ନଖ ମଣିରେ ଶିରପନ୍ତି
ଚନ୍ଦ୍ରକୁ ଜିଣି ଦିଶେ କାନ୍ତି
କୁଣ୍ଡଳପ୍ରଭାରେ ମଣ୍ଡିତ
ଗଣ୍ଡଯୁଗଳ ହୃଷ୍ଟ ଚିତ୍ତ
ତାହାଙ୍କ ଚରଣାର ବିନ୍ଦେ
ଚକ୍ଷୁ ନିଟେବିଶନ୍ତେ ଆନନ୍ଦେ
ପରମ ଯୋଗ ଭକ୍ତି ମତେ
ଉଦିତ ହୋଏ ହୃଦଗତେ ।୪।
ଯାହାକୁ ବିବିଧ ବିଧାନେ
ସେବନ୍ତି ନାଗପତ୍ନୀମାନେ

ଯେ ଧରେ ରୂପ ମନୋହର
ବିଶୁଦ୍ଧ ଧବଳ ଶରୀର
ବିପୁଳ ବକ୍ଷସ୍ଥଳ ତାର
କୁଙ୍କୁମ ଚନ୍ଦନେ ରୁଚିର
ହିଳ ମୂଷଳ କରେ ଯାର
କି ଅବା ଦେବା ପଟାନ୍ତର
ରଜତ ସ୍ତମ୍ଭ ଭୁଜ ଦୁଇ
ମନ୍ଦ ସ୍ମିତରେ ଯେ ମୋହଇ
ମଦେ ମୁଦ୍ରିତ ଯେ ଲୋଚନ
ଢଳୁଣ୍ଡି ଅରୁଣ ନୟନ

ଶ୍ରୀମାନାସ୍ତଦଭିମର୍ଷଣୋନ୍ମଥିତହୃଦୟମକରଧ୍ୱଜାବେଶରୁଚିରଲଳିତସ୍ମିତାସ୍ତଦନୁରାଗମଦମୁଦିତମଦାବିଘୂର୍ଣ୍ଣିତାରୁଣକରୁଣାବଲୋକନୟନବଦନାରବିନ୍ଦଂ ସବ୍ରୀଡ଼ଂ କିଳ ବିଲୋକୟନ୍ତି । ୫ ।

ସ ଏଷ ଭଗବାନନନ୍ତୋ ଗୁଣାର୍ଣ୍ଣବ ଆଦିଦେବ ଉପସଂହୃତାମର୍ଷରୋଷବେଗୋ ଲୋକାନାଂ ସ୍ୱସ୍ତୟ ଆସ୍ତେ । ୬ ।

ଧ୍ୟାୟମାନଃ ସୁରାସୁରୋରଗସିଦ୍ଧଗନ୍ଧର୍ବବିଦ୍ୟାଧରମୁନିଗଣୈରନବରତମଦମୁଦିତବିକୃତବିହ୍ୱଳଲୋଚନଃ ସୁଲଳିତମୁଖରିକାମୃତେନାପ୍ୟାୟମାନଃ ସ୍ୱପାର୍ଷଦବିବୁଧୟୂଥପତୀନପରିମ୍ଳାନରାଗନବତୁଳସିକାମୋଦମଧ୍ୱାସବେନ ମାଦ୍ୟନ୍ମଧୁକରବ୍ରାତମଧୁରଗୀତଶ୍ରିୟଂ ବୈଜୟନ୍ତୀଂ ସ୍ୱାଂ ବନମାଲାଂ ନୀଳବାସା ଏକକୁଣ୍ଡଳୋ ହଳକକୁଦି କୃତସୁଭଗସୁନ୍ଦରଭୁଜୋ ଭଗବାନ୍ ମହେନ୍ଦ୍ରବାରଣେନ୍ଦ୍ର ଇବ କାଞ୍ଚନୀଂ କକ୍ଷ୍ୟାମୁଦାରଲୀଳୋ ବିଭର୍ତ୍ତି । ୭ ।

---

ଲଳିତହାସ୍ୟ ପ୍ରକଟିତ ହୁଏ । ସେତେବେଳେ ସେମାନେ ଅନୁରାଗ ଓ ମଦଭରରେ ମୁଦିତ, ମଦ ବିଘୂର୍ଣ୍ଣିତ ଅରୁଣ ଓ କରୁଣ ଦୃଷ୍ଟି ଯୁକ୍ତ ନୟନଯୁଗଳରେ ଶୋଭମାନ ଭଗବାନଙ୍କର ମୁଖାରବିନ୍ଦକୁ ସଲଜ୍ଜ ଭାବରେ ନିରୀକ୍ଷଣ କରିଥାନ୍ତି । ୫ ।

ଅନନ୍ତ ଗୁଣସାଗର ଭଗବାନ ଆଦିଦେବ ଅନନ୍ତ କରୁଣାକରି ଅସହିଷ୍ଣୁତା ପ୍ରସୂତ କ୍ରୋଧବେଗ ସମ୍ବରଣ କରି ଲୋକମାନଙ୍କ ମଙ୍ଗଳ ନିମିତ୍ତ ବିରାଜମାନ କରୁଅଛନ୍ତି । ୬ ।

ସେହି ଭଗବାନଙ୍କୁ ସୁର, ଅସୁର, ନାଗଲୋକ, ସିଦ୍ଧ, ଗନ୍ଧର୍ବ, ବିଦ୍ୟାଧର ଓ ମୁନିମାନେ ଧ୍ୟାନ କରୁ ଅଛନ୍ତି, ଭଗବାନଙ୍କର ଲୋଚନଦ୍ୱୟ ସର୍ବଦା ମଦଭରରେ ମୁଦ୍ରିତ, ବିକୃତ ଓ ବିହ୍ୱଳ, ସେ ସୁଲଳିତ ବଚନାମୃତ ଦ୍ୱାରା ନିଜର ପାର୍ଷଦ ଦେବ ଯୂଥପତିମାନଙ୍କୁ ଆପ୍ୟାୟିତ କରିଥାନ୍ତି । ସେ ନୀଳବସନ, ଏକ କୁଣ୍ଡଳଧାରୀ ହଳପୃଷ୍ଠ ଅର୍ଥାତ୍ ତାହାଙ୍କର ପୃଷ୍ଠ ଦେଶରେ ଗୋଟିଏ ଶୁଭଗ ଓ ସୁନ୍ଦର ଭୁଜ ନ୍ୟସ୍ତ ରହିଅଛି, ମଧୁକରଗଣ ଅମ୍ଳାନକାନ୍ତି ନବ ନବ ତୁଳସୀଦଳର ସୁରଭି ମଧୁର ରସରେ ଉନ୍ମତ୍ତ ହୋଇ ମଧୁର ଗୀତ ଆଳାପ ପୂର୍ବକ ବନମାଳାର ଶୋଭା ଧାରଣ କରିଅଛନ୍ତି । ବନମାଳୀ ଭଗବାନଙ୍କୁ ଦର୍ଶନ କଲେ ପ୍ରତୀତ ହୁଏ, ଯେପରି ଇନ୍ଦ୍ରଙ୍କର ବାରଣେନ୍ଦ୍ର ଐରାବତ କାଞ୍ଚନମୟୀ ରଜ୍ଜୁ ଧାରଣ କରି ଅବସ୍ଥାନ କରୁଅଛି ।୭।

---

ସେ ଯେ ଅନନ୍ତ ଭଗବାନ
ଅନନ୍ତ ଗୁଣର ନିଧାନ
ସେ ଆଦି ଦେବ ଯେ ଈଶ୍ୱର
କ୍ରୋଧକୁ କରିଣ ସଂହାର
ଲୋକପାଳନ ନିମନ୍ତରେ
ତିଷ୍ଠି ଅଛନ୍ତି ସେ ଠାକୁରେ ।୫,୬
ଉରଗ ସୁର ଯେ ଅସୁର
ସିଦ୍ଧ ଗନ୍ଧର୍ବ ବିଦ୍ୟାଧର
ଅଶେଷ ମୁନିଗଣ ଯେତେ
ଆନନ୍ଦେ ଯେ ଯାହାର ମତେ
ଅପରେ ପାରିଷଦ ଗଣେ
ସେବନ୍ତି ଯାହାର ଚରଣେ
ନବ ତୁଳସୀ ପୁଷ୍ପସାର
ଗନ୍ଧ ଆମୋଦେ ଯେ ପ୍ରଖର
ପୁଷ୍ପେ ମଧୁକର ନିକର
ଧ୍ୱନି କରନ୍ତି ମନୋହର
ବନମାଳାଏ କଣ୍ଠେ ଧରି
କୁଣ୍ଡଳ ଅତି ମନୋହାରୀ
ସୁନ୍ଦର ଲମ୍ବେ ଭୁଜମାନ
ମହେନ୍ଦ୍ର ବାରଣ ଯେସନ ।୭।

ଯ ଏଷ ଏବମନୁଶ୍ରୁତୋଽଭିଧ୍ୟାୟମାନୋ ମୁମୁକ୍ଷୂଣାମନାଦିକାଲକର୍ମବାସନାଗ୍ରଥିତମବିଦ୍ୟାମୟଂ ହୃଦୟଗ୍ରନ୍ଥିଂ ସତ୍ତ୍ୱରଜସ୍ତମୋମୟମନ୍ତର୍ହୃଦୟଂ ଗତ ଆଶୁ ନିର୍ଭିନତ୍ତି । ତସ୍ୟାନୁଭାବାନ୍ ଭଗବାନ୍ ସ୍ୱାୟମ୍ଭୁବୋ ନାରଦଃ ସହ ତୁମ୍ବୁରୁଣା ସଭାୟାଂ ବ୍ରହ୍ମଣଃ ସଂଶ୍ଲୋକୟାମାସ । ୮ ।

ଉତ୍ପତ୍ତିସ୍ଥିତିଲୟହେତବୋଽସ୍ୟ କଲ୍ପାଃ ସତ୍ତ୍ୱାଦ୍ୟାଃ ପ୍ରକୃତିଗୁଣା ଯଦୀକ୍ଷୟାସନ୍
ଯଦ୍ରୂପଂ ଧ୍ରୁବମକୃତଂ ଯଦେକମାତ୍ମନ୍ ନାନାଧାତ୍ କଥମୁ ହ ବେଦ ତସ୍ୟ ବର୍ତ୍ମ । ୯ ।
ମୂର୍ତ୍ତିଂ ନ ପୁରୁକୃପୟା ବଭାର ସତ୍ତ୍ୱଂ ସଂଶୁଦ୍ଧଂ ସଦସଦିଦଂ ବିଭାତି ଯତ୍ର ।
ଯଲ୍ଲୀଲାଂ ମୃଗପତିରାଦଦେଽନବଦ୍ୟାମାଦାତୁଂ ସ୍ୱଜନମନାଂସ୍ୟୁଦାରବୀର୍ଯ୍ୟଃ ।୧୦।

---

ମୁମୁକ୍ଷୁଗଣ ଭଗବାନଙ୍କର ଏହି ବିଷୟ ଶ୍ରବଣ ଓ ଧ୍ୟାନ କଲେ ଭଗବାନ ସେମାନଙ୍କର ହୃଦୟ ମଧ୍ୟରେ ପ୍ରବିଷ୍ଟ ହୋଇ ଅନାଦିକାଳ କର୍ମ ଓ ବାସନା ଗ୍ରଥିତ ସତ୍ତ୍ୱ, ରଜଃ, ତମଃ, ଯୁକ୍ତ ଅବିଦ୍ୟାମୟ ହୃଦୟଗ୍ରନ୍ଥିକୁ ଅବିଳମ୍ବେ ଛେଦନ କରିଥାନ୍ତି; ବ୍ରହ୍ମାଙ୍କ ପୁତ୍ର ନାରଦ ବୀଣା ସହିତ ବ୍ରହ୍ମାଙ୍କ ସଭାରେ ନିମ୍ନଲିଖିତ ରୂପେ ଏହି ଅନନ୍ତଦେବଙ୍କର ଗୁଣ କୀର୍ତ୍ତନ କରିଥିଲେ । ୮ ।

ଏହି ଜଗତର ଉତ୍ପତ୍ତି, ସ୍ଥିତି, ଓ ଲୟର ଏକମାତ୍ର କାରଣ ସତ୍ତ୍ୱ, ରଜଃ, ତମଃ, ଏହି ପ୍ରକୃତି ଗୁଣ ସମୂହ ଯାହାଙ୍କର ସାକ୍ଷୀ ହେତୁ ନିଜ ନିଜ କାର୍ଯ୍ୟର ସୃଷ୍ଟି, ସ୍ଥିତି, ଓ ଲୟ ବିଷୟରେ ସାମର୍ଥ୍ୟ ଲାଭ କରିଥାଏ, ଯାହାଙ୍କର ସ୍ୱରୂପ ଧ୍ରୁବ ବା ଅନ୍ତହୀନ ଏବଂ ଯେ ଅନାଦି ଏକମାତ୍ର ହୋଇ ସୁଦ୍ଧା ଆପଣାମଧ୍ୟରେ ନାନାକାର୍ଯ୍ୟ ପ୍ରପଞ୍ଚ ସୃଷ୍ଟି କରିଥାଆନ୍ତି, ସେହି ବ୍ରହ୍ମ ସ୍ୱରୂପର ତତ୍ତ୍ୱ କ୍ଷୁଦ୍ର ମାନବ କିପରି ବୁଝିବାକୁ ସମର୍ଥ ହେବ । ୯ ।

ଯେଉଁ ଭଗବାନଙ୍କଠାରେ ସତ୍ ଓ ଅସଦାତ୍ମକ ସମଗ୍ର ବିଶ୍ୱ ପ୍ରକାଶିତ ହୋଇଥାଏ, ସେହି ଭଗବାନ୍ ଭକ୍ତମାନଙ୍କପ୍ରତି ଅସୀମ କରୁଣା ବଶତଃ ନିର୍ମଳ ଶୁଦ୍ଧ ସତ୍ତ୍ୱ ସ୍ୱରୂପ ମୂର୍ତ୍ତି ପରିଗ୍ରହ କରିଥାଆନ୍ତି, ମୃଗପତି ସିଂହ, ନିଜ ଜାତିର ବଶୀକରଣ ନିମିତ୍ତ ଉଦାର କାର୍ଯ୍ୟ ଧାରଣ କରିଥାଆନ୍ତି । ଯେଉଁ ଭଗବାନଙ୍କର ଅନବଦ୍ୟ ଲୀଳା କିଞ୍ଚିତ୍‌ମାତ୍ର ଅନୁକରଣ କରିବାକୁ ସମର୍ଥ ହୋଇଅଛି, (ସେହି ମୂର୍ତ୍ତି ଧାରଣ କରି ଭଗବାନ୍ ଓ ଭକ୍ତର ଉପାସନା ଯୋଗ୍ୟ ହୋଇଥାନ୍ତି )। ୧୦ ।

---

ଧ୍ୟାନ ଶ୍ରବଣ ଯୋଗ ସାରେ
ମୁକ୍ତ ହେଲନ୍ତି ଯା ମନରେ
କଳିକଳୁଷ କର୍ମଗ୍ରନ୍ଥି
ଅବିଦ୍ୟା ନାଶ ଯେ କରନ୍ତି
ଶ୍ରଦ୍ଧା ଆରତେ ସେବା ଜନ
ସେତେବେ କରିବ ସୁମରଣ

ଯେ ଏହା କରନ୍ତି ସକଳ
କରୁଣା ବହେ ଆଦିମୂଳ
ଯାହାର ଅନୁଭବମାନ
ନାରଦମୁନି ହେ ରାଜନ
ବ୍ରହ୍ମା ସଭାରେ ବିସ୍ତାରିଲେ
ସକଳେ ଶୁଣି ନିସ୍ତରିଲେ । ୮ ।

ଯାହାର କଟାକ୍ଷକୁ ପାଇ
ଉତ୍ପତ୍ତି ସ୍ଥିତି ଲୟ ହୋଇ
ଯାର ମୂରତି କୃପାମୟୀ
ସତ ଅସତ ଯାର ଦେହୀ
ସୁଜନ ମନ ହରିବାରେ
ମୃଗେନ୍ଦ୍ର ପ୍ରାୟ ଲୀଳାକରେ ।୯,୧୦

ଯନ୍ନାମ ଶ୍ରୁତମନୁକୀର୍ତ୍ତୟେଦକସ୍ମାଦାର୍ତ୍ତୋ ବା ଯଦି ପତିତଃ ପ୍ରଲମ୍ଭନାଦ୍‌ବା ।
ହନ୍ତ୍ୟଂହଃ ସପଦି ନୃଣାମଶେଷମନ୍ୟଂ କଂ ଶେଷାଦ୍‌ଭଗବତ ଆଶ୍ରୟେନ୍ମୁମୁକ୍ଷୁଃ ।୧୧।
ମୂର୍ଦ୍ଧନ୍ୟର୍ପିତମଣୁବତ୍ ସହସ୍ରମୂର୍ଦ୍ଧ୍ନୋ ଭୂଗୋଳଂ ସଗିରିସରିତ୍ ସମୁଦ୍ରସତ୍ତ୍ୱମ୍ ।
ଆନନ୍ତ୍ୟାଦମିତବିକ୍ରମସ୍ୟ ଭୂମ୍ନଃ କୋ ବୀର୍ଯ୍ୟାଣ୍ୟପି ଗଣୟେତ୍ ସହସ୍ରଜିହ୍ୱଃ ।୧୨।
ଏବମ୍ପ୍ରଭାବୋ ଭଗବାନନନ୍ତୋ ଦୁରନ୍ତବୀର୍ଯ୍ୟୋରୁଗୁଣାନୁଭାବଃ ।
ମୂଲେ ରସାୟାଃ ସ୍ଥିତ ଆତ୍ମତନ୍ତ୍ରୋ ଯୋ ଲୀଳୟା କ୍ଷ୍ମାଂ ସ୍ଥିତୟେ ବିଭର୍ତ୍ତି ।୧୩।
ଏତା ହ୍ୟେବେହ ନୃଭିରୁପଗନ୍ତବ୍ୟା ଗତୟୋ ଯଥାକର୍ମ୍ମ ବିନିର୍ମ୍ମିତା ଯଥୋପଦେଶମନୁବର୍ଣ୍ଣିତାଃ କାମାନ୍ କାମୟମାନୈଃ ।୧୪।

---

ଯାହାଙ୍କର ନାମ ପୂର୍ବେ ଶ୍ରବଣ କରି ପରେ ଆର୍ତ୍ତ ବା ପତିତ ବ୍ୟକ୍ତି ଅକସ୍ମାତ୍ ବା ପରିହାସରେ ସୁଦ୍ଧା କୀର୍ତ୍ତନ କରିଥାଏ ଅଧଲୋକର ପାପ ସହସା ନଷ୍ଟ ହୋଇଯାଏ, ସେହି ଭଗବାନ୍ ସଙ୍କର୍ଷଣଙ୍କୁ ଛାଡ଼ି ମୁମୁକ୍ଷୁବ୍ୟକ୍ତି ଆଉ କାହାର ଆଶ୍ରୟ ଗ୍ରହଣ କରିବ । ୧୧ ।

ଯେଉଁ ଭଗବାନ୍ ସହସ୍ର ଶୀର୍ଷା ସଙ୍କର୍ଷଣଙ୍କ ଶିରୋଭାଗରେ ପର୍ବତ ନଦୀ ସମୁଦ୍ର ଓ ଅଶେଷ ପ୍ରାଣୀ ଯୁକ୍ତ ଭୂମଣ୍ଡଳ ଅଣୁତୁଲ୍ୟ ଅର୍ପିତ ହୋଇଅଛି ଅନନ୍ତତା ହେତୁ ଅପରିମିତ ବିକ୍ରମଶାଳୀ ବ୍ୟାପକ ସ୍ୱରୂପ ସେହି ଭଗବାନ ସଙ୍କର୍ଷଣଙ୍କ ମାହାତ୍ମ୍ୟ କେଉଁବ୍ୟକ୍ତି ସହସ୍ର ଜିହ୍ୱା ଯୁକ୍ତ ହେଲେ ମଧ୍ୟ ଗଣନା କରିବାକୁ ସମର୍ଥ ହେବ । ୧୨ ।

ଏହିପରି ପ୍ରଭାବ ସମ୍ପନ୍ନ ଅସାଧାରଣ ବୀର୍ଯ୍ୟ, ଅସୀମଗୁଣ ଓ ଅନୁଭବ ଯୁକ୍ତ ଭଗବାନ ଅନନ୍ତ ରସାତଳର ଅଧୋଭାଗରେ ସ୍ୱାଧୀନ ଭାବରେ ଅବସ୍ଥାନ କରି ସ୍ଥିତି ନିମିତ୍ତ ଅବଲୀଳାକ୍ରମେ ପୃଥିବୀକୁ ଧାରଣ କରି ଅଛନ୍ତି । ୧୩ ।

ହେ ରାଜନ୍ ! ମୁଁ ଯେପରି ଉପଦେଶ ପାଇଅଛି, ସେହିପରି ତୁମ୍ଭ ନିକଟରେ ବର୍ଣ୍ଣନା କଲି, କର୍ମାନୁସାରେ କାମ କାମୀ ନରଗଣ ସେହି ଗତିସମୂହ ଓ ସ୍ଥାନସମୂହ ଲାଭ କରିଥାନ୍ତି । ୧୪ ।

---

ଯାହାର ନାମ ସୁମରଣ
ଶ୍ରବଣ କୀର୍ତ୍ତନ ରାଜନ !
ଘୋର ଦୁର୍ଗମେ ନର ଥାଇ
ଯେବେ ଆରତେ ସୁମରଇ
ଆପଦ ଯାଇ ତାର ହରି
ସକଳ ପାପୁ ହୋଇ ପାରି
ଆଶ୍ରୟ ହୋଇଲେ ତାହାର
ମୋକ୍ଷକୁ ଲଭେ ସେ ଢଉର ।୧୧
ଭୂଗୋଳ ନାନା ନଦୀ ଗିରି
ଦ୍ୱୀପ ସମୁଦ୍ର ଆଦିକରି

ଯାହାର ଉପରେ ଜଗତ
ସ୍ଥିରେ ଅଛଇ ସଶ୍ରଷିତ
ଅତିବିକ୍ରମ ସେ ପୁରୁଷ
କେ କହୁ ତା ରୂପ ବିଶେଷ
ଯେ ଆତ୍ମତନ୍ତ୍ର ଭଗବାନ
ତାର ଅଶେଷ ଗୁଣଗ୍ରାମ
ଯେ ଧରିଅଛି ବିଶ୍ୱଭର
ଲୀଳାମାତ୍ରରେ ଏ ସଂସାର
ଏମନ୍ତ ପ୍ରଭାବ ଯାହାର
ଦୁରନ୍ତବୀର୍ଯ୍ୟ ସେଠାକୁର ।୧୨,୧୩

ଏବେ କହିଲୁ ଜୀବଗତି
କର୍ମରୁ ଯେ ଯାହା ଭୁଞ୍ଜନ୍ତି
ଯାହାର ସ୍ଥାନଟି ଯେମନ୍ତ
ସକଳ କହିଲୁ ବିଦିତ
ଯାହାର ଯେମନ୍ତ ଲକ୍ଷଣ
ଯେ ଧର୍ମ ଯାର ଆଚରଣ
ଯେ ଉଚ୍ଚ ନୀଚ ଜୀବଜନ୍ତୁ
ଯାହାର ଯେ କର୍ମ ଯେ ହେତୁ
ତୁମ୍ଭ ପ୍ରଶ୍ନ ଅନୁସାରେ
ସକଳ କହିଲୁ ତୁମ୍ଭରେ

ଏତାବତୀହି ରାଜନ୍ ପୁଂସଃ ପ୍ରବୃତ୍ତିଲକ୍ଷଣସ୍ୟ ଧର୍ମସ୍ୟ ବିପାକଗତୟ ଉଚ୍ଚାବଚା ବିସଦୃଶା ଯଥାପ୍ରଶ୍ନଂ ବ୍ୟାଚଖ୍ୟେ କିମନ୍ୟତ୍ କଥୟାମୀତି । ୧୫ ।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ସଙ୍କର୍ଷଣମାହାତ୍ମ୍ୟଂ ନାମ ପଞ୍ଚବିଂଶୋଽଧ୍ୟାୟଃ । ୨୫ ।

---

ହେ ରାଜନ୍ ! ଯେଉଁ ପୁରୁଷମାନେ ପ୍ରବୃତ୍ତି ମାର୍ଗରେ ବିଚରଣ କରନ୍ତି, ସେମାନେ ନିଜର କର୍ମଫଳ ସ୍ୱରୂପ ବିସଦୃଶ ଉଚ୍ଚ ନୀଚ ଗତି ଉତ୍ପନ୍ନ ହୋଇ ଥାଆନ୍ତି, ତୁମ୍ଭର ପ୍ରଶ୍ନାନୁସାରେ ମୁଁ ଏହି ବର୍ଣ୍ଣନା କରିଅଛି ବର୍ତ୍ତମାନ୍ ଆଉ କେଉଁ ପ୍ରସଙ୍ଗ କହିବି କହନ୍ତୁ । ୧୫ ।

---

| | |
|---|---|
| ଏବେ କି ତୁମ୍ଭ ଅଭିଳାଷ | ଅଖିଳ ବ୍ରହ୍ମାଣ୍ଡଠାକୁର |
| ଅପରେ କହିବୁଁ ବିଶେଷ । ୧୪, ୧୫ | ଅନାଦି ଅବ୍ୟକ୍ତ ଈଶ୍ୱର |
| କହଇ ଜଗନ୍ନାଥ ଦାସ | ସେ ପ୍ରଭୁ ଚରଣେ ମୋ ମତି |
| ହରିଚରିତ ସୁଧାରସ | ଅନୁ ବ୍ରତରେ ହେଉ ସ୍ଥିତି |



**ବିଶଦାର୍ଥ :—**

ଏହି ଅଧ୍ୟାୟରେ ଭଗବାନ ସଙ୍କର୍ଷଣଙ୍କର ଅନନ୍ତମୂର୍ତ୍ତି ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି, ଏବଂ ସେହି ଅନନ୍ତ ମୂର୍ତ୍ତିଙ୍କର ଅବସ୍ଥାନ କ୍ଷେତ୍ରମଧ୍ୟ କଥିତ ହେଲା, ସେହି ସଙ୍କର୍ଷଣ ଦେବ ଦୃଶ୍ୟ ଓ ଦ୍ରଷ୍ଟା ଉଭୟଙ୍କୁ ଆକର୍ଷଣକରି ଏକୀଭୂତ କରୁଥିବାରୁ ତାହାଙ୍କର ଏପରି ନାମକରଣ ହୋଇଅଛି । ଏହିଠାରେ ନାଗକନ୍ୟାଗଣ ସେହି ଅନନ୍ତ ବାସୁଦେବଙ୍କର ସେବାରେ ରତ । ସେମାନେ ଅତ୍ୟନ୍ତ ଭାଗ୍ୟବତୀ, ଯାହାଙ୍କର ସ୍ୱରୂପ ଚିନ୍ତା କରିବାକୁ ପୁଣି ଯୋଗୀମାନେ ଅକ୍ଷମ, ତାହାଙ୍କୁ ନିୟତ ସେବା କରିବାର ସୁଯୋଗ ସେମାନେ ଲାଭ କରି ଅଛନ୍ତି । ସେହି ଅନନ୍ତଦେବ ସତ୍ତ୍ୱ, ରଜଃ, ତମଃ, ଓ ତତ୍ ପ୍ରସୂତ ସୃଷ୍ଟି, ସ୍ଥିତି, ଲୟର ଏକମାତ୍ର ହେତୁ ଓ ନିୟନ୍ତା, ଦେବର୍ଷି ନାରଦ ବ୍ରହ୍ମସଭାରେ ତାହାଙ୍କର ଗୁଣ କିଞ୍ଚିତ୍ ମାତ୍ର କୀର୍ତ୍ତନ କରି କହିଥିଲେ ସହସ୍ର ଜିହ୍ୱା ହେଲେ ମଧ୍ୟ କୌଣସି ବ୍ୟକ୍ତି ସେହି ଅସୀମ ଗୁଣ ଓ ଶକ୍ତିର ଗଣନା ବା ବର୍ଣ୍ଣନା କରି ନ ପାରେ । ଏହି ଅଧ୍ୟାୟରେ ସିଂହ କିମ୍ବୁତ ପରିମାଣରେ ସେହି ଭଗବତ୍ ଶକ୍ତିର ଅନୁକରଣ କରି ନିଜର ଜାତିକୁ ବଶୀକରଣ କରିବାର ପ୍ରସଙ୍ଗ ଉଲ୍ଲେଖ କରାଯାଇ ଅଛି । ଏହା ନୃସିଂହାବତାରେ ଯାହାକି ପରବର୍ତ୍ତୀସ୍କନ୍ଧରେ ବର୍ଣ୍ଣିତ ହୋଇଅଛି ତାହାର ପୂର୍ବ ସୂଚନା ମାତ୍ର । ସିଂହୀ ବା ସିଂହ ଅନ୍ୟାନ୍ୟ ପଶୁଙ୍କ ପ୍ରତି ଭୀଷଣ ହେଲେ ମଧ୍ୟ ନିଜର ଶାବକ ମାନଙ୍କ ପ୍ରତି କରୁଣ ହୃଦୟ, ସେହିପରି ନୃସିଂହ ମୂର୍ତ୍ତି ଭଗବାନ ହିରଣ୍ୟକଶ୍ୟପୁ ପ୍ରତି କ୍ରୋଧ ପରବଶ ହୋଇଥିଲେ ମଧ୍ୟ ଭକ୍ତପ୍ରବର ପ୍ରହ୍ଲାଦ ପ୍ରତି ସକରୁଣ, ଓଡ଼ିଆ କବି ଗୋବିନ୍ଦଭଞ୍ଜ ( ୧୮୮୦ ଖ୍ରୀଷ୍ଟାବ୍ଦ ) ଏହି ନୃସିଂହଙ୍କର ଚକ୍ଷୁ ଦ୍ୱୟଙ୍କୁ ସୂର୍ଯ୍ୟ ଚନ୍ଦ୍ରରୂପେ ଅତି ସରଳ ପ୍ରାଞ୍ଜଳ ଭାଷାରେ ବର୍ଣ୍ଣନା କରି ଅଛନ୍ତି ।—

ଚନ୍ଦ୍ର ସୂର୍ଯ୍ୟ ଅଟଇ ତାହାର ବେନିଆକ୍ଷି, ସୂର୍ଯ୍ୟ ଚକ୍ଷୁ ଘେନିଣ ଗୋ ଦଇତକୁ ଦେଖି ।
ଚନ୍ଦ୍ର ଚକ୍ଷୁ ଘେନି ପ୍ରହଲାଦ କୁ ଅନାଇ, ଭଗତଙ୍କର ଆନନ୍ଦ କରିବାର ପାଇଁ ॥ ( ରାମଗାଥା )



ବିଭିନ୍ନ ନରକର ଚିତ୍ର ।

## ଷ ଡ଼୍ ବିଂ ଶ ଅ ଧ୍ୟା ୟ ।

ଷଡ଼୍‌ବିଂଶେ ତୁ ତତୋଧସ୍ତାନ୍ନରକସ୍ଥିତିରୁଚ୍ୟତେ ।
ପାପିନୋ ଯତ୍ର ଦଣ୍ଡ୍ୟନ୍ତେ ଯମଦୂତୈର୍ଯଥାଯଥମ୍ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀ ରାଜୋବାଚ ।

ମହର୍ଷ ଏତଦ୍‌ବୈଚିତ୍ର୍ୟଂ ଲୋକସ୍ୟ କଥମିତି । ୧ ।

ଶ୍ରୀ ଋଷିରୁବାଚ ।

ତ୍ରିଗୁଣତ୍ୱାତ୍ କର୍ତ୍ତୁଃ ଶ୍ରଦ୍ଧୟା କର୍ମ୍ମଗତୟଃ ପୃଥଗ୍‌ବିଧାଃ ସର୍ବା ଏବ ସର୍ବସ୍ୟ ତାରତମ୍ୟେନ ଭବନ୍ତି । ୨ ।

---

### ନରକ ବର୍ଣ୍ଣନା ।

ଷଡ଼୍‌ବିଂଶ ଅଧ୍ୟାୟରେ ନରକର ସ୍ଥିତି ବର୍ଣ୍ଣନା କରାଯାଇ ଅଛି, ଯେଉଁଠାରେ
ଯମଦୂତମାନେ ପାପିମାନଙ୍କୁ ସମୁଚିତ ଦଣ୍ଡ ବିଧାନ କରନ୍ତି ।୦।

ଶ୍ରୀରାଜା କହିଲେ :—

ହେ ମହର୍ଷେ ! ଲୋକମାନଙ୍କର ଏପରି ବିଚିତ୍ରଗତି କାହିଁକି ହେଲା, ତାହା ମୋତେ କହନ୍ତୁ । ୧ ।

ଶ୍ରୀଋଷି (ଶ୍ରୀ ଶୁକଦେବ) କହିଲେ :—

ସକଳ ମନୁଷ୍ୟ କର୍ମ କରୁଥିଲେ ମଧ୍ୟ ସେମାନଙ୍କର କର୍ମ ଏକପରି ନୁହେ, କାରଣ ଯେ କର୍ମ ଅନୁଷ୍ଠାନ କରନ୍ତି ସେହି କର୍ତ୍ତା ସାତ୍ତ୍ୱିକ, ରାଜସ ଓ ତାମସ ଭେଦରେ ତିନିପ୍ରକାର; ସୁତରାଂ ସେମାନଙ୍କର ଶ୍ରଦ୍ଧା ମଧ୍ୟ ତିନିପ୍ରକାର, ସାତ୍ତ୍ୱିକୀ ଶ୍ରଦ୍ଧା ସହକାରେ କର୍ମାନୁଷ୍ଠିତ ହେଲେ ତାହାର ଫଳ ସୁଖ । ରାଜସୀ ଶ୍ରଦ୍ଧା ସହ କର୍ମାନୁଷ୍ଠିତ ହେଲେ ତାହାର ଫଳ ଦୁଃଖ ଓ ମୋହ, ପୁଣି ଏକବ୍ୟକ୍ତିର ସବୁ ସମୟରେ ଏକପ୍ରକାର ଶ୍ରଦ୍ଧା ନ ଥାଏ । ସୁତରାଂ ଶ୍ରଦ୍ଧାର ତାରତମ୍ୟ ଅନୁସାରେ ବିଭିନ୍ନବ୍ୟକ୍ତିର ଗତିର ତାରତମ୍ୟ ହୋଇଥାଏ ।୨।

---

ଷଡ଼୍‌ବିଂଶେ ନରକ ବିଧାନ । ଯେ ପାପେ ଯେଉଁ ଦଣ୍ଡମାନ । ୦ ।

ଶ୍ରୀ ରାଜୋବାଚ—

ବିଚିତ୍ର ଗତି ଲୋକଙ୍କର
ତୁମ୍ଭେ କହିଲ ମୁନିବର !
ଏକଥା ସଂଶୟ ମୋ ମନେ
ଏବେ କହିବା ବିଦ୍ୟମାନେ ।୧।

ଶ୍ରୀ ଶୁକଉବାଚ—

ତ୍ରିଗୁଣେ ବିଚିତ୍ର ହୁଅଇ .
ରାଜନ ! ଶୁଣ ମନ ଦେଇ
କର୍ତ୍ତାର ମତେ ଫଳପାଇ
ଶ୍ରଦ୍ଧା ଅଶ୍ରଦ୍ଧା ଭେଦ ହୋଇ ।
ସକଳ ଏକତ୍ର ହୋଇ
କେବେହେଁ କେହ ନ ଲଭଇ ।୨।

ଅଥେଦାନୀଂ ପ୍ରତିଷିଦ୍ଧଲକ୍ଷଣସ୍ୟାଧର୍ମସ୍ୟ ତଥୈବ କର୍ତ୍ତୁଃ ଶ୍ରଦ୍ଧାୟା ବୈସାଦୃଶ୍ୟାତ୍ କର୍ମଫଲଂ ବିସଦୃଶଂ ଭବତି ଯା ହ୍ୟନାଦ୍ୟବିଦ୍ୟାକୃତକାମନାଂ ତତ୍ପରିଣାମଲକ୍ଷଣାଃ ସୃତୟଃ ସହସ୍ରଶଃ ପ୍ରବୃତ୍ତାସ୍ତାସାଂ ପ୍ରାଚୁର୍ଯ୍ୟେଣାନୁବର୍ଣ୍ଣୟିଷ୍ୟାମଃ । ୩ ।

ଶ୍ରୀରାଜୋବାଚ—ନରକା ନାମ ଭଗବନ୍ କିଂ ଦେଶବିଶେଷା ଅଥବା ବହିସ୍ତ୍ରିଲୋକ୍ୟା ଆହୋସ୍ୱିଦନ୍ତରାଳ ଇତି । ୪ ।

ଶ୍ରୀ ଋଷିରୁବାଚ—ଅନ୍ତରାଳ ଏବ ତ୍ରିଜଗତ୍ୟାସ୍ତୁ ଦିଶି ଦକ୍ଷିଣସ୍ୟାମଧସ୍ତାଦ୍‌ଭୂମେରୁପରିଷ୍ଟାଚ୍ଚ ଜଲାଦ୍ ଯସ୍ୟାମଗ୍ନିଷ୍ୱାତ୍ତାଦୟଃ ପିତୃଗଣା ଦିଶି ସ୍ୱାନାଂ ଗୋତ୍ରାଣାଂ ପରମେଣ ସମାଧିନା ସତ୍ୟା ଏବାଶିଷ ଆଶାସାନା ନିବସନ୍ତି । ୫ ।

---

ଶାସ୍ତ୍ରରେ ଯେଉଁ ସମସ୍ତ କାର୍ଯ୍ୟ ନିଷିଦ୍ଧ ଅଛି ତାହା ଅନୁଷ୍ଠାନ କଲେ ଅଧର୍ମ ହୁଏ, ଏସ୍ଥଳରେ ମଧ୍ୟ ପୂର୍ବବତ୍ କର୍ତ୍ତାର ଶ୍ରଦ୍ଧାର ତାରତମ୍ୟ ହେତୁ ଦୁଃଖ ରୂପ କର୍ମ ଫଳର ତାରତମ୍ୟ ହୋଇଥାଏ । ଜୀବର ଅବିଦ୍ୟାବଦ୍ଧ ବନ୍ଧନ ନାନାବିଧ କୁବାସନା ହେତୁ ଉତ୍ପନ୍ନ ହୋଇଥାଏ, ସେହି କୁବାସନାର ପରିଣାମ ସ୍ୱରୂପ ସହସ୍ର ସହସ୍ର ନରକଗତି ନିର୍ଦ୍ଦିଷ୍ଟ ହୋଇଅଛି । ବର୍ତ୍ତମାନ ସେ ନରକର ବର୍ଣ୍ଣନା କରୁଅଛି ଶ୍ରବଣ କର । ୩ ।

ଶ୍ରୀରାଜା ପରୀକ୍ଷିତ କହିଲେ :—

ହେ ଭଗବନ୍, ନରକ କେଉଁ ସ୍ଥାନରେ, କେଉଁ ଦେଶରେ ବା ତ୍ରିଲୋକର ଅନ୍ତରାଳରେ ଅବସ୍ଥିତ ତାହା ମୋତେ କହନ୍ତୁ । ୪ ।

ଶ୍ରୀଶୁକଦେବ କହିଲେ :—

ତ୍ରିଲୋକ ମଧ୍ୟରେ ଦକ୍ଷିଣ ଦିଗସ୍ଥ ଭୂମିର ନିମ୍ନଦେଶରେ ଏବଂ ଜଳର ଉପରିଭାଗରେ ଯେଉଁଠାରେ ଅଗ୍ନିଷ୍ୱାତ୍ତାଦି ପିତୃଗଣ ପରମ ସମାଧି ଯୋଗରେ ନିଜ ନିଜର ଗୋତ୍ରଜ କ୍ୟକ୍ତିମାନଙ୍କର ମଙ୍ଗଳକାମନା କରି ବାସ କରୁ ଅଛନ୍ତି । ୫ ।

---

ଏଥିଅନ୍ତରେ ଏବେ ଶୁଣ
ନିଷିଦ୍ଧ ଅଧର୍ମ ଲକ୍ଷଣ
ଧର୍ମ ଅଧର୍ମ ବେନି ମତ ;
ଶ୍ରଦ୍ଧା ଅଶ୍ରଦ୍ଧା ଯେ ବିହିତ
ସମାନ କର୍ମଫଳମାନ
କାହାର ନୁହଇ ରାଜନ ।
ଯେତେ ଅବିଦ୍ୟା କାମ୍ୟକର୍ମ
ଏହା ଲକ୍ଷଣ ପରିମାଣ
ଗତି ଯେ ଶତଶତ ମତ
ପ୍ରବୃତ୍ତି ହୋଏ ପରୀକ୍ଷିତ ।
ଏହାର ଗତି ଅଗୋଚର
ବିସ୍ତାରି ବର୍ଣ୍ଣିବୁ ଅପାର । ୩ ।

ଶ୍ରୀ ରାଜୋବାଚ—
ହେମୁନି ତ୍ରିଲୋକ ବାହାରେ
ନରକେ କିବା ଅନ୍ତରାଳେ
କିବା ତ୍ରିଭୁବନ ମଧ୍ୟରେ
କହିବା ସାବଧାନେ ମୋରେ । ୪ ।

ଶ୍ରୀ ଶୁକଉବାଚ—
ତ୍ରୟୀଜଗତ ଅନ୍ତରାଳେ
ଦକ୍ଷିଣଦିଗେ ମହୀତଳେ
ଭୂମିର ତଳେ ଜଳପରେ
ଅଗ୍ନିଷ୍ୱାତ୍ତ ସତ୍ତ୍ୱ ଯହିଁରେ
ସକଳ ପିତୃଗଣ ଯେତେ
ସ୍ୱଗୋତ୍ର କଲ୍ୟାଣ ନିମନ୍ତେ

ଯହିଁ ବସନ୍ତି ହେ ରାଜନ
ତହିଁ ଅନ୍ତକ ଭଗବାନ
ଅନ୍ତେ ଜୀବକୁ ସେ ନିଅନ୍ତି
ଯମ ପୁରୁଷେ ଦଣ୍ଡ ଦିଅନ୍ତି
ଦୋଷ ଯେ କର୍ମ ଅନୁସରି
ଯେ ପ୍ରାଣୀ ଯାହା ଥାଇ କରି
ଭଗବତ ଆଜ୍ଞା ଲଙ୍ଘିଣ
କୁପଥେ ଯେ କରେ ଗମନ
ତାହାଙ୍କୁ ନେଇ ଦଣ୍ଡଧର
ଦଣ୍ଡ ଯେ ଦିଅନ୍ତି ଅପାର । ୫ ।

ଯତ୍ର ହ ବାବ ଭଗବାନ୍ ପିତୃରାଜୋ ବୈବସ୍ୱତଃ ସ୍ୱବିଷୟଂ ପ୍ରାପିତେଷୁ ସ୍ୱପୁରୁଷୈର୍ଜନ୍ତୁଷୂପରତେଷୁ ଯଥାକର୍ମାବଦ୍ୟଂ ଦୋଷମେବାନୁଲ୍ଲଙ୍ଘିତଭଗବଚ୍ଛାସନଃ ସଗଣୋ ଦମଂ ଧାରୟତି । ୬ ।

ତତ୍ର ହୈକେ ନରକାନେକବିଂଶତିଂ ଗଣୟନ୍ତି, ଅଥ ତାଂସ୍ତେ ରାଜନ୍ ନାମରୂପଲକ୍ଷଣତୋଽନୁକ୍ରମିଷ୍ୟାମଃ । ତାମିସ୍ରୋଽନ୍ଧତାମିସ୍ରୋ ରୌରବୋ ମହାରୌରବଃ କୁମ୍ଭୀପାକଃ କାଳସୂତ୍ରମସିପତ୍ରବନଂ ଶୂକରମୁଖମନ୍ଧକୂପଃ କୃମିଭୋଜନଃ ସନ୍ଦଂଶସ୍ତପ୍ତଶୂର୍ମିର୍ବଜ୍ରକଣ୍ଟକ-ଶାଳ୍ମଳୀବୈତରଣୀପୂୟୋଦଃ ପ୍ରାଣରୋଧୋ ବିଶସନଂ ଲାଲାଭକ୍ଷଃ ସାରମେୟାଦନମବୀଚିରୟଃପାନମିତି । କିଞ୍ଚ କ୍ଷାରକର୍ଦ୍ଦମୋ ରକ୍ଷୋଗଣଭୋଜନଃ ଶୂଳପ୍ରୋତୋ ଦନ୍ଦଶୂକୋଽବଟନିରୋଧନଃ ପର୍ଯ୍ୟାବର୍ତ୍ତନଃ ଶୂଚୀମୁଖମିତ୍ୟଷ୍ଟାବିଂଶତିର୍ନରକା ବିବିଧଯାତନାଭୂମୟଃ । ୭ ।

---

ହେ ମହାରାଜ ! ଯେଉଁସ୍ଥାନରେ ସୂର୍ଯ୍ୟ ନନ୍ଦନ ଭଗବାନ୍ ପିତୃରାଜ ଭଗବାନ୍‌ଙ୍କର ଶାସନ ଅତିକ୍ରମ ନ କରି ପାର୍ଷଦଗଣଙ୍କ ସହ ନିଜରାଜ୍ୟକୁ ଆନୀତ ମୃତ ପ୍ରାଣୀମାନଙ୍କର ନିନ୍ଦିତ ଦୋଷଯୁକ୍ତ କର୍ମ ନିମିତ୍ତ ଦଣ୍ଡ ବିଧାନ କରି ଥାଆନ୍ତି । ୬ ।

କୌଣସି କୌଣସି ଋଷି ଏହି ସ୍ଥାନରେ ଏକବିଂଶତି ନରକଥିବାର ଉଲ୍ଲେଖ କରନ୍ତି । ହେ ରାଜନ୍ ! ନାମ, ରୂପ, ଓ ଲକ୍ଷଣାନୁସାରେ ଏହି ନରକମାନଙ୍କର ବିଷୟ ଉଲ୍ଲେଖ କରୁଅଛୁ, ଯଥା ତାମିସ୍ର, ଅନ୍ଧତାମିସ୍ର, ରୌରବ, ମହାରୌରବ, କୁମ୍ଭୀପାକ, କାଳସୂତ୍ର, ଅସିପତ୍ରବନ, ଶୂକରମୁଖ ଅନ୍ଧକୂପ, କୃମିଭୋଜ, ସନ୍ଦଂଶ, ତପ୍ତଶୂର୍ମି, ବଜ୍ରକଣ୍ଟକ, ଶାଳ୍ମଳୀ, ବୈତରଣୀ, ପୂୟୋଦ, ପ୍ରାଣରୋଧ, ବିଶସନ, ଲାଲାଭକ୍ଷ, ସାରମେୟାଦନ, ଅବୀଚି, ଅୟଃପାନ, କ୍ଷାରକର୍ଦ୍ଦମ, ରକ୍ଷୋଗଣଭୋଜନ, ଶୂଳପ୍ରୋତ, ଦନ୍ଦଶୂକ, ଅବଟନିରୋଧନ, ପର୍ଯ୍ୟାବର୍ତ୍ତନ ଓ ସୂଚୀମୁଖ ଉଲ୍ଲିଖିତ ଏକୋଇଶିଟି ଏବଂ ଶେଷୋକ୍ତ ସାତଟି ଏପରି ଅଷ୍ଟାବିଂଶତି ନରକ ଅଛି । ୭ ।

---

ଏକବିଂଶତି ଯେ ବେଦରେ
ନରକେ ଅଛନ୍ତି ଯହିଁରେ
ଏହା ରୂପ ନାମ ଲକ୍ଷଣ
କହିବୁ ଶୁଣ ହେ ରାଜନ
ଅନ୍ଧକୂପ ଯେ ଅସିପତ୍ର
ଶୂକରମୁଖ କାଳସୂତ୍ର
ରୌରବ ମହା ଯେ ନରକ
ଅନ୍ଧତାମିସ୍ର କୁମ୍ଭୀପାକ

ତାମିସ୍ର ଯେ କୃମିଭୋଜନ
ସନ୍ଦଂଶ ତପ୍ତଶୂର୍ମି ନାମ
ବଜ୍ରକଣ୍ଟକ ଶାଳ୍ମଳ
ବୈତରଣୀ ମହାପାଳ ।
ପ୍ରାଣରୋଧ ଯେ ବିଶସନ
ପୂୟୋଦ ସାରମେୟାଦନ
ଲାଲାଭକ୍ଷ ଯେ ଅୟଃପାନ
ଅପରେ ଅବୀଚି ରାଜନ !

ଶୂଳପ୍ରୋତ କ୍ଷାରକର୍ଦ୍ଦମ
ଯେବା ରକ୍ଷୋଗଣ ଭୋଜନ
ଅବଟ ନିରୋଧନ ଆର
ଦଂଦଶୂକ ନାମେ ଅପର
ସୂଚୀମୁଖ ପର୍ଯ୍ୟାବର୍ତ୍ତନ
ଅଷ୍ଟବିଂଶତି ଏହୁ ନାମ
ଏ ଯେ ନରକ ମହାପାପ
ବିବିଧ ଯାତନାର ସ୍ଥଳ ।୬,୭

ତତ୍ର ଯସ୍ତୁ ପରବିତ୍ତାପତ୍ୟକଳତ୍ରାଣ୍ୟପହରତି ସ ହି କାଳପାଶବଦ୍ଧୋ ଯମପୁରୁଷୈରତିଭୟାନକୈସ୍ତାମିସ୍ରେ ନରକେ ବଲାନ୍ନିପାତ୍ୟତେ । ଅନଶନାନପାନଦଣ୍ଡତାଡ଼ନସନ୍ତର୍ଜନାଦିଭିର୍ଯାତନାଭିର୍ଯାତ୍ୟମାନୋ ଜନ୍ତୁର୍ଯତ୍ର କଶ୍ମଲମାସାଦିତ ଏକଦୈବ ମୂର୍ଚ୍ଛାମୁପଯାତି ତାମିସ୍ରପ୍ରାୟେ । ୮ ।

ଏବମେବାନ୍ଧତାମିସ୍ରେ ଯସ୍ତୁ ବଞ୍ଚୟିତ୍ୱା ପୁରୁଷଂ ଦାରାଦୀନୁପଯୁଙ୍କ୍ତେ । ଯତ୍ର ଶରୀରନିପାତ୍ୟମାନୋ ଯାତନାସ୍ଥୋ ବେଦନୟା ନଷ୍ଟମତିର୍ନଷ୍ଟଦୃଷ୍ଟିଶ୍ଚ ଭବତି ଯଥା ବନସ୍ପତିର୍ବୃଶ୍ଚ୍ୟମାନମୂଲସ୍ତସ୍ମାଦନ୍ଧତାମିସ୍ରଂ ତମୁପଦିଶନ୍ତି । ୯ ।

ଯସ୍ତ୍ୱିହ ବା ଏତଦହମିତି ମମେଦମିତି ଭୂତଦ୍ରୋହେଣ କେବଲଂ ସ୍ୱକୁଟୁମ୍ବମେବାନୁଦିନଂ ପ୍ରପୁଷ୍ଣାତି ସ ତଦିହ ବିହାୟ ସ୍ୱୟମେବ ତଦଶୁଭେନ ରୌରବେ ନିପତତି ।୧୦।

---

ହେ ରାଜନ୍ ! ଏମାନଙ୍କ ମଧ୍ୟରେ ଯେଉଁ ପୁରୁଷ ପରଧନ ପରସ୍ତ୍ରୀ, ବା ପରପୁତ୍ର ଅପହରଣ କରେ, ଭୀଷଣାକୃତି ଯମଦୂତମାନେ ତାହାକୁ ଘୋରତର କାଳପାଶରେ ବନ୍ଧନ କରି ବଳପୂର୍ବକ ତାମିସ୍ର ନରକରେ ପକାଇ ଦିଅନ୍ତି, ସେହି ଅନ୍ଧକାର ନରକରେ ପଡ଼ି ପ୍ରାଣୀ କ୍ଷୁଧା, ତୃଷ୍ଣା, ଦଣ୍ଡ, ତାଡ଼ନ, ଓ ସନ୍ତର୍ଜନ ଆଦି ଯାତନାରେ ନିପୀଡ଼ିତ ହୋଇ, ବହୁ ଦୁଃଖ ପ୍ରାପ୍ତ ହୁଏ ଏବଂ ତତ୍‌କ୍ଷଣାତ୍ ମୂର୍ଚ୍ଛିତ ହୁଏ, ଯେଉଁ ବ୍ୟକ୍ତି ନିଜର ପ୍ରଭୁକୁ ବଞ୍ଚନା କରି ତାହାର ଭାର୍ଯ୍ୟାକୁ ଉପଭୋଗ କରେ ସେ ଛିନ୍ନମୂଳ ବୃକ୍ଷତୁଲ୍ୟ ଅନ୍ଧତାମିସ୍ର ନରକରେ ପତିତ ହୁଏ, ସେହି ଯାତନାସ୍ଥାନରେ ନିପତିତ ହେଲେ ପ୍ରାଣୀ ବେଦନାରେ ଚକ୍ଷୁ ଓ ବୁଦ୍ଧି ହରାଏ, ତେଣୁ ଏହି ନରକର ନାମ ଅନ୍ଧତାମିସ୍ର ଅର୍ଥାତ୍ ଏଠାରେ ଅନ୍ଧହୋଇଯାଆନ୍ତି ।୮।୯

ଯେଉଁ ବ୍ୟକ୍ତି ଏହି ଶରୀରହିଁ ଶ୍ରେଷ୍ଠ, ଏହି ଅଭିମାନରେ ଅନ୍ୟପ୍ରାଣୀ ଦ୍ରୋହକରେ ଏବଂ ନିଜର କୁଟୁମ୍ବବର୍ଗକୁ ପୋଷଣ କରେ, ସେ ବ୍ୟକ୍ତି ଏହି ଦେହ ଓ କୁଟୁମ୍ବ ପରିତ୍ୟାଗକରି ନିଜେ ପାପହେତୁ ରୌରବ ନରକରେ ପତିତ ହୁଏ । ୧୦ ।

---

ପରସ୍ତ୍ରୀ ଅପତ୍ୟ ଧନ
ଯେ ପ୍ରାଣୀ କରଇ ହରଣ,
ସେ କାଳପାଶେ ବନ୍ଦୀ ହୋଇ
ଯମପୁରେ ଦୁଃଖ ପାଇ
ତାମିସ୍ର ନରକେ ପଡ଼ଇ
ନାନା ଯାତନା ସେ ଭୁଞ୍ଜଇ
କ୍ଷୁଧା ପିପାସାରେ ପୀଡ଼ିତ
ହୋଇ ସେ ଦଣ୍ଡରେ ତାଡ଼ିତ ।

ନାନା ତର୍ଜନା ଯେ ପ୍ରହାର
ଯେତେକ ଯାତନା ଭୟଙ୍କର
ପରମକଷ୍ଟ ପାଇ ତହିଁ
କ୍ଷଣ କ୍ଷଣକେ ମୋହ ଯାଇ ।୮।
ଅନ୍ଧତାମିସ୍ରେ ଏ ପ୍ରକାରେ
ଯାତନା ପ୍ରାଣୀ ଭୋଗକରେ
କପଟେ ପରଦାର ହରି
ତେବେ ତାମିସ୍ରୁ ନ ତରୁରି

ତେବେ ପଡ଼ଇ ସେ ଯେ ତହିଁ
ଯାତନା ପେଷୁରେ ବୁଡ଼ଇ
ନଷ୍ଟ ହୁଅଇ ମତି ତାର
ଦୃଷ୍ଟି ନାଶଇ ନସବର ।୯।
ମୁହିଁ ମୋହର ଭାବବହି
ପ୍ରାଣିଦ୍ରୋହକୁ ଯେ କରଇ
କୁଟୁମ୍ବପାଇଁ ହିଂସା ବହି
ସେ ପ୍ରାଣୀ ରୌରବେ ପଡ଼ଇ ।୧୦

ଯେ ତ୍ୱିହ ଯଥୈବାମୁନା ବିହିଂସିତା ଜନ୍ତବଃ ପରତ୍ର ଯମଯାତନା ଉପଗତଂ ତ ଏବ ରୁରବୋ ଭୂତ୍ୱା ତଥା ତମେବ ବିହିଂସନ୍ତି ତସ୍ମାଦ୍ରୌରବମିତ୍ୟାହୂଃ ରୁରୁରିତି ସର୍ପାଦତିକ୍ରୂରସତ୍ତ୍ୱସ୍ୟାପଦେଶଃ । ୧୧ ।

ଏବମେବ ମହାରୌରବୋ ଯତ୍ର ନିପତିତଂ ପୁରୁଷଂ କ୍ରବ୍ୟାଦା ନାମ ରୁରବସ୍ତଂ କ୍ରବ୍ୟେଣ ଘାତୟନ୍ତି ଯଃ କେବଲଂ ଦେହମ୍ଭରଃ । ୧୨ ।

ଯସ୍ତ୍ୱିହ ବା ଉଗ୍ରଃ ପଶୂନ୍ ପକ୍ଷିଣୋ ବା ପ୍ରାଣତ ଉପରନ୍ଧୟତି ତମପକରୁଣଂ ପୁରୁଷାଦୈରପି ବିଗର୍ହିତମମୁତ୍ର ଯମାନୁଚରାଃ କୁମ୍ଭୀପାକେ ତପ୍ତତୈଲେ ଉପରନ୍ଧୟନ୍ତି ।୧୩।

ଯସ୍ତ୍ୱିହ ବ୍ରହ୍ମଧ୍ରୁକ୍ ସ କାଲସୂତ୍ରସଂଜ୍ଞକେ ନରକେ ଅୟୁତଯୋଜନପରିମଣ୍ଡଳେ ତାମ୍ରମୟେ ତପ୍ତେ ଖଲେ ଉପର୍ୟଧସ୍ତାଦଗ୍ନ୍ୟର୍କାଭ୍ୟାମତିତପ୍ୟମାନେଽଭିନିବେଶିତଃ

---

ସେ ଏହି ପୃଥିବୀରେ ଯେଉଁ ଜନ୍ତୁଙ୍କ ପ୍ରତି ଯେପରି ଦୁର୍ବ୍ୟବହାର କରିଥାଏ, ସେ ସ୍ୱକୃତ, କର୍ମ ଦୋଷରେ ପରଲୋକରେ ଯମଯାତନା ସହ୍ୟକରେ । ସେହି ହିଂସିତ ପ୍ରାଣୀମାନେ ରୁରୁରୂପରେ ତାହାକୁ ହିଂସା କରିଥାନ୍ତି, ( ସର୍ପ ପ୍ରଭୃତି ନିଷ୍ଠୁର ପ୍ରାଣୀମାନଙ୍କୁ ରୁରୁ ବୋଲିଯାଏ ) । ୧୧ ।

ମହା ରୌରବନରକ ମଧ୍ୟ ଏହିପରି, ଯେଉଁବ୍ୟକ୍ତି ପରଦ୍ରୋହକରି ନିଜର ଦେହ ପୋଷଣ କରେ ସେ ମହାରୌରବ ନରକରେ ପତିତ ହୁଏ, କ୍ରବ୍ୟାଦନାମକ ରୁରୁମାନେ ମାଂସ ଖାଇଁ ତାହାକୁ ଯାତନା ଦିଅନ୍ତି । ୧୨ ।

ଯେ ଉଗ୍ରସ୍ୱଭାବ ବ୍ୟକ୍ତି ଇହଲୋକରେ ପଶୁ ଓ ପକ୍ଷୀମାନଙ୍କୁ ନିଜର ଉଦର ପୋଷଣ ଲାଗି ବଧ କରି ସେମାନଙ୍କର ମାଂସ ଭକ୍ଷଣ କରେ ସେହି ନିର୍ଦ୍ଦୟ ରାକ୍ଷସ ପ୍ରକୃତିର ଲୋକକୁ ପରକାଳରେ ଯମଦୂତ ଗଣ କୁମ୍ଭୀପାକ ନରକରେ ତପ୍ତତେଲ କୁଣ୍ଡରେ ନିକ୍ଷେପ କରନ୍ତି । ୧୩ ।

ଯେଉଁବ୍ୟକ୍ତି ଏହି ସଂସାରରେ ବ୍ରାହ୍ମଣମାନଙ୍କ ପ୍ରତି ଦ୍ରୋହଆଚରଣ କରେ ସେ କାଳସୂତ୍ର ନାମକ ନରକରେ ପତିତ ହୁଏ, ଏହି ନରକର ପରିଧି ଅୟୁତ ଯୋଜନ, ଏହା ଗୋଟିଏ ତପ୍ତସମତଳ ତାମ୍ର ଖଣ୍ଡ, ପାପୀ ଏହି ନରକରେ ପଡି ତାହାର ଦେହ ଭିତରେ ବାହାରେ ଓ ଊର୍ଦ୍ଧ୍ୱରେ ସୂର୍ଯ୍ୟ ତାପ ଅଗ୍ନିତେଜରେ

---

ଯେ ଜୀବ ହିଂସନ୍ତି ସଂସାରେ
ତାହାକୁ ପର ଯେ ଲୋକରେ
ରୌରବମୂର୍ତ୍ତି ଜୀବ ହୋଇ
ସେଠାରେ ତାହାକୁ ହିଂସଇ ।୧୧
ମହାରୌରବ ଏହି ମତ
ଯହିଁ କ୍ରୂର ଜୀବ ବସତ
ତହିଁରେ ଯେ ପାପୀ ପଡ଼ଇ
ରୌରବ କ୍ରବ୍ୟାଦ ତା ଖାଇ ।୧୨

ଯେ ନର ପଶୁ ପକ୍ଷିମାନ
ପ୍ରାଣ ଥାଉଁ କରେ ରନ୍ଧନ
ରାକ୍ଷସ ବଳ ସେହି ହୋଇ
କୁମ୍ଭୀପାକରେ ସେ ପଡ଼ଇ
ତପତ ତଇଳେ ତାହାର
ରନ୍ଧନ ହୁଅଇ ଶରୀର ।୧୩।
କାଳସୂତ୍ର ନରକ ନାମ
ବିସ୍ତାର ଅୟୁତ ଯୋଜନ

ତାମ୍ର ମୟ ଯେ ଭୂମି ତାର
ଉପରେ ଥାଇ ଯେ ସୂର୍ଯ୍ୟର
ଅଧୋଭାଗରେ ଅଗ୍ନି ଥାଇ
ଏମନ୍ତ ନରକେ ପଡ଼ଇ
ଯେ ନର ବ୍ରହ୍ମହତ୍ୟା କରେ
ସେ ତହିଁ ପଡ଼ଇ ଜର୍ଜ୍ଜରେ
ତପତ ସୁବର୍ଣ୍ଣ ଫୁଟଇ
ତହିଁ ସେ ଦଗଧି ହୁଅଇ

କ୍ଷୁତ୍‌ପିପାସାଭ୍ୟାଞ୍ଚ ଦହ୍ୟମାନାନ୍ତର୍ବହିଃଶରୀର ଆସ୍ତେ ଶେତେ ଚେଷ୍ଟତେଽବତିଷ୍ଠତେ ପରିଧାବତି ଚ । ଯାବନ୍ତି ପଶୁରୋମାଣି ତାବଦ୍‌ବର୍ଷସହସ୍ରାଣି । ୧୪ ।

ଯସ୍ତ୍ୱିହ ବୈ ନିଜବେଦପଥାଦନାପଦ୍ୟପଗତଃ ପାଷଣ୍ଡଞ୍ଚୋପଗତସ୍ତମସିପତ୍ରବନଂ ପ୍ରବେଶ୍ୟ କଶୟା ପ୍ରହରନ୍ତି, ତତ୍ର ହାସାବିତସ୍ତତୋ ଧାବମାନ ଉଭୟତୋ ଧାରୈସ୍ତାଳବନାସିପତ୍ରୈଶ୍ଛିଦ୍ୟମାନସର୍ବାଙ୍ଗୋ ହା ହତୋଽସ୍ମୀତି ପରମୟା ବେଦନୟା ମୂର୍ଚ୍ଛିତଃ, ପଦେ ପଦେ ନିପତତି ସ୍ୱଧର୍ମହା ପାଷଣ୍ଡାନୁଗମନଫଳଂ ଭୁଂକ୍ତେ । ୧୫ ।

ଯସ୍ତ୍ୱିହ ବୈ ରାଜା ରାଜପୁରୁଷୋ ବା ଽଦଣ୍ଡ୍ୟେ ଦଣ୍ଡଂ ପ୍ରଣୟତି ବ୍ରାହ୍ମଣେ ବା ଶରୀରଦଣ୍ଡଂ ସ ପାପୀୟାନ୍ ନରକେଽମୁତ୍ର ଶୂକରମୁଖେ ନିପତତି । ତତ୍ରାତିବଳୈର୍ନିଷ୍ପିଷ୍ୟମାଣାବୟବୋ ଯଥୈବେହେକ୍ଷୁଦଣ୍ଡ ଆର୍ତ୍ତସ୍ୱରେଣ ସ୍ୱନୟନ୍ କ୍ୱଚିନ୍ମୂର୍ଚ୍ଛିତଃ କଶ୍ମଳମୁପଗତୋ ଯଥୈବେହାଦୃଷ୍ଟଦୋଷା ଉପରୁଦ୍ଧାଃ । ୧୬ ।

---

ଅଗ୍ନି ତାପରେ ଦହ୍ୟମାନ ହୁଏ, ସେ କଷ୍ଟ ହେତୁ କେତେବେଳେ ବସୁଥାଏ, କେତେବେଳେ ଶୋଇ ଥାଏ କେତେବେଳେ ଦେହ ଇତସ୍ତତଃ କରୁଥାଏ, ପଶୁ ଦେହରେ ଯେତିକି ରୋମ ସେ ସେତେ ସହସ୍ରବର୍ଷ ଯାତନା ଭୋଗ କରେ । ୧୪ ।

ଯେଉଁ ବ୍ୟକ୍ତି ଆପଦ କାଳ ନ ହେଲେ ମଧ୍ୟ ବେଦମାର୍ଗ ପରିତ୍ୟାଗ କରି ପାଷଣ୍ଡ ତୁଲ୍ୟ ବ୍ୟବହାର କରେ, ଯମଦୂତମାନେ ଅସିପତ୍ରବନ ନରକ ମଧ୍ୟରେ ପ୍ରବେଶ କରାଇ କଶାଘାତ କରନ୍ତି, ସେ ଏଣେ ତେଣେ ଦଉଡ଼ିବାରୁ ଉଭୟ ପାର୍ଶ୍ୱରେ ଥିବା ଧାରୁଆ ତରବାରିରେ ତାହାର ସର୍ବାଙ୍ଗ ଛିନ୍ନ ବିଛିନ୍ନ ହୋଇଯାଏ ସେ "ହା ହତୋଽସ୍ମି" ବୋଲି ପରମକଷ୍ଟରେ ପଦେ ପଦେ ମୂର୍ଚ୍ଛିତ ହୋଇଯାଏ । ୧୫ ।

ଯେଉଁ ରାଜା ରାଜକର୍ମଚାରୀ ଅଦଣ୍ଡ୍ୟବ୍ୟକ୍ତି ପ୍ରତି ଦଣ୍ଡ ବିଧାନ କରନ୍ତି ଅଥବା ବ୍ରାହ୍ମଣ ଜାତି ପ୍ରତି ଶାରୀରିକ ଦଣ୍ଡବିଧାନ କରନ୍ତି ସେହି ପାପିଷ୍ଠ ପରକାଳରେ ଶୂକରମୁଖ ନାମକ ନରକରେ ପତିତ ହୁଏ; ଏହି ନରକରେ ଅତ୍ୟନ୍ତ ବଳଶାଳୀ ଯମଦୂତମାନେ ଯେପରି ଆଖୁକୁ କୋଲିଅରେ ପେଡ଼ାଯାଏ, ସେହିପରି ଏହି ରାଜା ବା ରାଜପୁରୁଷର ସମସ୍ତ ଶରୀରକୁ ପେଷିଦିଅନ୍ତି । ସେତେବେଳେ ଏହି ପାପୀ ଆର୍ତ୍ତସ୍ୱରରେ ରୋଦନ କରୁଥାଏ, ଯେପରି ଇହକାଳରେ ଅଦୃଷ୍ଟ ଦୋଷରେ ଚୌର୍ଯ୍ୟାପରାଧରେ ଉପରୁଦ୍ଧ ବ୍ୟକ୍ତିମାନେ ମୋହଗ୍ରସ୍ତ ହୋଇ ଥାଆନ୍ତି ସେହିପରି ଏହି ରାଜା ବା ରାଜପୁରୁଷ ମୋହିତ ବା ମୂର୍ଚ୍ଛିତ ହୁଏ । ୧୬ ।

---

କ୍ଷଣକେ ଉଠଇ ଶୁଅଇ
ବସଇ ବ୍ୟାକୁଳେ ଧାମଇ
କ୍ଷୁଧା ତୃଷାରେ ପୀଡ଼ାମାନ
କ୍ଷଣକେ ହୁଏ ଅଚେତନ
ପଶୁର ଦେହେ ରୋମ ଯେତେ
ବରଷ ସହସ୍ର ଯାବତେ
ଭୁଞ୍ଜ ଯାତନା ଭୋଗ ପାଇ
ସେ ପ୍ରାଣୀ ପଡ଼ଥାଇ ତହିଁ ।୧୪।

ଯେ ନିଜ କର୍ମ ଧର୍ମ ଛାଡ଼ି
ବେଦ ଆଜ୍ଞାକୁ ନଦେ ଦୃଢ଼ି
ପାଷାଣ୍ଡ ବୋଲି ତାକୁ କହି
ଅସିପତ୍ର ତମେ ପଡ଼ଇ
ଲୌହମୁଦ୍ଗର ତା ଉପରେ
ପ୍ରହାର କରନ୍ତି ଉର୍ଦ୍ଧରେ ।୧୫।
ଅଦୋଷେ ଦଣ୍ଡନ୍ତି ଯେ ନରେ
ପାପ ଭୁଞ୍ଜନ୍ତି ଯମଘୋରେ

ଅତ୍ୟନ୍ତ ପାପରାଶି ବହି
ଶୂକରମୁଖେ ସେ ପଡ଼ଇ
ତହିଁରେ ପଡ଼ନ୍ତି ଉର୍ଦ୍ଧରେ
ନାନା ଆୟୁଧର ପ୍ରହାରେ
ଇକ୍ଷୁଦଣ୍ଡର ପ୍ରାୟ କରି
ତାକୁ ପେଷନ୍ତି ଦଣ୍ଡଧାରୀ
ପରମ କଷ୍ଟକୁ ସେ ପାଇ
କ୍ଷଣ କ୍ଷଣକେ ମୋହ ଯାଇ ।୧୬।

ଯସ୍ତ୍ୱିହ ବୈ ଭୂତାନାମୀଶ୍ୱରୋପକଳ୍ପିତବୃତ୍ତୀନାମବିବିକ୍ତପରବ୍ୟଥାନାଂ ସ୍ୱୟଂ ପୁରୁଷୋପକଳ୍ପିତବୃତ୍ତିର୍ବିବିକ୍ତପରବ୍ୟଥୋ ବ୍ୟଥାମାଚରତି ସ ପରତ୍ରାନ୍ଧକୂପେ ତଦଭିଦ୍ରୋହେଣ ନିପତତି । ତତ୍ର ହାସୌ ତୈସ୍ତୈର୍ଜନ୍ତୁଭିଃ ପଶୁମୃଗପକ୍ଷୀସରୀସୃପମଶକଯୂକାମତ୍କୁଣମକ୍ଷିକାଦିଭିର୍ୟେ କେ ଚାଭିଦ୍ରୁଗ୍ଧାସ୍ତୈଃ ସର୍ବତୋଽଭିଦ୍ରୁହ୍ୟମାଣସ୍ତମସି ବିହତନିଦ୍ରାନିର୍ବୃତିରଲବ୍ଧାବସ୍ଥାନଃ ପରିକ୍ରାମତି ଯଥା କୁଶରୀରେ ଜୀବଃ । ୧୭ ।

ଯସ୍ତ୍ୱିହ ବା ଅସଂବିଭଜ୍ୟାଶ୍ନାତି ଯତ୍କିଞ୍ଚନୋପନତମନିର୍ମିତପଞ୍ଚଯଜ୍ଞୋ ବାୟସସଂସ୍ତୁତଃ ସ ପରତ୍ର କୃମିଭୋଜନେ ନରକାଧମେ ନିପତତି । ତତ୍ର ଶତସହସ୍ରଯୋଜନେ କୃମିକୁଣ୍ଡେ କୃମିଭୂତ ସ୍ୱୟଂ କୃମିଭିରେବ ଭକ୍ଷ୍ୟମାଣଃ କୃମିଭୋଜନୋ ଯାବତ୍ ତଦପ୍ରତ୍ତାପ୍ରହୁତାଦୋଽନିର୍ବେଶମାତ୍ମାନଂ ଯାତୟତେ । ୧୮ ।

---

ମତ୍କୁଣାଦି ପ୍ରାଣୀ ମନୁଷ୍ୟର ରକ୍ତ ଶୋଷଣ କରିଥାଆନ୍ତି, ଈଶ୍ୱର, ସ୍ୱୟଂ ସେମାନଙ୍କ ପାଇଁ ଏହି ବୃତ୍ତି ବିଧାନ କରିଅଛନ୍ତି, ସେମାନେ ଅବିବେକ ପରଦୁଃଖ ବିଷୟରେ ଅଜ୍ଞାତ, କିନ୍ତୁ ମନୁଷ୍ୟର ଅବସ୍ଥା ସେହିପରି ନୁହେଁ, ସେମାନେ କି କର୍ମ କରିବେ ତହିଁର ବିଧି ନିଷେଧ ଶାସ୍ତ୍ରରେ ପ୍ରମାଣ କରାଯାଇ ଅଛି । ଏବଂ ମନୁଷ୍ୟର ବିବେକ ଅଛି ବୋଲି ସେ ଅନ୍ୟର ଦୁଃଖ ଅନୁଭବ କରିପାରେ, ସେହି ମନୁଷ୍ୟ ପୂର୍ବୋକ୍ତ ମତ୍କୁଣାଦି ପ୍ରାଣୀଙ୍କ ପ୍ରତି ହିଂସାଚରଣକଲେ ସେ ପରଲୋକରେ ଅନ୍ଧକୂପରେ ପତିତ ହୁଏ । ପଶୁ ମୃଗ ପକ୍ଷୀ ସରୀସୃପ ମଶକ ଯୂକ ମତ୍କୁଣ ଓ ମକ୍ଷିକାଆଦି ପ୍ରାଣୀମାନଙ୍କ ପ୍ରତି ଯେଉଁ ବ୍ୟକ୍ତି ହିଂସା କରେ ସେମାନେ ପରଲୋକରେ ତାହାକୁ ବେଢିଯାଇ ହିଂସା କରନ୍ତି, ସେ ମହାନ୍ଅନ୍ଧକାରରେ ପତିତ ହୋଇ ନିଦ୍ରା ସୁଖ ଅନୁଭବ କରିପାରେ ନାହିଁ । କୁଶରୀରରେ ପ୍ରବିଷ୍ଟ ଜୀବ ତୁଲ୍ୟ ଅନିବୃତ୍ତ ଗତ ହୋଇ ତାହାକୁ ଦୁଃଖରେ ଇତସ୍ତତଃ ଧାବମାନ ହେବାକୁ ହୁଏ । ୧୭ ।

ଯେଉଁ ବ୍ୟକ୍ତି ଯତ୍କିଞ୍ଚିତ୍ ଖାଦ୍ୟପ୍ରାପ୍ତ ହେଲେ ମଧ୍ୟ ତାହାର ଅଂଶମାତ୍ର ଅନ୍ୟକୁ ନ ଦେଇ ଅର୍ଥାତ୍ ପଞ୍ଚଯଜ୍ଞାନୁଷ୍ଠାନ ନ କରିବା, ବ୍ରାହ୍ମଣ, ଅତିଥି, ଦେବତା, ପିତୃଗଣ ଓ ନିକୃଷ୍ଟପ୍ରାଣୀମାନଙ୍କୁ ନ ଦେଇ ଭୋଜନ କରେ, ସେ ବ୍ୟକ୍ତି ବାୟସାଦିଙ୍କ ତୁଲ୍ୟ, ସେ ଜୀବ ପରଲୋକରେ କୃମି ଭୋଜନ ନାମକ ଅତି ନିକୃଷ୍ଟ ନରକରେ ପତିତ ହୁଏ, ସେଠାରେ ଶତସହସ୍ର ଯୋଜନ ବିସ୍ତୃତ କୃମି କୁଣ୍ଡରେ ସ୍ୱୟଂ କୃମିରୂପରେ ପରିଣତ ହୁଏ ଏବଂ ତାହାକୁ କୃମିମାନେ ଭକ୍ଷଣ କରନ୍ତି, ତାହାକୁ ମଧ୍ୟ ସେଠାରେ କୃମି ଭୋଜନ କରି କାଳଯାପନ କରିବାକୁ ହୁଏ, ସେ ଯେ ପ୍ରାଣୀମାନଙ୍କୁ ଓ ଦେବତାମାନଙ୍କୁ ନ ଦେଇ ଭକ୍ଷଣ କରିଥିଲା, ଯେ ପର୍ଯ୍ୟନ୍ତ ତହିଁର ପ୍ରାୟଶ୍ଚିତ୍ତ ନ କରେ, ଏହି ପାପ ଯେତେଦିନ ଭୋଗ ନ ହୋଇ କ୍ଷୟ ନ ହୁଏ; ସେତେଦିନ ତାହାକୁ ଏହିପରି ଯାତନା ଭୋଗ କରିବାକୁ ପଡେ । ୧୮ ।

---

ଏ ଯେ ସଂସାରେ ନରଦେହୀ
କ୍ଷୁଦ୍ର ପ୍ରାଣୀକୁ ପୀଡ଼ା ଦେଇ
ହିଂସଇ ଜ୍ଞାନହୀନ ମତେ
ସନ୍ତାପ ଲଭଇ ତେମନ୍ତେ
ସେ ପ୍ରାଣୀ ପରଲୋକେ ଯାଇ
ଅନ୍ଧ କୂପରେ ସେ ପଡ଼ଇ ।୧୭।

ଯେ ଗ୍ରାସ ନ ବାଣ୍ଟି ଭୁଞ୍ଜଇ
ବାୟସ ତୁଲ୍ୟ ତାକୁ କହି
ନରକ ଯେ କୃମି ଭୋଜନ
ନରକମାନଙ୍କ ଅଧମ
ଶତସହସ୍ର ଯେ ଯୋଜନ
ସେ କୃମିକୁଣ୍ଡ ପରିମାଣ

ତହିଁ ପଡ଼ଇ ସେହି ନର
ଭୁଞ୍ଜି ଯାତନାର ଯେ ଘୋର
କୃମିକୁ ଭକ୍ଷଇ ସେ ଜନ
ତାକୁ ଭକ୍ଷନ୍ତି କୃମିମାନ
ଯାବତ କର୍ମ କ୍ଷୟ ନୋହେ
ତାବତ ତହିଁ ସେହି ରହେ ।୧୮।

ଯସ୍ତ୍ୱିହ ବୈ ସ୍ତେୟେନ ବଳାଦ୍ବା ହିରଣ୍ୟରତ୍ନାଦୀନି ବ୍ରାହ୍ମଣସ୍ୟାପହରତ୍ୟନ୍ୟସ୍ୟ ବାନାପଦି ପୁରୁଷସ୍ତମମୁତ୍ର ରାଜନ୍ ଯମପୁରୁଷା ଅୟସ୍ମୟୈରଗ୍ନିପିଣ୍ଡୈଃ ସନ୍ଦଂଶୈସ୍ତ୍ୱଚି ନିଷ୍କୁଷନ୍ତି ।୧୯।

ଯସ୍ତ୍ୱିହ ବା ଅଗମ୍ୟାଂ ସ୍ତ୍ରିୟଂ ପୁରୁଷୋଽଗମ୍ୟଂ ବା ପୁରୁଷଂ ଯୋଷିଦଭିଗଚ୍ଛତି ତାବମୁତ୍ର କଶୟା ତାଡ଼ୟନ୍ତସ୍ତିଗ୍ମୟା ଶୂର୍ମ୍ୟା ଲୋହମୟ୍ୟା ପୁରୁଷମାଲିଙ୍ଗୟନ୍ତି ସ୍ତ୍ରିୟଞ୍ଚ ପୁରୁଷରୂପୟା ଶୂର୍ମ୍ୟା ।୨୦।

ଯସ୍ତ୍ୱିହ ବୈ ସର୍ବାଭିଗମସ୍ତମମୁତ୍ର ନିରୟେ ବର୍ତ୍ତମାନଂ ବଜ୍ରକଣ୍ଟକଶାଳ୍ମଳୀମାରୋପ୍ୟ ନିଷ୍କର୍ଷନ୍ତି ।୨୧।

ଯେ ତ୍ୱିହ ବୈ ରାଜନ୍ୟା ରାଜପୁରୁଷା ବା ପାଷଣ୍ଡା ଧର୍ମସେତୂନ୍ ଭିନ୍ଦନ୍ତି ତେ ସମ୍ପରେତ୍ୟ ବୈତରଣ୍ୟାଂ ନିପତନ୍ତି ଭିନ୍ନମର୍ଯ୍ୟାଦାସ୍ତସ୍ୟାଂ ନିରୟପରିଖାଭୂତାୟାଂ

---

ହେ ରାଜନ୍ ! ଯେଉଁ ବ୍ୟକ୍ତି ଚୌର୍ଯ୍ୟଦ୍ୱାରା ବା ବଳପୂର୍ବକ ଦସ୍ୟୁବୃତ୍ତି ଦ୍ୱାରା ଆପଦ ଉପସ୍ଥିତ ନ ହେଲେ ମଧ୍ୟ ବ୍ରାହ୍ମଣ ବ୍ୟତୀତ, ଅନ୍ୟ ବ୍ୟକ୍ତିର ସୁବର୍ଣ୍ଣ ଅପହରଣ କରେ, ପରଲୋକରେ ଯମଦୂତଗଣ ଲୌହମୟ ପିଣ୍ଡ ବା ସନ୍ଦଶ ନାମକ ଅସ୍ତ୍ରଦ୍ୱାରା ତାହାର ଚର୍ମକୁ ଛେଦନ କରନ୍ତି । ୧୯ ।

ଇହ ଲୋକରେ ଯେଉଁ ପୁରୁଷ ଅଗମ୍ୟା ସ୍ତ୍ରୀ ଅଭିଗମନ କରେ ଏବଂ ଯେଉଁ ସ୍ତ୍ରୀ ଅଗମ୍ୟ ପୁରୁଷ ଅଭିଗମନ କରେ ସେମାନେ ଉଭୟଙ୍କୁ, ଯମାନୁଚରଗଣ ସୁତୀକ୍ଷ୍ଣ କଶାଘାତଦ୍ୱାରା ପ୍ରହାର କରନ୍ତି ଏବଂ ସଙ୍ଗେ ସଙ୍ଗେ ପୁରୁଷକୁ ସୁତପ୍ତଲୌହ ନିର୍ମିତ ସ୍ତ୍ରୀ ପ୍ରତିମୂର୍ତ୍ତି ଦ୍ୱାରା ଏବଂ ସେହି ସ୍ତ୍ରୀକୁ ତପ୍ତଲୌହମୟ ପୁରୁଷ ମୂର୍ତ୍ତି ଆଲିଙ୍ଗନ କରାଇ ଥାଆନ୍ତି । ୨୦ ।

ଯେଉଁ ବ୍ୟକ୍ତି ଇହଲୋକରେ ପଶୁପ୍ରଭୃତି ସହିତରେ ସଙ୍ଗମ କରେ ପରଲୋକରେ ଯମ କିଙ୍କରମାନେ ତାହାକୁ ବଜ୍ରକଣ୍ଟକ ଓ ଶାଳ୍ମଳୀ ବୃକ୍ଷରେ ଆରୋହଣ କରାଇ ଆକର୍ଷଣ କରାଇ ଥାଆନ୍ତି । ୨୧ ।

ଯେଉଁ ରାଜକନ୍ୟା ବା ରାଜପୁରୁଷମାନେ ସତ୍‌କୁଳ ପ୍ରସୂତ ହୋଇ ମଧ୍ୟ ଧର୍ମର ମର୍ଯ୍ୟାଦା ଲଙ୍ଘନ କରନ୍ତି, ସେମାନେ ପରଲୋକରେ ବୈତରଣୀ ନାମକ ନଦୀରେ ପତିତ ହୁଅନ୍ତି । ଏହି ନଦୀ ନରକର ପରିଖା ସ୍ୱରୂପ, ଜଳଜନ୍ତୁମାନେ ସେହି ବ୍ୟକ୍ତିକୁ ଭକ୍ଷଣ କରିଥାଆନ୍ତି, ସେଥିରେ ସୁଦ୍ଧା ତାହାର ପ୍ରାଣ ଯାଏ ନାହିଁ

---

ବିପ୍ରର ଦ୍ରବ୍ୟ ଯେ ହରଇ
ସନ୍ଦଂଶେ ପୀଡ଼ା ସେ ଲଭଇ ।୧୯।
ଅଗମ୍ୟ ସ୍ତ୍ରୀଏ ଯେ ରମଇ
ତପ୍ତ ଶୂର୍ମିରେ ସେ ପଡ଼ଇ
ନାରୀ ବା ଅଗମ୍ୟ ପୁରୁଷେ
ଯେବେ ବେ କରେ ଅଭିଳାଷେ
ତପତ ଲୌହ ମୂର୍ତ୍ତିମାନ
ତାକୁ କରନ୍ତି ଆଲିଙ୍ଗନ

ପୁରୁଷରୂପ ସ୍ତ୍ରୀଏ ଧରେ
ପୁରୁଷ ସ୍ତ୍ରୀଙ୍କର ଶରୀରେ । ୨୦ ।
ଅଗମ୍ୟ ପଶ୍ୱାଦି ଗମନ
କରଇ ପାଷଣ୍ଡ ଯେ ଜନ
ବଜ୍ରକଣ୍ଟକ ଶାଳ୍ମଳୀରେ
ଆରୋହ କରାନ୍ତି ତାହାରେ ।୨୧।
ଯେ ରାଜ ପୁରୁଷ ଅପରେ
କରନ୍ତି ଧର୍ମସେତୁ ଦୂରେ

ଧର୍ମ ଆଚରେ ଯେତୁ ନର
ତାଙ୍କୁ ହିଂସନ୍ତି ଯେ ପାମର
ସେ ଅନ୍ତେ ବଇତରଣୀରେ
ପାପିଷ୍ଠେ ପଡ଼ନ୍ତି ନୀର୍ଭରେ
ନରକ ପରିଖା ଯାହାର
ଏମନ୍ତ ଯେଉଁ ନଦୀବର
ତହିଁରେ ଜଳଜନ୍ତୁମାନ
ପାପୀଙ୍କୁ କରନ୍ତି ଭକ୍ଷଣ,

ସୂକରମୁଖ ନରକ ।



ତପ୍ତଶୂର୍ମ ନରକ ।  ରୌରବ ନରକ ।

ନଦ୍ୟାଂ ଯାଦୋଗଣୈରିତସ୍ତତୋ ଭକ୍ଷ୍ୟମାଣା ଆତ୍ମନା ନ ବିୟୁଜ୍ୟମାନାଶ୍ଚାସୁଭିରୁହ୍ୟମାନାଃ ସ୍ୱାଘେନ କର୍ମପାକମନୁସ୍ମରନ୍ତୋ ବିଣ୍‌ମୂତ୍ର-ପୂୟ-ଶୋଣିତ-କେଶ-ନଖାସ୍ଥି-ମେଦୋମାଂସବସାବାହିନ୍ୟାମୁପତପ୍ୟନ୍ତେ । ୨୨ ।

ଯେ ତ୍ୱିହ ବୈ ବୃଷଳୀପତୟୋ ନଷ୍ଟଶୌଚାଚାରନିୟମାସ୍ତ୍ୟକ୍ତଲଜ୍ଜାଃ ପଶୁଚର୍ଯ୍ୟାଂ ଚରନ୍ତି ତେ ଚାପି ପ୍ରେତ୍ୟ ପୂୟ-ବିଣ୍‌ମୂତ୍ର ଶ୍ଲେଷ୍ମମଲାପୂର୍ଣ୍ଣାର୍ଣ୍ଣବେ ନିପତନ୍ତି ତଦେବାତିବୀଭତ୍ସିତମଶ୍ନନ୍ତି । ୨୩ ।

ଯେ ତ୍ୱିହ ବୈ ଶ୍ୱଗର୍ଦ୍ଦଭପତୟୋ ବ୍ରାହ୍ମଣାଦୟୋ ମୃଗୟାବିହାରା ଅତୀର୍ଥେ ଚ ମୃଗାନ୍ ନିଘ୍ନନ୍ତି ତାନପି ସମ୍ପରେତାଂଲ୍ଲକ୍ଷ୍ୟଭୂତାନ୍ ଯମପୁରୁଷା ଇଷୁଭିର୍ବିଧ୍ୟନ୍ତି । ୨୪ ।

ଯେ ତ୍ୱିହ ବୈ ଦାମ୍ଭିକା ଦମ୍ଭଯଜ୍ଞେଷୁ ପଶୂନ୍ ବିଶସନ୍ତି ତାନମୁଷ୍ମିନ୍ ଲୋକେ ବୈଶସେ ନରକେ ପତିତାନ୍ ନିରୟପତୟୋ ଯାତୟିତ୍ୱା ବିଶସନ୍ତି । ୨୫ ।

---

କିନ୍ତୁ ସେ ଚେତନାବସ୍ଥାରେ ନିଜର ପାପଫଳ ସ୍ମରଣ କରିଥାଏ ଏବଂ ବିଷ୍ଠା, ମୂତ୍ର, ପୂଜ, ଶୋଣିତ କେଶ, ନଖ, ଅସ୍ଥି, ମେଦ, ମାଂସ ଓ ବସାବାହିନୀ ନଦୀରେ ପଡ଼ି ବିଷମ କ୍ଲେଶ ଅନୁଭବ କରିଥାଏ ।୨୨।

ଯେଉଁ ବ୍ୟକ୍ତି ଶୌଚ, ଆଚାର, ନିୟମ ଓ ଲଜ୍ଜା ଲଙ୍ଘନ କରି ପଶୁଚର୍ଯ୍ୟା ଅର୍ଥାତ୍ ସ୍ୱେଚ୍ଛାଚାର କରିଥାଏ ଏବଂ ବର୍ଣ୍ଣାଶ୍ରମ ବହିର୍ଭୂତ ଶୂଦ୍ରଜାତୀୟା ନାରୀ ସଙ୍ଗମ କରିଥାଏ ସେ ପୂଜ, ବିଷ୍ଠା, ମୂତ୍ର, ଶ୍ଲେଷ୍ମା ଓ ମଳପୂର୍ଣ୍ଣ ସମୁଦ୍ରରେ ପଡ଼ି, ଏହି କୁତ୍ସିତ ଦ୍ରବ୍ୟମାନ ଭୋଜନ କରି ଥାଏ । ୨୩ ।

ଇହ ଲୋକରେ ଯେଉଁ ବ୍ରାହ୍ମଣ ପାଳିତକୁକ୍କୁର ଓ ଗର୍ଦ୍ଦଭସହି ମୃଗୟା ବିହାର କରେ ଓ ଦେଶକାଳ ଗର୍ହିତ ଭାବରେ ମୃଗମାନଙ୍କୁ ବଧକରେ, ସେ ମୃତ ହେଲା ପରେ ଯମଦୂତମାନେ ତାହାକୁ ଲକ୍ଷ୍ୟକରି ବାଣବିଦ୍ଧ କରନ୍ତି । ୨୪ ।

ଯେଉଁ ଦାମ୍ଭିକ ପୁରୁଷମାନେ ଦମ୍ଭହେତୁ ଯଜ୍ଞରେ ପଶୁଛେଦନ କରନ୍ତି ସେମାନଙ୍କୁ ପରଲୋକରେ ଯମଦୂତମାନେ ବୈଶସ ନାମକ ନରକରେ ନିକ୍ଷେପ କରି ଯାତନା ଦିଅନ୍ତି ଓ ପୀଡ଼ନ କରନ୍ତି । ୨୫ ।

---

ମୂତ୍ର ପୁରୀଷ ଯେ ଶୋଣିତ
ନଖାସ୍ଥି ମେଦ ଯେ ବହୁତ
ତହିଁ ପକାନ୍ତି ତାକୁ ନେଇ
ବାସନା କର୍ମ ସୁମରଇ । ୨୨ ।
ବୃଷଳୀଗମନ ଯେ କରେ
ଶୌଚ ଆଚାର ପରିହରେ
ଲଜ୍ଜା କି ଭାବକୁ ବହିଣ
ନିତ୍ୟ ନିୟମକୁ ଛାଡ଼ିଣ

ଅନ୍ତେ ସେ ପୂୟୋଦେ ପଡ଼ଇ
ଶ୍ଳେଷ୍ମା ଯେ ମଳ ମୂତ୍ର ଯହିଁ
ଅତି ବିଭତ୍ସ ଯେ ଭୋଜନ
ତାହାକୁ ଭୁଞ୍ଜଇ ସେ ଜନ ।୨୩।
ମୃଗୟା ବିହାରେ ଯେ ନରେ
ପ୍ରବୃତ୍ତି ହୋଇ ବାରମ୍ବାରେ
ମୃଗାଦି ବାଳ ପଶୁମାନ
ବହୁତ ମାରନ୍ତି ରାଜନ

ବିବିଧ ବାଣେ ଯମଦୂତ
ତାକୁ ପ୍ରହାରନ୍ତି ବହୁତ । ୨୪ ।
କପଟ ଯଜ୍ଞେ ଯେତୁ ନରେ
ଦମ୍ଭ ଆଚରି ପଶୁମାରେ
ସେ ଲୋକ ବିଶସନ ନାମେ
ନରକେ ପଡ଼ନ୍ତି ସେମାନେ ।୨୫।

ଯସ୍ତ୍ୱିହ ବୈ ସବର୍ଣ୍ଣାଂ ଭାର୍ଯ୍ୟାଂ ଦ୍ୱିଜୋ ରେତଃ ପାୟୟତି କାମମୋହିତସ୍ତଂ ପାପକୃତମମୁତ୍ର ରେତଃକୁଲ୍ୟାୟାଂ ପାତୟିତ୍ୱା ରେତଃ ସମ୍ପାୟୟନ୍ତି । ୨୬ ।

ଯେ ତ୍ୱିହ ବୈ ଦସ୍ୟବୋଽଗ୍ନିଦା ଗରଦା ଗ୍ରାମାନ୍ ସାର୍ଥାନ୍ ବା ବିଲୁମ୍ପନ୍ତି ରାଜାନୋ ରାଜଭଟା ବା ତାଂଶ୍ଚାପି ହି ପରେତାନ୍ ଯମଦୂତା ବଜ୍ରଦଂଷ୍ଟ୍ରାଃ ଶ୍ୱାନଃ ସପ୍ତଶତାନି ବିଂଶତିଶ୍ଚ ସରଭସଂ ଖାଦନ୍ତି । ୨୭ ।

ଯସ୍ତ୍ୱିହ ବା ଅନୃତଂ ବଦତି ସାକ୍ଷ୍ୟେ ଦ୍ରବ୍ୟବିନିମୟେ ଦାନେ ବା କଥଞ୍ଚିତ୍ ସ ବୈ ପ୍ରେତ୍ୟ ନରକେଽବୀଚିମତ୍ୟଧଃଶିରା ନିରବକାଶେ ଯୋଜନଶତୋଚ୍ଛ୍ରାୟାଦ୍ ଗିରି-ମୂର୍ଦ୍ଧ୍ନଃ ସମ୍ପାତ୍ୟତେ । ଯତ୍ର ଜଳମିବ ସ୍ଥଳମଶ୍ମପୃଷ୍ଠମବଭାସତେ ତଦବୀଚିମତ୍ ତିଲଶୋ ବିଶୀର୍ଯ୍ୟମାଣଶରୀରୋ ନ ମ୍ରିୟମାଣଃ ପୁନରାରୋପିତୋ ନିପତତି । ୨୮ ।

---

ଇହ ଲୋକରେ ଯେଉଁ ଦ୍ୱିଜାତି କାମ ମୋହିତ ହୋଇ ସବର୍ଣ୍ଣା ଭାର୍ଯ୍ୟାକୁ ଶୁକ୍ରପାନ କରାଏ ଯମଗଣ ସେହି ପାପୀକୁ ପରଲୋକରେ ରେତୋମୟ କ୍ଷୁଦ୍ର ନଦୀରେ ରେତପାନ କରାଇ ଥାନ୍ତି । ୨୬ ।

ଯେଉଁ ଦସ୍ୟୁ ବା ରାଜପୁରୁଷଗଣ ଅଗ୍ନି ବା ବିଷ ପ୍ରଦାନ କରି ଗ୍ରାମ ବା ପଥିକର ସର୍ବନାଶ କରନ୍ତି, ପରଲୋକରେ ସପ୍ତଶତ ଓ ବିଂଶତି ସଂଖ୍ୟକ ବଜ୍ରଦଂଷ୍ଟ୍ର ଯମଦୂତମାନେ କୁକୁରରୂପେ ଅତ୍ୟନ୍ତ ଉତ୍ସାହ ବା ବେଗରେ ତାହାଙ୍କୁ ଚର୍ବଣ କରିଥାନ୍ତି । ୨୭ ।

ଯେଉଁ ବ୍ୟକ୍ତି ଇହଲୋକରେ ସାକ୍ଷ୍ୟଦେବାରେ କ୍ରୟ ବିକ୍ରୟ ବା ଦାନ ଲୋଭରେ ମିଥ୍ୟା କହେ, ପରଲୋକରେ ସେ ନିରବଲମ୍ବ ଅବୀଚୀ ନାମକ ନରକରେ ଶତଯୋଜନ ଉଚ୍ଚ ଗିରିଶୃଙ୍ଗରୁ ଅଧୋମୁଖରେ ପତିତ ହୁଏ, ଏହି ନରକକୁ ଅବୀଚୀ କହିବାର କାରଣ ଏହିକି ଯେ ଏହା ପାଷାଣବଦ୍ଧ ସ୍ଥଳ ହେଲେ ମଧ୍ୟ ସର୍ବଦା ଜଳ ତୁଲ୍ୟ ପ୍ରତୀୟମାନ ହୁଏ; ତାହାର ଉପରେ ପତିତ ହୋଇ ପାପୀର ଦେହ ଛିନ୍ନଭିନ୍ନ ହୋଇ ତିଳ ତିଳ ହୋଇ ଯାଏ କିନ୍ତୁ ତହିଁରେ ତାହାର ମୃତ୍ୟୁ ଘଟେ ନାହିଁ, ଯମଦୂତମାନେ ପୁନଶ୍ଚ ତାହାକୁ ପର୍ବତ ଶିଖରରେ ସ୍ଥାପନ କରି ପୂର୍ବପରି ନିକ୍ଷେପ କରନ୍ତି । ୨୮ ।

---

ସବର୍ଣ୍ଣା ରେତକୁ ପିଆଇ
ଯେ ବିପ୍ର କାମବଶ ହୋଇ
ଅମୁତ୍ର ରେତ ଯେ କୁଲ୍ୟାରେ
ରେତକୁ ପିଆନ୍ତି ତାହାରେ । ୨୬
ଯେ ନର ସ୍ନେହେ ଅଗ୍ନି ଦେଇ
କପଟେ ଗରଳ ଭୁଞ୍ଜାଇ
ସେ ପରଲୋକେ ଯେବେ ଯାଇ
ନାନାବିଧ ଯାତନା ଭୁଞ୍ଜଇ
ଉଗ୍ରଦଶନ ଶ୍ୱାନଶତ
ତାକୁ ଭୁଞ୍ଜନ୍ତି ଅବିରତ ।୨୭।
ସାକ୍ଷ୍ୟରେ ମିଥ୍ୟା ଯେ କହଇ
ଅବୀଚୀ ନରକେ ପଡ଼ଇ
ଅଧକୁ ହୁଅଇ ତା ଶିର
ନରକ ଭୁଞ୍ଜଇ ପାମର ।୨୮।

ଯସ୍ତ୍ୱିହ ବୈ ବିପ୍ରୋ ରାଜନ୍ୟୋ ବୈଶ୍ୟୋ ବା ସୋମପୀଥସ୍ତତ୍କଳତ୍ରଂ ବା ସୁରାଂ ବ୍ରତସ୍ଥୋ ବା ପିବତି ପ୍ରମାଦତସ୍ତେଷାଂ ନିରୟଂ ନୀତାନାମୁରସି ପଦାକ୍ରମ୍ୟାସ୍ୟେ ବହ୍ନିନା ଦ୍ରବମାଣଂ କାର୍ଷ୍ଣାୟସଂ ନିଷିଞ୍ଚନ୍ତି । ୨୯ ।

ଅଥ ଚ ଯସ୍ତ୍ୱିହ ବା ଆତ୍ମସମ୍ଭାବନେନ ସ୍ୱୟମଧମୋ ଜନ୍ମତପୋବିଦ୍ୟାଚାରବର୍ଣ୍ଣାଶ୍ରମବତୋ ବରୀୟସୋ ନ ବହୁମନ୍ୟେତ ସ ମୃତକ ଏବ ମୃତ୍ୱା କ୍ଷାରକର୍ଦ୍ଦମେ ନିରୟେଽବାକ୍ଶିରା ନିପାତିତୋ ଦୁରନ୍ତଯାତନା ହ୍ୟଶ୍ନୁତେ । ୩୦ ।

ଯେ ତ୍ୱିହ ବୈ ପୁରୁଷାଃ ପୁରୁଷମେଧେନ ଯଜନ୍ତେ ଯାଶ୍ଚ ସ୍ତ୍ରିୟୋ ନୃପଶୂନ୍ ଖାଦନ୍ତି ତାଂଶ୍ଚ ତାଶ୍ଚ ତେ ପଶବ ଇବ ନିହତା ଯମସଦନେ ଯାତୟନ୍ତୋ ରକ୍ଷୋଗଣାଃ ସୌନିକା ଇବ ସ୍ୱଧିତିନାବଦାୟାସୃକ୍ ପିବନ୍ତି ନୃତ୍ୟନ୍ତି ଗାୟନ୍ତି ଚ ହୃଷ୍ୟମାଣା ଯଥେହ ପୁରୁଷାଦାଃ । ୩୧ ।

---

ଇହଲୋକରେ ଯେଉଁ ବିପ୍ର ବା ତାହାର ପତ୍ନୀ ସୁରାପାନ କରେ ଅଥବା ଯେଉଁ କ୍ଷତ୍ରିୟ ବା ବୈଶ୍ୟ ବ୍ରତାଚରଣ କରି ମଧ୍ୟ ଉନ୍ମତ୍ତ ହୋଇ ମଦ୍ୟ ପାନକରେ, ଯମଦୂତମାନେ ସେମାନଙ୍କୁ ନରକକୁ ଆଣି ସେମାନଙ୍କ ବକ୍ଷଦେଶରେ ପଦସ୍ଥାପନ କରି ତାହାର ମୁଖରେ ଅଗ୍ନିଦ୍ୱାରା ଦ୍ରବୀଭୂତ ଲୌହରସ ଢାଳି ଦିଅନ୍ତି । ୨୯ ।

ଯେଉଁ ପୁରୁଷ ଅଧମହେଲେ ମଧ୍ୟ ମିଥ୍ୟା ଅହଙ୍କାରରେ ଜନ୍ମ, ତପସ୍ୟା, ବିଦ୍ୟା, ଆଚାର ବର୍ଣ୍ଣ ଓ ଆଶ୍ରମରେ ଉତ୍କୃଷ୍ଟ ପୂଜନୀୟ ବ୍ୟକ୍ତିକୁ ସମ୍ମାନ ନ କରେ ସେହି ଜୀବନ୍ମୃତ ବ୍ୟକ୍ତି ଦେହାନ୍ତେ କ୍ଷାର କର୍ଦ୍ଦମ ଯୁକ୍ତ ନରକରେ ଅଧୋମୁଖରେ ପତିତହୋଇ ଅଶେଷ ଯାତନା ଭୋଗ କରେ । ୩୦ ।

ଯେଉଁ ପୁରୁଷମାନେ ନର ହିଂସାକରି ଭୈରବାଦି ଅର୍ଚ୍ଚନା କରନ୍ତି ଏବଂ ଯେଉଁ ସ୍ତ୍ରୀମାନେ ନରମାଂସ ବା ପଶୁମାଂସ ଭୋଜନ କରନ୍ତି, ସେମାନେ ମୃତ ହେଲେ ସେହି ପୁରୁଷ ଓ ସ୍ତ୍ରୀକୁ ଯମଦୂତମାନେ ଯମପୁରକୁ ନେଇ ସେମାନେ ନର ବା ପଶୁକୁ ବଧ କରି ଯେପରି ଆନନ୍ଦରେ ନୃତ୍ୟ କରିଥିଲେ ସେହିପରି ଭାବରେ ବ୍ୟାଧତୁଲ୍ୟ ସେମାନଙ୍କୁ କଷ୍ଟ ଦେଇ ଅତି ତୀକ୍ଷ୍ଣଧାର ଅସ୍ତ୍ରରେ ସେମାନଙ୍କ ଶରୀରକୁ ଛିନ୍ନ ଭିନ୍ନକରି ରକ୍ତପାନ କରି ଏବଂ ହର୍ଷଯୁକ୍ତ ହୋଇ ନୃତ୍ୟ ଗୀତ କରନ୍ତି । ୩୧ ।

---

ଯାହାର ଶ୍ରେଷ୍ଠ ଯେଉଁ ଜନ
ଶ୍ରେଷ୍ଠକୁ ନ କରେ ବନ୍ଦନ
କ୍ଷାର କର୍ଦ୍ଦମେ ସେ ପଡ଼ଇ
ବହୁତ ଯାତନା ଭୁଞ୍ଜଇ । ୨୯।୩୦
ଯେ ପ୍ରାଣୀ ନରମେଧ କରେ
ଦେବତା ସନ୍ତୋଷ ପ୍ରକାରେ
ସ୍ତ୍ରୀଏ ବାଳକ ପଶୁମାରେ
ଡ଼ାକିନୀ ଆଦି ରୂପ ଧରେ
ସେହି ବାଳକ ପଶୁମାନେ
ପରେ ସେ ଯମର ଭୁବନେ
ରାକ୍ଷସ ରୂପକୁ ଆଚରି
ଶୋଣିତ ପିବନ୍ତି ତାହାର
ସେ ସ୍ତ୍ରୀଏ ପୁରୁଷ ରକତ
ଖାଇ ହୁଅନ୍ତି ମଦେ ମତ୍ତ
ନାଚନ୍ତି ଗାୟନ୍ତି ହରଷେ
ଯେମନ୍ତ ରାକ୍ଷସ ପୁରୁଷେ । ୩୧ ।

ଯେ ତ୍ୱିହ ବା ଅନାଗସୋଽରଣ୍ୟେ ଗ୍ରାମେ ବା ବୈଶ୍ରମ୍ଭକୈରୁପସୃତାନୁପବିଶ୍ରମ୍ଭ୍ୟ ଜିଜୀବିଷୂନ୍ ଶୂଳସୂତ୍ରାଦିଷୂପପ୍ରୋତାନ୍ କ୍ରୀଡନକତୟା ଯାତୟନ୍ତି ତେଽପି ଚ ପ୍ରେତ୍ୟ ଯମଯାତନାସୁ ଶୂଳାଦିଷୁ ପ୍ରୋତାତ୍ମାନଃ କ୍ଷୁତ୍‌ତୃଡ୍‌ଭ୍ୟାଞ୍ଚାଭିହତାଃ କଙ୍କବଟାଦିଭିଶ୍ଚେତସ୍ତତସ୍ତିଗ୍ମତୁଣ୍ଡୈରାହନ୍ୟମାନା ଆତ୍ମଶମଲଂ ସ୍ମରନ୍ତି । ୩୨ ।

ଯେ ତ୍ୱିହ ବୈ ଭୂତାନ୍ୟୁଦ୍‌ବେଜୟନ୍ତି ନରା ଉଲ୍ୱଣସ୍ୱଭାବା ଯଥା ଦନ୍ଦଶୂକାସ୍ତେଽପି ପ୍ରେତ୍ୟ ନରକେ ଦନ୍ଦଶୂକାଖ୍ୟେ ନିପତନ୍ତି ଯତ୍ର ନୃପ ଦନ୍ଦଶୂକାଃ ପଞ୍ଚମୁଖାଃ ସପ୍ତମୁଖା ଉପସୃତ୍ୟ ଗ୍ରସନ୍ତି ଯଥା ବିଳେଶୟାନ୍ । ୩୩ ।

ଯେ ତ୍ୱିହ ବା ଅନ୍ଧାବଟକୁଶୂଳଗୁହାଦିଷୁ ଭୂତାନି ନିରୁନ୍ଧନ୍ତି ତଥାମୁତ୍ର ତେଷ୍ୱେବୋପବେଶ୍ୟ ସଗରେଣ ବହ୍ନିନା ଧୂମେନ ନିରୁନ୍ଧନ୍ତି । ୩୪ ।

---

ଏହି ପୃଥିବୀରେ ଯେଉଁମାନେ ନିରପରାଧ ବନ୍ୟ ବା ଗ୍ରାମ ପଶୁମାନଙ୍କୁ ନାନାପ୍ରକାର ଉପାୟ ଦ୍ୱାରା ସେମାନଙ୍କ ମନରେ ବିଶ୍ୱାସ ଜନ୍ମାଇ ଅକାରଣରେ ସେମାନଙ୍କୁ ଶୂଳ ବା ସୂତ୍ରଦ୍ୱାରା ଯାତନା ଦିଅନ୍ତି ଓ ବଧ କରନ୍ତି ଯମଲୋକରେ ସେମାନଙ୍କୁ ମଧ୍ୟ ଶୂଳବଦ୍ଧ ହୋଇ ଯାତନା ଭୋଗ କରାଇଥାନ୍ତି, କ୍ଷୁଧା ତୃଷ୍ଣାରେ ସେମାନଙ୍କୁ ବିଶେଷ କଷ୍ଟଭୋଗ କରିବାକୁ ହୁଏ, ଏବଂ ତୀବ୍ରତୁଣ୍ଡ କଙ୍କବଟାଦି ପକ୍ଷୀମାନେ ସେମାନଙ୍କୁ ଆଘାତ କରିଥାନ୍ତି । ସେତେବେଳେ ପୂର୍ବକୃତ ପାପମାନ ସେମାନଙ୍କ ସ୍ମୃତିରେ ଜାଗ୍ରତ ହୁଏ । ୩୨ ।

ଇହଲୋକରେ ତୀକ୍ଷ୍ଣ ପ୍ରକୃତି ବା ଉଗ୍ରସ୍ୱଭାବ ମନୁଷ୍ୟ ସର୍ପାଦିତୁଲ୍ୟ ଭୂତଗଣଙ୍କର ଉଦ୍‌ବେଗ ଉତ୍ପାଦନ କରିଥାଏ । ସେମାନେ ମୃତହେଲେ ଦନ୍ଦଶୂକନାମକ ନରକରେ ପତିତ ହୁଅନ୍ତି, ଯେପରି ସର୍ପ ମୂଷିକକୁ ଗ୍ରାସ କରେ ସେହିପରି ସେଠାରେ ପଞ୍ଚମୁଖ ଓ ସପ୍ତମୁଖ ସର୍ପମାନେ ସେମାନଙ୍କୁ ଆକ୍ରମଣକରି ଗ୍ରାସ କରନ୍ତି ।୩୩

ଇହଲୋକରେ ଯେଉଁ ପୁରୁଷ ପ୍ରାଣୀମାନଙ୍କୁ ଅନ୍ଧକୂପ, ଧାନ୍ୟଗୃହ ବା ଗୁହାଦିରେ ଆବଦ୍ଧ କରନ୍ତି ସେମାନେ ପରଲୋକରେ ଯମଦୂତମାନଙ୍କ କର୍ତ୍ତୃକ ସେହିପରି ଗର୍ତ୍ତାଦିରେ ନିକ୍ଷିପ୍ତ ହୋଇ ବିଷଯୁକ୍ତ ବହ୍ନି ଓ ଧୂମାଦି ଦ୍ୱାରା ନିର୍ଯ୍ୟାତିତ ହୁଅନ୍ତି । ୩୪ ।

---

ବିବିଧ ଉଦ୍ଭୁତ [illegible]
ଯେ ନର ଗ୍ରାମ ଅ[illegible]ଣ୍ୟରେ
ବିଶ୍ୱାସି ପଶୁଙ୍କୁ ମାରଇ
ସେ ନର ନରକେ ପଡ଼ଇ
ପାଶେ ବନ୍ଧନ ହୋଇ ଦେହ
କ୍ଷୁଧା ତୃଷାରେ ପ[illegible] ।ପାଇ
କଙ୍କ ବକ୍ରାଦି ଯମଗଣ
ତୁଣ୍ଡରେ କରନ୍ତି ଭକ୍ଷଣ
ବିବିଧ କ୍ଳେଶକୁ ଲଭଇ
ଆପଣା କର୍ମକୁ ସ୍ମରଇ । ୩୨।
ଉଗ୍ର ସ୍ୱଭାବେ ଯେଉଁ ନରେ
ପ୍ରାଣୀର ଉଦ୍‌ବେଗକୁ କରେ
ଦନ୍ଦଶୂକ ଘୋର ନରକେ
ପଡ଼ନ୍ତି ଯାଇଁ ପରଲୋକେ
ପଞ୍ଚ ବା ସପ୍ତମୁଖ ଯାର
ଏମନ୍ତ ଦନ୍ଦଶୂକବର
ଅନେକ ଅଛନ୍ତି ତହିଁରେ
ଭକ୍ଷନ୍ତି ସେ ପାପୀ ଶରୀରେ ।୩୩
ଯେ ଗର୍ତ୍ତ ଆଦି କଷ୍ଟ ସ୍ଥଳେ
ପ୍ରାଣୀଙ୍କି ଥୋଇ ଅବହେଳେ
ଦ୍ୱାର ରୁନ୍ଧଇଁ ମୁଦ ଦେଇ
ସେ ନର ନରକେ ପଡ଼ଇ
ଗର୍ତ୍ତେ ପାମରକୁ ଥୁଅନ୍ତି
ସଧୂମ ଅଗ୍ନି ଦ୍ୱାରେ ଦହନ୍ତି ।୩୪

ଅସିପତ୍ର ନରକ ।



ଶୂଳପ୍ରୋତ ନରକ ।

ଯସ୍ତ୍ୱିହ ବା ଅତିଥୀନଭ୍ୟାଗତାନ୍ ବା ଗୃହପତିରସକୃଦୁପଗତମନ୍ୟୁର୍ଦିଧକ୍ଷୁରିବ ପାପେନ ଚକ୍ଷୁଷା ନିରୀକ୍ଷତେ ତସ୍ୟ ଚାପି ନିରୟେ ପାପଦୃଷ୍ଟେରକ୍ଷିଣୀ ବଜ୍ରତୁଣ୍ଡା ଗୃଧ୍ରକଙ୍କକାକବଟାଦୟଃ ପ୍ରସହ୍ୟୋରୁବଲାଦୁତ୍ପାଟୟନ୍ତି । ୩୫ ।

ଯସ୍ତ୍ୱିହ ବା ଆଢ୍ୟାଭିମତିରହଙ୍କୃତିସ୍ତିର୍ଯ୍ୟକ୍ପ୍ରେକ୍ଷଣଃ ସର୍ବତୋଽଭିଶଙ୍କୀ ବ୍ୟୟନାଶଚିନ୍ତୟା ପରିଶୁଷ୍ୟମାଣହୃଦୟବଦନୋ ନିର୍ବୃତିମନବଗତୋ ଗ୍ରହ ଇବାର୍ଥମଭିରକ୍ଷତି ସ ଚାପି ପ୍ରେତ୍ୟ ତଦୁତ୍ପାଦନୋତ୍କର୍ଷଣସଂରକ୍ଷଣଶମଲଗ୍ରହଃ ସୂଚୀମୁଖେ ନରକେ ନିପତତି । ଯତ୍ର ହ ବିତ୍ତଗ୍ରହଂ ପାପପୁରୁଷଂ ଧର୍ମରାଜପୁରୁଷା ବାୟକା ଇବ ସର୍ବତୋଽଙ୍ଗେଷୁ ସୂତ୍ରୈଃ ପରିବୟନ୍ତି । ୩୬ ।

ଏବଂବିଧା ନରକା ଯମାଳୟେ ସନ୍ତି ଶତଶଃ ସହସ୍ରଶସ୍ତେଷୁ ସର୍ବେଷୁ ଚ ସର୍ବ ଏବାଧର୍ମବର୍ତ୍ତିନୋ ଯେ କେଚିଦିହୋଦିତା ଅନୁଦିତାଶ୍ଚାବନିପତେ ପର୍ଯ୍ୟାୟେଣ ବିଶନ୍ତି । ତଥୈବ

---

ଯେଉଁବ୍ୟକ୍ତି ଇହଲୋକରେ ବାରମ୍ବାର କୁପିତ ହୋଇ ଜ୍ଞାନ ବା ଅଜ୍ଞାନରେ ଅତିଥିମାନଙ୍କ ପ୍ରତି ଦଗ୍ଧ ଚକ୍ଷୁରେ ପାପଦୃଷ୍ଟି ନିକ୍ଷେପ କରେ ସେ ବ୍ୟକ୍ତି ପରଲୋକରେ ନରକରେ ପତିତ ହୁଏ ଏବଂ ତାହାର ସେହି ପାପଚକ୍ଷୁ ଦୁଇଟିକୁ ବଜ୍ରତୁଲ୍ୟ କଠୋର ତୁଣ୍ଡ ଗୃଧ୍ର, କଙ୍କ, କାକ ଓ ବକାଦି ପକ୍ଷୀମାନେ ସହସା ପ୍ରବଳ ଶକ୍ତିଦ୍ୱାରା ଉତ୍ପାଟନ କରିଥାଆନ୍ତି । ୩୫ ।

ଯେଉଁ ବ୍ୟକ୍ତି ଧନ ଗର୍ବରେ ଆପଣାକୁ ସର୍ବଶ୍ରେଷ୍ଠ ବୋଲି ମନେ କରେ, ଯାହାର ଦୃଷ୍ଟି କୁଟିଳ ଗୁରୁଜନମାନେ ମଧ୍ୟ ତାହାର ଧନ ଅପହରଣ କରିନେବେ, ଏହି ଭୟରେ ସେ ସର୍ବଦା ଶଙ୍କି, ତାହାର ହୃଦୟ ଓ ବଦନ ଧନବ୍ୟୟ ଓ ଧନ ବିନାଶ ଚିନ୍ତାରେ ପରିଶୁଷ୍କ ହୋଇଯାଏ, ସେ କୌଣସିପ୍ରକାରେ ଶାନ୍ତି ସୁଖ ଲାଭ କରିପାରେ ନାହିଁ, କେବଳ ଯକ୍ଷ ତୁଲ୍ୟ ଧନ ରକ୍ଷାକରି ଥାଏ । ଏପରିବ୍ୟକ୍ତି କେବଳ ଅର୍ଥୋପାର୍ଜ୍ଜନ, ବର୍ଦ୍ଧନ ଓ ରକ୍ଷଣ ନିମନ୍ତେ ପାପଭାଗୀହେବାକୁ ସୂଚୀମୁଖ ନାମକ ନରକରେ ପତିତ ହୁଅନ୍ତି, ସେହି ନରକରେ ସେହି ଯକ୍ଷର ସର୍ବାଙ୍ଗରେ ଯମଦୂତମାନେ ତନ୍ତୁବାୟତୁଲ୍ୟ ସୂତ୍ର ବୟନ କରିଥାନ୍ତି । ୩୬

ହେ ରାଜନ୍ ! ଯମାଳୟରେ ଏହିପରି ଶତଶତ ସହସ୍ର ସହସ୍ର ନରକ ବିଦ୍ୟମାନ ରହିଅଛି, ଯେଉଁ ଅଧର୍ମୀବ୍ୟକ୍ତିମାନଙ୍କର ଉଲ୍ଲେଖ କରାଗଲା ଏବଂ ଯେଉଁମାନଙ୍କ ନାମ ଅନୁକ୍ତ ରହିଲା ସେମାନେ ସମସ୍ତେ

---

ପୂର୍ବେ ଯେ ଅସି ଯାଇ ନାହିଁ
ଅତିଥି ଦ୍ୱାରରେ ଆସଇ
ସ୍ନେହେ ନ ରଖି ତାକୁ ଯେବେ
ଅବଲୋକନ କ୍ରୋଧଭାବେ
କୁତ୍ସିତ ବାକ୍ୟ ତାରେ କହି
ଅନ୍ତେ ସେ ନରକେ ପଡ଼ଇ
ବଜ୍ରତୁଣ୍ଡ ଯେ ଗୃଧ୍ର କଙ୍କ
କାକ ସହିତେ ଯେତେ ବକ
ସ୍ୱର୍ଗ ଚଞ୍ଚୁରେ କରି ତାର
ଚକ୍ଷୁ ଖୋଳନ୍ତି ନୃପବର ।୩୫।
ଯେ ଅହଂକାରେ କ୍ରୋଧ ହୋଇ
ପ୍ରାଣିଙ୍କି କଟାକ୍ଷେ ଚାହିଁଇ
କୁଟିଳ ହୃଦୟ ଭାବରେ
ଜୀବର ମନକୁ ଆଚରେ
ଅନ୍ତେ ସେ ଯାଇ ପରଲୋକେ
ପଡ଼େ ନରକ ସୂଚୀମୁଖେ
ତହିଁରେ ପାପିର ଶରୀର
ସୀଉନ୍ତି ଯମର କିଙ୍କର ।୩୬।
ଏମନ୍ତ ପ୍ରକାରେ ରାଜନ
ଶତ ଶତ ନରକମାନ
ଅଛନ୍ତି ଯମର ସଦନ
ତହିଁ ପାପିଙ୍କ ନିକସ୍ଥାନ

ଧର୍ମ୍ମାନୁ ବର୍ତ୍ତିନ ଇତରଣ୍ଡ ଇହତ୍ର ପୁନର୍ଭବେ ତେ ଉଭୟଶେଷାଭ୍ୟାଂ ନିର୍ବିଶନ୍ତି ।୩୭।

ନିବୃତ୍ତିଲକ୍ଷଣମାର୍ଗ ଆଦାବେବ ବ୍ୟାଖ୍ୟାତଃ । ଏତାବାନେବ ଅଣ୍ଡକୋଷୋ ଯଶ୍ଚତୁର୍ଦ୍ଦଶଧା ପୁରାଣେଷୁ ବିକଳ୍ପିତ ଉଦ୍‌ଗୀୟତେ । ଯତ୍ତଦ୍‌ଭଗବତୋ ନାରାୟଣସ୍ୟ ସାକ୍ଷାନ୍ମହାପୁରୁଷସ୍ୟ ସ୍ଥବିଷ୍ଠଂରୂପମାତ୍ମମାୟାଗୁଣମୟମନୁବର୍ଣ୍ଣିତମାଦୃତଃ ପଠତି ଶୃଣୋତି ଶ୍ରାବୟତିଃ ସ ଉପଗେୟଂ ଭଗବତଃ ପରମାତ୍ମନୋ ଗ୍ରାହ୍ୟମପି ଶ୍ରଦ୍ଧାଭକ୍ତି ବିଶୁଦ୍ଧ ବୁଦ୍ଧିର୍ବେଦ । ୩୮ ।

ଶ୍ରୁତ୍ୱା ଯଥା ସ୍ଥୂଳସୂକ୍ଷ୍ମରୂପଂ ଭଗବତୋ ଯତିଃ ।
ସ୍ଥୂଳେ ନିର୍ଜିତମାତ୍ମାନଂ ଶନୈଃ ସୂକ୍ଷ୍ମଂ ଧିୟା ନୟେଦିତି । ୩୯ ।

---

ପାପୀମାନେ କ୍ରମେ ଏହି ନରକରେ ପ୍ରବେଶକରି ଥାଆନ୍ତି, ଏହିପରି ଧର୍ମାନୁବର୍ତ୍ତୀ ମନୁଷ୍ୟମାନେ ସ୍ୱର୍ଗଲୋକରେ ସୁଖ ଭୋଗ କରିଥାନ୍ତି, ଏହି ଦୁଇସ୍ଥାନରେ ଭୋଗ କଲାପରେ ପାପପୁଣ୍ୟ ଅବଶିଷ୍ଟ କର୍ମ ଅନୁସାରେ ଭାରତ ଭୂମିରେ ପୁନର୍ଜନ୍ମ ଲାଭ କରନ୍ତି । ୩୭ ।

ଦ୍ୱିତୀୟ ସ୍କନ୍ଧରେ ନିବୃତ୍ତିମାର୍ଗ ବର୍ଣ୍ଣିତ ହୋଇଅଛି, ତାହା ପୁରାଣ ସମୂହରେ ଚତୁର୍ଦ୍ଦଶ ଭାଗରେ ବିଭକ୍ତ କରାଯାଇ କୀର୍ତ୍ତିତ ହୋଇଅଛି, ଏହା ବ୍ରହ୍ମାଣ୍ଡକୋଷ । ଏହା ମହାପୁରୁଷ ଭଗବାନ୍ ନାରାୟଣଙ୍କର ସ୍ୱୀୟ ମାୟାଗୁଣମୟ ସାକ୍ଷାତ ସ୍ଥୂଳତମ ରୂପବୋଲି ବର୍ଣ୍ଣିତ ହୋଇଅଛି, ଯେ ଆଦରରେ ଏହା ପଠନ ବା ଶ୍ରବଣ କରେ ବା ଅନ୍ୟକୁ ଶ୍ରବଣ କରାଏ ସେହିବ୍ୟକ୍ତି ଶ୍ରଦ୍ଧା ଓ ଭକ୍ତିଦ୍ୱାରା ବିଶୁଦ୍ଧ ମତି ଲାଭକରି ସାଧାରଣଙ୍କର ଗ୍ରହଣଯୋଗ୍ୟ ପରମାତ୍ମା ଭଗବାନଙ୍କର ଉପନିଷଦ ପ୍ରତିପାଦ୍ୟ ରୂପ ଅବଗତ ହୁଏ । ୩୮ ।

ଯେ ବ୍ୟକ୍ତି ଭଗବାନଙ୍କର ଏହି ସ୍ଥୂଳରୂପ ଓ ସୂକ୍ଷ୍ମରୂପ ବିଷୟ ଗୁରୁଙ୍କ ନିକଟରୁ ଯଥାଯଥ ଭାବରେ ଶ୍ରବଣକରି ସ୍ଥୂଳରୂପ ଆତ୍ମାକୁ ଜୟକରି କ୍ରମେ ବୁଦ୍ଧିଦ୍ୱାରା ଆତ୍ମାକୁ ସୂକ୍ଷ୍ମରୂପେ ସଂଲଗ୍ନ କରାଏ ସେ ଯଥାର୍ଥରେ କୃତାର୍ଥ ହୁଏ । ୩୯ ।

---

ଯେ ଯେତେ ଧର୍ମ ଆଚରଇ
ସେ ରୂପେ ଫଳ ସେ ଭୁଞ୍ଜଇ ।୩୭
ନିବୃତ୍ତି ମାର୍ଗର ଲକ୍ଷଣ
ଆଗତ କହିଛୁ ସଜ୍ଜନ
ଏ ଚତୁର୍ଦ୍ଦଶ ମତ ହୋଇ
ବ୍ରହ୍ମାଣ୍ଡକୋଷ ଏ ବୋଲାଇ
ପୁରାଣେ ଅନୁମାନ କରି
ଭୂମରେ କହିଛି ବିସ୍ତାରି

ଯେ ଭଗବତ ନାରାୟଣ
ମହାପୁରୁଷ ଭଗବାନ
ଶ୍ରେଷ୍ଠ ରୂପ ତାହାଙ୍କର
ମାୟାଗୁଣରେ ନପବର
ଯେତେକ ବର୍ଣ୍ଣିଲଇ ମୁହିଁ
ସକଳରୂପ ଯେ ଅଟଇ
ଯେ ନର ଶ୍ରଦ୍ଧାବନ୍ତ ହୋଇ
ପଢଇ ଶୁଣଇ ଶୁଣାଇ

ସେ ସାଧୁ ଭକ୍ତ ଶୁଦ୍ଧ ନର
ପରମ ଆତ୍ମା ଯେ ଈଶ୍ୱର
ଅଚିନ୍ତ୍ୟ ରୂପଟି ଯାହାର
ପରମ ସୂକ୍ଷ୍ମରୁ ଯେ ପର
ତାହାର ଅତି ସୂକ୍ଷ୍ମତର
ଦେବଙ୍କୁ ଯାହା ଅଗୋଚର
ସୁଗତି ଲଭଇ ସେ ଜନ
ପରମଶ୍ରେଷ୍ଠ ସେହୁ ଜନ ।୩୮।୩୯।

ଭୂଦ୍ୱୀପବର୍ଷସରିଦଦ୍ରିନଭଃ ସମୁଦ୍ରପାତାଳଦିଙ୍ନରକଭାଗଣଲୋକସଂସ୍ଥା ।
ଗୀତା ମୟା ତବ ନୃପାଦ୍ଭୁତମୀଶ୍ୱରସ୍ୟ ସ୍ଥୂଳଂ ବପୁଃ ସକଳଜୀବନିକାୟଧାମ । ୪୦ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ
ନରକବର୍ଣ୍ଣନଂ ନାମ ଷଡ଼୍ବିଂଶୋଽଧ୍ୟାୟଃ । ୨୬ ।

---

ହେ ରାଜନ୍ ! ତୁମ୍ଭ ନିକଟରେ ମୁଁ ପୃଥିବୀ, ଦ୍ୱୀପ, ବର୍ଷ, ନଦୀ, ପର୍ବତ, ଆକାଶ, ସମୁଦ୍ର, ପାତାଳ ଦିଗ, ଜ୍ୟୋତିଷ ଓ ନରକାଦି ଲୋକସଂସ୍ଥାନ ବର୍ଣ୍ଣନା କଲି, ଏ ସମସ୍ତ ସର୍ବଜୀବର ଆଶ୍ରୟୀଭୂତ ଭଗବାନଙ୍କର ବିରାଟ ସ୍ଥୂଳରୂପ ବୋଲି ଜାଣିବ । ୪୦ ।

---

ଦ୍ୱୀପ ବରଷ ନଦୀ ଗିରି
ସର୍ବ ସମୁଦ୍ର ଦଣ୍ଡଧାରୀ !
ପାତାଳ ଦିଗ ଯେ ନରକ
ଭାଗ ଲକ୍ଷଣ ଯେତେ ଲୋକ
ଈଶ୍ୱର ସ୍ଥୂଳ ଯେ ଶରୀର
ଆଶ୍ରୟ ସକଳ ଜୀବର

ଏ ସର୍ବ ବିସ୍ତାର ପ୍ରକାରେ
ହେ ନୃପ ! କହିଲୁ ତୁମ୍ଭରେ ।୪୦
କହଇ ଜଗନ୍ନାଥ ଦାସ
ପଞ୍ଚମସ୍କନ୍ଧେ ସୁଧାରସ
ସାଦରେ ପିଅ ସାଧୁପ୍ରାଣି !
ତରିବ ଭବତରଙ୍ଗିଣୀ

ଏ ଯେ ସଂସାର ସିନ୍ଧୁ ଘୋର
ଦୁଷ୍ଟଜନରେ ଦୁସ୍ତର .
ପାଦପଲ୍ଲବ ଯୁଗ ଧରି
ସୁଖେ ତରିବ ଭବବାରି
ତା ବିନୁ ଅନ୍ୟ ଗତି ନାହିଁ
ସୁଜନେ ଚିନ୍ତ ଭବଗ୍ରାହୀ

ଇତି ପଞ୍ଚମସ୍କନ୍ଧ ସମାପ୍ତ ।



ଭାବାର୍ଥ :—

ପୂର୍ବାଧ୍ୟାୟମାନଙ୍କରେ ଭୂମଣ୍ଡଳ ଆକାଶ, ଗ୍ରହ, ନକ୍ଷତ୍ର ଇତ୍ୟାଦିର ବର୍ଣ୍ଣନା କରାଯାଇ ଏହି ଷଡ଼୍‌ବିଂଶ ଅଧ୍ୟାୟରେ ନରକର ବର୍ଣ୍ଣନା କରାଯାଇଅଛି । ଏହି ସମସ୍ତ ଭଗବାନଙ୍କର ବିରାଟ ସ୍ଥୂଳରୂପ ବୋଲି ଶ୍ରୀଶୁକଦେବ ଏହି ଅଧ୍ୟାୟର ଶେଷ ଶ୍ଳୋକରେ ରାଜା ପରୀକ୍ଷିତଙ୍କୁ କହିଅଛନ୍ତି । ଯମଦୂତଗଣ ପାପୀମାନଙ୍କୁ ସ୍ୱସ୍ୱ କର୍ମାନୁସାରେ ଭିନ୍ନ ଭିନ୍ନ ନରକରେ ପ୍ରବେଶ କରାଇ ଦଣ୍ଡବିଧାନ କରାଇ ଥାଆନ୍ତି; ସତ୍ତ୍ୱ, ରଜ, ତମ ଏହି ତିନିବୃତ୍ତିର ଆଧିକ୍ୟ ଓ ନ୍ୟୂନତା ହେତୁ ପୁଣ୍ୟ ଓ ପାପ ବୃତ୍ତିକୁ ଆଶ୍ରୟ କରିଥାଏ, ଏହି ତିନିବୃତ୍ତିର ଭେଦ ଅନୁସାରେ ପ୍ରାଣୀକୁ ପାପପୁଣ୍ୟ ଭୋଗ କରିବାକୁ ପଡ଼େ, ତେଣୁ କଥିତ ହୋଇଅଛି—

"ତୋହର ମନ ତୋତେ ଗୁରୁ । ଉଦ୍ଧବ କେତେହେଁ ପଚାରୁ" ॥

ଶ୍ରୀଶୁକଦେବ ରାଜା ପରୀକ୍ଷିତଙ୍କ ନିକଟରେ ନରକମାନଙ୍କର ସୂଚନା ଦେଲା ପରେ ରାଜା ପରୀକ୍ଷିତଙ୍କର ସନ୍ଦେହ ହେଲା—ଏହି ନରକମାନ କଣ ଭୂମିତଳେ ଅବସ୍ଥିତ ନା ଏହା ତ୍ରିଭୁବନର ବହିର୍ଦ୍ଦେଶରେ ଅବସ୍ଥିତ । ଦାର୍ଶନିକମାନେ ଦୁଃଖ ବିଶେଷକୁ ନରକବୋଲି ନିର୍ଦ୍ଦେଶ କରିଥାଆନ୍ତି, ଏହି ଅଧ୍ୟାୟରେ ଇହ ଓ ପରଲୋକରେ ବିଭିନ୍ନ ଅବସ୍ଥା ଅର୍ଥାତ୍ ଇହଲୋକରେ କୃତକର୍ମ ହେତୁ ପରଲୋକରେ ପ୍ରାଣୀ ଯେଉଁ ନରକ ଯନ୍ତ୍ରଣା ଭୋଗ କରେ ତାହା ବର୍ଣ୍ଣନା କରାଯାଇଅଛି ।

ମନୁଷ୍ୟର ମୃତ୍ୟୁ ହୁଏ, ପରଲୋକରେ ନରକଯନ୍ତ୍ରଣା ଭୋଗ କରେ କିଏ ? ଏହା ଏକ ଜଟିଳ ପ୍ରଶ୍ନ । ଆତ୍ମା ଈଶ୍ୱର ସ୍ୱରୂପ, ସେହି ଆତ୍ମାକୁ ପାପପୁଣ୍ୟ ସ୍ପର୍ଶ କରେ ନାହିଁ, ଜୀବ ବା ପ୍ରାଣବାୟୁ ବାହାରିଗଲେ ନଶ୍ୱର ଦେହ ପଡ଼ି ରହେ, ତାହାହେଲେ ବିଭିନ୍ନ ନରକ ଯନ୍ତ୍ରଣା ଭୋଗ କରେ କିଏ, ଏହି ଜୀବନରେ ପାପୀ ଓ ପୁଣ୍ୟବାନ୍ ବ୍ୟକ୍ତିର ବିଭିନ୍ନ ଭୋଗ ଘଟିଥାଏ, ତାହାକୁହିଁ ସ୍ୱର୍ଗ ନରକ ଭୋଗ ବୋଲି ଗ୍ରହଣ କରାଯାଏ ।

"ସ୍ୱର୍ଗ ନରକ ବେଦବାଣୀ । ଏହି ଜୀବନେ ପରମାଣି" ॥

ମନୁଷ୍ୟର ମୃତ୍ୟୁ କାଳୀନ ଅବସ୍ଥା ଦୃଷ୍ଟେ ତାହାର ସ୍ୱର୍ଗ ନରକ ଭୋଗ ମଧ୍ୟ କଳନା କରାଯାଏ, ପାପୀର ମୃତ୍ୟୁ ଯନ୍ତ୍ରଣାହିଁ ତାହାର ନରକ ଭୋଗ, ତେଣୁ ମଧ୍ୟ ଭାଗବତରେ କଥିତ ଅଛି—

"ଜୀବର ଭଲମନ୍ଦ ବାଣୀ । ମରଣକାଳେ ତାହା ଜାଣି" ॥

ଗୋଟିଏ ମାତ୍ର ନରକ ଭୋଗ କଲେ ପାପୀର କର୍ମଭୋଗ ଶେଷ ହୁଏ ନାହିଁ, ଗୋଟିଏ ନରକର ଯନ୍ତ୍ରଣା ଭୋଗକରି ଅନ୍ୟ ନରକରେ ପ୍ରବେଶ କରିବାକୁ ହୁଏ, ଏହାକୁହିଁ ଜନ୍ମାନ୍ତରରେ କର୍ମଭୋଗ ବୋଲି ଗ୍ରହଣ କରାଯାଇପାରେ ।



# ପରିଶିଷ୍ଟ—

(ପୃ ୧୭୯—୧୮୦ ଷ୍ଠା)

✱ ଶ୍ରୀମଦ୍ଭାଗବତ ତୃତୀୟସ୍କନ୍ଧ ଷୋଡ଼ଶାଧ୍ୟାୟ ସଂଗତ ସ୍ତୋତ୍ରର ଗୀତ । ✱

ଯେ ଲକ୍ଷ୍ମୀ ପଦରଜ ଶିରେ
ଧରନ୍ତି ବ୍ରହ୍ମା ଆଦି ସୁରେ
ସେ ଲକ୍ଷ୍ମୀ ଅଷ୍ଟ ବହୁତରେ
ସେବଇଁ ଯାକୁ ଅବସରେ
ଯାଚନ୍ତାଜନ ପ୍ରାୟ ହୋଇ
ତୋହର ପାଦେ ଶୋଭାପାଇ
ଯେ ପାଦେ ତୁଳସୀ ଅର୍ପିତ
କରନ୍ତି ତୋହର ଭକତ
ଗନ୍ଧେ ମୋହିତ ହୋଇ ଷଡ଼
ଭ୍ରମର ରହେ ଅବ୍ରବ
ବଶୁଙ୍କଠରୁ ଅନୁବ୍ରତ
ଲକ୍ଷ୍ମୀ ସେବନ୍ତି ପାଦଗତେ
ତାହାଙ୍କୁ ଅତନ୍ଧି ଆଦର
ହେନାଥ ନାହିଁ ଦ୍ୱେଷ ତୋହର
ଯେଣୁ ପରମ ଭାଗବତେ
ତୋହର ସଙ୍ଗ ଅନୁବ୍ରତେ
ବ୍ରାହ୍ମଣ ପ୍ରସାଦରୁ ଶିଏ
ମୋତେ ନ ଛୁଡ଼ୁ ବୋଲୁ ହର
ଯେଣୁ ତୁ ଭଜନୀୟ ଗୁଣ
ମାନଙ୍କ ଆଶ୍ରୟ ପରମ
ବ୍ରାହ୍ମଣ ପାଦରଜ ଛନ୍ତି
ପାଇଛ ତୋ ପାପ ଦହନ

ପୃଥ୍ୱୀମଣ୍ଡଳ ଜନମିତ୍ର
ଏତେବନ୍ନ ତୋର ଅଙ୍ଗୀକୃତ
ଏହି ତିନ୍ନଯୁଗ ଭଗବାନ
ତୁ ଧର୍ମ ମୂର୍ତ୍ତି ନାରାୟଣ
ତୃତୀୟ ଚରଣରେ କର
ବ୍ରହ୍ମାଣ୍ଡ ପାଳ ନରହରି
ଆମ୍ଭ ବରଦ ଶୁଦ୍ଧ ସତ୍ତ୍ୱ
ମୂର୍ତ୍ତିରେ ରଜ ତମ ଗ୍ରସ୍ତ
କରିଣ ଦେବ ଦ୍ୱିଜ ପାଳ
କିବା ନରକ ଦୁଃଖ ହନ୍ତ୍ରୁ
ତୋର ରକ୍ଷଣ ଦେବବୃନ୍ଦ
ଯେବେ ନ ରଖିବୁ ଗୋବିନ୍ଦ
ତେବେ ତୋ ବେଦମାର୍ଗ ନାଶ
ହୋଇବ ଶୁଣ ହୃଷୀକେଶ
ଯେ ଧର୍ମ କରେ ଶ୍ରେଷ୍ଠ ଜନ
ଲୋକେ କରନ୍ତି ସେହି କର୍ମ
ବେଦରକ୍ଷଣେ ତୋର କାତ
ନ କରୁ ବେଦମାର୍ଗ ହତ
ଯେଣୁ ତୁ ସତ୍ତ୍ୱର ସାଗର
ଲୋକମଙ୍ଗଳ ତୋ ଈଶ୍ୱର
ତୋ ଛଳ ଶକ୍ତି ରାଜାମାନେ
ଧର୍ମକୁ ରଖୁ ତୁହି ତେଣେ

ତୁ ବସ୍ତୁ ତ୍ରୟ, ଅଧୀଶ୍ୱର
ଏ ଧର୍ମ ରକ୍ଷଣେ ତୋହର
ଯେ ଆଦି ତେଜ ନୁହେ ହତ
ଏଣୁ ବିନୟ ତୋର ଯୁକ୍ତ
ଏ ନମ୍ର ବଚନାଦ ତୋହର
ଲୋକଶିକ୍ଷାର୍ଥ ବ୍ୟବହାର
ହେ ପ୍ରଭୁ ବେନି ଦ୍ୱାରଙ୍କର
ଦଣ୍ଡ ବୃତ୍ତିର ତୁ ଈଶ୍ୱର
ଯେ ଅବା କରୁ ତୁ ବିଧାନ
ଜାଣିଲୁ ତେବେ ନୋହେ ଅନ୍ୟ
ନିଅପରାଧି ବେନିଜନ
ଅଟନ୍ତି ଯେ କଲୁଁ ପାପକର୍ମ
ଏଣୁ ଆମ୍ଭରେ ଯେ ଉଚିତ
ସେଦଣ୍ଡ ଦିଅ ପଦ୍ମନେତ୍ର

ଶ୍ରୀ ଭଗବାନୁବାଚ

ଏମନ୍ତ ମୁନିଙ୍କ ବଚନ
ଶୁଣି ସନ୍ତୋଷ ଭଗବାନ

